# ଭୂମିକା

'ସକ୍ରେଟିସ୍ ଓ ପ୍ଲାଟୋ' ବହି ପ୍ରସ୍ତୁତ କରିବା ସମୟ ଭିତରେ ଗ୍ରୀକ୍ ଜାତି ସହିତ ପରିଚିତ ହେବାର ସୁଯୋଗ ପାଇଥିଲି । ସେହିଦିନୁ ଗ୍ରୀକ୍ ସଂସ୍କୃତି ସମ୍ବନ୍ଧରେ ଖଣ୍ଡେ ବହି ଲେଖିବାର ଇଚ୍ଛା ଥିଲା । ଜୀବନକୁ ସରସ, ସୁନ୍ଦର ଓ ଅର୍ଥପୂର୍ଣ୍ଣ କରିବାର ଉଦ୍ୟମ ଓ ସାଧନା ଯେଉଁଠି ହୋଇଆସୁ ନା କାହିଁକି, ସେଥିପ୍ରତି ମଣିଷର ଆକର୍ଷଣ ସାର୍ବଜନୀନ । ସମୁଦାୟ ପାଶ୍ଚାତ୍ୟ ଜଗତ ପ୍ରାଚୀନ ଗ୍ରୀସ୍‌ରୁ ପ୍ରେରଣା ଓ ଆଲୋକ ପାଇଛି । ଗ୍ରୀକ୍ ପୁରାଣ, ସାହିତ୍ୟ, କିମ୍ବଦନ୍ତୀ, ଦର୍ଶନ ଓ ଇତିହାସ ସମ୍ପର୍କରେ ଅଜ୍ଞ ରହିଲେ ପାଶ୍ଚାତ୍ୟର ସାଂସ୍କୃତିକ ଜୀବନକୁ ବୁଝି ହେବ ନାହିଁ ।

ଅଢ଼େଇ ହଜାର ବର୍ଷ ପୂର୍ବେ ଜୀବନକୁ ଉଚ୍ଚ ଓ ମହାନ୍ କରିବା ପାଇଁ ଗ୍ରୀକ୍ ଜାତି ଯେଉଁ ଉଦ୍ୟମ କରିଥିଲା, ସେ ସମ୍ପର୍କରେ ଅଧିକରୁ ଅଧିକ ଜ୍ଞାନ ଆହରଣ କରିବା ସର୍ବଦା ସ୍ୱାଗତଯୋଗ୍ୟ । ଏ ବିଷୟରେ ମତଭେଦ ହେବନାହିଁ । ଗୋଟିଏ ଭିନ୍ନ ବିଷୟ କିନ୍ତୁ ମୋତେ ଆନ୍ଦୋଳିତ କରୁଥିଲା । ଗ୍ରୀକ୍ ଜାତି ଓ ସେ ଜାତିର ମହାନ୍ ସନ୍ତାନଗଣଙ୍କ ପ୍ରତି ମୁଁ ଗଭୀର ଭାବେ ଆକର୍ଷିତ ହୋଇଛି । ଏପରି ଆକର୍ଷଣ, ଅନୁରାଗ କିଛି ଅସ୍ୱାଭାବିକ ନୁହେଁ ତ ? କେବେ କେବେ ଏହିଭଳି ପ୍ରଶ୍ନ ଅନ୍ତର୍ଦ୍ୱନ୍ଦ୍ୱ ରୂପରେ ଆସି ହାବୁଡ଼ି ଯାଆନ୍ତି । ପ୍ରାଚୀନ ଗ୍ରୀସ୍ ପ୍ରତି ଜଣେ ପାଶ୍ଚାତ୍ୟ ମଣିଷର ଗଭୀର ଆବେଗ ଓ ମମତା ସ୍ୱାଭାବିକ ମନେ ହୁଏ । କିନ୍ତୁ ଜଣେ ଭାରତୀୟ ପକ୍ଷରେ........

ଏପରି ପ୍ରଶ୍ନ ଓ ଦ୍ୱନ୍ଦ୍ୱର କୌଣସି ଉତ୍ତର ଯେ ମନକୁ ଆସୁ ନ ଥିଲା, ତା ନୁହେଁ । ତେବେ ଏହି ଉତ୍ତରସବୁ ଥିଲେ ଅସ୍ପଷ୍ଟ । ଆତ୍ମବିଶ୍ୱାସ ଅଭାବରେ ମୁଁ ହୁଏତ ତାହା ପ୍ରକାଶ କରି ନ ଥାନ୍ତି । ଏହି ବହି ଲେଖିବା ଭିତରେ ଆକସ୍ମିକ ଭାବେ ପଣ୍ଡିତ ନେହରୁଙ୍କର

Discovery of Indiaରୁ 'ଭାରତ ଓ ଗ୍ରୀସ୍' ଅନୁଚ୍ଛେଦଟି ପଢ଼ିଲି ।ଏହା ପଢ଼ି ସତେକି ଅବିଧ ପ୍ରେମରେ ପଡ଼ି କେତେବ କେବେ ଭୋଗୁଥିବା ଅସ୍ୱସ୍ତି ମୋ ଠାରୁ ଉଭେଇଗଲା ।

ଉକ୍ତ ପରିଚ୍ଛେଦରେ ପଣ୍ଡିତ ନେହୃରୁ ଲେଖିଛନ୍ତି, "India is far nearer in spirit and outlook to the old Greece than the nations of Europe are today, although they call themselves children of Hellenic Spirit." । ପାର୍ଥିବ ସମ୍ପଦ ଓ ବିଳାସର ପିଚ୍ଛା ପଡ଼ିଥିବା ପାଶ୍ଚାତ୍ୟ ଦେଶଗୁଡ଼ିକର ପ୍ରାଚୀନ ଗ୍ରୀସ୍‌ର ଜୀବନାଦର୍ଶ ସହିତ କି ମେଳ ଅଛି ବର୍ତ୍ତମାନ କାଳରେ ? ମଣିଷ ଜୀବନକୁ ଗଭୀର ଓ ମହାନ୍ କରିବାର ଅଦ୍ଭୁତ ସାଧନା ହୋଇଥିଲା ପ୍ରାଚୀନ ଇଜିପ୍ଟ, ଗ୍ରୀସ୍, ଭାରତବର୍ଷ ଓ ଚୀନ ଦେଶରେ । ଗ୍ରୀକ୍ ସଂସ୍କୃତିର ବିଲୟ କେତେକାଳରୁ ଘଟିଥିଲେ ମଧ୍ୟ ନାନା ଉତ୍ଥାନପତନ ଭିତରେ ଭାରତୀୟ ସଂସ୍କୃତି ତଥାପି ବଞ୍ଚିରହିଛି । ଗୋଟିଏ ବିରାଟ ସଂସ୍କୃତି-ଭୂମିର ସନ୍ତାନ ଭାବେ ଅନ୍ୟ ଏକ ଭୂମିରେ ଘଟିଯାଇଥିବା ଜୀବନ ସାଧନା ପ୍ରତି ଆମେ ଗଭୀରଭାବେ ଆକୃଷ୍ଟ ହେବା ବରଂ ସ୍ୱାଭାବିକ କଥା ।

ଜଣେ ବଡ଼ ମଣିଷ ପରି ଯେ କୌଣସି ବଡ଼ ସଂସ୍କୃତି ଅନୁପମ । ବାସ୍ତବିକ୍ ! ଅନୁପମତ୍ୱ ମହାନ୍ ସଂସ୍କୃତି ବିଶିଷ୍ଟ ଲକ୍ଷଣ । ପ୍ରାଚୀନ ଭାରତ ଓ ପ୍ରାଚୀନ ଗ୍ରୀସ୍ ମଧ୍ୟରୁ କେହି ଚନ୍ଦ୍ର ନୁହନ୍ତି, ଉଭୟେ ସୂର୍ଯ୍ୟ । ଏବଂ ଯୁଗ ଯୁଗ ଧରି ସେମାନେ ମାନବଜାତିର ଚିତ୍ତାକାଶରେ ଦାଉ ଦାଉ ହୋଇ ଜଳୁଥିବେ । ପ୍ରାଚୀନ କାଳରେ ଭାରତବର୍ଷ ଓ ଗ୍ରୀସ୍ ମଧ୍ୟରେ ଯୋଗ-ସୂତ୍ର ଥିଲା । ସେମାନେ ପରସ୍ପରକୁ ପ୍ରଭାବିତ କରିଛନ୍ତି । ମାତ୍ର କହିବା ବାହୁଲ୍ୟ, ଉଭୟେ ନିଜର ସ୍ୱକୀୟ ବିକାଶଧାରାରେ ତୁଙ୍ଗଶିଖରକୁ ଉଠିଛନ୍ତି । ବିଂଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ପାଶ୍ଚାତ୍ୟବାସୀ ଧରି ନେଇଥିଲେ ଯେ ସୁଦୂର ଅତୀତରେ ଯାହାକିଛି ମହାନ୍, ମୂଲ୍ୟବାନ୍ ଓ ପ୍ରେରଣାଦାୟକ, ସେ ସବୁର ସୃଷ୍ଟି ପ୍ରାଚୀନ ଗ୍ରୀସ୍‌ରେ । ଗ୍ରୀସ୍ ହିଁ ପାଶ୍ଚାତ୍ୟର ଜନନୀ, ଆଜି ତାର ମାଉସୀ କେହି ନାହାନ୍ତି । ଏ କଥା ଠିକ୍ ନୁହେଁ ।

ବିଂଶ ଶତାବ୍ଦୀରେ ନୂତନ ଐତିହାସିକ ଆବିଷ୍କାର ପ୍ରଭୃତି ଫଳରେ ପାଶ୍ଚାତ୍ୟ ପଣ୍ଡିତଗଣ କ୍ରମଶଃ ହୃଦୟଙ୍ଗମ କରିଛନ୍ତି ଯେ ପୃଥିବୀର କୌଣସି ପ୍ରାଚୀନ ସଭ୍ୟତା ଗୋଟାଏ ଭୌଗଳିକ ସୀମା ଭିତରେ ଆବଦ୍ଧ ହୋଇ ନ ଥିଲା । ଅଢ଼େଇ ହଜାର ବର୍ଷ ପୂର୍ବେ ଭାରତ

ଓ ଗ୍ରୀସ୍ ମଧ୍ୟରେ ଯୋଗସୂତ୍ର ଥିବାର ପ୍ରମାଣ ମିଳୁଛି । ଏ ଦୁଇ ମହାନ୍ ସଂସ୍କୃତି ମଧ୍ୟରେ କେଉଁ ଭାବ ସବୁର ଆଦାନପ୍ରଦାନ ହୋଇଥିଲା ଓ କେଉଁ ଅନ୍ୟକୁ କି ଭଳି ପ୍ରଭାବିତ କରିଥିଲା ସେ ଇତିହାସର ଅଧିକାଂଶ ପୃଷ୍ଠା ହୁଏତ ଚିରଦିନ ପାଇଁ ହଜିଯାଇଛି । କିନ୍ତୁ ଗୋଟିଏ ଆବଦ୍ଧ ପୁଷ୍କରିଣୀରେ ସଂସ୍କୃତି-ପଦ୍ମ ଫୁଟିବା ସମ୍ଭବ ବୋଲି ଆମେ ବିଶ୍ୱାସ କରି ପାରୁନୁ । ସୁଦୂର ଅତୀତ ସମ୍ବନ୍ଧରେ ଯେତିକି ତଥ୍ୟ ମିଳୁଛି ସେଥିରୁ ହୃତ୍‌ବୋଧ ହୁଏ ଯେ ଉଦ୍ଭିଦଙ୍କର ବୀଜ ବିକ୍ଷେପ ଠାରୁ ଚିନ୍ତା-ବୀଜଙ୍କର ବିକ୍ଷେପ ଶତ ଶତଗୁଣ ଅଧିକ ବିସ୍ମୟ-ଜନକ । ପକ୍ଷୀ ଗଛର ଫଳ ଖାଇ ଦୂରକୁ ଉଡ଼ିଯାଏ । ସେଠି ମଳତ୍ୟାଗ କରେ । ମଳରେ ଥିବା ମଞ୍ଜିରୁ ଉଠେ ନୂଆଗଛ । ପ୍ରାଚୀନ ସଭ୍ୟତାର ପୀଠ ଭାରତ, ଚୀନ, ପାରସ୍ୟ, ବେବିଲୋନ, ମିଶର, ମେସୋପଟେମିଆ, ଗ୍ରୀସ୍—କେଉଁ ଭୂମିରୁ କି ବୀଜ କୁଆଡ଼େ ଉଡ଼ିଯାଇ ପଡ଼ୁଛି ଓ ନୂଆ ଭୂମିରେ ନୂଆ ଜାତିର ଉଦ୍ଭିଦ ସୃଷ୍ଟି କରୁଛି, ଇତିହାସ ତାର ଟେର୍ ପାଏନା । ଅଜ୍ଞେୟ, ରହସ୍ୟାବୃତ୍ତ ଇତିହାସାତୀତ ରାଜ୍ୟରୁ ଭାସି ଆସୁଥିବା ଅପୂର୍ବ ମଧୁର କ୍ଷୀଣ ସଙ୍ଗୀତର ସୁର୍ ଯଦି ଆମ କାନରେ ବାଜୁ ନ ଥାଏ, ତେବେ ଇତିହାସ ଚିହ୍ନା ପୃଥିବୀର ଘଟଣାକ୍ରମ ଠାରୁ ଆଉ ଅଧିକ କିଛି ହୋଇପାରେ ନାହିଁ ।

ଅନ୍ୟ ଦେଶର ଲୋକଙ୍କ ପ୍ରତି ଶତ୍ରୁତା ମନୋଭାବ ଦୂର କରି ଓ ସବୁ ଭେଦଭାବ ଭୁଲି ଗୋଟିଏ ପୃଥିବୀର ବାସିନ୍ଦା ଭାବେ ବଞ୍ଚିବାକୁ ଅନେକ ଚିନ୍ତାଶୀଳ ବ୍ୟକ୍ତି ଆଧୁନିକ ଯୁଗରେ ମାନବ ଜାତିକୁ ଆହ୍ୱାନ କରିଛନ୍ତି । ହଜାର ହଜାର ବର୍ଷ ପୂର୍ବେ ପ୍ରାଚୀନ ସଭ୍ୟତା-ମାନଙ୍କ ମଧ୍ୟରେ ଆଦାନପ୍ରଦାନ ଫଳରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଜଗତଯାକର ମଣିଷ ଛନ୍ଦାଛନ୍ଦି ହୋଇଛନ୍ତି ନ ଜାଣି ବିଶ୍ୱଭ୍ରାତୃତ୍ୱ ଭାବ ଦେଖାଇବା ଗୋଟାଏ ହାଲୁକା ଭାବୋଚ୍ଛ୍ୱାସ ବ୍ୟାପାର ମାତ୍ର । ମଣିଷର ସାଂସ୍କୃତିକ ଦେନାଦେନ ଐକ୍ୟ ଓ ଭ୍ରାତୃତ୍ୱର ସ୍ୱାଭାବିକ ବନ୍ଧନ । ଅତି ପୁରାତନ କାଳରୁ ତାହାର ଆରମ୍ଭ ।

ଗ୍ରୀସ୍ ଓ ଭାରତ ମଧ୍ୟରେ ଭାବବନ୍ଧନ କେବେ ଆରମ୍ଭ ହେଲା ତାର ନିର୍ଦ୍ଦିଷ୍ଟ ବା ଧାରବାହିକ ଇତିହାସ ପାଇବାକୁ ଆଶା କରିବା ବୃଥା । ବିଖ୍ୟାତ ପାର୍ଶୀ ପରିବ୍ରାଜକ ଆଲ୍‌ବେରୁଣୀ ଏକାଦଶ ଶତାବ୍ଦୀରେ ଭାରତ ଆସିଥିଲେ ଓ ସଂସ୍କୃତ ଶିକ୍ଷା କରିଥିଲେ । ଭାରତୀୟ ଦର୍ଶନ ସହିତ ପରିଚିତ ହେଲା ପରେ ଭାରତୀୟ ଚିନ୍ତା ଓ ଗ୍ରୀକ୍ ଚିନ୍ତା ମଧ୍ୟରେ ସାମଞ୍ଜସ୍ୟ ତାଙ୍କୁ ଅବାକ୍ କରିଥିଲା । ଏ କଥା ଆଲ୍‌ବେରୁଣୀ ଲିପିବଦ୍ଧ କରିଛନ୍ତି । ଗ୍ରୀକ୍

ଜ୍ୟୋତିର୍ବିଜ୍ଞାନ ସମ୍ପର୍କରେ ସଂସ୍କୃତରେ ଲିଖିତ ଗ୍ରନ୍ଥ ଆଲ୍‌ବେରୁଣୀଙ୍କ ଦୃଷ୍ଟିକୁ ଆସିଥିଲା । ସେଥିରୁ ସଂସ୍କୃତ ଗ୍ରନ୍ଥ ପରବର୍ତ୍ତୀ କାଳରେ ନଷ୍ଟ ହୋଇଯାଇଥିବାର ଅନୁମାନ । ଆଲେକ୍‌ଜାଣ୍ଡ୍ରିଆରେ ଜ୍ୟୋତିର୍ବିଜ୍ଞାନର ଚରମ ବିକାଶ ଘଟିଥିବା ସମୟରେ (ଖ୍ରୀ: ପୂ: ୩ୟ ଶତାବ୍ଦୀ ) ଉଜ୍ଜୟିନୀର ବିଖ୍ୟାତ ମାନମନ୍ଦିର ଆଲେକ୍‌ଜାଣ୍ଡ୍ରିଆ ସହିତ ସମ୍ପର୍କ ରଖିଥିବାର ପ୍ରମାଣ ମିଳୁଛି ।

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ବେଳକୁ ଭାରତ ଓ ଗ୍ରୀକ୍ ସାମ୍ରାଜ୍ୟ ମଧ୍ୟରେ ବାଣିଜ୍ୟ ପ୍ରତିଷ୍ଠିତ । ଏ ଦେଶରେ ଗ୍ରୀକ୍ ସୁରାର ଯଥେଷ୍ଟ ଆଦର ଥିଲା ସେ କାଳରେ । ଜଣେ ତାମିଲ୍ କବି ଯବନ ( ଗ୍ରୀକ୍ ) ଙ୍କର ସୁରାର ଉଚ୍ଚପ୍ରଶଂସା କରିଛନ୍ତି । ସିଲିଉକସ୍ ( ଆଲେକ୍‌ଜାଣ୍ଡର୍‌ଙ୍କ ସେନାପତି ) ଙ୍କ ସାମ୍ରାଜ୍ୟ ଅନ୍ତର୍ଗତ ସିରିୟାର ଅଧିପତି ଆଣ୍ଟିଓକସ୍‌ଙ୍କ ପାଖକୁ ଚିଠି ଲେଖି ବିନ୍ଦୁସାର କିଛି ଶୁଖିଲା ଫିଗ୍, ଉତ୍କୃଷ୍ଟ ମଦ୍ୟ ଓ ଜଣେ ସଫିଷ୍ଟ ଦାର୍ଶନିକ ଦାବିଦ କରିଥିଲେ । ତିନୋଟିରୁ ଦୁଇଟି ଜିନିଷ ପଠାଇ ଆଣ୍ଟିଓକସ୍ ଜଣାଇ ଦେଇଥିଲେ ଯେ ଗ୍ରୀକ୍ ଆଇନ୍ ଅନୁଯାୟୀ ସଫିଷ୍ଟ ଦାର୍ଶନିକ ବିକ୍ରି ହୋଇପାରିବେ ନାହିଁ ! ବାସ୍ତବିକ୍ ! ସଫିଷ୍ଟ ଦାର୍ଶନିକ ପ୍ରାଚୀନ ଭାରତବର୍ଷରେ ଜଣେ ନୂଆ ପ୍ରକାରର ଓ ଦେଖିଲା ଭଳି ଦାର୍ଶନିକ ହୋଇଥାଆନ୍ତେ ।

ଭାରତୀୟ ଓ ଗ୍ରୀକ୍ ଦାର୍ଶନିକଙ୍କ ମଧ୍ୟରେ କେତେଦୂର ଗାଢ଼ ସମ୍ପର୍କ ଥିଲା ସେ ବିଷୟରେ କିଛି ଅନୁମାନ କରିବା ମଧ୍ୟ କଷ୍ଟକର । ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀର ପ୍ରସିଦ୍ଧ ଦାର୍ଶନିକ ପିଥାଗୋରସ୍‌ଙ୍କର ଦର୍ଶନ, ଗଣିତ ଓ ଧର୍ମ ସମ୍ବନ୍ଧୀୟ ସମସ୍ତ ଚିନ୍ତାର ଉତ୍ସ ଭାରତୀୟ ବୋଲି ଅନେକ ପାଶ୍ଚାତ୍ୟ ପଣ୍ଡିତ ମତ ଦିଅନ୍ତି । ପିଥାଗୋରସ୍ ଭାରତକୁ ଆସିଥିବାର ପ୍ରବାଦ ଅଛି । ସକ୍ରେଟିସ୍‌ଙ୍କ ଜୀବନକାଳ ଭିତରେ ତାଙ୍କର ଖ୍ୟାତି ଭାରତବର୍ଷରେ ଆସି ପହଞ୍ଚିଥିଲା । ପରବର୍ତ୍ତୀକାଳର କେତେକ ଗ୍ରୀକ୍ ଲେଖକ କହିଛନ୍ତି ଯେ ସକ୍ରେଟିସ୍‌ଙ୍କ ସହିତ ଆଲୋଚନା କରିବା ପାଇଁ ଭାରତରୁ ବିଜ୍ଞବ୍ୟକ୍ତିମାନେ ଗ୍ରୀସ୍ ଯାଇଥିଲେ ।

ସେ କାଳରେ ଭାରତ ଓ ଗ୍ରୀସ୍ ମଧ୍ୟରେ ଗମନାଗମନ କି ଭଳି କଠିନ ବ୍ୟାପାର ଥିଲା ତାହା କହିବା ନିଷ୍ପ୍ରୟୋଜନ । ଦୀର୍ଘ, ଦୁର୍ଗମ ପଥ ଅତିକ୍ରମ କରି କାହିଁ କେଉଁଠି ଗ୍ରୀସ୍ ଦେଶର ଜଣେ ବିରାଟ ଜ୍ଞାନୀପୁରୁଷଙ୍କୁ ଭେଟିବା ପାଇଁ ଅଢ଼େଇ ହଜାର ବର୍ଷ ପୂର୍ବେ ଭାରତବର୍ଷରୁ

ଉତ୍ସାହୀ ଜ୍ଞାନାନ୍ୱେଷୀମାନେ ଯାହା କରୁଥିବାର ଦୃଶ୍ୟକୁ କଳ୍ପନା କଲେ ଅନ୍ତର ଅଭିଭୂତ ଭାବମାନଙ୍କରେ ଆଚ୍ଛନ୍ନ ହୋଇଯିବା ସ୍ୱାଭାବିକ୍ ।

ଜଗତକୁ ଭାରତୀୟ ସଂସ୍କୃତି ଓ ଗ୍ରୀକ୍ ସଂସ୍କୃତି ଉଭୟଙ୍କର ଅବଦାନ ବିପୁଳ । ଅବଦାନ ବିଷୟ ବାଦ୍‌ଦେଲେ ଏ ପର୍ଯ୍ୟନ୍ତ ଉଭୟେ ମଣିଷକୁ ଉଦ୍‌ବୁଦ୍ଧ ଓ ମୁଗ୍ଧ କରି ଆସୁଛନ୍ତି । ଦୁହିଁଙ୍କ ମଧ୍ୟରେ ସାମଞ୍ଜସ୍ୟ ଯେତିକ, ଅସାମଞ୍ଜସ୍ୟ ତତୋଽଧିକ । ବିଶାଳ ଦେଶ ଭାରତବର୍ଷ । ଆକାରରେ ଗ୍ରୀସ୍ ଅତି କ୍ଷୁଦ୍ର । ଭାରତବର୍ଷରେ ଘଞ୍ଚ ବିସ୍ତୃତ ଅରଣ୍ୟ ପୂରି ରହିଛି । ଅନେକାଂଶରେ ଅନୁର୍ବର ଓ ପଥୁରିଆ ଗ୍ରୀସ୍‌ରେ ଘନ ଅରଣ୍ୟ ନାହିଁ । ଏ ଦେଶରେ ଅନେକ ବଡ଼ ପର୍ବତମାଳା, ନଗାଧିରାଜ ହିମାଳୟ ଏଠାରେ ବିଦ୍ୟମାନ । ଗ୍ରୀସ୍‌ରେ କେତୋଟି ପର୍ବତ ଅଛନ୍ତି ସତ, କିନ୍ତୁ ସେମାନେ ଆମ ଦେଶର ପର୍ବତଙ୍କ ସହିତ ତୁଳନୀୟ ନୁହନ୍ତି । ଭାରତବର୍ଷରେ କି ସୁନ୍ଦର, ପୂଣ୍ୟତୋୟା ଓ ପ୍ରାତଃସ୍ମରଣୀୟ ନଦୀସବୁ ! ଗ୍ରୀସ୍‌ରେ ନଦୀ ପରି ନଦୀଟିଏ ନାହିଁ । ଗ୍ରୀକ୍ ଜାତିର ମାନ ସାମୁଦ୍ରିକ, ସମୁଦ୍ର ସହିତ ତାର ଆବେଗିକ ସମ୍ପର୍କ । ମାପଫିତାରେ ମାପିଲେ ଭାରତବର୍ଷର ସମୁଦ୍ର ଉପକୂଳର ଦୈର୍ଘ୍ୟ ତାର ଆକାର ତୁଳନାରେ କିଛି କମ୍ ନୁହେଁ । କିନ୍ତୁ ଭାରତୀୟଙ୍କ ଉପରେ ସମୁଦ୍ରର ପ୍ରଭାବ ଅଗଭୀର ।

କେବଳ ଭୌଗଳିକ ଓ ପ୍ରାକୃତିକ କ୍ଷେତ୍ରରେ ନୁହେଁ; ଚିନ୍ତା, ଚାଲିଚଳଣି ଓ ଜୀବନାଦର୍ଶରେ ଗ୍ରୀକ୍ ଓ ଭାରତୀୟ ମଧ୍ୟରେ ଅନେକ ପାର୍ଥକ୍ୟ । ତେବେ ଦୁହିଁଙ୍କର ପାର୍ଥକ୍ୟକୁ ହେତୁହୀନ ଭାବେ ଅତିରଞ୍ଜିତ କରାଯାଏ । କୁହାଯାଇଛି, ଭାରତବର୍ଷ ଫକୀରଙ୍କର ଦେଶ । ସନ୍ନ୍ୟାସ ଏ ଦେଶର ଆଦର୍ଶ । ପାଶ୍ଚାତ୍ୟ ପଣ୍ଡିତମାନେ ଏହି କଥାଟି ପ୍ରଚାର କରିବା ସଙ୍ଗେ ସଙ୍ଗେ କହିଛନ୍ତି ଯେ, ଗ୍ରୀକ୍‌ମାନେ ଜୀବନବାଦୀ । ଭାରତୀୟ ଜୀବନ ବୈରାଗୀ ଓ ଗ୍ରୀକ୍ ଜୀବନବାଦୀ—ଏ ଧାରଣାଟି ଭ୍ରମାତ୍ମକ । ଅନ୍ତତଃ ଗ୍ରୀକ୍‌ମାନେ ଭାରତୀୟଙ୍କୁ ଏପରି ବିଚାରି ନାହାନ୍ତି । ଆଲେକ୍‌ଜାଣ୍ଡର୍‌ଙ୍କ ସହିତ ଭାରତକୁ ଆସିଥିବା ଗ୍ରୀକ୍ ଐତିହାସିକ ଆରିଆନ୍ ଭାରତୀୟଙ୍କ ସମ୍ପର୍କରେ ଲେଖିଛନ୍ତି, "ଭାରତୀୟଙ୍କ ଠାରୁ ଅଧିକ ନୃତ୍ୟଗୀତ ପ୍ରିୟ ଜାତି ଆଉ ନାହାନ୍ତି" ।

ପ୍ରାଚୀନ ଭାରତୀୟ ଓ ଗ୍ରୀକ୍‌ଙ୍କର ବଞ୍ଚିବାର ଶୈଳୀ ବା ସଂସ୍କୃତିର ତୁଳନାତ୍ମକ ବିଚାର କରିବାର ଉଦ୍ଦେଶ୍ୟ ଏ ବହିର ନାହିଁ । ସେଥିପାଇଁ ଭୂମିକାରେ ଏ ବିଷୟରେ ପଦେ

କହିବାର ଲୋଭ ସମ୍ବରଣ କରିପାରିଲି ନାହିଁ ! ଏକ ମହାନ୍ ସଂସ୍କୃତି ଗଢ଼ିଥିବା ପ୍ରାଚୀନ ଗ୍ରୀକ୍ ଜାତି ସହିତ ଅନ୍ତରଙ୍ଗ ପରିଚୟ କରାଇବା ଏ ବହିର ଉଦ୍ଦେଶ୍ୟ । ଆମ ସାହିତ୍ୟରେ ଗ୍ରୀକ୍ ସଂସ୍କୃତି ସମ୍ବନ୍ଧରେ ପ୍ରାୟ କିଛି ଆଲୋଚନା ହୋଇନାହିଁ । ତେଣୁ ଗ୍ରୀକ୍ ସଂସ୍କୃତିକୁ ପରିଚିତ କରାଇବା ଠାରୁ ଆଉ ଅଧିକ କିଛି ଉଦ୍ଦେଶ୍ୟ ଖଣ୍ଡେ ବହିକୁ ବଳେଇ ପଡ଼ିବ ବୋଲି ମୋର ଭୟ ହୋଇଛି । ଗ୍ରୀକ୍ ଜୀବନର ଏକ ସନ୍ତୋଷଜନକ ଚିତ୍ର ପରିବେଷଣ କରିପାରି-ଥିଲେ ମୋର ପରିଶ୍ରମ ସାର୍ଥକ ହୋଇଛି ବୋଲି ମଣିବି ।

ବିଭିନ୍ନ ମିଉଜିୟମ୍‌ରେ ସୁରକ୍ଷିତ କେତୋଟି ଗ୍ରୀକ୍‌କଳାର ଚିତ୍ର ଏ ବହିରେ ରହିଛି । ଅଧିକ ସଂଖ୍ୟକ ଚିତ୍ର ଦେବା ପାଇଁ ଇଚ୍ଛା ଥିଲେ ମଧ୍ୟ ଖର୍ଚ୍ଚ ଦୃଷ୍ଟିରୁ ତାହା ସମ୍ଭବ ହେଲା ନାହିଁ । ଏହି ଚିତ୍ରଗୁଡ଼ିକୁ The Story of Mankind (Part-1, ଲେଖକ Olive Beaupre Miller) ଓ The Legacy of Greece (ସମ୍ପାଦନା—Sir Richard Livingstone) ଗ୍ରନ୍ଥ ଦ୍ୱୟରୁ ସଂଗ୍ରହ କରିଛି । ଏଥିପାଇଁ ମୁଁ ଦୁଇ ଗ୍ରନ୍ଥକାରଙ୍କ ନିକଟରେ କୃତଜ୍ଞ ।






## ଗ୍ରୀସ୍ ଓ ତାହାର ଚତୁଃପାର୍ଶ୍ୱର ମାନଚିତ୍ର :

ମାନଚିତ୍ରରେ ଅଙ୍କିତ ସଂଖ୍ୟାଙ୍କ ଦ୍ୱାରା ଚିହ୍ନିତ କରାଯାଇଥିବା କେତେକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ।
୧ ଓ ୨ ଅଙ୍କ ଦ୍ୱୟ ମାନଚିତ୍ର ବାହାରେ । ୩-ରୋମ୍ । ୪-ସିସିଲି । ୫-ସିରାକ୍ୟୁଜ୍ ।
୬-ନେପ୍‌ଲସ୍ । ୭-ମେଡମା । ୮-ଏଲିଆ । ୯-କ୍ରୋଟୋନା । ୧୦-ଟାରେଣ୍ଟମ୍ ।
୧୧-ସିରିନ୍ । ୧୨-ଏଲିସ୍ । ୧୩-ଏଥେନ୍ସ । ୧୪-ଷ୍ଟାଗେରିଆ । ୧୫-ଥାସୋସ୍ । ୧୬-ଆବ୍‌ଡେରା । ୧୭-ଚିଅସ୍ । ୧୮-ସାମୋସ୍ । ୧୯-ପାରୋସ୍ । ୨୦-କ୍ରିଟ୍ । ୨୧-ରୋଡେଜ୍ । ୨୨-ସିନିଡସ୍ । ୨୩-ମିଲିଟସ୍ । ୨୪-କ୍ଲାଜୋମିନା । ୨୮-ବାଇଜାଣ୍ଟିଅମ୍ ।
୩୪-ସାଇପ୍ରସ୍ । ୩୮-ଟିର୍ । ୪୦-ଜେରୁଜାଲମ୍ । ୪୧-ଆଲେକ୍‌ଜାଣ୍ଡ୍ରିଆ ।

# ପ୍ରଥମ ସୂର୍ଯ୍ୟୋଦୟର ଦ୍ୱୀପ

## କ୍ରିଟ୍

✳ କ୍ରିଟ୍ ଦ୍ୱୀପ ପ୍ରଧାନ ଗ୍ରୀକ୍ ଭୂଖଣ୍ଡ ଠାରୁ ଅନତି ଦୂରରେ ଅବସ୍ଥିତ ।

✳ ଖ୍ରୀଷ୍ଟପୂର୍ବ ୩୦୦୦ ବେଳକୁ କ୍ରିଟ୍‌ରେ ଗୋଟିଏ ଉନ୍ନତ ସଭ୍ୟତା ଗଢ଼ିଉଠିଥିଲା ।

✳ କ୍ରିଟ୍‌ର ସଭ୍ୟତା ଗ୍ରୀସ୍‌କୁ ଆଲୋକ ଦେଖାଇଛି ।

ପୃଥିବୀ ଇତିହାସରେ ଗ୍ରୀକ୍ ସଂସ୍କୃତିର ସମକକ୍ଷ ସଂସ୍କୃତି କ୍ୱଚିତ୍ ଦେଖାଦେଇଛି । ପାଶ୍ଚାତ୍ୟ ଜଗତର ଧ୍ରୁବତାରା ସ୍ୱରୂପ ଏହି ମହାନ୍ ସଂସ୍କୃତି ଯୁଗ ଯୁଗ ଧରି ଜଗତବାସୀଙ୍କୁ ଉଦ୍‌ବୁଦ୍ଧ କରୁଛି । ମିଶର, ମେସୋପୋଟାମିଆ ଓ ଭାରତର ସଭ୍ୟତା ଗ୍ରୀକ୍ ସଭ୍ୟତା ଠାରୁ ପ୍ରାଚୀନତର । ନୀଳ, ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍ ଏବଂ ଗଙ୍ଗା ଓ ସିନ୍ଧୁନଦୀର କୂଳରେ ଏହି ତିନୋଟି ପ୍ରାଚୀନତର ମହାନ୍ ସଭ୍ୟତାର ଆଦ୍ୟ ଉନ୍ମେଷ ଘଟିଥିଲା । ମାତ୍ର ଗ୍ରୀକ୍ ସଭ୍ୟତା ମୁଣ୍ଡ ଟେକିଲା ସମୁଦ୍ର ଉପକୂଳରେ । ଉତ୍ତମ ଜଳବାୟୁ ବା ଉର୍ବର ଜମି ଭୂମଧ୍ୟସାଗରୀୟ ଅଞ୍ଚଳର ଆକର୍ଷଣ ନୁହେଁ । ବରଂ ଅନୁର୍ବର ଜମିରେ ଖଟୁଥିବା ଗ୍ରୀକ୍ କୃଷୀ ତା ପରିଶ୍ରମର ଫଳ ପାଉ ନ ଥିଲା ।

ପ୍ଲେଟୋ କହନ୍ତି, ପୋଖରୀ କୂଳରେ ବେଙ୍ଗମାନେ ବାସ କଲାପରି ଆମେ ସବୁ ଏହି ସମୁଦ୍ର ଉପକୂଳକୁ ବାଛି ନେଇଛୁ ।

ଗ୍ରୀସ୍‌ର ପ୍ରଧାନ ଭୂଖଣ୍ଡଟି ସମୁଦାୟ ଗ୍ରୀକ୍ ଜଗତର ଗୋଟିଏ ଅଂଶ ମାତ୍ର । ଇଜିଆନ୍ ସମୁଦ୍ରର ଛୋଟ ଛୋଟ ଅନେକ ଦ୍ୱୀପରୁ ଏସିଆ ମାଇନର୍ ଉପକୂଳ ପର୍ଯ୍ୟନ୍ତ, ଇଜିଆନ୍ ଓ ମାର୍ମୋରା ସାଗରକୁ ଯୋଗ କରୁଥିବା ଡାର୍ଡାନେଲିଜ୍ ପ୍ରଣାଳୀ ଉପକୂଳରୁ

ଆରମ୍ଭ କରି ମାର୍ମୋରା ଉପକୂଳ ଦେଇ ବ୍ଲାକ୍ ସି ପର୍ଯ୍ୟନ୍ତ ପ୍ରାଚୀନ ଗ୍ରୀକ ଜଗତ ବିସ୍ତୃତ ଥିଲା । ଗ୍ରୀକ୍‌ମାନେ ସିସିଲି ଦକ୍ଷିଣ ଇଟାଲୀ ଏପରିକି ଦକ୍ଷିଣ ଫ୍ରାନ୍‌ସ ଓ ସ୍ପେନ୍‌ରେ ବସତି ସ୍ଥାପନ କରିଥିଲେ । ଉତ୍ତର ଆଫ୍ରିକାର ସିରନ୍ ଥିଲା ଏକ ସମୃଦ୍ଧଶାଳୀ ଗ୍ରୀକ୍ ନଗର । ନୀଳ ନଦୀର ତ୍ରିକୋଣଭୂମି ପର୍ଯ୍ୟନ୍ତ ଗ୍ରୀକ୍‌ମାନେ ମାଡ଼ି ଯାଇଥିଲେ । ଅବଶ୍ୟ ଏତେ ବଡ଼ ବିସ୍ତୃତ ଅଞ୍ଚଳର ଅଧିକାଂଶ ହେଉଛି ଜଳଭାଗ । ପ୍ରଧାନ ଭୂଖଣ୍ଡ ସମେତ ଚତୁର୍ଦ୍ଦିଗ ଖେଳେଇ ହୋଇ ରହିଥିବା ଦ୍ୱୀପମାନଙ୍କର କ୍ଷେତ୍ରଫଳ ମିଶି ପ୍ରାୟ ପଚିଶ ପଞ୍ଚାବନ ହଜାର ବର୍ଗ ମାଇଲ ।

ଭଲ ଜଳବାୟୁ ବା ଉତ୍କୃଷ୍ଟ କୃଷିଜମି ଦ୍ୱାରା ଆକୃଷ୍ଟ ହୋଇ ନୁହେଁ, ଇଜିଆନ୍‌ର ମନୋରମ କ୍ଷୁଦ୍ର ଦ୍ୱୀପମାନଙ୍କ ଦ୍ୱାରା ଆକୃଷ୍ଟ ହୋଇ ଗ୍ରୀକ୍‌ମାନେ ସେ ଅଞ୍ଚଳରେ ବସତି ସ୍ଥାପନ କରିଥିବା ସମ୍ଭବ । ଏମାନଙ୍କର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତି ମନୋହର । ଚତୁର୍ଦ୍ଦିଗରେ ବିସ୍ତୃତ ହୋଇ ରହିଥିବା ଦ୍ୱୀପଙ୍କ ମଧ୍ୟରୁ ଗୋଟିକରେ ଘର ବାନ୍ଧିବାକୁ ଗ୍ରୀକ୍ ନାବିକ ଲୋଭିଲା । କାରଣ ତା ଜାହାଜ ଯେଉଁ ଦିଗରେ ଗଲେ ମଧ୍ୟ ଚାଳିଶ ମାଇଲ ଭିତରେ ସ୍ଥଳଭାଗକୁ ସ୍ପର୍ଶ କରିପାରେ । ଭୂମଧ୍ୟ ସାଗରୀୟ ଅଞ୍ଚଳର ବର୍ଷସାରା ଉଜ୍ଜ୍ୱଳ ପାଗ କୃଷୀକୁ ସିନା ପୋଷାଏ ନାହିଁ, ନାବିକ ମନକୁ କିନ୍ତୁ କିଣିନିଏ ।

ପ୍ରଧାନ ଗ୍ରୀକ୍ ଭୂଖଣ୍ଡଟି ଦକ୍ଷିଣ ବଲ୍‌କାନ୍ ପେନିନ୍‌ସୁଲାରେ ଅବସ୍ଥିତ । ଆୟୋନିଆନ୍ ଓ ଇଜିଆନ୍ ସାଗରର ଗ୍ରୀକ୍ ଦ୍ୱୀପଗୁଡ଼ିକୁ ଅବସ୍ଥିତି ଦୃଷ୍ଟିରୁ କେତୋଟି ଦ୍ୱୀପପୁଞ୍ଜରେ ବିଭକ୍ତ କରାଯାଇଛି । ପ୍ରଧାନ ଭୂଖଣ୍ଡ ଓ କ୍ରିଟ୍ ମଧ୍ୟରେ ଇଜିଆନ୍ ସାଗରସ୍ଥିତ ପ୍ରାୟ ଦୁଇଶହ କୋଡ଼ିଏଟି କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପ ସାଇକ୍ଲାଡ଼ିଜ୍ ନାମରେ ପରିଚିତ । ଡେଲସ୍ ନାମକ ଦ୍ୱୀପକୁ କେନ୍ଦ୍ରକରି ବୃତ୍ତାକାରରେ ଖେଳେଇ ହୋଇ ରହିଥିବାରୁ ଏପରି ନାମକରଣ । ସବୁ ସାଇକ୍ଲାଡ଼ିଜ୍ ଦ୍ୱୀପଙ୍କର କ୍ଷେତ୍ରଫଳ ମିଶି ହଜାରେ ବର୍ଗମାଇଲରୁ କମ୍ । ସେମାନେ କେଡ଼େ କ୍ଷୁଦ୍ର ଏଇଥିରୁ ଜଣାପଡ଼େ ।

ପ୍ରଧାନ ଭୂଖଣ୍ଡର ଦକ୍ଷିଣ-ପୂର୍ବ ଦିଗରେ କ୍ରିଟ୍ ଅବସ୍ଥିତ । ଏହି ଦ୍ୱୀପଟି ଇଜିଆନ୍‌ର ଦକ୍ଷିଣ ସୀମା ନିର୍ଣ୍ଣୟ କରେ । ପୂର୍ବ ଭୂମଧ୍ୟସାଗରସ୍ଥିତ କ୍ରିଟ୍ ଗ୍ରୀକ୍ ଜଗତରେ ସର୍ବବୃହତ୍ ଦ୍ୱୀପ । ଏହାର କ୍ଷେତ୍ରଫଳ ତିନିହଜାର ଦୁଇଶହ ବର୍ଗମାଇଲ ।

ସାଇକ୍ଲାଡ଼ଜ୍‌ର ପୂର୍ବକୁ (ତୁର୍କୀ ଉପକୂଳରେ) ସ୍ପୋରାଡ଼ଜ୍ (ଅର୍ଥାତ୍ ବିଛୁଡ଼ି ହୋଇ-ଥିବା) ଦ୍ୱୀପପୁଞ୍ଜ । ରୋଡ଼ଜ୍ ଓ ସାଇପ୍ରସ୍ ଏହି ଦୁଇଟି ବିଶିଷ୍ଟ ସ୍ପୋରାଡଜ୍ ଦ୍ୱୀପ । ସଂସ୍କୃତି କ୍ଷେତ୍ରକୁ ବିଶେଷ ଅବଦାନ ଥିବା କସ୍ ଦ୍ୱୀପଟି ସ୍ପୋରାଡ଼ଜ୍‌ର ଅନ୍ତର୍ଗତ ।

ସ୍ପୋରାଡ଼ଜ୍‌ର ଅଳ୍ପ ଉତ୍ତରକୁ ଇଜିଆନ୍‌ର ପୂର୍ବ ଉପକୂଳରେ ଆୟୋନୀୟ ନଗର-ଗୁଡ଼ିକ ଅବସ୍ଥିତ । ଗ୍ରୀକ୍ ସଭ୍ୟତାର ବିକାଶ ଦିଗରେ ଆୟୋନିଆ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲା । ମିଲିଟସ୍ ଓ ସାମୋସ୍ ଦୁଇଟି ପ୍ରଧାନ ଆୟୋନୀୟ ନଗର ।

ଗ୍ରୀକ୍ ସଂସ୍କୃତି କେବେ ଜନ୍ମ ନେଲା ? ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀଟି ଗ୍ରୀକ୍ ସଂସ୍କୃତିର ସ୍ୱର୍ଣ୍ଣଯୁଗ । ଖ୍ରୀ: ପୂ ନବମ ଶତାବ୍ଦୀର ମହାକବି ହୋମର୍ ଟ୍ରୟ ସହିତ ଗ୍ରୀସ୍‌ର ଯୁଦ୍ଧକୁ ଭିତ୍ତି କରି ତାଙ୍କର ମହାକାବ୍ୟ ରଚନା କଲେ । ଟ୍ରୟ ଯୁଦ୍ଧ ଦ୍ୱାଦଶ ଶତାବ୍ଦୀର ଘଟଣା । ଟ୍ରୟ ପର୍ଯ୍ୟନ୍ତ ଯାଇ ଲଢ଼ିଥିବା ଜାତି ଗୋଟିଏ ଉନ୍ନତ ସଭ୍ୟତା ଗଢ଼ିଥିବ ବୋଲି ଅନୁମାନ କରିବା ସ୍ୱାଭାବିକ । ମାତ୍ର ଇତିହାସ ସେ କାଳର କିଛି ଖବର ପ୍ରାୟ ରଖିନାହିଁ । କିମ୍ବଦନ୍ତୀ ଓ ପୁରାଣ କେବଳ ସେ କାଳକୁ ବଞ୍ଚାଇ ରଖିଛି । ଖ୍ରୀ:ପୂ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଗ୍ରୀସ୍‌ରେ ଥିଲା କଣ ? ଅନ୍ଧକାର ଯୁଗ ? ଅସଭ୍ୟତାର ରାଜତ୍ୱ ?

ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ପୃଥିବୀବାସୀ ଏଇଆ ବିଶ୍ୱାସ କରୁଥିଲେ । କୁହା ଯାଉଥିଲା, ଗ୍ରୀସ୍ କୌଣସି ପ୍ରାଚୀନତର ସଭ୍ୟତା ଦ୍ୱାରା ପ୍ରଭାବିତ ହୋଇନାହିଁ । ମିଶର ବ୍ୟତୀତ ଗ୍ରୀକମାନେ ଅନ୍ୟ କେଉଁ ସଭ୍ୟତା ଠାରୁ ଋଣ ଆଣିନାହାନ୍ତି । ୧୯୦୦ ଖ୍ରୀଷ୍ଟାବ୍ଦରେ ବିଖ୍ୟାତ ପ୍ରତ୍ନତତ୍ତ୍ୱବିଦ୍ ସାର୍ ଆର୍ଥର ଇଭାନ୍‌ସ ପ୍ରାଚୀନ କ୍ରିଟ୍‌ର ସଭ୍ୟତାକୁ ଲୋକଲୋଚନକୁ ଆଣିଲେ । ପ୍ରାଚୀନ କ୍ରିଟର ରାଜଧାନୀ ନୋସସ୍ (Knossos) କୁ ଖୋଳାଇ ଇଭାନସ୍ ଖ୍ରୀଷ୍ଟପୂର୍ବ ତିନିହଜାର ବର୍ଷ ପୂର୍ବର ଏକ ଉନ୍ନତ ସଭ୍ୟତାକୁ ମାଟିତଳୁ ଉଦ୍ଧାର କଲେ । ଗ୍ରୀକ ସଂସ୍କୃତିର କ୍ରମବିକାଶକୁ ବୁଝିବା ଦିଗରେ ଏହି ମହାନ୍ ଆବିଷ୍କାର ବିଶେଷ ଭାବେ ସାହାଯ୍ୟ କରିଛି ।

ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ କ୍ରିଟୀୟ ସଭ୍ୟତା ଗୁପ୍ତ ହୋଇଥିଲେ ମଧ୍ୟ ପ୍ରାଚୀନ ଗ୍ରୀକ୍‌ବାସୀ ଏହି ମହାନ ସଭ୍ୟତା ସମ୍ବନ୍ଧରେ ସଚେତନ ଥିଲେ । ହୋମର୍ କ୍ରିଟ୍‌ର ବିଭବ ଓ ଉନ୍ନତ ସଭ୍ୟତାର ଉଲ୍ଲେଖ କରିଛନ୍ତି । ମାତ୍ର ତାଙ୍କ କଥାକୁ ମନଗଢ଼ା ବୋଲି ଧରି

ଯାଇଥିଲା । ଅବଶ୍ୟ ହୋମର୍‌ଙ୍କର ଦୁଇ, ଅଡ଼େଇ ହଜାର ବର୍ଷ ପୂର୍ବରୁ କ୍ରିଟ୍‌ରେ ବଞ୍ଚିଥିବା ସଭ୍ୟତା ସମ୍ପର୍କରେ କୌଣସି ପ୍ରାମାଣିକ ତଥ୍ୟ ଗ୍ରୀକ୍‌ମାନଙ୍କ ଠାରୁ ଆଶା କରି ଯାଇ ନ ପାରେ ।

ବାଣିଜ୍ୟ ତଥା ଶତ୍ରୁଙ୍କଠାରୁ ଆତ୍ମରକ୍ଷା ଦୃଷ୍ଟିରୁ କ୍ରିଟ୍‌ର ଅବସ୍ଥିତି ଆଦର୍ଶ ସ୍ଥାନୀୟ । ମିଶର ଓ ଗ୍ରୀସ୍ ତଥା ଫିନିସିଆ ଓ ଇଟାଲୀର ମଝିଆମଝି ଅବସ୍ଥିତ ଏହି ଦ୍ୱୀପ ବାଣିଜ୍ୟ ତଥା ସଭ୍ୟତାର ପ୍ରସାର କ୍ଷେତ୍ରରେ ଗୋଟିଏ ବଡ଼ ଭୂମିକା ଗ୍ରହଣ କରିଥିଲା । ସେ କାଳର ସୁସଭ୍ୟ ମିଶର ଓ ଏସିଆ ମାଇନର୍ ଏବଂ ଅନ୍ଧକାର ୟୁରୋପ ମଧ୍ୟରେ କ୍ରିଟ୍ ହେଲା ସେତୁ । ସୁଦୂର ଅତୀତରେ କ୍ରିଟ୍‌ରେ ଗୋଟିଏ ଅତି ଉନ୍ନତ ସଭ୍ୟତା ପ୍ରତିଷ୍ଠିତ ହୋଇ ପାରିଥିଲା । କ୍ରିଟ୍ ଦ୍ୱୀପଟି ଥିଲା ସହର ବହୁଳ । କେବଳ ନୋସସ୍ ନୁହେଁ, ଆଉ ଅନେକ ସହରରୁ ଯେଉଁସବୁ ସୁନ୍ଦର ଘରଦ୍ୱାର, ଜଳ ନିଷ୍କାସନ ପାଇଁ ନଳା ବ୍ୟବସ୍ଥା, ଗାଧୁଆଘର, ପୋଷାକପତ୍ର ଓ ଅଳଙ୍କାରର ସନ୍ଧାନ ମିଳିଛି, ସେ ସବୁ ଦେଖି ଆଧୁନିକ ଯୁଗର ଐତିହାସିକମାନେ ଚମତ୍କୃତ ହୋଇଛନ୍ତି । ଖ୍ରୀ: ପୂ ଦୁଇହଜାର ବର୍ଷ ପୂର୍ବର ନାଟକମଞ୍ଚ କ୍ରିଟ୍‌ରେ ଆବିଷ୍କୃତ ହୋଇଛି ।

ନୋସସ୍‌ର ଖୋଦନ କାର୍ଯ୍ୟ ଇଭାନସ୍ ୧୯୦୦ ଖ୍ରୀଷ୍ଟାବ୍ଦରେ ଆରମ୍ଭକରି ୧୯୩୬ରେ ଶେଷ କରିଥିଲେ । ଦୀର୍ଘକାଳର ପରିଶ୍ରମ, ଗଭୀର ଅଧ୍ୟୟନ ଓ ଜ୍ଞାନ ବୃଦ୍ଧିର ବଳରେ ସେ କ୍ରିଟୀୟ ସଭ୍ୟତାର ରୂପରେଖ ନିର୍ଣ୍ଣୟ କରିଛନ୍ତି ।

କ୍ରିଟ୍‌ବାସୀ ଥିଲେ ସମୁଦ୍ରର ରାଜା । ଭୂମଧ୍ୟସାଗର ଓ ନୀଳନଦୀ ବାଟଦେଇ କ୍ରିଟ୍‌ର ବୋଇତ ମିଶର ରାଜଧାନୀ ଥିବାଜ୍‌ରେ ପହଞ୍ଚିବାକୁ ସେତେବେଳେ ଛଅଦିନ ଲାଗୁଥିଲା । ସେହିପରି ଗ୍ରୀସ୍‌ଠାରୁ କ୍ରିଟ୍‌ର ଦୂରତ୍ୱ ଥିଲା ଦୁଇଦିନର ନୌଯାତ୍ରା । ସମୁଦ୍ର ବିରାଗୀ ମିଶରବାସୀ ବିଭିନ୍ନ ବିଦେଶୀ ସୌଖୀନବସ୍ତୁ ପାଇବା ପାଇଁ କ୍ରିଟ୍‌ର ବଣିକଙ୍କ ଉପରେ ନିର୍ଭର କରୁଥିଲେ । ବିଗନ୍ତ ବିସ୍ତାରି ସମୁଦ୍ରରେ ବୋଇତ ମେଲିବାର କଞ୍ଜାଳ କ୍ରିଟ୍ ଲୋକଙ୍କ ଉପରେ ଛାଡ଼ିଦେଇ ସେମାନଙ୍କ ଜାହାଜ ନୀଳନଦୀର ମୁହାଣରେ ଲାଗିବା ପାଇଁ ମିଶରବାସୀ ଫାରୋସ୍ ଠାରେ ଏକ ବଡ଼ ବନ୍ଦର ତିଆରି କରି ଦେଇଥିଲେ । ଶତାଧିକ ଜାହାଜ୍ ଲାଗିପାରିବା ଭଳି ଏକ ବିରାଟ ବନ୍ଦର ଫାରୋସ୍ (Pharos) । ଏଠାରେ ମାଟିତଳୁ ବଡ଼ ବଡ଼

ଅନେକ ଗୋଦାମଘର ଉଦ୍ଧାର କରାଯାଇଛି । ଗୋଦାମଘରୁ କ୍ରିଟୀୟ ଲିପିରେ ଲିଖିତ ପଣ୍ୟଦ୍ରବ୍ୟଙ୍କର ତାଲିକା ମିଳିଛି । ୧୯୫୦ ପର୍ଯ୍ୟନ୍ତ କ୍ରିଟୀୟ ଲିପି ପଢ଼ିବା ଆଦୌ ସମ୍ଭବ ହୋଇ ନ ଥିଲା । ପରେ ଏ କ୍ଷେତ୍ରରେ ଆଂଶିକ ସଫଳତା ମିଳିଛି ।

ଖ୍ରୀ: ପୂ ୩୫୦୦ ବେଳୁ ମିଶର ସହିତ କ୍ରିଟ୍‌ର ବାଣିଜ୍ୟ ଚାଲିଥିଲା । ବାଣିଜ୍ୟ କର ପୁରୁଷ ପୁରୁଷ ସୁଖଶାନ୍ତିରେ ରହିବା ଫଳରେ ସଭ୍ୟତା ବିକଶିତ ହେବାର ସୁଯୋଗ ପାଇଲା । ଖ୍ରୀ. ପୂ ୧୫୦୦ ବେଳକୁ କ୍ରିଟ୍‌ରେ ସଭ୍ୟତାର ଚରମ ବିକାଶ ସାଧିତ ହୋଇଥାଏ । ଚିତ୍ରକଳା, ଭାସ୍କର୍ଯ୍ୟ, ନିର୍ମାଣକୌଶଳ ଓ ଧାତବଦ୍ରବ୍ୟବ୍ୟବହାର ଜ୍ଞାନଦୃଷ୍ଟିରୁ କ୍ରିଟ୍‌ବାସୀ ଯେଉଁ ଉଚ୍ଚତାକୁ ଯାଇଥିଲେ ସେ କାଳରେ ବେବିଲୋନ୍ ଓ ମିଶର ବ୍ୟତୀତ ଅନ୍ୟତ୍ର ତାହା ଦୁର୍ଲ୍ଲଭ ଥିଲା ।

କ୍ରିଟ୍ ଦ୍ୱୀପଟି ପର୍ବତ ସଙ୍କୁଳ ଓ ଏହାର ଉପତ୍ୟକା ଗୁଡ଼ିକ ଉର୍ବର । ସେଠାରେ ଭଲ ଅଙ୍ଗୁର ଚାଷ ହେଉଥିଲା । କ୍ରିଟ୍‌ର ଉତ୍କୃଷ୍ଟ ମଦ ସେ କାଳରେ ବିଖ୍ୟାତ ଥିଲା । ଅଙ୍ଗୁର ବ୍ୟତୀତ ଲୋକେ ଅଳିଭ ଚାଷ କରୁଥିଲେ । ସମୁଦ୍ରରୁ ମାଛ ଧରିବା ଥିଲା ଲୋକଙ୍କର ଅନ୍ୟତମ ପ୍ରଧାନ ଜୀବିକା ।

ପରିଶ୍ରମୀ କ୍ରିଟୀୟ ନରନାରୀମାନେ ବଳିଷ୍ଠ ଓ ହୃଷ୍ଟପୁଷ୍ଟ । ନାରୀମାନେ ଗୌରାଙ୍ଗୀ । ଘର ବାହାରେ ଖରାରେ ଖଟୁଥିବା ପୁରୁଷଙ୍କ ରଙ୍ଗ ତାମ୍ରବର୍ଣ୍ଣର । ସେ କାଳକୁ ଚାହିଁ ନରନାରୀଙ୍କ ବସନ ଭୂଷଣ ଅତି ଉନ୍ନତ । ବିଶେଷତଃ ସ୍ତ୍ରୀମାନଙ୍କ ଲୁଗାର ସୂଚୀକର୍ମ, ଗହଣା, ଅଙ୍ଗସଜ୍ଜା ଓ କେଶ ବିନ୍ୟାସ ଆମକୁ ବିସ୍ମିତ କରେ । ନୋସସ୍ ଖୋଦନ ବେଳେ ପ୍ରତ୍ନତତ୍ତ୍ୱବିତ୍‌ମାନେ ଊନବିଂଶ ଶତାବ୍ଦୀର ବିଳାସୁଣୀ ପାରୀ ରୂପସୀର ବେଶଭୂଷା ସହିତ କ୍ରିଟ୍ ରମଣୀର ସାମଞ୍ଜସ୍ୟ ଦେଖି ହତବାକ୍ ହୋଇଥିଲେ । କ୍ରିଟ୍ ନାରୀ ବକ୍ଷକୁ ଅନାବୃତ ରଖୁଥିଲା । 'ଟପ୍ ଲେସ୍'ର ପ୍ରଚଳନ ସେ କାଳରୁ ହେଲାଣି !

କ୍ରିଟୀୟମାନେ ଧନ ଓ ମନ ଉଭୟରେ ବଡ଼ ଥିଲେ । ସେମାନଙ୍କର ନଗର, ଘରଦ୍ୱାର, ଲୁଗାପଟା ଓ କଳାକୃତିମାନଙ୍କରେ ଉନ୍ନତ ରୁଚି ଓ ସୌନ୍ଦର୍ଯ୍ୟବୋଧ ପ୍ରତି-ଫଳିତ । କ୍ରିଟ୍‌ର ରାଜଧାନୀ ନୋସସ୍ (Knossos)ର ରାଜପ୍ରାସାଦ ଓ ଅନ୍ୟାନ୍ୟ ସହରରେ

ଥିବା କୋଠାବାଡ଼ିର ସୌନ୍ଦର୍ଯ୍ୟ, ଆଡ଼ମ୍ବର ଓ ସାଜସଜ୍ଜାର ସମକକ୍ଷ ହେବାଭଳି ଅଟ୍ଟାଳିକା ନିର୍ମାଣ କରିବାକୁ ଗ୍ରୀକ୍‌ମାନଙ୍କୁ ପେରିକ୍ଲିଜ୍‌ଙ୍କ ସମୟ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଥିଲା ।



[ଦୁଇ ହାତରେ ଦୁଇପଟ ଧାରୁଆ କଟାରି ଧରିଥିବା କ୍ରିଟୀୟ ପୂଜାରିଣୀ । ଦେବ ଶକ୍ତିର ପ୍ରତୀକ ଏହି କଟାରି ବଡ଼ ପବିତ୍ର । ପୂଜାରିଣୀଙ୍କ ପରିଧେୟରେ ସୁନ୍ଦର ସୂକ୍ଷ୍ମକାମ ହୋଇଛି । ]

କ୍ରିଟ୍‌ର ରାଜା ସୈନ୍ୟସାମନ୍ତ, ଆଇନ ଓ ଧର୍ମବଳରେ ଶାସନ କରୁଥିଲେ । ଦୁଇପଟ ଧାରୁଆ କଟାରି ଥିଲା ଧର୍ମଦଣ୍ଡ ଓ ରାଜଦଣ୍ଡର ପ୍ରତୀକ । କ୍ରିଟୀୟ ଚିତ୍ରକଳାରେ ଏହି କଟାରିର ଅନେକ ଚିତ୍ର ଦେଖିବାକୁ ମିଳେ । ଲୋକମାନଙ୍କୁ ବୁଝାଯାଉଥିଲା ଯେ, ରାଜା ଦେବାଧିପତି ଭେଲ୍‌ଚ୍ଚନୋସ୍ ( ପୂର୍ବରୁ ଜିଅସ୍ ଏହି ନାମରେ ପରିଚିତ ଥିଲେ ) ଙ୍କ ସନ୍ତାନ । ଇଜିଆନ୍‌ର ଅନେକ ସାଇକ୍ଲାଡ଼ିଜ୍ ଦ୍ୱୀପ ଥିଲେ କ୍ରିଟ୍‌ର କରଦ ରାଜ୍ୟ । କହିବା ବାହୁଲ୍ୟ, ମିନୋଆନ୍ ସଭ୍ୟତା କ୍ରିଟ୍‌ରେ ସୀମାବଦ୍ଧ ନ ଥିଲା । ମିଲେସ୍ ପରି କେତେକ ଦ୍ୱୀପ କ୍ରିଟ୍ ପରି ଉନ୍ନତ ଥିଲେ ।

ସବୁ ପ୍ରାଚୀନ ଜାତି ପରି କ୍ରିଟୀୟମାନେ ପ୍ରକୃତିର ସୂର୍ଯ୍ୟଚନ୍ଦ୍ର, ଶିଳାଖଣ୍ଡ, ଗୁହା ଓ ପର୍ବତଙ୍କୁ ପୂଜା କରୁଥିଲେ । ସେମାନେ ମାତୃପୂଜକ । କ୍ରିଟ୍‌ରେ ଦେବଦେବୀଙ୍କର ପୂଜା ଅର୍ଚ୍ଚନା ନାରୀମାନେ କରୁଥିଲେ । ପୃଥିବୀମାତା ସର୍ବଶକ୍ତିମୟୀ । କ୍ରିଟ୍‌ର ଘରେ ଘରେ ତାଙ୍କର ପୂଜା ହେଉଥିଲା । ଭେଲ୍‌ଚ୍ଚନୋସ୍ ତାଙ୍କର ସନ୍ତାନ । ଇନ୍ଦ୍ରଙ୍କ ପରି ସେ ବର୍ଷାର

ଦେବତା । ଭେଲ୍‌ଗ୍ୱନୋସ୍ ବୃଷଭ ରୂପ ଧାରଣ କରନ୍ତି । ମାଇନୋସ୍ ତାଙ୍କର ପୁତ୍ର । ସେ କ୍ରିଟ୍‌ର ପ୍ରଥମ ରାଜା । ତାଙ୍କ ନାମାନୁସାରେ କ୍ରିଟ୍ ରାଜାଙ୍କର ଉପାଧି ଥିଲା ମାଇନୋସ୍ । ମାଇନୋସ୍‌ରୁ ମିନୋଆନ୍ (Minoan) ନାମକରଣ । କ୍ରିଟ୍‌ର ସଭ୍ୟତା ମିନୋଆନ୍ ସଭ୍ୟତା ଭାବେ ପରିଚିତ ।

ବୃଷଭ, ନାଗ ଓ ଗୁରୁପୂଜା କ୍ରିଟ୍‌ରେ ବିଶେଷ ଭାବେ ପ୍ରଚଳିତ ଥିଲା । ନାଗଦେବୀ ପାତାଳପୁରୀର ଅଧିଷ୍ଠାତ୍ରୀ ଦେବୀ । ମଲାପରେ ମଣିଷ ପାତାଳକୁ ଯାଏ ବୋଲି କ୍ରିଟ୍‌ବାସୀ ବିଶ୍ୱାସ କରୁଥିଲେ । ମୃତ୍ୟୁପରର ଜୀବନକୁ ସୁଖମୟ କରିବାକୁ ପ୍ରାର୍ଥନା କରି ସେମାନେ ନାଗଦେବୀଙ୍କୁ ପୂଜୁଥିଲେ । ବୃଷଭଦେବ ନାଗଦେବୀଙ୍କ ପୁତ୍ର । ତାଙ୍କର ଜନ୍ମକୁ କେନ୍ଦ୍ରକରି ବହୁ ଲୋକକଥା ଓ ଲୋକଗୀତ ସୃଷ୍ଟି ହୋଇଥିଲା । ବୃଷଭ ଦେବଙ୍କୁ ଛାଗ କ୍ଷୀର ପିଆଇଥିଲେ । ଏହି କାରଣରୁ ଛାଗ ଗୁରୁତ୍ୱପୂର୍ଣ୍ଣ । କ୍ରିଟୀୟ କଳାରେ ବୃଷଭ, ନାଗ ଓ ଛାଗର୍ପୂଜାର ପ୍ରାଧାନ୍ୟ ସ୍ପଷ୍ଟ ।



[କ୍ରିଟ୍‌ର ଗୋଟିଏ ପ୍ରାସାଦର କାନ୍ଥରେ ଅଙ୍କିତ ଚିତ୍ର । ଚିତ୍ରରେ ମାଛମାନେ ଆନନ୍ଦରେ ଖେଳୁଛନ୍ତି । ମାଛ ଧରିବା କ୍ରିଟ୍‌ବାସୀଙ୍କର ଗୋଟିଏ ପ୍ରଧାନ ବୃତ୍ତିଥିଲା । ମାଛ ଓ ମାଛ ସହିତ ଧୀବରଙ୍କର ଅନେକ ଚିତ୍ର କ୍ରିଟ୍‌ରୁ ମିଳୁଛି ।]

ମାଇନୋସ୍ ସଭ୍ୟତାରେ ଚିତ୍ରକଳାର ବହୁ ଯୁଗାନ୍ତକାରୀ ଉନ୍ନତି ଘଟିଥିଲା । ନୋସସ୍ ଓ ଅନ୍ୟାନ୍ୟ ଦ୍ୱୀପର ରାଜପ୍ରାସାଦର କାନ୍ଥମାନଙ୍କରେ ଅଙ୍କିତ ଚିତ୍ରାବଳୀ ଭୂଗର୍ଭରେ ସୁରକ୍ଷିତ ଥିଲା । ଅନେକ ଶତାବ୍ଦୀ ପରେ ଅଙ୍କିତ ଗ୍ରୀକ୍ ଚିତ୍ରସବୁ ପ୍ରାୟ ସମସ୍ତ ନଷ୍ଟ ହୋଇ ଯାଇଛି । ଭୂମିକମ୍ପ ବା ଅନ୍ୟ କୌଣସି କାରଣରୁ ନୋସସ୍ ଶୀଘ୍ର ପୋତିହୋଇ ପଡ଼ିବାରୁ ତାର ଚିତ୍ରଗୁଡ଼ିକ ଏତେକାଳ ବଞ୍ଚିରହିଲା । ନୋସସ୍ ରାଜପ୍ରାସାଦର ପ୍ରବେଶ ପଥରେ ଏକ ଜୀବନ୍ତ ଓ ବିଶାଳ ବୃଷଭ ମୂର୍ତ୍ତିପୂଜା ପାଉଥିଲେ । କାନ୍ଥରେ ଅଙ୍କିତ ନୃତ୍ୟରତ ନର୍ତ୍ତକ-ନର୍ତ୍ତକୀଙ୍କର ସୁନ୍ଦର ଚିତ୍ରଗୁଡ଼ିକରୁ ପ୍ରମାଣ ମିଳେ ଯେ, କ୍ରିଟ୍‌ରେ ଚିତ୍ରକଳା ପରି ନୃତ୍ୟ ଓ ସଙ୍ଗୀତ ମଧ୍ୟ ଉଚ୍ଚକୋଟୀର ଥିଲା ।

କେବଳ ଚିତ୍ରକଳା ନୁହେଁ, ନୋସସ୍ ପ୍ରାସାଦର କାରୁକାର୍ଯ୍ୟ, ସାଜସଜ୍ଜା ଓ ନିଳାସ-ବ୍ୟବସ୍ଥା ଆମକୁ ଅଭିଭୂତ କରେ । ପ୍ରାସାଦ ମଝିରେ ୧୬୦ ଫୁଟ ଦୈର୍ଘ୍ୟ ବିଶିଷ୍ଟ ବିରାଟ ଦରବାର । ପ୍ରାସାଦର ଆଧୁନିକ ସ୍ନାନାଗାର ସଦୃଶ ସ୍ନାନାଗାର ମଧ୍ୟ ଦେଇ ବହି ଯାଉଥିବା ଝରଣା ଓ କାରୁକାର୍ଯ୍ୟ ମଣ୍ଡିତ ସୁନ୍ଦର ଗାଧୁଆକୁଣ୍ଡ ଦେଖି ଆଧୁନିକ ଲୋକେ ଅବାକ୍ ହୁଅନ୍ତି ।

ଅଳଙ୍କାର ନିର୍ମାଣ, ମୂଲ୍ୟବାନ ପଥରକଟା ଓ ପଥରବସା କାମରେ କ୍ରିଟ୍‌ର କାରିଗରମାନେ ଦକ୍ଷଥିଲେ । ସୁନାରୁପାର ନାନାଜାତିର ସୁନ୍ଦର ଅଳଙ୍କାର ସେଠାରୁ ମିଳିଛି । କ୍ରିଟ୍‌ର ମୋହରମାନଙ୍କରୁ କ୍ରିଟୀୟ ଜୀବନ ଓ ପ୍ରକୃତି ଏତେ ସୁନ୍ଦର ଭାବେ ଫୁଟିଛି ଯେ କେବଳ ସେଥିରୁ ଏକ ମହାନ୍ ସଭ୍ୟତାର ପରିଚୟ ମିଳିଯାଏ ।

ମିନୋଆନ୍ ସଭ୍ୟତାର ମଧ୍ୟଭାଗରେ କ୍ରିଟ୍‌ର କାରିଗର କୁମ୍ଭାରଚକର ବ୍ୟବହାର ଜାଣିଲା । ଏହାପରେ ଅତ୍ୟନ୍ତ ସୂକ୍ଷ୍ମ ଓ ମନ ମୁଗ୍ଧକର ମୃଣ୍ମୟ ପାତ୍ରମାନ ତିଆରି ହୋଇଛି । ମୃଣ୍ମୟ ପାତ୍ରାଙ୍କିତ ଚିତ୍ରରେ କ୍ରିଟ୍‌ର ପ୍ରକୃତି, ପଶୁପକ୍ଷୀ, ଫସଲ ଅମଳ କାଳର ଆନନ୍ଦ ଉତ୍ସବ ଓ ଜନ ଜୀବନର ନାନା ଚିତ୍ର ଫୁଟିଛି ।

କ୍ରିଟ୍‌ର ଭାଷାକୁ ପଢ଼ିବା ସମ୍ଭବ ହୋଇ ନ ଥିବାରୁ ଏହାର ସାହିତ୍ୟ ସମ୍ପର୍କରେ କିଛି ଜାଣିବାର ଉପାୟ ନାହିଁ । ମାତ୍ର କ୍ରିଟ୍‌ରେ ଥିଏଟରମାନ ଥିଲା । ରାଜଦରବାରର

ରଙ୍ଗମଞ୍ଚ ପ୍ରାଙ୍ଗଣରେ ପାଞ୍ଚଶହ ପର୍ଯ୍ୟନ୍ତ ଦର୍ଶକ ବସିବାର ବ୍ୟବସ୍ଥା ଥିଲା । ଗ୍ରୀକ୍ ରଙ୍ଗମଞ୍ଚ ଓ ଦର୍ଶକ ଗ୍ୟାଲେରୀ ନିର୍ମିତ ହେବାର ଦେଢ଼ହଜାର ବର୍ଷ ପୂର୍ବର କ୍ରିଟୀୟ ରଙ୍ଗମଞ୍ଚ ବିଶ୍ୱର ପ୍ରାଚୀନତମ ରଙ୍ଗମଞ୍ଚଙ୍କ ମଧ୍ୟରେ ଗଣ୍ୟ ।

କ୍ରୀଡ଼ା ଓ କୁସ୍ତି କସରତର ଆଦର କ୍ରିଟ୍‌ର ଆଉ ଏକ ବୈଶିଷ୍ଟ୍ୟ । ସ୍ୱଭାବତଃ ବଳିଷ୍ଠ ଲୋକମାନେ ଖେଳିବାକୁ ଭଲ ପାଉଥିଲେ । ଷଣ୍ଢ ସହିତ ଦୁଃସାହସୀ ଓ କୌଶଳୀ ମଣିଷର ଯୁଦ୍ଧ କ୍ରିଟ୍‌ରେ ଖୁବ୍ ଲୋକପ୍ରିୟ ଥିଲା । ଏହି ଖେଳରେ ଝିଅମାନେ ମଧ୍ୟ ଭାଗ ନେଉଥିଲେ । ଷଣ୍ଢ ସହିତ କ୍ରୀଡ଼ାନିପୁଣ ଯୁବକ ଯୁବତୀଙ୍କର ନାନା ପ୍ରକାର ଖେଳର ଚିତ୍ରରେ କ୍ରିଟୀୟ କଳା ଭରପୂର୍ । ଆମେ ଦେଖିବାକୁ ପାଉ, ମାରଣା ଷଣ୍ଢ ଗର୍ଜନ କରି ଜଣେ ଝିଅ ଆଡ଼କୁ ଧାଇଁ ଆସୁଛି । ସେ ସ୍ଥିର ଓ ସତର୍କ ଭାବେ ତାକୁ ଅପେକ୍ଷା କରିଛି । ଆଉ ମୁହୂର୍ତ୍ତିକେ ଷଣ୍ଢ ତାକୁ ଭୁଷି ଖତମ କରି-ଦେବା ନିଶ୍ଚିତ । ମାତ୍ର ଆଖି ପିଛୁଳାକେ ଦୁଇ ହାତରେ ଷଣ୍ଢର ଦୁଇ ଶିଙ୍ଗକୁ ଜାବୁଡ଼ିଧରି ସେ ଝୁଲିପଡ଼େ । ରାଗରେ ଗର୍ଜନ କରି ଷଣ୍ଢ ଜୋରରେ ଧାଏଁ । ଶିଙ୍ଗରେ ଲାଗି ଯାଇଥିବା ମଣିଷର ସେ ବା କ'ଣ କରିପାରିବ ? ତାର ଏହିପରି ଅବସ୍ଥାରେ ଆଉଜଣେ ଝିଅ ଏକା ଡିଆଁକେ ବିଜୁଳି ପରି ଷଣ୍ଢ ପିଠି ଉପରେ ପହଞ୍ଚେ । ଏହା ପରେ ଷଣ୍ଢ ପିଠି ହୁଏ ତାର ସର୍କସ ପଡ଼ିଆ । ଷଣ୍ଢ ପିଠିରେ ମାଙ୍କଡ଼ଚିତ୍ ମାରିବା ଠାରୁ ଆରମ୍ଭ କରି ସେ ନାନା ଖେଳ ଦେଖାଏ ।



[ଜଣେ ସାହସୀ ଯୁବକ ଷଣ୍ଢ ପିଠି ଉପରେ ଖେଳ ଦେଖାଉଛି । ଏହି ଚିତ୍ରଟି ବର୍ତ୍ତମାନ ଏଥେନ୍ସର ମିଉଜିୟମରେ ସୁରକ୍ଷିତ ।]

ଷଣ୍ଢ ସହିତ ମଣିଷର ଖେଳ ଦେଖିବାକୁ ବହୁ ନରନାରୀ ରୁଣ୍ଡ ହେଉଥିଲେ । ଏପରି ଖେଳ କେଡ଼େ ବିପଜ୍ଜନକ ସେ କଥା କହିବା ଅନାବଶ୍ୟକ । କ୍ରିଟ୍‌ର ଜାତୀୟ କ୍ରୀଡ଼ା ପ୍ରଦର୍ଶନୀରେ ଅନେକେ ପ୍ରାଣ ହରାଉଥିଲେ । କିନ୍ତୁ ଅପମାନ ଭୟରେ କୌଣସି ଯୁବକ

ଖେଳରେ ଭାଗ ନେବାକୁ ଅନିଚ୍ଛା ପ୍ରକାଶ କରୁ ନ ଥିଲେ । ତେବେ ପ୍ରାଣନାଶର ବିଶେଷ ଆଶଙ୍କା ଥିବା ଖେଳ ଦେଖାଇବା ପାଇଁ ବଡ଼ ଅପରାଧୀ ଓ ବାହାରୁ ବନ୍ଦୀ କରି ଅଣା-ଯାଇଥିବା ଯୁବକମାନଙ୍କୁ ବାଧ୍ୟ କରାଯାଉଥିଲା । ଜୀବନକୁ ବାଜିମାରି ଖେଳରେ ସଫଳ ହେବା ଥିଲା ସେମାନଙ୍କର ଜୀବନରକ୍ଷାର ଏକମାତ୍ର ଉପାୟ । ଅନେକ ଦିନ ଧରି ଏମାନେ ଖେଳ ଅଭ୍ୟାସ କରୁଥିଲେ । ବନ୍ଦୀମାନଙ୍କ ଭିତରୁ କେତେକ ସୁଦୂର ଏଥେନ୍ସର ଲୋକ । ଏଥେନ୍ସରୁ ଯେଉଁ ଯୁବକଯୁବତୀ ଧରାହୋଇ କ୍ରିଟ୍ ଯାଉଥିଲେ ସେମାନଙ୍କର ଭାଗ୍ୟ ସମ୍ପର୍କରେ କେତେକ କାହାଣୀ ପ୍ରଚଳିତ ଥିଲା । ସେଗୁଡ଼ିକ ମଧ୍ୟରେ 'ମିନାଟୋର୍ ମିଥ୍'ଟି ପ୍ରସିଦ୍ଧ । ମିନୋଆନ୍ ସଭ୍ୟତା ଆବିଷ୍କୃତ ହେବା ପୂର୍ବରୁ ପଣ୍ଡିତମାନେ ମିନାଟୋର୍ ମିଥ୍‌କୁ ସମ୍ପୂର୍ଣ୍ଣ କପୋଳକଳ୍ପିତ ବୋଲି ଧରି ନେଇଥିଲେ । ମାତ୍ର କ୍ରିଟ୍‌ରେ ବୃଷଭଦେବଙ୍କର ଗୁରୁତ୍ୱ ଓ ଷଣ୍ଢଖେଳ ବିଷୟ ଜଣାପଡ଼ିବା ପରେ ମିନାଟୋର୍ କାହାଣୀ ସତ୍ୟାଶ୍ରୟୀ ବୋଲି ସ୍ପଷ୍ଟ ହୋଇ ଯାଇଛି । ମିନାଟୋର୍ କିଏ ? କାହାଣୀଟି ଶୁଣିବା ପୂର୍ବରୁ ତାହା ଜାଣିବା ଆବଶ୍ୟକ ।

ଥରେ ମାଇନୋସ୍‌ଙ୍କ ଦ୍ୱାରା ଦେବତା ପୋସିଡ଼ନ୍ ଅପମାନିତ ହେଲେ । ପ୍ରତିଶୋଧ ନେବା ପାଇଁ ସେ ମାଇନୋସ୍‌ଙ୍କ ରାଣୀଙ୍କ ମନରେ ବୃଷଭ ଦେବତା ପ୍ରତି କାମନା ଜାଗ୍ରତ କରାଇଲେ । କାମନା ଜର୍ଜରିତ ରାଣୀଙ୍କୁ ଦେଖି ଡେଡ଼ାଲସ୍‌ଙ୍କର ଦୟା ଜାତ ହେଲା । ଡେଡ଼ାଲସ୍ ରାଜଦରବାରର ଅଭିଜ୍ଞ ଶିଳ୍ପୀ ଇଂଜିନିୟର୍ । ସେ ଖୁବ୍ ବୁଦ୍ଧିମାନ ଓ ରାଜାଙ୍କର ଅତି ପ୍ରିୟ । ଗ୍ରୀସ୍ ଡେଡାଲସ୍‌ଙ୍କର ଜନ୍ମଭୂମି । ନିଜ ପୁତ୍ରର ପ୍ରତିଭାରେ ଈର୍ଷାନ୍ୱିତ ହୋଇ ଡେଡ଼ାଲସ୍ ତାକୁ ହତ୍ୟାକଲେ ଓ ଗ୍ରୀସ୍‌ରୁ କ୍ରିଟ୍ ପଳାଇ ଆସିଲେ ।

କ୍ରିଟ୍‌ର ବିଶ୍ୱକର୍ମା ଡେଡ଼ାଲସ୍‌ଙ୍କ ବିଦ୍ୟାବୁଦ୍ଧି ଓ ନିର୍ମାଣ କୌଶଳ କିମ୍ବଦନ୍ତୀରେ ପରିଣତ ହୋଇଛି ।

ଡେଡ଼ାଲସଙ୍କୁ କ୍ରିଟ୍‌ରେ ପ୍ରଚୁର ସମ୍ମାନ ମିଳିଲା । ତାଙ୍କର ନିର୍ମାଣ କୌଶଳ ଓ ଦକ୍ଷତା ଦେଖି ସମସ୍ତେ ଚମତ୍କୃତ ହୋଇଥିଲେ । କଥିତ ଅଛି, ଡେଡ଼ାଲସ୍ ଗଢ଼ିଥିବା ବଣ୍ୟଜନ୍ତୁଙ୍କୁ ନ ବାନ୍ଧିଲେ ସେମାନେ ଜଙ୍ଗଲ ପଳାଉ-ଥିଲେ !

ଚତୁର ଡେଡ଼ାଲସ୍‌ଙ୍କ ସାହାଯ୍ୟରେ ବୃଷଭଦେବଙ୍କ ସହିତ ରାଣୀଙ୍କର ମିଳନ ହେଲା । ତାଙ୍କ ଔରସରୁ ରାଣୀଙ୍କର ଏକ ଭୟଙ୍କର ସନ୍ତାନ ଜାତ ହୋଇଥିଲା । ଏହି ସନ୍ତାନ

ମିନାଟୋର୍ ନାମରେ ଖ୍ୟାତ । ମିନାଟୋର୍‌ର ଶରୀର ମଣିଷ ପରି କିନ୍ତୁ ମୁଣ୍ଡଟି ଷଣ୍ଢର । ମାଇନୋସ୍ କ୍ରୋଧରେ ମିନାଟୋର୍‌କୁ ଡେଡାଲସ୍ ନିର୍ମାଣ କରିଥିବା ଲ୍ୟାବିରିନ୍ଥ ନାମକ ଅଟ୍ଟାଳିକାରେ ବନ୍ଦୀ କଲେ । ଏହି ଅଟ୍ଟାଳିକାର ଗଠନ କୌଶଳ ଅଦ୍ଭୁତ । ଯିଏ ଥରେ ଲ୍ୟାବିରିନ୍ଥ (Labyrinth) ମଧ୍ୟରେ ପ୍ରବେଶ କରେ, ଶତ-ଚେଷ୍ଟା ସତ୍ତ୍ୱେ ସେ ତା ଭିତରୁ ବାହାରି ଆସିବାକୁ ବାଟ ପାଏ ନାହିଁ । ଇଂରାଜୀ ଭାଷାରେ ଲ୍ୟାବିରିନ୍ଥର ଅର୍ଥ, ଯେ କୌଣସି ଗୋଲକଧନ୍ଦା—ତାହା ଅଟ୍ଟାଳିକା ବା ଶବ୍ଦଙ୍କର ହୋଇପାରେ । ପ୍ରାଚୀନ ଗ୍ରୀସ୍‌ରେ ଲ୍ୟାବିରିନ୍ଥ ମିନାଟୋର୍ ବନ୍ଦୀ ଥିବା ରହସ୍ୟମୟ ପ୍ରାସାଦକୁ ବୁଝାଉଥିଲା । ପରବର୍ତ୍ତୀ କାଳରେ ଶବ୍ଦଟି ଅନ୍ୟାନ୍ୟ ଅର୍ଥ ସଂଗ୍ରହ କରି ନେଇଛି ।



[ଗୋଟିଏ କ୍ରିଟୀୟ ମୁଦ୍ରାରେ ଛପା ଯାଇଥିବା ମିନାଟୋର୍‌ର ଚିତ୍ର]



[କ୍ରିଟୀୟ ମୁଦ୍ରାଙ୍କିତ ଲ୍ୟାବିରିନ୍ଥ]

## ଲ୍ୟାବିରିନ୍ଥରେ ବନ୍ଦୀ ମିନାଟୋରର କାହାଣୀ:

ପୁରାତନ କାଳରେ ଏଥେନ୍‌ସରେ ଇଜିଅସ୍ ନାମରେ ଜଣେ ରାଜା ଥିଲେ । ସେ ଜଣେ ପ୍ରଜାବତ୍ସଳ ରାଜା । ହଠାତ୍ ଦିନେ ବାହାରଥିବା କ୍ରିଟ୍‌ର ମହା ପରାକ୍ରମୀ ମାଇନୋସ୍ ସୈନ୍ୟସାମନ୍ତଙ୍କ ସହିତ ଏଥେନ୍‌ସରେ ଆସି ପହଞ୍ଚିଲେ । ମାଇନୋସ୍ ଦେବଦେବ ଜିଅସ୍ ( କ୍ରିଟ୍‌ର ଭେଲଚ୍ୟାନୋସ୍ ପରବର୍ତ୍ତୀ କାଳରେ ଗ୍ରୀକ୍‌ଙ୍କର ଜିଅସ୍ )ଙ୍କ ପୁତ୍ର । ତାଙ୍କୁ ବା ଯୁଦ୍ଧରେ ପାରିବ କିଏ ? ନିରୁପାୟ ହୋଇ ଇଜିଅସ୍ ତାଙ୍କ ସହିତ ସନ୍ଧି କଲେ । ଚୁକ୍ତି ରହିଲା, ମିନାଟୋର୍‌ର ଭୋଜ୍ୟ ହେବାପାଇଁ ଏଥେନ୍‌ସ ପ୍ରତି ନବମ ବର୍ଷରେ ସାତଜଣ ଯୁବକ ଓ ସାତଜଣ ଯୁବତୀ ପଠାଇବ । ଲ୍ୟାବିରିନ୍ଥର ବନ୍ଦୀ ନଅବର୍ଷରେ ଥରେ ନରବଳି ପାଏ ।

ଯେଉଁ ହତଭାଗ୍ୟ ଲ୍ୟାବ୍‌ରିନ୍ଥ ଭିତରେ ପଶେ, ବୁଲି ବୁଲି ଧରି ସେ ତାହାରି ଭିତରେ ଧନ୍ଦି ହେଉଥାଏ ସିନା, ବାହାରିବାର ବାଟ ପାଏ ନାହିଁ । ଅନେକ ଘୂରିଲା ପରେ ଥରକୁଥର ଆବିଷ୍କାର କରୁଥାଏ ଯେ, ସେ ଯେଉଁଠି ଥିଲା ସେଇଠି ଆସି ପହଞ୍ଚିଛି । ଏମିତି ଜଙ୍ଗଲରେ ବାଟ ଖୋଜୁଥିବା ମଣିଷଟି ଦିନେ ମିନାଟୋର୍‌କୁ ହାବୁଡ଼ିଯାଏ ଓ ତାର ଖାଦ୍ୟ ହୁଏ ।

ମିନାଟୋର୍ ମୁହଁକୁ ଯାଉଥିବା ଚଉଦ ଜଣ ଯୁବକଯୁବତୀଙ୍କୁ ଏଥେନ୍‌ସବାସୀ କାନ୍ଦି କାନ୍ଦି ବିଦାୟ ଦିଅନ୍ତି । କଳା ରଙ୍ଗର ପାଲ ଛିଡ଼ା ହୋଇଥିବା ଗୋଟିଏ କଳା ଜାହାଜ ଏହି ହତଭାଗ୍ୟମାନଙ୍କୁ କ୍ରିଟ୍ ନେଇଯାଏ । ନଅବର୍ଷରେ ଥରେ ଏହି କରୁଣ ଦୃଶ୍ୟର ପୁନରାବୃତ୍ତି ଘଟେ । ଏ ଅପମାନ ଓ ଅତ୍ୟାଚାରରୁ ଏଥେନ୍‌ସକୁ ରକ୍ଷା କରିବାପାଇଁ ଜଣେ ବୀରପୁରୁଷ ବାହାରିଲେ । ସେ ହେଉଛନ୍ତି ଇଜିଅସ୍‌ଙ୍କର ପୁତ୍ର ଥିସିଅସ୍ । ପିତା-ପୁତ୍ରଙ୍କର ମିଳନ ଆଉ ଏକ ଲମ୍ବା କାହାଣୀ ।

ଟ୍ରୋଇଜନ୍‌ର ସୁନ୍ଦରୀ ରାଜକନ୍ୟା ଥିସିଅସ୍‌ଙ୍କର ମାଆ । ଥିସିଅସ୍ ଜନ୍ମ ହେବା ପୂର୍ବରୁ ସ୍ତ୍ରୀ ଠାରୁ ବିଦାୟ ନେଇ ଇଜିଅସ୍ ଏଥେନ୍‌ସ ଫେରିଲେ । ଆସିବା ବେଳେ ତାଙ୍କର ଖଣ୍ଡା ଓ ଅସ୍ତ୍ରଶସ୍ତ୍ରକୁ ଗୋଟିଏ ବିଶାଳ ପଥରଖଣ୍ଡ ତଳେ ରଖି ରାଣୀଙ୍କୁ ନିର୍ଦ୍ଦେଶ ଦେଲେ— ବଡ଼ ହୋଇ ପୁଅ ସେହି ପଥରକୁ ଘୁଞ୍ଚାଇ ପାରିବା ପରି ବଳୁଆ ହେଲେ ଯାଇ ତାଙ୍କୁ ଭେଟିବାକୁ ଯିବ ।

କେତେବର୍ଷ ପରେ ତରୁଣ ଥିସିଅସ୍ ପଥରଟିକୁ ଗଡ଼େଇ ଦେଇ ପିତୃଦତ୍ତ ଅସ୍ତ୍ରଶସ୍ତ୍ର ଉଦ୍ଧାର କଲେ ଓ ବାପାଙ୍କୁ ଭେଟିବାକୁ ଏଥେନ୍‌ସ ବାହାରିଲେ । ବାଟରେ ବହୁ ଦୁଷ୍ଟ ଦାନବ ଓ ଅତ୍ୟାଚାରୀ ଡକାୟତଙ୍କୁ ବଧକରି ସେ ଏଥେନ୍‌ସରେ ପହଞ୍ଚିଲେ । ସେଠାରେ ଦେଖିଲେ ଯେ, ତାଙ୍କର ପିତା ଇଜିଅସ୍ ମିଡ଼ିଆ ନାମକ ମାୟାବିନୀ ନାରୀ ଦ୍ୱାରା ବଶୀଭୂତ ହୋଇଛନ୍ତି । ବାପ ଯେପରି ପୁଅକୁ ନ ଚିହ୍ନେ ସେଥିପାଇଁ ମିଡ଼ିଆ ବହୁ ଗୁଣି-ଗାରେଡ଼ି କଲେ । ଥିସିଅସ୍‌ଙ୍କୁ ପ୍ରାଣରୁ ମାରି ଦେବାକୁ ସେ ଚେଷ୍ଟା କରୁଥାନ୍ତି । ଇଜିଅସ୍ ଦୈବାତ୍ ନିଜର ଖଣ୍ଡାକୁ ଦେଖି ଦେଇ ପୁଅକୁ ଚିହ୍ନି ପାରିଲେ । ଏହାପରେ ମିଡ଼ିଆ ଉପୁରେ ଏଥେନ୍‌ସ ଛାଡ଼ି ପଳାଇଲେ ।

ଗ୍ରୀକ୍ ପୁରାଣରେ ସାହସୀବୀର ଥିସିଅସ୍‌ଙ୍କର ଅନେକ ଅଲୌକିକ କର୍ମର ବର୍ଣ୍ଣନା ରହିଛି । ମିଡ଼ିଆ ମଧ୍ୟ ଗ୍ରୀକ୍ ପୁରାଣରେ ଜଣେ ବିଖ୍ୟାତ ନାରୀ ।

ବାପପୁଅଙ୍କର ମଧୁର ମିଳନ ଦିନ ଚଉଦଜଣ ଯୁବକଯୁବତୀଙ୍କୁ ଧରି ଏଥେନ୍ସର ଜାହାଜ କ୍ରିଟ୍ ଅଭିମୁଖେ ବାହାରିଥାଏ । ଥିସିଅସ୍ ସମସ୍ତ ବ୍ୟାପାରଟି ବୁଝିଲେ ଓ ମିନାଟୋର୍ ସହିତ ମୁକାବିଲା କରିବାକୁ ସଙ୍କଳ୍ପ କଲେ । ଚଉଦଜଣ ଯୁବକଯୁବତୀଙ୍କ ମଧ୍ୟରୁ ଜଣେ ହୋଇ ସେ କ୍ରିଟ୍ ବାହାରିଲେ, ଇଜିଅସ୍ ଯେତେ ବାରଣ କଲେ ମଧ୍ୟ ମାନିଲେ ନାହିଁ ।

କଳା ପାଲ ବାନ୍ଧି ଯେଉଁ କଳା ଜାହାଜ ବିଦାୟ ନେଉଛି, ଫେରିଲାବେଳେ ସେଥିରେ ଧଳା ପାଲ ବନ୍ଧା ଯାଇଥିବ—ପିତାଙ୍କୁ ଏହି ମର୍ମର ପ୍ରତିଶ୍ରୁତି ଦେଇ ଥିସିଅସ୍ କ୍ରିଟ୍ ଚାଲିଲେ ।

କ୍ରିଟ୍‌ରେ ପହଞ୍ଚି ଥିସିଅସ୍ ଓ ତାଙ୍କର ଦଳ ଗୋଟିଏ ସୁନ୍ଦର ରଙ୍ଗମଞ୍ଚରେ ନୃତ୍ୟ-ଗୀତ ପରିବେଷଣ କଲେ । ସେହି ଅବସରରେ କ୍ରିଟ୍‌ର ରାଜାଝିଅ ଆରିଆଡ଼ନ୍‌ଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଥିସିଅସ୍‌ଙ୍କ ରୂପଗୁଣ ରାଜଜେମାଙ୍କୁ ମୁଗ୍ଧ କଲା । କ୍ରିଟ୍ ଛାଡ଼ି ପଳାଇବାକୁ ସେ ଥିସିଅସ୍‌ଙ୍କୁ ଅନୁରୋଧ କଲେ । ମାତ୍ର ଥିସିଅସ୍ ଏପରି ପ୍ରସ୍ତାବରେ ରାଜି ହେଲେ ନାହିଁ । ତାଙ୍କର ଜିଦ୍ ଦେଖି ଜେମା ଥିସିଅସ୍‌ଙ୍କୁ ଗୋଟିଏ ସୂତାଗୁଳା ଦେଲେ । ସୂତା-ଗୁଳାର ଅଗକୁ ଲ୍ୟାବ୍‌ରିନ୍ଥର ପ୍ରବେଶ ଦ୍ୱାରରେ ବାନ୍ଧି ଦେଇ ତା ଭିତରେ ଯେତେ ଯୁଆଡ଼େ ଘୂରିଲେ ମଧ୍ୟ ତାଙ୍କ ସହିତ ଚାଲିଥିବା ସୂତାକୁ ଚିହ୍ନଟ କରି ସେ ବାହାରି ଆସି ପାରିବେ । ଯେଉଁ ଖଣ୍ଡାରେ ମିନାଟୋର୍‌ର ପ୍ରାଣନାଶ ହେବ, ରାଜକନ୍ୟା ତାଙ୍କୁ ସେହି ଖଣ୍ଡାଟି ମଧ୍ୟ ଦେଇଥିଲେ ।

ବୁଦ୍ଧିମତୀ ଆରିଆଡ଼ନ୍‌ଙ୍କ କହିବା ଅନୁସାରେ କାମ କରି ଥିସିଅସ୍ ସେହି ଭୟଙ୍କର ରାକ୍ଷସକୁ ବଧ କଲେ ଓ ଦଳଲୋକଙ୍କୁ ଧରି ଲ୍ୟାବ୍‌ରିନ୍ଥରୁ ବାହାରି ଆସିଲେ । ସେଇ ରାତିରେ ଆରିଆଡ଼ନ୍‌ଙ୍କୁ ସାଥିରେ ଧରି ସମସ୍ତେ କ୍ରିଟ୍ ଛାଡ଼ିଲେ । ବାଟରେ ଦେବତା ଡାଇଓନିସସ୍ ଆରିଆଡନ୍‌ଙ୍କୁ ବିବାହ କରିବାକୁ ଚାହାନ୍ତି ବୋଲି ଜଣେ ଦେବୀଙ୍କର ନିର୍ଦ୍ଦେଶ ପାଇ ଥିସିଅସ୍ ରାଜଜେମାଙ୍କୁ ଗୋଟିଏ ଦ୍ୱୀପରେ ଛାଡ଼ି ପଳାଇଲେ । ତାଙ୍କ ପରି ଜଣେ ଦୁଃସାହସୀ ବୀର ଯେଡ଼େ ସହଜରେ ନିଜର ପ୍ରେମିକାକୁ ଛାଡ଼ିଦେଲା, ସେ କଥା ଆମକୁ ଖାପଛଡ଼ା ଲାଗେ । କାହାଣୀଟିର ଏଇ ଅଂଶରୁ ଧରା ପଡ଼ିଯାଏ ଯେ ପ୍ରାଚୀନ ଗ୍ରୀସ୍‌ରେ ନାରୀ ବା ନାରୀର ପ୍ରେମକୁ ବିଶେଷ ଗୁରୁତ୍ୱ ଦିଆଯାଉ ନଥିଲା ।

ପୁଅର ଫେରିବା ବାଟକୁ ଇଜିଅସ୍ ଉତ୍କଣ୍ଠିତ ଭାବେ ଅପେକ୍ଷା କରିଥାନ୍ତି । ସମୁଦ୍ରରେ ଦୂରରୁ ଏଥେନ୍ସର ଜାହାଜ ଫେରୁଛି ଦେଖି ଲୋକମାନେ ବ୍ୟଗ୍ର ହୋଇପଡ଼ିଲେ । ସତେ କ'ଣ କଳା ପାଲ ବଦଳା ଯାଇଛି ! କଥା ହେଉଛି, ଥିସିଅସ୍ ଓ ତାଙ୍କର ସଙ୍ଗୀଗଣ ଆନନ୍ଦରେ ବିଭୋର ହୋଇ ପାଲ ବଦଳାଇବାକୁ ଭୁଲି ଯାଇଥିଲେ । ସମୁଦ୍ର କୂଳରେ ଗୋଟିଏ ଜାହାଜରେ ପୁଅକୁ ଅପେକ୍ଷା କରିଥିବା ରଜା ଇଜିଅସ୍ କଳା ପାଲକୁ ଦେଖିଦେଇ ଦୁଃଖରେ ଭାଙ୍ଗି ପଡ଼ିଲେ । କାହାକୁ କିଛି ନ କହି ସେ ଜାହାଜ ଉପରୁ ସମୁଦ୍ରକୁ ଡେଇଁ ପଡ଼ିଲେ । ସେହିଦିନ ଠାରୁ ତାଙ୍କର ନାମାନୁସାରେ ସମୁଦ୍ରର ନାମ ଇଜିଆନ୍ ସାଗର ରଖାଯାଇଛି ।

ଇଜିଅସ୍ ରଜାଙ୍କ ନାମାନୁସାରେ ଇଜିଆନ୍ ସାଗରର ନାମକରଣ ହୋଇଛି ।

ନବପଦରେ ଏଥେନ୍ସ ଭୂଇଁରେ ପାଦ ରଖି ଥିସିଅସ୍ ଅଳ୍ପସମୟ ପୂର୍ବରୁ ଘଟି ଯାଇଥିବା ଭୟଙ୍କର ଦୁର୍ଘଟଣା କଥା ଶୁଣିଲେ ଓ ଖୁବ୍ ବିଳାପ କଲେ । ପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସାରି ସେ ଏଥେନ୍ସର ରଜା ହେଲେ । ତାଙ୍କ ରାଜତ୍ୱ କାଳରେ ଏଥେନ୍ସର ବହୁ ଉନ୍ନତି ଘଟିଥିଲା ।

## ପ୍ରଥମ ଉଡ଼ନ୍ତା ମଣିଷ—ଡିଡାଲସ୍

ଥିସିଅସ୍ ଲ୍ୟାବିରିନ୍ଥରୁ ଖସିଯିବାରୁ ଡିଡାଲସ୍ ମିନ୍‌ସ୍‌ରଜାଙ୍କ ବିଷ ଦୃଷ୍ଟିରେ ପଡ଼ିଲେ । ତାଙ୍କୁ ଓ ତାଙ୍କର ପୁଅ ଇକାରସ୍‌ଙ୍କୁ ବନ୍ଦୀ କରାଗଲା । ବୁଦ୍ଧିମାନ୍ ଡିଡାଲସ୍ ମୁକ୍ତିର ଉପାୟ ଚିନ୍ତା କରୁଥାନ୍ତି । ଭାବି ଭାବି ସେ ସ୍ଥିର କଲେ, ବନ୍ଦଶାଳାର ଛାତ ଉପରୁ ତାଙ୍କୁ ଉଡ଼ିଯିବାକୁ ପଡ଼ିବ । ଚଢ଼େଇଙ୍କର ପର ସଂଗ୍ରହ କରି ଡିଡାଲସ୍ ଦି ହଳ ଡେଣା ତିଆରି କରିବାରେ ଲାଗିପଡ଼ିଲେ । ହଳେ ତାଙ୍କର ଓ ଆଉ ହଳେ ପୁଅର ।

ଡେଣା ତିଆରି ସରିଯିବାରୁ ଡିଡାଲସ୍ ପୁଅକୁ ଡାକି ତାର ଦୁଇ ବାହୁରେ ଦୁଇଟି ଡେଣା ଦୃଢ଼ଭାବେ ବାନ୍ଧିଦେଲେ । ତା ପରେ ମା ଚଢ଼େଇ ଛୁଆକୁ ଖଣ୍ଡିଉଡ଼ା ଶିଖାଇଲା ପରି ସେ ଇକାରସ୍‌କୁ ଉଡ଼ିବାକୁ ଶିଖାଇଲେ । କିଛି ସମୟ ଅଭ୍ୟାସ କଲା ପରେ ବନ୍ଦଶାଳାରେ ଆଉ ଦଣ୍ଡେ ରହିବା ପାଇଁ ଡିଡାଲସ୍‌ଙ୍କର ମନ ହେଲାନାହିଁ । ଜୀବନ ସହିତ ବାଜିମାରି

କେତେ ଦୁଃସାହସିକ ପଦକ୍ଷେପ ନେବାକୁ ଯାଉଛନ୍ତି, ସେ ବିଷୟରେ ଡେଡ଼ାଲସ୍ ଭଲଭାବେ ସଚେତନ ଥିଲେ । ତେଣୁ ପ୍ରସ୍ତୁତ ସାରି ପୁଅକୁ ଚେତକପୂର୍ଣ୍ଣ ଚକ୍ଷୁରେ ଧୀର ଭାବରେ କହିଲେ, "ଇକାରସ୍ ! ପୁଅ ମୋର ! ଆମେ ପକ୍ଷୀପରି ଆକାଶରେ ଉଡ଼ିବାକୁ ବାହାରିଛୁ । କୌଣସି ମନୁଷ୍ୟ ଏପରି କାର୍ଯ୍ୟ କରିବାକୁ ଏ ପର୍ଯ୍ୟନ୍ତ ସକ୍ଷମ ହୋଇନାହିଁ । ମନେ ରଖିଥିବୁ, ବେଶୀ ଉଚ୍ଚକୁ ମୋଟେ ଉଠିବୁ ନାହିଁ । ଖୁବ୍ ତଳକୁ ମଧ୍ୟ ଖସିବୁ ନାହିଁ । ତଳେ କୁହୁଡ଼ିରେ ତୋର ଡେଣା ଓଦା ହୋଇଯିବ । ଅଧିକ ଉଚ୍ଚରେ ମହମ ଲଗାଯାଇ ଯୋଡ଼ା ହୋଇଥିବା ଡେଣା ତରଳି ଯିବ । ମୋ ସାଙ୍ଗରେ ମୋତେ ଲକ୍ଷ୍ୟ ରଖି ଉଡ଼ିଲେ ତୋର କିଛି ଅନିଷ୍ଟ ହେବନାହିଁ ।"

କେତେ କାଳରୁ ଉଡ଼ିବାରେ ଅଭ୍ୟସ୍ତ ଦୁଇଟି ଚଢ଼େଇ ପରି ଡେଡ଼ାଲସ୍ ଓ ଇକାରସ୍ ସ୍ୱଚ୍ଛନ୍ଦରେ ଛାତ ଉପରୁ ଉଡ଼ିଗଲେ । ଯେ ଅଦ୍ଭୁତ ଦୃଶ୍ୟ ଦେଖି ରାସ୍ତାର ବାଟୋଇ କ୍ଷେତର ଚାଷୀ ଚାଟକା ହୋଇ ଉପରକୁ ଚାହିଁ ରହିଲେ । ଯୁଦ୍ଧ ଜାହାଜମାନଙ୍କ ଉପର ଦେଇ ସେମାନେ ନିର୍ବିଘ୍ନରେ ଉଡ଼ି ଯାଉଥାନ୍ତି । ମୁକ୍ତିର ସ୍ୱାଦ କି ମଧୁର ! ସ୍ୱାଧୀନତା ଫେରି ପାଇଥିବା ଆନନ୍ଦରେ ଇକାରସ୍‌ର ଡେଣା ଚଞ୍ଚଳ ହୋଇ ଉଠିଲା । ନିଜକୁ ସଂଯତ କରି ନପାରି ସେ ଦ୍ରୁତ ବେଗରେ ଆକାଶ ଛାତିରେ ଶର ମାରିଲା । ପିତାଙ୍କ କଥା ଭୁଲି ସୂର୍ଯ୍ୟଙ୍କ ଆଡ଼କୁ ମୁହାଁଇଲା । ଫଳରେ ମହମରେ ଖଞ୍ଜା ଯାଇଥିବା ପରଗୁଡ଼ିକ ତରଳି ଗୋଟିକ ପରେ ଗୋଟିଏ ଝଡ଼ିଲେ । ପକ୍ଷହରା ଇକାରସ୍ ତଳକୁ ଖସିପଡିଲା । ବଡ଼ଙ୍କର କଥା ମାନୁ ନଥିବା ଅପରିଣାମଦର୍ଶୀ, ଅସଂଯତ ଯୁବକର କି ଦଶା ହୁଏ, ଗ୍ରୀକ୍ ଯୁବକମାନଙ୍କୁ ତାହା ଇକାରସ୍ ଚରିତ୍ର ମାଧ୍ୟମରେ ଚେତାଇ ଦିଆଯାଏ ।

ପୁଅର ଦଶା ଦେଖି ଡେଡାଲସ୍ ଖୁବ୍ କାନ୍ଦିଲେ । ତଳକୁ ଓହ୍ଲାଇ ଆସି ସେ ଇକାରସ୍‌କୁ କବର ଦେଲେ ଓ ସିସିଲି ଅଭିମୁଖେ ଚାଲିଲେ । ସିସିଲି ରାଜ ଦରବାରରେ ତାଙ୍କୁ ସାଦରେ ଅଭ୍ୟର୍ଥନା କରାଗଲା । ସବୁ ଖବର ପାଇ ମାଇନୋସ୍ ସିସିଲି ଅଭିଯାନରେ ବାହାରିଲେ । ଡେଡ଼ାଲସ୍‌ଙ୍କୁ ମାଇନୋସ୍‌ଙ୍କ ହାତରେ ସମର୍ପି ଦେବାକୁ ସିସିଲିର ରାଜା ଆପତ୍ତି କଲେନାହିଁ । ମାତ୍ର ପ୍ରକୃତରେ ତାହା ଥିଲା ଛଳନା । ରାଜାଙ୍କର ତିନିଝିଅ ଡେଡ଼ାଲସ୍‌ଙ୍କୁ ଖୁବ୍ ଭଲ ପାଉଥିଲେ । ମାଇନୋସ୍ ଗାଧୋଉଥିବା ସମୟରେ ସେମାନେ ଲୁଚିକରି ଗାଧୁଆଘରେ ପଶି ପାଣିକୁଣ୍ଡ ଭିତରେ ତାଙ୍କୁ ମାଡ଼ି ବସିଲେ । ଅଣନିଃଶ୍ୱାସୀ

ହୋଇ ମାଇନୋସ୍ ମଲେ । ଡେଡ଼ାଲସ୍ ଆଉ କେତେବର୍ଷ ବଞ୍ଚିରହି ସିସିଲି ଓ ଗ୍ରୀସ୍‌ରେ ମହାନ୍ ନିର୍ମାଣ କୌଶଳର ଅନେକ ନମୁନା ରଖିଗଲେ ।

ମିନୋଆନ୍ ସଭ୍ୟତାର ଆବିଷ୍କାର ପୂର୍ବରୁ ଗ୍ରୀକ୍ ମିନାଟୋର ମିଥ୍‌ଟି ସମ୍ପୂର୍ଣ୍ଣ କପୋଳକଳ୍ପିତ ବୋଲି ଧରି ନିଆ ଯାଇଥିଲା । ମାତ୍ର ପରେ ଜଣାପଡ଼ୁଛି, କ୍ରିଟ୍‌ର ଇତିହାସ ସହିତ ଏହି ମିଥ୍‌ର ଅନେକ ମେଳ ରହିଛି । କ୍ରିଟୀୟ କାରିଗରଙ୍କର ବଡ଼ ବଡ଼ ଅଟ୍ଟାଳିକା ନିର୍ମାଣ ଜଣେ ଡେଡ଼ାଲସ୍‌ର କାର୍ଯ୍ୟ ପରି ମନେହୁଏ । ମିଥ୍‌ର ଲ୍ୟାବିରିନ୍ଥ ନୋସସ୍‌ର ରାଜପ୍ରାସାଦ ବ୍ୟତୀତ ଅନ୍ୟ କିଛି ନୁହେଁ ବୋଲି ପଣ୍ଡିତଙ୍କର ମତ । ଷଣ୍ଢ ସହିତ ଖେଳ କ୍ରିଟ୍‌ରେ ଅତ୍ୟନ୍ତ ଲୋକପ୍ରିୟ ଥିଲା । ସେତିକି ନୁହେଁ, କାଳ୍ପନିକ ମିନାଟୋରକୁ କ୍ରିଟ୍‌ବାସୀ ବାସ୍ତବତା ଠାରୁ ଅଧିକ ସତ୍ୟ ମଣୁଥିଲେ । ମିନାଟୋରର ଚିତ୍ର କ୍ରିଟ୍‌ର ମୁଦ୍ରା ଓ ବାସନ-କୁସନରେ ଦେଖିବାକୁ ମିଳେ ।

## ମିନୋଆନ୍ ସଭ୍ୟତାର ଧ୍ୱଂସ

ୟୁରୋପରେ ସଭ୍ୟତାର ପ୍ରବେଶ ପୂର୍ବରୁ ପ୍ରଥମେ କ୍ରିଟ୍‌ରେ ସଭ୍ୟତାର ପ୍ରଦୀପ ଜଳିଥିଲା । କ୍ରିଟୀୟ ସଭ୍ୟତା ଏସୀୟ ବୋଲି ପଣ୍ଡିତମାନେ ମନେ କରନ୍ତି । ଏକ ବୃହତ୍ତର ଭୂମଧ୍ୟ ସାଗରୀୟ ସଭ୍ୟତା ହୁଏତ ଏହି ସଭ୍ୟତାର ଜନନୀ । ତେବେ ଏକ ବ୍ୟାପକ ଭୂମଧ୍ୟସାଗରୀୟ ସଭ୍ୟତା ଠାରୁ କ୍ରିଟୀୟ ସଭ୍ୟତା ଯେ ବହୁ ଊର୍ଦ୍ଧ୍ୱକୁ ଉଠିଥିଲା, ସେଥିରେ ସନ୍ଦେହ ନାହିଁ ।

କ୍ରିଟୀୟ ସଭ୍ୟତା ଧ୍ୱଂସ ପାଇବାର ଅସଲ କାରଣ କ'ଣ ତାହା ନିର୍ଦ୍ଦିଷ୍ଟ ଭାବେ କହି ହେବନାହିଁ । ତେବେ ଭୋଗବିଳାସରେ ଦୀର୍ଘକାଳ ବାସ କରିବା ଫଳରେ ଲୋକଙ୍କର କର୍ମସ୍ପୃହା ଓ ପ୍ରାଣଶକ୍ତି କମିଯିବା ଏକ ବଡ଼ କାରଣ ହୋଇପାରେ । ମିଶରର ପତନ ପରେ ମିଶର ସହିତ ବାଣିଜ୍ୟ କାରବାର କମିଯିବା ହୁଏତ ଆଉ ଏକ କାରଣ । କ୍ରିଟ୍‌ରେ ଅନ୍ତର୍ବିବାଦ ଲାଗିରହିବା ଫଳରେ ଏହା ଦୁର୍ବଳ ହୋଇ ପଡ଼ିଲା ବୋଲି ଅନୁମାନ କରା-ଯାଏ । କ୍ରିଟ୍ ଆଖପାଖରେ ଥିବା କରିଦ ଦ୍ୱୀପଗୁଡ଼ିକୁ କ୍ରମେ ବିଦେଶୀ ଯାଯାବରମାନେ ଅଧିକାର କରିନେଲେ । ପରାକ୍ରମଶାଳୀ କ୍ରିଟ୍ ଉପରେ ଦୁଇହଜାର ବର୍ଷ ଧରି କୌଣସି ଆକ୍ରମଣ ହୋଇ ନଥିଲା । ଖ୍ରୀ· ପୂ ୧୪୦୦ ବେଳକୁ ଯାଯାବର ଆକ୍ରମଣକାରୀ କ୍ରିଟ୍ ଉପରେ

ଚଢ଼ାଉ କଲେ । ଏ ଆକ୍ରମଣ ଥିଲା ଅପ୍ରତ୍ୟାଶିତ । ଆକ୍ରମଣକାରୀମାନେ କ୍ରିଟ୍‌ର ସୁଦୃଶ୍ୟ ରାଜପ୍ରାସାଦ ଓ ନଗରମାନଙ୍କୁ ପୋଡ଼ି ପକାଇଲେ । ଉଦ୍ଧାର ହୋଇଥିବା ନୋସସ୍ ରାଜପ୍ରାସାଦକୁ ଅଗ୍ନିର ଲେଲିହାନ ଶିଖା ଗ୍ରାସି ଦେଇଥିବାର ଆମେ ଦେଖୁ । ମାଟିତଳେ ହଜାର ହଜାର ବର୍ଷ ପୋତି ହୋଇ ପଡ଼ିଥିବା ପୋଡ଼ା ପ୍ରାସାଦକୁ ଦେଖି ଆଜି ଜଗତ ଚମକୃତ ।

- କ୍ରିଟ୍‌ର ପତନ ହେଲା ସତ, ମାତ୍ର ତାର ସଭ୍ୟତାର ସୌରଭ ଗ୍ରୀସ୍‌କୁ ସୁବାସିତ କରି ରଖିଲା ଅନେକ କାଳ । କ୍ରିଟୀୟ କଳାବିଭବ ଦ୍ୱାରା ଗ୍ରୀକ୍‌ଙ୍କର ସୌନ୍ଦର୍ଯ୍ୟ ଚେତନା ବିକଶିତ ହୋଇଥିଲା ।

●

# ଆଗାମେମନନ୍ ପୂର୍ବରୁ

## ଆଗାମେମନନ୍ଙ୍କ ଦେଶ

※ କ୍ରିଟ୍‌ରୁ ପ୍ରଧାନ ଭୂଖଣ୍ଡସ୍ଥିତ ମାଇସିନକୁ ସଭ୍ୟତାର ଆଲୋକ ଆସିଲା ।

※ ମାଇସିନ ଥିଲା କ୍ରିଟ୍‌ର ଉପନିବେଶ ।

※ ଆଗାମେମନନ୍ଙ୍କ ପ୍ରାସାଦ ଖୋଜିବାକୁ ଯାଇ ସ୍ଲିମାନ୍ ଅଦ୍ଭୁତ ପ୍ରାଚୀନ ମାଇସିନିଆନ୍ ସଭ୍ୟତାର ଆବିଷ୍କାର କଲେ ।

କ୍ରିଟ୍‌ର ମିନୋଆନ୍ ସଭ୍ୟତାରୁ ଅଗ୍ନି ଆସିଲା ପ୍ରଧାନ ଗ୍ରୀକ୍‌ଭୂଖଣ୍ଡକୁ । ସେ ଅଗ୍ନି କେଉଁଠି ସଭ୍ୟତାର ମଶାଲ ଜାଳି ଦେଲା ସେ କଥା ବିଂଶ ଶତାବ୍ଦୀରେ ଜଣାପଡ଼ୁଛି । ପୂର୍ବରୁ ଟ୍ରୟଯୁଦ୍ଧର ସମୟକୁ ପଣ୍ଡିତମାନେ ଇତିହାସ ଓ ପ୍ରାକ୍ ଇତିହାସର ସନ୍ଧିକ୍ଷଣ ଭାବେ ଗ୍ରହଣ କରିଥିଲେ । ଟ୍ରୟ ଯୁଦ୍ଧରେ ଗ୍ରୀକ୍ ପକ୍ଷର ନେତା ଥିଲେ ମାଇସିନର ପ୍ରତାପୀ ରାଜା ଆଗାମେମନନ୍ । ତେଣୁ ଆଗାମେମନନ୍ଙ୍କ ସମୟରେ ମାଇସିନ ଏକ ସୁସଭ୍ୟ ରାଜ୍ୟ ଥିଲା ବୋଲି ଧରିନେବା ସ୍ୱାଭାବିକ । ମାତ୍ର ଆଗାମେମନନ୍ଙ୍କ ଅନେକ ପୂର୍ବରୁ ମାଇସିନିଠାରେ ଏକ ଉନ୍ନତ ସଭ୍ୟତା ପ୍ରତିଷ୍ଠିତ ଥିଲା । ଏହା ମାଇସିନିଆନ୍ (Mycenaean) ସଭ୍ୟତା ନାମରେ ପରିଚିତ । ଅର୍ଥାତ୍ ବିଂଶ ଶତାବ୍ଦୀ ପୂର୍ବରୁ ଗ୍ରୀକ୍‌ସଭ୍ୟତାର ଦୁଇଟି ମୂଳ ପାହାଚ ମିନୋଆନ୍ ସଭ୍ୟତା ଓ ମାଇସିନିଆନ୍ ସଭ୍ୟତା ଲୁଚି ରହିଥିଲା ।

ଏପରିକି ଟ୍ରୟ ଯୁଦ୍ଧକୁ କାଳ୍ପନିକପୁରାଣଗପ ବୋଲି ଧରାଯାଉଥିଲା ପ୍ରାୟ ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ । ମାତ୍ର ଏହା ଯେ ଏକ ମହାନ୍ ଐତିହାସିକ ଘଟଣା, ସେ କଥା ପ୍ରମାଣ କରିଗଲେ ଜର୍ମାନ୍‌ର ବିଶ୍ବବରେଣ୍ୟ ପ୍ରତ୍ନତତ୍ତ୍ଵବିତ୍ ହେନେରିକ୍ ସ୍ଲିମାନ୍ ( Schliemann ୧୮୨୨-୯୦) । ପିଲାଦିନେ ବାପାଙ୍କ ଠାରୁ ଟ୍ରୟ ଯୁଦ୍ଧର କାହାଣୀ ସବୁ ଶୁଣି ସ୍ଲିମାନ ମୁଗ୍‌ଧ ହେଉଥିଲେ । ମାତ୍ର ଟ୍ରୟ ସମ୍ପୂର୍ଣ୍ଣ ଭାବେ ଧ୍ବଂସ ପାଇଛି ଓ ତାର ଚିହ୍ନବର୍ଣ୍ଣ ଆଉ ନାହିଁ ବୋଲି ପିତାଙ୍କ ମୁହଁରୁ ଶୁଣି ସ୍ଲିମାନ୍ ଦୁଃଖରେ ଭାଙ୍ଗି ପଡ଼ିଲେ । ଆଠବର୍ଷର ବାଳକ ସ୍ଲିମାନ୍ ସ୍ଥିର କଲା, ଲୁପ୍ତ ଟ୍ରୟକୁ ଖୋଜି ସେ ବାହାର କରିବ । ଶୈଶବର ସେହି ପ୍ରତିଜ୍ଞା ରକ୍ଷା କରିବାକୁ ଗ୍ରୀକ୍ ପ୍ରେମପାଗଳ ସ୍ଲିମାନ୍ ସାରା ଜୀବନ କଠୋର ପରିଶ୍ରମ କରିଥିଲେ । ଟ୍ରୋଜାନ୍ ଓ ଗ୍ରୀକ୍‌ଙ୍କ ମଧ୍ୟରେ ଦୀର୍ଘ ଦଶବର୍ଷର ଲୋମହର୍ଷଣକାରୀ ଯୁଦ୍ଧର ଯେଉଁ ଜୀବନ୍ତ ବର୍ଣ୍ଣନା ହୋମର୍ କରିଛନ୍ତି, ସେ ସବୁ କାଳ୍ପନିକ କାହାଣୀ ହୋଇ ନ ପାରେ । ଉଭୟ ପକ୍ଷର ବୀରଙ୍କର ମନୋମୁଗ୍‌ଧକାରୀ ଚରିତ୍ରକର୍ଷକ ବ୍ୟକ୍ତିତ୍ୱମାନ ମନଗଢ଼ା ହୋଇ ନ ପାରନ୍ତି । ଏଇ ବିଶ୍ୱାସ ସ୍ଲିମାନ୍‌ଙ୍କୁ ତାଙ୍କର ସାଧନା ପଥରେ ଆଗେଇ ନେଇଥିଲା ।

ହେନେରିକ୍ ସ୍ଲିମାନ୍ ଜଣେ ପ୍ରତ୍ନତତ୍ତ୍ୱବିତ୍ ମାତ୍ର ନୁହନ୍ତି, ସେ ପ୍ରତ୍ନତତ୍ତ୍ୱ ଜଗତର ଏକ ବିସ୍ମୟ । ଟ୍ରୟକୁ ଚିହ୍ନଟ କରି ଓ ଖୋଳାଇ ସେ ପୁରାଣରୁ ଇତିହାସକୁ ଉଦ୍ଧାର କଲେ ।

ଟ୍ରୟ ଖୋଜିବା ପାଇଁ ପ୍ରଚୁର ଅର୍ଥ ଆବଶ୍ୟକ । ଅର୍ଥ ସଂଗ୍ରହ କରିବା ପାଇଁ ଚଉଦ ବର୍ଷ ବୟସରେ ସ୍ଲିମାନ୍ ବ୍ୟବସାୟରେ ପଶିଲେ ଓ ଦଶବର୍ଷ ମଧ୍ୟରେ ଯଥେଷ୍ଟ ଅର୍ଥ ସଂଗ୍ରହ କରିବା ପରେ ବ୍ୟବସାୟ ଛାଡ଼ିଦେଲେ । ବନ୍ଧୁବାନ୍ଧବମାନେ ଧରିନେଲେ ସ୍ଲିମାନ୍ ବଦ୍ଧ ପାଗଳ ।

ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍‌ଙ୍କ ପାଖରେ ସ୍ଲିମାନ୍‌ଙ୍କର ଗୋଟିଏ ପରିଚୟ ଥିଲା —ପାଗଳ ! କାରଣ ସବୁ ପଣ୍ଡିତଙ୍କର ମତକୁ ବେଖାତିର୍ କରି ସେ ଟ୍ରୟକୁ ଗୋଟିଏ ନୂଆ, ଅଜଣା ସ୍ଥାନରେ ଚିହ୍ନଟ କଲେ । ତାଙ୍କର ଯୁକ୍ତି ବଡ଼ ସରଳ । ହୋମର୍‌ଙ୍କ ବର୍ଣ୍ଣନାରୁ ଟ୍ରୟର ଅବସ୍ଥିତି ସ୍ଥିର ନ କରି ପଣ୍ଡିତଙ୍କର ପୋଥି ଘାଣ୍ଟିବା କ'ଣ ଦରକାର ?

ପାଗଳାମିରେ ମାତି ଦେଶଛାଡ଼ି କେଉଁ ଅପନ୍ତରା ରାଜ୍ୟକୁ ଯାଇ ଟ୍ରୟ ଖୋଜିବା ପାଇଁ ସ୍ଲିମାନ୍‌ଙ୍କର ରୁଷୀୟ ସ୍ତ୍ରୀ ରାଜି ହେଲେନାହିଁ । ଫଳରେ ଜଣେ ଗ୍ରୀକ୍ ଝିଅକୁ ବିବାହ

କରିବାର ଇଚ୍ଛା ପ୍ରକାଶ କରି ସେ ବିଜ୍ଞାପନ ଦେଲେ । ପ୍ରାଚୀନ ଗ୍ରୀକ୍ ରମଣୀଙ୍କ ସହିତ ମେଳ ଥିବା ଗୋଟିଏ ଊଣେଇଶ ବର୍ଷର ଗ୍ରୀକ୍ ଝିଅକୁ ସ୍ଲିମାନ୍ ଛୟାଳିଶ ବର୍ଷ ବୟସରେ ବିବାହ କଲେ । ଏହି ସ୍ତ୍ରୀଙ୍କ ଗର୍ଭଜାତ ସନ୍ତାନକୁ ଖ୍ରୀଷ୍ଟଧର୍ମର ଦୀକ୍ଷାଭିଷେକ କରିବା (Baptize) ପାଇଁ ସ୍ଲିମାନ୍‌ଙ୍କର ଇଚ୍ଛା ନଥିଲା । ତେବେ ଏହି ଉତ୍ସବରେ ସନ୍ତାନର ମସ୍ତକରେ ହୋମର୍‌ଙ୍କର ଇଲିଆଡ଼୍ ଗ୍ରନ୍ଥ ଛୁଆଁଇ ତହିଁରୁ କିଛିଅଂଶ ପାଠ କରାଯାଇଥିଲା । ପୁତ୍ର କନ୍ୟା ତଥା ଚାକରମାନଙ୍କୁ ସ୍ଲିମାନ୍ ଗ୍ରୀକ୍ ନାମରେ ଡାକୁଥିଲେ । ପୁତ୍ର କନ୍ୟାଙ୍କ ସ୍ୱାସ୍ଥ୍ୟମନାସି ଗ୍ରୀକ୍ ଦେବଦେବୀଙ୍କୁ ପ୍ରାର୍ଥନା କରୁଥିଲେ ।

ଅତୀତ ଗର୍ଭରେ ଲୁଚି ରହିଥିବା ଟ୍ରୟ୍ ସତେ କି ଆତ୍ମପ୍ରକାଶ କରିବା ପାଇଁ ଏହି ହୋମ୍‌ର-ପ୍ରେମପାଗଳଙ୍କୁ ଅପେକ୍ଷା କରିଥିଲା । କେବଳ ହୋମର୍‌ଙ୍କ କାବ୍ୟର ବର୍ଣ୍ଣନାକୁ ଅନୁସରଣ କରି ସ୍ଲିମାନ୍ ଟ୍ରୟ୍ ଠାବ କଲେ ଓ ସେ ସ୍ଥାନକୁ ଖୋଳାଇଲେ । ଅସୀମ ଧୈର୍ଯ୍ୟ ଓ ଅକ୍ଳାନ୍ତ ପରିଶ୍ରମ ବୃଥା ଗଲା ନାହିଁ । ଦିନେ ଖୋଳେଇ ସ୍ଥାନରୁ ସ୍ଲିମାନ୍ ଅନେକଗୁଡ଼ିଏ ସୁନା ରୂପାର ଜିନିଷ ପାଇଲେ । ସେଗୁଡ଼ିକୁ ଲୁଚାଇ ଦେଇ ସେ ମୂଲିଆମାନଙ୍କୁ ବିଦା କରିଦେଲେ । ଘରକୁ ଫେରି କବାଟ ଝରକା ବନ୍ଦ କରି ସେଗୁଡ଼ିକୁ ଟେବୁଲ ଉପରେ ସଜାଇ ରଖିଲେ । ସ୍ଲିମାନ୍‌ଙ୍କ ପାଖରେ ସେ ଜିନିଷତକର ମୂଲ୍ୟ ମଣିମାଣିକ୍ୟ ଠାରୁ କୋଟି ଗୁଣରେ ଅଧିକ ମୂଲ୍ୟବାନ । ହୋମର୍‌ଙ୍କ କାବ୍ୟରେ ନାୟିକାର ବର୍ଣ୍ଣନା ଅନୁଯାୟୀ ଅଳଙ୍କାର ଖଣ୍ଡିଗୁଡ଼ିକୁ ସ୍ଲିମାନ୍ ସ୍ତ୍ରୀଙ୍କୁ ପିନ୍ଧାଇ ଦେଲେ ଓ ତାଙ୍କୁ ମନଭରି ଦେଖିଲେ । ପରଦିନ ୟୁରୋପର ବନ୍ଧୁମାନଙ୍କ ପାଖକୁ ବାର୍ତ୍ତା ଗଲା – 'ମୁଁ ପ୍ରିଆମ୍‌ଙ୍କ ଟ୍ରେଜେରିର ସନ୍ଧାନ ପାଇଛି ।' ଏ କଥାକୁ ବିଶ୍ୱାସ କରିବା ଦୂରେ ଥାଉ, ଅନେକ ତାହା ହସରେ ଉଡ଼ାଇ ଦେଲେ । ମାତ୍ର କ୍ରମଶଃ ଅଧିକରୁ ଅଧିକ ପ୍ରମାଣମାନ ମାଟିତଳୁ ବାହାରି ସମସ୍ତଙ୍କୁ ଅବାକ୍ କରିଦେଲା ।

ଏପରି ମହାନ୍ ସାଫଲ୍ୟ ସ୍ଲିମାନ୍‌ଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ । ଟ୍ରୟ୍‌ର ସନ୍ଧାନ ଯଦି ମିଳିଲା, ତେବେ ଏହି ମହାଯୁଦ୍ଧରେ ଗ୍ରୀକ୍‌ପକ୍ଷର ନେତା ମାଇସିନିର ରାଜା ଆଗାମେମନନ୍‌ଙ୍କ ରାଜପ୍ରାସାଦର ସନ୍ଧାନ ମଧ୍ୟ ମିଳି ପାରିବ । ଏଇ ବିଶ୍ୱାସ ନେଇ ସ୍ଲିମାନ୍ ପିଲୋପୋନେସିଅସ୍ ଗଲେ ଓ ଏହାର ପୂର୍ବାଞ୍ଚଳରେ ଅବସ୍ଥିତ ମାଇସିନିକୁ ଖୋଳିବାରେ ଲାଗିପଡ଼ିଲେ । ସତକୁ ସତ ଖୋଳେଇ ସ୍ଥାନରୁ ଅନେକ କଙ୍କାଳ, ମୂଲ୍ୟବାନ ଅଳଙ୍କାର,

ସୁନାର ମୁଖା ଓ ସୁନ୍ଦର ମାଟିପାତ୍ରମାନ ବାହାରିଲା । ଏ ସବୁକୁ ସ୍ଲିମାନ୍ ଆଗାମେମନନ୍‌ଙ୍କ ଜିନିଷପତ୍ର ବୋଲି ଧରିନେଲେ ଓ ଅଳ୍ପଦୂରରେ ଟାଇରେନ୍‌ଜକୁ ଖୋଳାଇଲେ । ସେଠାରୁ ଏକ ବିରାଟ ପ୍ରାସାଦ ବାହାରିଲା । ଏହି ପ୍ରାସାଦ ଓ ତାହାର ମେଘନାଦ ପାଚେରି ହୋମର୍‌ଙ୍କ ବର୍ଣ୍ଣନା ସହିତ ମିଳି ଯାଉଥିଲା ।

ଆଗାମେମନନ୍‌ଙ୍କ ପ୍ରାସାଦ ଓ ଅଳଙ୍କାରପତ୍ରକୁ ମାଟିତଳୁ ଉଦ୍ଧାର କରିଛନ୍ତି ଧରିନେଇ ସ୍ଲିମାନ୍ ଇହଧାମରୁ ବିଦାୟ ନେଲେ । ମାତ୍ର ତାଙ୍କ ଅନ୍ତେ ଜଣାପଡ଼ିଛି, ସେ ମାଇସିନ ଠାରେ ଆଗାମେମନନ୍‌ଙ୍କ ଭଗ୍ନ ରାଜପ୍ରାସାଦ ନୁହେଁ, ଆଉ ଏକ ଭିନ୍ନ ଓ ସେ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଅଜଣା ପ୍ରାଚୀନ ସଭ୍ୟତାର ପୁନରୁଦ୍ଧାର କରିଛନ୍ତି । ସ୍ଲିମାନ ଖୋଜୁଥିବା ଆଗାମେମନନ୍‌ଙ୍କ ପ୍ରାସାଦ ଠାରୁ ତାଙ୍କର ଆବିଷ୍କାର ଆହୁରି ବିସ୍ମୟଜନକ, ଆହୁରି ମହାନ୍ । ସ୍ଲିମାନ୍ ଆଗାମେମନନ୍‌ଙ୍କ ପ୍ରାସାଦ ନୁହେଁ, ଗ୍ରୀକ୍ ଭୂଖଣ୍ଡରେ ପ୍ରାଚୀନତମ ସଭ୍ୟତାକୁ ଲୋକ ଲୋଚନକୁ ଆଣିଲେ ।

ଆଗାମେମନନ୍‌ଙ୍କର ଅନ୍ତତଃ ଦୁଇ ଶହ ବର୍ଷ ପୂର୍ବର ସଭ୍ୟତାର ଧ୍ୱଂସାବଶେଷ ମାଇସିନ ଠାରେ ସ୍ଲିମାନ୍ ଆବିଷ୍କାର କରିଥିଲେ । ମାଇସିନର ଭଗ୍ନ ରାଜପ୍ରାସାଦ ପ୍ରାକ୍ ଐତିହାସିକ ଗ୍ରୀସ୍‌ର ଏକ ବିସ୍ମୟ । ମାଇସିନ ଖୋଳାଇ ସାରି ସ୍ଲିମାନ୍ କ୍ରିଟ୍‌ରେ ଯାଇ ପହଞ୍ଚିଥିଲେ । ନୋସସ୍ ପ୍ରତ୍ନତତ୍ତ୍ୱ-ବିଦ୍‌ର ହୀରାଖଣି ବୋଲି ସେ ଠିକ୍ ଅନୁମାନ କରିଥିଲେ । ମାତ୍ର ଜମି ହସ୍ତାନ୍ତର କରିବାକୁ ନୋସସ୍ ଅଞ୍ଚଳର ଜମିମାଲିକ ତାଙ୍କ ସହିତ ଖେଳିବାରୁ ସ୍ଲିମାନ୍ ବିରକ୍ତ ହୋଇ ଫେରି ଆସିଥିଲେ ।

ସ୍ଲିମାନ୍‌ଙ୍କ ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ପରେ ଜଣାପଡ଼ିଛି ଯେ ମାଇସିନ କ୍ରିଟ୍‌ର ଏକ ଉପନିବେଶ ହୋଇ ରହିଥିଲା । ଇଜିଆନ୍ ସମୁଦ୍ରର କେତେକ କ୍ଷୁଦ୍ର ଦ୍ୱୀପଙ୍କ ସମେତ, ପିଲୋପୋନେସିଆନ୍ ଉପଦ୍ୱୀପର ମାଇସିନ ଓ ଟାଇରନ୍‌ଜ ଥିଲେ କ୍ରିଟ୍‌ର ଉପନିବେଶ । କ୍ରିଟ୍ ଦୁର୍ବଳ ହୋଇଯିବାରୁ ମାଇସିନ, ଟାଇରନଜ୍ ଓ ଅନ୍ୟାନ୍ୟ ସ୍ଥାନର ବାସିନ୍ଦାମାନେ କ୍ରିଟୀୟ ଶାସକମାନଙ୍କୁ ଛାଡ଼ି ଦେଲେ । ସେହି ସମୟରେ ଆକିଆନ୍ (Achaean) ନାମକ ଏକ ଦୁର୍ଦ୍ଧର୍ଷ ଯାଯାବର ଜାତି ଗ୍ରୀସ୍‌ରେ ପ୍ରବେଶ କରିଥାନ୍ତି । ସେମାନେ ମାଇସିନ ଓ ଟାଇରନଜ୍‌କୁ ମାଡ଼ିବସିଲେ । କ୍ରିଟ୍‌ର ଦୁର୍ବଳତାର ସୁଯୋଗ ନେଇ ଆକିଆନ୍‌ମାନେ ସମୁଦ୍ରରେ କ୍ରିଟ୍ ଜାହାଜ ସବୁ ଲୁଣ୍ଠନ କଲେ । କ୍ରିଟ୍ ଅଧୀନସ୍ଥ ଛୋଟ ଦ୍ୱୀପଗୁଡ଼ିକ ସେମାନଙ୍କ ଲୋଲୁପ ଦୃଷ୍ଟିରୁ ରକ୍ଷା ପାଉ ନ ଥିଲା । ଅଳ୍ପ କାଳ ମଧ୍ୟରେ ମାଇସିନ ସମୁଦ୍ରରେ ଶକ୍ତି ବିସ୍ତାର କଲା ଓ ଆକିଆନ୍‌ମାନେ ଦସ୍ୟୁବୃତ୍ତି ଛାଡ଼ି ବାଣିଜ୍ୟ କ୍ଷେତ୍ରରେ

ପ୍ରବେଶ କଲେ । ଫଳରେ କ୍ରିଟ୍‌ର ଏକଚ୍ଛତିଆ ବାଣିଜ୍ୟ ଲୋପ ପାଇଲା । ଶେଷରେ ବନେ ମାଇସିନ କ୍ରିଟ୍‌ର ରାଜଧାନୀ ନୋସସ୍ ଆକ୍ରମଣ କରି ତାର ସୁନ୍ଦର ରାଜଧାନୀକୁ ପୋଡ଼ି ଛାରଖାର କରିଦେଲେ ।

ପୂର୍ବରୁ କ୍ରିଟ୍ ଅଧୀନରେ ଥିବା ଆର୍‌ଗୋସ୍, ମିଡ଼ିଆ, କରିନ୍‌ଥ ପ୍ରଭୃତି ଗ୍ରୀକ୍ ନଗର ଗୁଡ଼ିକ ମାଇସିନର ବଶ୍ୟତା ସ୍ୱୀକାର କରିଗଲେ । ମାଇସିନର ଅବସ୍ଥିତି ଆର୍‌ଗୋସ୍ ଉପସାଗର କୂଳରେ । ଆର୍‌ଗୋସ୍ ନଗର ଠାରୁ ଏହାର ଦୂରତ୍ୱ ମାତ୍ର ପାଞ୍ଚମାଇଲ । ସ୍ପାର୍ଟା ଠାରୁ ମଧ୍ୟ ଏହା ବେଶୀ ଦୂର ନୁହେଁ ।



[ ନୋସସ୍ ରାଜପ୍ରାସାଦରୁ ଉଦ୍ଧାର କରାଯାଇଥିବା ଏକ ଚୀନାମାଟିର ପାତ୍ରରେ ଅଙ୍କିତ ଏହି ଚମତ୍କାର ଚିତ୍ରଟି 'କ୍ରିଟୀୟ' କଳାବିଭବର ଦୃଷ୍ଟାନ୍ତ । ପ୍ରଧାନ ଗ୍ରୀକ୍‌ଭୂଖଣ୍ଡ, ସାଇପ୍ରସ୍ ସିରିୟା, ଏପରିକି ମିଶରରେ କ୍ରିଟୀୟ କଳାର ପ୍ରଭାବ ପଡ଼ିଥିଲା । ]

ନୋସସ୍ ରାଜପ୍ରାସାଦର ଗଠନ କୌଶଳ, କାରୁକାର୍ଯ୍ୟ ଓ ସୌନ୍ଦର୍ଯ୍ୟ ଦେଖି ଆଧୁନିକ ଯୁଗର ମଣିଷମାନେ ଚମତ୍କୃତ ହୁଅନ୍ତି କିନ୍ତୁ ମାଇସିନର ଶକ୍ତ ଓ ବିଶାଳ ପ୍ରାସାଦ ସେମାନଙ୍କୁ ସ୍ତମ୍ଭୀଭୂତ କରେ । ମାଇସିନର ପ୍ରାସାଦ, ଏପରିକି ନଗରର ଅନ୍ୟାନ୍ୟ ଗୃହର

ପାଚେରୀମାନ ଅସମ୍ଭବ ଭାବେ ଉଚ୍ଚ ଓ ଶକ୍ତ । ପ୍ରାସାଦର ପାଚେରୀ ପଚିଶରୁ ପଚାଶ ଫୁଟ ପର୍ଯ୍ୟନ୍ତ ଉଚ୍ଚ ଓ ଦଶରୁ ପଚିଶ ଫୁଟ ପର୍ଯ୍ୟନ୍ତ ମୋଟା । ପ୍ରାସାଦ ହିଁ ଥିଲା ରାଜାଙ୍କର ଦୁର୍ଗ । ନଅଶହ ଫୁଟ ଉଚ୍ଚ ପାହାଡ଼ ଉପରେ ଏହା ଅବସ୍ଥିତ । ଦୁର୍ଗ ମଧ୍ୟରେ ଏକ ବିରାଟ ଭଣ୍ଡାର-ଘରେ ପ୍ରଚୁର ଅସ୍ତ୍ରଶସ୍ତ୍ର ଓ ଖାଦ୍ୟପେୟ ସଞ୍ଚିତ ଥିଲା । ବହୁ ସଂଖ୍ୟକ ଲୋକଙ୍କୁ ଆଶ୍ରୟ ଦେବା ପରି ସ୍ଥାନ ଥିଲା । ସଶସ୍ତ୍ର ପ୍ରହରୀମାନେ ପ୍ରାସାଦ ଛାତ ଉପରୁ ଇଜିଆନ୍ ଉପସାଗର ଉପରେ ନଜର ରଖିଥିଲେ । ପ୍ରାସାଦ ଆଡ଼କୁ ଯାଉଥିବା ରାସ୍ତାର ଦୁଇପଟେ ଉଚ୍ଚ ପାଚେରୀ ଥିଲା । ପ୍ରାସାଦର ପ୍ରବେଶ ଦ୍ୱାର ସିଂହଦ୍ୱାର ନାମରେ ବିଦିତ ଥିଲା । କାରଣ ପ୍ରବେଶ ଦ୍ୱାର ଉପରେ ପଥରର ଦୁଇଟି ଅତିକାୟ ସିଂହ ବିଦ୍ୟମାନ । ଏବେ ମଧ୍ୟ ଅକ୍ଷତ ଅବସ୍ଥାରେ ଥିବା ସିଂହଦ୍ୱାରର ସେଇ ମହିମାବନ୍ତ ପଶୁରାଜଙ୍କୁ ଦେଖି ଦର୍ଶକମାନେ ମୁଗ୍ଧ ହୁଅନ୍ତି ।

ସିଂହଦ୍ୱାର ପାଖରେ ବୃତ୍ତାକାରରେ ପଥରଖୁଣ୍ଟ ଘେରିଥିବା ଗୋଟିଏ ସ୍ଥାନକୁ ଖୋଳି ସ୍ଲିମାନ୍ ଊନେଇଶଟି କଙ୍କାଳ ପାଇଥିଲେ । ସମୁଦାୟ ଗ୍ରୀସ୍ ଭ୍ରମଣ କରି ଏହାର ଇତିହାସ, ଭୂଗୋଳ ଓ କିମ୍ବଦନ୍ତୀକୁ ପଯାନିଅସ୍ ନାମକ ଜଣେ ବ୍ୟକ୍ତି ଦ୍ୱିତୀୟ ଶତାବ୍ଦୀରେ ଲିପିବଦ୍ଧ କରିଥିଲେ । ତାଙ୍କର ଗ୍ରନ୍ଥଟି ପ୍ରସିଦ୍ଧ । ମାଇସିନିର ଧ୍ୱଂସସ୍ତୂପ ମଧ୍ୟରେ ରାଜା-ରାଜୁଡ଼ାଙ୍କର କବର ରହିଛି ବୋଲି ପଯାନିଅସ୍‌ଙ୍କ ଗ୍ରନ୍ଥରେ ଏକ ସୂଚନା ଅଛି । ତେଣୁ ସ୍ଲିମାନ୍ ଧରିନେଲେ ଯେ ଏହି କଙ୍କାଳଗୁଡ଼ିକ ଆଗାମେମନ୍ ଓ ତାଙ୍କର ଭାଇମାନଙ୍କର ।

ମାଇସିନିର ଏହି କବରଖାନାରେ ରାଜ ପୁରୁଷମାନଙ୍କୁ ସୁନାର ମୁଖା ପିନ୍ଧାଇ କବର ଦିଆ ଯାଉଥିଲା । ଶବାଧାରରୁ ସୁବର୍ଣ୍ଣ ଖଚିତ ଖଣ୍ଡା, ରୁପାକଳସୀ ଓ ମୂଲ୍ୟବାନ୍ ଅଳଙ୍କାରପତ୍ର ମଧ୍ୟ ମିଳିଛି । ଏହା ଯେ ମୃତମାନଙ୍କର ରାଜକୀୟ ବ୍ୟାପାର ସେଥିରେ ସନ୍ଦେହ ନାହିଁ । ତେବେ କଙ୍କାଳମାନଙ୍କୁ ଆଗାମେମନ୍‌ଙ୍କ ଭାଇ କୁଟୁମ୍ବ ବୋଲି ଧରିନେବା ସ୍ଲିମାନ୍‌ଙ୍କର ଭୁଲ୍ ଥିଲା । ପ୍ରକୃତରେ ସେମାନେ ହେଉଛନ୍ତି ଆଗାମେମନ୍‌ଙ୍କର ପୂର୍ବବର୍ତ୍ତୀ ମାଇସିନିର ରାଜବଂଶଜ । ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ମାଇସିନିର ମୃତ ରାଜାଙ୍କୁ କବର ଦିଆ ଯାଉଥିଲା ବୋଲି ପଯାନିଅସ୍ ଜାଣିଥିବା ସମ୍ଭବ । ମାଇସିନିର ପ୍ରାଚୀନ ସଭ୍ୟତା କଥା ଗ୍ରୀକ୍‌ମାନଙ୍କୁ ଅଜଣା ନଥିଲା । ମାଇସିନି ଓ ଟାଇରିନ୍‌ଜର ଶକ୍ତ ଓ ବିଶାଳ ଅଟ୍ଟାଳିକା ଏବଂ ତାର ମେଘନାଦ ପାଚେରୀ ଦେଖି ଗ୍ରୀକ୍‌ମାନେ ବିସ୍ମିତ ହୋଇଥିଲେ । ଯେଉଁ ବିରାଟ ଓଜନିଆ ପଥରଖଣ୍ଡମାନ ଉଠାଇ ଏ ସବୁ ନିର୍ମିତ ହୋଇଥିଲା ତାହା ମନୁଷ୍ୟର ସାଧ୍ୟାତୀତ

ବୋଲି ସେମାନେ ବିଶ୍ବାସ କରୁଥିଲେ । ମିଥ୍-ବିଳାସୀ ଗ୍ରୀକ୍‌ମାନେ ଧରି ନେଇଥିଲେ ଯେ, ଏକ ଜାତିର ଅମିତ ଶକ୍ତିଶାଳୀ ଟିଟାନ୍ ସେହି ସୁଦୃଢ଼ କୋଠାବାଡ଼ିର ନିର୍ମାତା । ସେମାନେ ହେଉଛନ୍ତି ସାଇକ୍ଲୋପିଜ୍ । ସେମାନଙ୍କ ଶରୀରରେ ଅସୁରର ବଳ । କପାଳରେ ଚକ ପରି ଗୋଟାଏ ଆଖି ଜଳୁଥାଏ । କୌଣସି ଲେପ ବ୍ୟବହାର ନ କରି ବିରାଟ ପଥରଖଣ୍ଡକୁ ଯୋଡ଼ି ସୁଦୃଢ଼ତ କୋଠାବାଡ଼ିର ନିର୍ମାଣ ରୀତିକୁ ସ୍ଥାପତ୍ୟ ବିଦ୍ୟାରେ ସାଇକ୍ଲୋପିଆନ୍ କୁହାଯାଏ ।

ପ୍ରଥମରୁ ମାଇସିନିର ଲୋକେ ସମୁଦ୍ରରେ ଜାହାଜମାନଙ୍କୁ ଲୁଟି ଧନ ଉପାର୍ଜନ କରୁଥିଲେ । ଅନ୍ୟ ଜଳଦସ୍ୟୁଙ୍କ ଠାରୁ ରକ୍ଷା ପାଇବା ପାଇଁ ସେମାନେ ଘର ଚାରିପଟେ ଉଚ ପାଚେରି ଉଠାଉଥିଲେ । ଦସ୍ୟୁବୃତ୍ତି ଦ୍ୱାରା ସମୃଦ୍ଧଶାଳୀ ନଗର ଗଢ଼ିବା ସମ୍ଭବ ନୁହେଁ ବୁଝିପାରି ମାଇସିନିଆବାସୀମାନେ ବାଣିଜ୍ୟ ଆରମ୍ଭ କଲେ । କ୍ରିଟ୍‌ର ଅଧଃପତନ ପରେ ସେମାନଙ୍କର ବାଣିଜ୍ୟ ଭଲ ଚାଲିଲା । ମାଇସିନି କ୍ରିଟ୍ ପରି ସମୃଦ୍ଧ ହେଲା ସତ, ମାତ୍ର ବିଭିନ୍ନ କ୍ଷେତ୍ରରେ କ୍ରିଟ୍ ସୃଜନ ପ୍ରତିଭାର ଯେଉଁ ସ୍ୱାକ୍ଷର ରଖିଯାଇଛି ମାଇସିନି ତାର ସମକକ୍ଷ ହୋଇ ପାରିଲା ନାହିଁ । କ୍ରିଟ୍‌ର କଳା ଓ ସ୍ଥାପତ୍ୟକୁ ମାଇସିନିରେ ଅନୁକରଣ କରା ଯାଇଥିଲା ମାତ୍ର ।

ସ୍ୱାଧୀନ ହେଲା ପରେ ମଧ୍ୟ ଆକିଆନ୍‌ମାନେ ଉନ୍ନତ ମିନୋଆନ୍ ସଭ୍ୟତାକୁ ଆଦର ଦେବା ସ୍ୱାଭାବିକ । ତେବେ କାଳକ୍ରମେ ସେମାନେ କ୍ରିଟ୍ ପ୍ରଭାବରୁ କେତେକାଂଶରେ ମୁକ୍ତ ହୋଇଥିଲେ । ଉଦାହରଣ ସ୍ୱରୂପ, ମାଇସିନିର ମୂଳ ବାସିନ୍ଦାଙ୍କ ପ୍ରଥା ଅନୁସରଣ କରି ଆକିଆନ୍‌ମାନେ ଶବକୁ କବର ଦେଲେ । ମାତ୍ର କିଛି କାଳ ପରେ ସେମାନଙ୍କ ପ୍ରଥା ପୁଣି ଚଳିଲା ଓ ଶବ ପୋଡ଼ାଗଲା । କ୍ରିଟ୍‌ର ପ୍ରଭାବ ଅକ୍ଷୁଣ୍ଣ ଥିବା ପର୍ଯ୍ୟନ୍ତ ଆକିଆନ୍‌ମାନେ ପୃଥିବୀମାତାଙ୍କୁ ପୂଜା କରୁଥିଲେ । କାଳକ୍ରମେ ଜିଅସ୍ ଓ ଅନ୍ୟାନ୍ୟ ଦେବଦେବୀଙ୍କ ପିଛା ପଡ଼ିଲେ । କ୍ରିଟ୍‌ରେ ନାରୀର ଯେଉଁ ମର୍ଯ୍ୟାଦା ଥିଲା, ମାଇସିନିଆନ୍ ସଭ୍ୟତାରେ କିମ୍ବା ସମୁଦାୟ ଗ୍ରୀକ୍ ଇତିହାସରେ ତାହା ଦେଖିବାକୁ ମିଳେ ନାହିଁ । ନୋସସ୍ ରାଜପ୍ରାସାଦର ମହିଳା ମହଲ ପ୍ରାସାଦର ଏକ ଅଂଶ । ମାତ୍ର ଗ୍ରୀକ୍ ରାଜବାଟୀର ମହିଳା ମହଲ ପୃଥକ ଭାବେ ନିର୍ମିତ । କେବଳ ରାଜବାଟୀ କାହିଁକି ଗ୍ରୀକ୍ ଘରେ ଅନ୍ତଃପୁର ଥିଲା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ।

ସଭ୍ୟତା-ନଦୀଟିର ଗୋଟିଏ ଉତ୍ସରୁ ବାହାରେ । ବାଟରେ ତା ସହିତ ଅନେକ ଉପନଦୀ ଆସି ମିଶନ୍ତି । ସେମାନଙ୍କ ପ୍ରଭାବ ବହନ କରି ମୂଳନଦୀ ବହିଚାଲେ । କ୍ରିଟ୍‌ରୁ ବାହାରିଥିବା ନଦୀଟି ପାତାଳଗାମୀ ହୋଇ ପୁଣି ମାଇସିନଠାରେ ଭୂଇଁ ଫୁଟେଇ ବାହାରିଲା । ସେହିଦିନୁ ସେ ନିରବଚ୍ଛିନ୍ନ ଭାବେ ବହି ଚାଲିଲା ତାର ଅନ୍ତିମକାଳ ପର୍ଯ୍ୟନ୍ତ ।

ମିନୋଆନ୍ ଓ ମାଇସିନିଆନ୍ ସଭ୍ୟତା ବ୍ୟତୀତ ଟ୍ରୟ ଯୁଦ୍ଧ ପୂର୍ବରୁ ଗ୍ରୀକ୍ ଜଗତରେ ରୋଡ଼ଜ୍ ସଭ୍ୟତାର ସ୍ପର୍ଶ ପାଇଥିଲା । ରୋଡ଼ଜ୍‌ଠାରୁ ଅନତିଦୂରରେ ଅବସ୍ଥିତ ସାଇପ୍ରସ୍ ପ୍ରଚୁର ତମ୍ବାଖଣିର ଦ୍ୱୀପ । ବ୍ରୋଞ୍ଜ ଯୁଗରେ (ଖ୍ରୀ. ପୂ ୩୪୦୦—୧୨୦୦) ସାଇପ୍ରସ୍, ରୋଡ଼ଜ୍ ଓ ଅନ୍ୟାନ୍ୟ ଦ୍ୱୀପକୁ ତମ୍ବା ଯୋଗାଉଥିଲା । ମାତ୍ର କ୍ରିଟ୍ ସଂସ୍ପର୍ଶରେ ଆସି ନଥିବା ପର୍ଯ୍ୟନ୍ତ ରୋଡ଼ଜ୍ ଓ ସାଇପ୍ରସ୍‌ରେ ବାଣିଜ୍ୟ ଉଦ୍ଦେଶ୍ୟରେ ନିର୍ମିତ ଜାହାଜସବୁ ଥିଲା ଅତି ସାଧାରଣ ।

କ୍ରିଟର ପତନ ପରେ ମାଇସିନର ପ୍ରଭାବ ସାଇପ୍ରସ୍ ଉପରେ ପଡ଼ିଥିଲା । ସାଇପ୍ରସରୁ ସିରିୟା ଓ କେରିଆ ବାଟ ଦେଇ ଏସିଆ ମାଇନର୍ କୂଳେ କୂଳେ ମାଇସିନିଆନ ସଭ୍ୟତା ପହଞ୍ଚିଥିଲା ଟ୍ରୟରେ । ସମୁଦ୍ର ଉପକୂଳରୁ ତିନିମାଇଲ ଦୂରରେ ଗୋଟିଏ ପାର୍ବତ୍ୟ ଅଞ୍ଚଳରେ ସ୍ଲିମାନ୍ ଟ୍ରୟକୁ ଠାବ କରିଥିଲେ ।

ସ୍ଲିମାନ୍ ଗୋଟିଏ ନୁହେଁ, ନଅଟି ଟ୍ରୟ ଆବିଷ୍କାର କରିଥିଲେ । ସେହି ଗୋଟିଏ ଅଞ୍ଚଳରୁ ବିଭିନ୍ନ ଗଭୀରତାରେ ନଅଟି ନଗର ଆବିଷ୍କୃତ ହେଲା । ଏହାର ଅର୍ଥ, ଟ୍ରୟ ନାନା କାରଣରୁ ନଅଥର ଧ୍ୱଂସ ପାଇଥିଲା । ସ୍ଲିମାନ୍ ଦ୍ୱିତୀୟ ନଗରଟିକୁ ଟ୍ରୟ ବୋଲି ଗ୍ରହଣ କରିଥିଲେ । ଆଧୁନିକ ପଣ୍ଡିତମାନେ କହନ୍ତି ଷଷ୍ଠ ନଗରଟି ହେଉଛି ଟ୍ରୟ ।

ଟ୍ରୋଜାନ୍‌ମାନେ କିଏ ? ଗୋଟିଏ ମତ ଅନୁସାରେ ସେମାନେ ମୂଳତଃ ବଲ୍‌କାନ୍ । ଖ୍ରୀଷ୍ଟପୂର୍ବ ଷୋଡ଼ଶ ଶତାବ୍ଦୀରେ ହେଲେସ୍‌ପଣ୍ଟ ଟପି ଟ୍ରୟ ଆସିଥିଲେ । ଆଉ ଅନେକ ପଣ୍ଡିତ କହନ୍ତି, ନୋସସ୍ ଧ୍ୱଂସ ହେଲା ପରେ କ୍ରିଟ୍‌ବାସୀ ଟ୍ରୟକୁ ଉଠି ଆସିଥିଲେ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀର ଭୂଗୋଳ ପଣ୍ଡିତ ଷ୍ଟ୍ରାବୋଙ୍କର ମତ ଏହିପରି । ଟ୍ରୟ ପରି କ୍ରିଟ୍‌ରେ ମଧ୍ୟ ଗୋଟିଏ ଇଦା ପର୍ବତ ଥିଲା । ଉଭୟ ଦେଶର ଲୋକଙ୍କ ପାଇଁ ଇଦା ପର୍ବତ ବଡ଼ ଗୁରୁତ୍ୱପୂର୍ଣ୍ଣ । ହୋମର୍‌ଙ୍କ ବର୍ଣ୍ଣନାରୁ ଜଣାଯାଏ, ଟ୍ରୋଜାନ୍‌ମାନେ ଗ୍ରୀକ୍‌ଭାଷା କହୁଥିଲେ ଓ ଗ୍ରୀକ୍ ଦେବତାଙ୍କୁ

ପୂଜା କରୁଥିଲେ । ମାତ୍ର ପରବର୍ତ୍ତୀ ଯୁଗର ଗ୍ରୀକ୍ କଳ୍ପନା ଟ୍ରୟକୁ ଗୋଟିଏ ଏସୀୟ ନଗର ରୂପେ ଦେଖିଛି ※ । ସେମାନଙ୍କ ପାଇଁ ଟ୍ରୟଯୁଦ୍ଧ ହୋଇଛି ଲଗାଏତ ପ୍ରାଚ୍ୟ ପାଶ୍ଚାତ୍ୟ ସଙ୍ଘର୍ଷର ପ୍ରଥମ ମାଇଲ୍ ଖୁଣ୍ଟ । ଏହି ଯୁଦ୍ଧକୁ ପ୍ରାଚ୍ୟ ଉପରେ ପାଶ୍ଚାତ୍ୟର ବିଜୟ ଭାବେ ଗ୍ରହଣ କରି ଗ୍ରୀକ୍‌ମାନେ ଅନୁପ୍ରାଣିତ ହୋଇଛନ୍ତି । ଟ୍ରୟଯୁଦ୍ଧର ହଜାରେ ବର୍ଷ ପରେ ପ୍ରାଚ୍ୟ ଜୟ କରିବାର ଅଭିଯାନରେ ବାହାରିଥିବା ଆଲେକ୍‌ଜାଣ୍ଡର ଟ୍ରୟରୁ ଯୁଦ୍ଧ ଅନୁକୂଳ କରିଥିଲେ । ଟ୍ରୟ ଅଭିଯାନରେ ଗ୍ରୀକ୍‌ମାନେ ଯେଉଁବାଟେ ଯାଇଥିଲେ, ସେହି ବଙ୍କା ବାଟରେ ଆଲେକ୍‌ଜାଣ୍ଡର୍ ସୈନ୍ୟସାମନ୍ତଙ୍କୁ ଧରି ଟ୍ରୟ ବାହାରିଲେ । ହୋମର୍‌ଙ୍କର କାବ୍ୟ ଆଲେକ୍‌ଜାଣ୍ଡର୍‌ଙ୍କର କଣ୍ଠସ୍ଥ ଥିଲା । ବାଟଯାକ ସେ ବିଭୋର ହୋଇ ହୋମର୍‌ଙ୍କୁ ଆବୃତ୍ତି କରୁଥାନ୍ତି । ସୈନ୍ୟମାନଙ୍କ ଧଇରେ ଏହାଠାରୁ ବଳି ଉତ୍ସାହବାଣୀ ଆଉ କଣ ହୋଇପାରେ ?



※ ମାଟିତଳୁ ଉଦ୍ଧାର ହୋଇଥିବା ଟ୍ରୟରୁ ସୂଚନା ମିଳେ ଯେ ମିନୋଆନ୍, ମାଇସିନିଆନ୍ ଏସୀୟ ଏବଂ ଡାନଉବ୍ ମୁହାଣ ଅଞ୍ଚଳର ସଭ୍ୟତାର ସମ୍ମିଶ୍ରଣ ଟ୍ରୟରେ ଘଟିଥିଲା ।

# ହୋମରଙ୍କ ଯୁଗ

* ଗ୍ରୀସ୍‌ର ମହାବୀରମାନେ ହୋମରୀୟ ସଭ୍ୟତାର ନାୟକ ।
* ଖ୍ରୀ: ପୂ: ୧୬୦୦—୧୦୦୦ ଗ୍ରୀସ୍‌ର ବୀରତ୍ୱର ଯୁଗ ।
* ଗ୍ରୀସ୍‌ର ମୂଳ ବାସିନ୍ଦା, ଆକଆନ୍ ଓ ଖ୍ରୀ: ପୂ: ନବମ ଶତାବ୍ଦୀରେ ଆସିଥିବା ଡୋରିଆନ୍‌ମାନେ କାଳକ୍ରମେ ମିଶିଯାଇ ଗୋଟିଏ ଗ୍ରୀକ୍‌ଜାତି ଗଢ଼ିଥିଲେ ।

ଖ୍ରୀ: ପୂ: ଦୁଇହଜାର ବେଳକୁ ୟୁରୋପର କେନ୍ଦ୍ରାଞ୍ଚଳର 'କେଲ୍‌ଟ' ଜାତିର ଗୋଟିଏ ଶାଖା ବାହାରି ପେଲୋପୋନେସିସ୍ ଅଭିମୁଖେ ଯାତ୍ରା କରିଥିଲେ । ଏମାନେ ଆକଆନ୍ ନାମରେ ପରିଚିତ । ପେଲୋପୋନେସିସ୍‌ରେ ପହଞ୍ଚିବାକୁ ସେମାନଙ୍କୁ ପାଞ୍ଚଶହ ବର୍ଷ ଲାଗିଥିଲା । ଆକଆନ୍‌ମାନେ ଗ୍ରୀକ୍ ଭାଷା ଓ ଜିଅସ୍‌ଙ୍କୁ ଧରି ଗ୍ରୀସ୍‌ରେ ପହଞ୍ଚିଥିଲେ । ମାଇସିନିଠାରେ ଆସ୍ଥାନ ଜମେଇ ସେଠାରେ ପୂର୍ବରୁ ପ୍ରତିଷ୍ଠିତ ମାଇସିନୀୟ ସଭ୍ୟତାର ଉଚ୍ଛେଦକ ହେଲେ । ଶେଷକାଳର ମାଇସିନୀୟ ସଭ୍ୟତା ଉପରେ ଆକଆନ୍‌ଙ୍କର ଛାପ ରହିଛି । ମାତ୍ର ମାଇସିନୀୟ ସଭ୍ୟତାକୁ ସମୃଦ୍ଧ କରିବା ଦିଗରେ ସେମାନଙ୍କର ଅବଦାନ ସାମାନ୍ୟ । ବାଣିଜ୍ୟ ସୂତ୍ରରେ ଗ୍ରୀସ୍‌ର ବିଭିନ୍ନ ଅଞ୍ଚଳରେ ମାଇସିନୀୟ ସଭ୍ୟତାକୁ ବିଛୁଡ଼ି ଦେବା ସେମାନଙ୍କର କୃତିତ୍ୱ ।

ଆକଆନ୍‌ମାନେ ବୀର ଜାତି । ଖ୍ରୀ. ପୂ ୧୩୦୦ରୁ ୧୧୦୦ ପର୍ଯ୍ୟନ୍ତ ଗ୍ରୀସ୍‌ରେ ସେମାନଙ୍କର ଆଧିପତ୍ୟ ବଜାୟ ଥିଲା । ଟ୍ରୟ୍‌ଯୁଦ୍ଧ ହେଉଛି ଆକଆନ୍‌ଙ୍କର ଯୁଦ୍ଧ । ଯେଉଁ

ଗ୍ରୀକ୍‌ମାନେ ଟ୍ରୟରେ ଯାଇଁ ଲଢ଼ିଥିଲେ, ହୋମର୍ ସେମାନଙ୍କୁ ଆକଆନ୍ କହନ୍ତି । ଟ୍ରୟ-ଯୁଦ୍ଧର ଗୌରବପୂର୍ଣ୍ଣ ଗାଥା ଖ୍ରୀ: ପୂ: ନବମ ଶତାବ୍ଦୀର ମହାକବି ହୋମର୍‌ଙ୍କ କାବ୍ୟରେ ବର୍ଣ୍ଣିତ । ହୋମର୍‌ଙ୍କ କାବ୍ୟ ତାଙ୍କଠାରୁ ତିନି ଶତାବ୍ଦୀ ତଳର ସମୟ ପ୍ରତି କେତେଦୂର ବିଶ୍ୱସ୍ତ, ସେ ପ୍ରଶ୍ନ ଉଠିବା ସ୍ୱାଭାବିକ୍ । କାବ୍ୟ ଭିତରୁ ଇତିହାସକୁ ଗୁଣିଆଣିବା ଅସମ୍ଭବ ପ୍ରାୟ ବ୍ୟାପାର । କିନ୍ତୁ ଏଥିରେ ବ୍ୟଥିତ ହେବାର କ'ଣ ଅଛି ? ଦୁଇହଜାର ବର୍ଷ ତଳର ଅତୀତ କେବଳ କାବ୍ୟମୟ ରୂପ ଧରି ଉଭା ହୋଇପାରେ ।

ହୋମର୍‌ଙ୍କ କାବ୍ୟ ଇତିହାସ ନୁହେ କିନ୍ତୁ ଗ୍ରୀସ୍‌ର ପ୍ରାଚୀନତମ ଇତିହାସର ପ୍ରଧାନ ଉତ୍ସ ।

ସଭ୍ୟତାର ଉଦୟକାଳୀନ ଗ୍ରୀସ୍‌କୁ ସେ ଜାତିର ଆଦିକବି ହୋମର୍‌ଙ୍କ କାବ୍ୟ ଭିତରୁ କେବଳ ଆମେ ଦେଖୁନା । ପ୍ରାଚୀନ କାଳର ଗ୍ରୀକ୍‌ମାନେ ହୋମର୍‌ଙ୍କ ମାଧ୍ୟମରେ ନିଜର ପୂର୍ବ ପୁରୁଷଙ୍କୁ ଚିହ୍ନିଥିଲେ ଓ ଆତ୍ମ ପରିଚୟ ଲାଭ କରିଥିଲେ । ହୋମର୍‌ଙ୍କର ଅଡ଼ିସି ଓ ଇଲିଆଡ଼୍ କାବ୍ୟଦ୍ୱୟ ଗ୍ରୀସ୍‌ର ଭାବମୂର୍ତ୍ତି ଗଢ଼ି ତୋଳିଛନ୍ତି । ଏ ଦୃଷ୍ଟିରୁ ହୋମର୍‌ଙ୍କ କାବ୍ୟରେ କେତେ ଇତିହାସ ଅଛି, ସେ ପ୍ରଶ୍ନ ଗୌଣ । ହୋମର୍‌ଙ୍କ ବେଳକୁ ଗ୍ରୀସ୍‌ରେ ପ୍ରଚଳିତ ଥିବା ଅନେକ ମିଥ୍ ତାଙ୍କର ମହାକାବ୍ୟ ଦ୍ୱୟରେ ରୂପ ପାଇଲେ । ଏଗୁଡ଼ିକୁ ଅବଲମ୍ବନ କରି ପ୍ରାଚୀନ ଗ୍ରୀକ୍ କବି, ନାଟ୍ୟକାରମାନେ ଅନେକ ମହାନ୍ କାବ୍ୟ, ନାଟକ ସୃଷ୍ଟି କରି ଯାଇଛନ୍ତି । ଜୀବନର ଗୂଢ଼ ସତ୍ୟକୁ ହୃଦୟଙ୍ଗମ କରାଇବାରେ ଗ୍ରୀକ ମିଥ୍‌ମାନଙ୍କର ଅଦ୍ଭୁତ କ୍ଷମତା ରହିଛି । ତେଣୁ ଏ ପର୍ଯ୍ୟନ୍ତ ମଧ୍ୟ କବି, କଳାକାର, ମନୋବିଜ୍ଞାନୀ ଓ ସମାଜ-ବିଜ୍ଞାନୀମାନେ ଆପଣାର ଅନୁଭୂତି ଓ ଚିନ୍ତାକୁ ପ୍ରକାଶ କରିବା ପାଇଁ ଗ୍ରୀକ୍ ମିଥ୍ ସବୁର ଆଶ୍ରୟ ନିଅନ୍ତି ।

ହୋମର୍‌ଙ୍କ କାବ୍ୟରେ ଯେ ଇତିହାସ ନାହିଁ ତା ନୁହେଁ । ବରଂ ସ୍ଲିମାନ୍‌ଙ୍କ ପରଠାରୁ ତାଙ୍କ କାବ୍ୟ ଇତିହାସ ପ୍ରତି ବିଶ୍ୱସ୍ତ ବୋଲି ଜଣାପଡ଼ୁଛି । ଟ୍ରୟ ଯୁଦ୍ଧକୁ ପୌରାଣିକ ଘଟଣା, ଟ୍ରୟଯୁଦ୍ଧ ଓ ତା ପୂର୍ବରୁ ମହାବୀରଙ୍କୁ ପୌରାଣିକ ଚରିତ୍ର ବୋଲି ସ୍ଲିମାନ୍‌ଙ୍କ ପର୍ଯ୍ୟନ୍ତ ଧରି ନିଆ ଯାଇଥିଲା । ମାତ୍ର ସ୍ଲିମାନ୍‌ଙ୍କ ପରବର୍ତ୍ତୀ ଗବେଷକମାନେ ପର୍ସିଅସ୍ ହେରାକ୍ଲିଜ୍, ଥିସିଅସ୍, ଜାସନ୍ ପ୍ରଭୃତି ମହାବୀରଙ୍କୁ ସତ ମଣିଷ ବୋଲି ବିଶ୍ୱାସ କରୁଛନ୍ତି ।

ହୋମର୍ କହୁଛନ୍ତି, ମହାବୀରମାନଙ୍କର ଯୁଦ୍ଧ ଦେଖିବାକୁ ଶ୍ରଦ୍ଧା କରି ଦେବରାଜ ଜିଅସ୍ ଟ୍ରୟ ଯୁଦ୍ଧ ଲଗାଇଲେ । ଏହି ଯୁଦ୍ଧରେ ଭାଗ ନେବାପାଇଁ ଆକିଲସ୍, ଆଜାକ୍ସ, ଅଡ଼ିସି ଓ ହେକ୍ଟରଙ୍କ ପରି ଯୋଦ୍ଧାମାନେ ଜନ୍ମ ନେଇଥିଲେ । ଜିଅସ୍ ସ୍ଥିର କରିଥିଲେ, ଟ୍ରୟ ମହାସମର ପରେ ବୀରତ୍ୱର ଯୁଗ ଶେଷହେବ ଓ ସାଧାରଣ ମଣିଷଙ୍କର ଯୁଗ ଆରମ୍ଭ ହେବ । ଟ୍ରୟ ଯୁଦ୍ଧ ପୂର୍ବରୁ ଗ୍ରୀସ୍‌ରେ ଯେଉଁ ମହାବୀରମାନେ ଜନ୍ମ ହୋଇଥିଲେ, ଯୁଦ୍ଧ ପରବର୍ତ୍ତୀ ବୀରମାନେ ଆଦୌ ସେମାନଙ୍କର ସମକକ୍ଷ ନୁହନ୍ତି । ଏହି ମହାବୀରଙ୍କର ଶକ୍ତି ଓ ସାମର୍ଥ୍ୟ ଅତୁଳନୀୟ । ଗ୍ରୀସ୍‌ର ଅନେକ ନଗର-ବସ୍ତି ଜଣେ ଜଣେ ମହାବୀରଙ୍କ ଦ୍ୱାରା ପ୍ରତିଷ୍ଠିତ । ଆମର ଏଥିରେ ସଂଶୟ ରହିପାରେ କିନ୍ତୁ ଗ୍ରୀକ୍‌ଙ୍କ ପାଇଁ ଏହି 'କାଳ୍ପନିକ କାହାଣୀ' ଥିଲା ବାସ୍ତବତା ଠାରୁ ଅଧିକ ସତ୍ୟ ।

ଇତିହାସ ଓ ପୁରାଣର ଦ୍ୱନ୍ଦ୍ୱ ପ୍ରସଙ୍ଗରେ ପୁଣି କହିରଖିବା ଆବଶ୍ୟକ ଯେ, ଆଦ୍ୟ ଯୁଗର ଗ୍ରୀକ୍ ମହାବୀରମାନେ ସତ ମଣିଷ ହୋଇଥିଲେ ମଧ୍ୟ ଗ୍ରୀକ୍ ଲୋକେ ସେମାନଙ୍କ ଉପରେ ଅନେକ କାଳ୍ପନିକ କାହାଣୀ ଆରୋପ କରିଥିଲେ । ଗ୍ରୀକ୍ ଜାତିର ମହାକବିଙ୍କ ଲେଖନୀ ମୂନରେ ସେମାନେ ମିଥିକାଲ୍ ଚରିତ୍ର ହୋଇଗଲେ । ମିଥ୍ ଇତିହାସ ଓ ପ୍ରାକ୍-ଇତିହାସକୁ ଯୋଡ଼ିଦିଏ । ସେତିକି ନୁହେଁ, ମଣିଷ ଜୀବନର ସ୍ୱାଦ, ଯନ୍ତ୍ରଣା ଓ ଗଭୀର ସଙ୍କଟ ଗ୍ରୀକ୍ ମିଥ୍‌ମାନଙ୍କରେ ଏତେ ଚମତ୍କାର ଭାବେ ଫୁଟିଛି ଯେ, ସେ ସବୁର ଆବେଦନ ଚିରନ୍ତନ । ମଣିଷର ଭାଗ୍ୟ ଓ ଦୁର୍ଦ୍ଦଶାର ପ୍ରତୀକ ଭାବେ ହୋମର୍ ବର୍ଣ୍ଣିତ ମିଥ୍‌ଗୁଡ଼ିକ ସବୁ କାଳରେ ବ୍ୟବହୃତ ହୋଇ ଆସୁଛନ୍ତି ।

ଯେଉଁସବୁ ପୌରାଣିକ କାହାଣୀ ଗ୍ରୀସ୍‌ର ଭାବମୂର୍ତ୍ତି ଗଢ଼ିଛନ୍ତି, ସେହିପରି କେତୋଟି ବିଶିଷ୍ଟ ମିଥ୍‌ର ଅବତାରଣା କରିବା ଏହି ଅଧ୍ୟାୟର ଉଦ୍ଦେଶ୍ୟ ।

ଗ୍ରୀକ୍ ଦେବତାଙ୍କ ବିଷୟରେ ଆମେ ଏକ ସ୍ୱତନ୍ତ୍ର ଅଧ୍ୟାୟରେ ଆଲୋଚନା କରିବୁ । ଏଠି କେବଳ ଏତିକି କହିବା ଆବଶ୍ୟକ ଯେ, ଗ୍ରୀକ୍ ଦେବତାମାନେ ମଣିଷଙ୍କୁ ଛାଡ଼ି ରହିପାରୁ ନ ଥିଲେ । ସେମାନେ ମଣିଷଙ୍କର ସବୁ ବ୍ୟାପାରରେ ମୁଣ୍ଡ ପୂରାଉଥିଲେ । ଦେବତାଙ୍କ ଜିଦ୍ ଓ ଚକ୍ରାନ୍ତ ଯୋଗୁ ନଗର ନଗର ମଧ୍ୟରେ ଯୁଦ୍ଧ ଲାଗୁଥିଲା । ପ୍ରତ୍ୟେକ ମହାବୀରଙ୍କର ଜଣେ ଆରାଧ୍ୟ ଦେବତା ଥିଲେ । ସେ ତାଙ୍କରି ଠାରୁ ସାହାଯ୍ୟ ଓ ବୁଦ୍ଧି ପାଉଥିଲେ । ସୁନ୍ଦରୀ ମାନବୀଟିଏ ସହିତ ଦିନ କେଇଟା କଟେଇ ଦେବା ଥିଲା ଦେବତାଙ୍କର

ଅନ୍ୟତମ ସଉକ୍ । ଗ୍ରୀସ୍‌ର ଆଦିଯୁଗର ମହାବୀରଙ୍କ ମଧ୍ୟରୁ ଅଧିକାଂଶ ଦେବତାଙ୍କର ପୁତ୍ର । ନଗରର ପ୍ରତିଷ୍ଠାତାମାନେ ସାଧାରଣତଃ ଜଣେ ଜଣେ ଦେବପୁତ୍ର । ଏମାନେ ପ୍ରଥମେ ନିଜ ନଗରରେ ପୂଜା ପାଇବା ସ୍ୱାଭାବିକ୍ । ମାତ୍ର ପରେ ସାରା ଗ୍ରୀସ୍‌ରେ ଏମାନେ ପୂଜା ପାଇଲେ । ହେରାକ୍ଲିଜ୍ (ବା ହରକିଉଲ୍‌ସ)ଙ୍କ ପରି ମହାବୀରଙ୍କୁ ସମଗ୍ର ଗ୍ରୀସ୍ ଦେବତା ଜ୍ଞାନ କରୁଥିଲା ।

ମନୁଷ୍ୟ, ଏପରିକି ଦେବଗଣଙ୍କୁ ବିପଦରୁ ରକ୍ଷା କରିବା ପାଇଁ ଜିଅସ୍ ମହାବୀର ହେରାକ୍ଲିଜ୍‌ଙ୍କ ଜନକ ହେବାକୁ ସ୍ଥିରକଲେ । ଦେବୀ, ମାନବୀ, କିନ୍ନରୀ ଭେଦ ନିର୍ବିଶେଷରେ ଦେବରାଜ ଜିଅସ୍ ସ୍ତ୍ରୀ ଓ ପ୍ରେମିକାଙ୍କୁ ଗ୍ରହଣ କରୁଥିଲେ । ହେରାକ୍ଲିଜ୍‌ଙ୍କ ମାଆ ଜଣେ ମାନବୀ । ସେ ହେଉଛନ୍ତି ଥିବାଜ୍ ଅନ୍ତର୍ଗତ ଟ୍ରୋଇଜେନ୍‌ର ରାଣୀ ଆଲ୍‌କାମିନି । ଆଲ୍‌କାମିନି ପରମାସୁନ୍ଦରୀ ଓ ସର୍ବଗୁଣ-ସମ୍ପନ୍ନା ବିଦୁଷୀ ନାରୀ । ତାଙ୍କର ରୂପଗୁଣ ଯୋଗୁ ସର୍ବଶ୍ରେଷ୍ଠ ବୀରଙ୍କର ଗର୍ଭଧାରିଣୀ ହେବାପାଇଁ ଜିଅସ୍ ତାଙ୍କୁ ବାଛିଲେ । ରାଜା ଯୁଦ୍ଧକୁ ଯାଇଥାନ୍ତି । ତାଙ୍କର ଛଦ୍ମବେଶ ଧରି ଜିଅସ୍ ଆଲ୍‌କାମିନିଙ୍କ ପାଖରେ ପହଞ୍ଚିଲେ । ଜିଅସ୍ ଜାଣିଥିଲେ ଏହି ବାଟ ନଧରିଲେ ପତିବ୍ରତା ଆଲ୍ କାମିନିଙ୍କୁ ପାଇବା ସମ୍ଭବ ହେବନାହିଁ ।

ଗ୍ରୀସ୍‌ର ସର୍ବଶ୍ରେଷ୍ଠ ବୀର ହେରାକ୍ଲିଜ୍‌ଙ୍କ ଜନ୍ମ ବୃତ୍ତାନ୍ତ ।

ଶୈଶବରୁ ହେରାକ୍ଲିଜ୍‌ଙ୍କ ପରାକ୍ରମ ଜଣା ପଡ଼ିଥିଲା । ଜିଅସ୍‌ଙ୍କ ସ୍ତ୍ରୀ ହେରା ଦେବୀ କିନ୍ତୁ ଈର୍ଷା ଓ କ୍ରୋଧରେ ଶିଶୁ ହେରାକ୍ଲିଜ୍‌ଙ୍କୁ ମାରି ଦେବାପାଇଁ ଦୁଇଟି ଭୟଙ୍କର ସର୍ପ ପଠାଇଥିଲେ । ଦୋଳିରେ ଝୁଲୁଥିବା ସେହି ଅସାଧାରଣ ଶିଶୁଟି କିନ୍ତୁ ଦୁଇହାତରେ ଦୁଇଟି ଯାକ ସର୍ପଙ୍କୁ ଚିପି ଧରି ମାରିଦେଲା । ହେରାଙ୍କ ଯୋଗୁ ଶିଶୁର ଯଶ ଚତୁର୍ଦ୍ଦିଗରେ ବ୍ୟାପି ଯିବାରୁ ତାରି ନାମ ରହିଲା ହେରାକ୍ଲିଜ୍ ।

ହେରାକ୍ଲିଜ୍‌ଙ୍କ ଦୈହିକ ଶକ୍ତି ଯେ ଅପରିମିତ ସେତିକି ନୁହେଁ, ଧନୁର୍ବିଦ୍ୟାରେ ସେ ଅଦ୍ୱିତୀୟ । ତାଙ୍କର ବୀରତ୍ୱପୂର୍ଣ୍ଣ କାର୍ଯ୍ୟାବଳୀ ଅଗଣିତ । ଯୁଦ୍ଧରେ ଦେବତାମାନେ ମଧ୍ୟ ହେରାକ୍ଲିଜ୍‌ଙ୍କ ସମକକ୍ଷ ନ ଥିଲେ । ଯୌବନରେ ପଦାର୍ପଣ କରି ଥେସ୍‌ପିଆ ରାଜ୍ୟରେ ମାଡ଼ିଥିବା ଦୁର୍ଦ୍ଦାନ୍ତ ସିଂହକୁ ସେ ବଧ କରିଥିଲେ । ହେରାକ୍ଲିଜ୍‌ଙ୍କ ମନୋରଞ୍ଜନ କରିବାକୁ ରାଜା ତାଙ୍କର ପଚାଶଜଣ କନ୍ୟାଙ୍କୁ ନିର୍ଦ୍ଦେଶ ଦେଇଥିଲେ । ହେରାକ୍ଲିଜ୍‌ଙ୍କ ଔରସରେ

ପ୍ରତ୍ୟେକ ରାଜକନ୍ୟା ସନ୍ତାନବତୀ ହୋଇଥିଲେ । ସେ କେତେ ଯୁଦ୍ଧରେ ଲଢ଼ିଥିଲେ ଓ କେତେ ପତ୍ନୀ ଗ୍ରହଣ କରିଥିଲେ ଉଭୟଙ୍କୁ ଗଣିବା ଅସମ୍ଭବ । ବିଭିନ୍ନ ଅଞ୍ଚଳର ଲୋକେ ହେରାକ୍ଲିଜ୍‌ଙ୍କ ବଂଶଧର ବୋଲି ପରିଚୟ ଦେବାକୁ ତାଙ୍କ ସ୍ତ୍ରୀଙ୍କର ସଂଖ୍ୟା ବଢ଼ାଇଛନ୍ତି ।

ହେରାକ୍ଲିଜ୍ କେତେ ଯୁଦ୍ଧରେ ଲଢ଼ିଥିଲେ ତାହା ଗଣିବା ସମ୍ଭବ ନୁହେଁ । ପ୍ରୋମିଥିଅସ୍‌ଙ୍କ ଉଦ୍ଧାର କରିଥିବା ତାଙ୍କର ଅନ୍ୟତମ କୀର୍ତ୍ତି ।

ପ୍ରୋମିଥିଅସଙ୍କ ଉଦ୍ଧାର କରିବା ହେରାକ୍ଲିଜ୍‌ଙ୍କର ଅନ୍ୟତମ କୀର୍ତ୍ତି । ପ୍ରୋମିଥିଅସ୍ ସ୍ୱର୍ଗରୁ ଅଗ୍ନି ଚୋରି କରି ମନୁଷ୍ୟଙ୍କୁ ଦେଇଥିବାରୁ ଜିଅସ୍‌ଙ୍କର କ୍ରୋଧର ଶିକାର ହୋଇଥିଲେ । ତାଙ୍କ କର୍ମର ଦଣ୍ଡ ସ୍ୱରୂପ ମଣିଷ ଓ ଦେବତାଙ୍କର ଅଗମ୍ୟ ଗୋଟିଏ ପାହାଡ଼ ଉପରେ ପ୍ରୋମିଥିଅସ୍‌ଙ୍କୁ ବାନ୍ଧି ଦିଆଗଲା । ଗୋଟିଏ ବିରାଟ ଶାଗୁଣା ତାଙ୍କୁ ଦିନଯାକ ଖୁମ୍ପି ଖାଏ । ଦିନରେ ସେ ଯେତିକ ମାଂସ ଖାଏ, ରାତିରେ ସେତିକ ମାଂସ କଅଁଳେ । ଫଳରେ ପ୍ରୋମିଥିଅସ୍ ମରି ନ ପାରି ଅହରହ ମରଣ ଯନ୍ତ୍ରଣା ଭୋଗୁଥାନ୍ତି । ଅନନ୍ତକାଳ ପାଇଁ ପ୍ରୋମିଥିଅସ୍‌ଙ୍କ ପ୍ରତି ଏହି ଦଣ୍ଡ ବିଧାନ ହୋଇଥିଲା । ମାତ୍ର କେତେ କାଳ ଅନ୍ତେ ତାଙ୍କ ପ୍ରତି ଜିଅସ୍‌ଙ୍କର ଦୟା ଜାତ ହେଲା । ବିଶେଷତଃ ପ୍ରୋମିଥିଅସ୍ ଜିଅସ୍‌ଙ୍କର ଗୋଟିଏ ଉପକାର କଲାପରେ ତାଙ୍କୁ ମୁକ୍ତ କରିବାକୁ ଜିଅସ୍‌ଙ୍କର ଇଚ୍ଛା ହେଲା । କଥା ହେଉଛି, ହେରାକ୍ଲିଜ୍‌ଙ୍କ ପରି ଆଉ ଜଣେ ମହାବୀରଙ୍କୁ ଜନ୍ମ ଦେବାକୁ ଇଚ୍ଛାକରି ଜିଅସ୍ ଜଳପରୀ ଥେଟିସ୍‌ଙ୍କୁ (ଯେ ପରେ ମହାବୀର ଆକିଲିସ୍‌ଙ୍କର ମାଆ ହୋଇଥିଲେ) ବିବାହ କରିବାକୁ ଚାହୁଁଥିଲେ । ପ୍ରୋମିଥିଅସ୍ ଖବର ପଠାଇଲେ ଯେ ଜିଅସ୍ ଥେଟିସ୍‌ଙ୍କୁ ବିବାହ କଲେ ଏପରି ବୀରପୁତ୍ର ଜାତ ହେବ, ଯିଏ ଦିନେ ବାହୁବଳରେ ଜିଅସ୍‌ଙ୍କ ଆସନ ମାଡ଼ିବସିବ । ଏକଥା ଶୁଣି ଥେଟିସ୍‌ଙ୍କୁ ବିବାହ କରିବାରୁ ଜିଅସ୍ ନିବୃତ୍ତ ହେଲେ ।

ଅଗ୍ନିଲାଭ କରିବା ପରେ ମନୁଷ୍ୟ ଶକ୍ତିଶାଳୀ ହେବ ଓ ଦେବତାଙ୍କୁ ଅମାନ୍ୟ କରିବ—ଏହି ଆଶଙ୍କା ଉପୁଜିବାରୁ ଜିଅସ୍ କ୍ରୋଧରେ ପ୍ରୋମିଥିଅସ୍‌ଙ୍କୁ ଦଣ୍ଡ ଦେଇଥିଲେ । ମାତ୍ର ଗୋଟିକ ପରେ ଗୋଟିଏ ମାନବୀ ସ୍ତ୍ରୀ ଗ୍ରହଣକରି ଜିଅସ୍ ଯେଉଁ ପୁତ୍ରମାନଙ୍କୁ ଜନ୍ମ ଦେଉଛନ୍ତି ତା ଫଳରେ ଜିଅସ୍‌ଙ୍କ ଠାରୁ ଅଧିକ ଶକ୍ତିଶାଳୀ ମଣିଷ ଜଣେ ଜନ୍ମ ନେବା ପର୍ଯ୍ୟନ୍ତ କଥା ଯାଉଛି—ପ୍ରୋମିଥିଅସ୍‌ଙ୍କ ଏହି ଚେତାବନୀ ଭିତରେ ତାଙ୍କର ବିଦ୍ରୂପ ସ୍ପଷ୍ଟ ।

ଯାହାହେଉ, ଜିଅସ୍‌ଙ୍କ ଅନୁମତି ନେଇ ହେରାକ୍ଲିଜ୍ ସେହି ଦୁର୍ଗମ ପର୍ବତ ଶିଖରକୁ ଉଠିଥିଲେ ଓ ଶରବନ୍ଧ ଦେବଶକ୍ତିରେ ଗଣ୍ଡସ୍ଥାନ୍ ଅତିକାୟ ଶାଗୁଣାକୁ ମାରିଥିଲେ । ମିଥ୍‌ର ଏହି ଅଂଶଟି ପରବର୍ତ୍ତୀ କାଳରେ ଯୋଡ଼ା ହୋଇଛି ବୋଲି କେତେକ ମତ ଦିଅନ୍ତି । କାଳର ଗତି ସହିତ ଗୋଟିଏ ମିଥ୍ ସହିତ କିଛି ନୂଆକଥା ଖଞ୍ଜି ହୋଇଯିବା ବିଚିତ୍ର ନୁହେଁ ।

ଟାଣ୍ଟାଲସ୍ ଜିଅସ୍‌ଙ୍କର ଆଉଜଣେ ମାନବପୁତ୍ର । ଟ୍ରୟ ଯୁଦ୍ଧର ମୁଖ୍ୟନାୟକ ଆଗାମେମନ୍ ଟାଣ୍ଟାଲସ୍‌ଙ୍କର ବଂଶଧର । ଫ୍ରିଜିଆର ରାଜା ଟାଣ୍ଟାଲସ୍ ଦେବତାଙ୍କର ଅତି ଘନିଷ୍ଠ ଥିଲେ ଓ ସେମାନଙ୍କ ସହିତ ଏକାଠି ଭୋଜନ କରୁଥିଲେ । ଥରେ ସେ ଅମୃତ (ambrosia) ଚୋରାଇଆଣି ତାଙ୍କର ମନୁଷ୍ୟ ବନ୍ଧୁମାନଙ୍କୁ ବାଣ୍ଟିଦେଲେ । ପୂର୍ବରୁ ଜିଅସ୍ ତାଙ୍କର ଆଉ ଏକ ଅପରାଧ କ୍ଷମା ଦେଇଥିଲେ । ଘଟଣାଟି ଏହିପରି—ଥରେ ଟାଣ୍ଟାଲସ୍ ଦେବତାମାନଙ୍କୁ ନିମନ୍ତ୍ରଣ କରିଥାନ୍ତି । ଖାଦ୍ୟ ନିଅଣ୍ଟ ପଡ଼ିବା ଯୋଗୁ ହେଉ ବା ଦେବତାମାନେ ସର୍ବଜ୍ଞ କି ନା ପରୀକ୍ଷା କରିବାର କୌତୂହଳ ଯୋଗୁ ହେଉ, ଟାଣ୍ଟାଲସ୍ ନିଜ ପୁଅ ପିଲପ୍‌ସ୍‌କୁ ମାରି ତା ମାଂସ ରାନ୍ଧି ପରଷିଥିଲେ । ଜିଅସ୍ ପିଲପ୍‌ସ୍‌କୁ ଜୀବଦାନ ଦେଇଥିଲେ । ପରେ ସେ ହେଲେ ଜଣେ ବିଖ୍ୟାତ ରାଜା । ମାତ୍ର ଜିଅସ୍ ଟାଣ୍ଟାଲସ୍‌ଙ୍କର ଦ୍ୱିତୀୟ ଅପରାଧଟିକୁ କ୍ଷମା କଲେନାହିଁ । ତାଙ୍କୁ ନିଜେ ବଧକରି ଯମାଳୟରେ ତାଙ୍କ ପାଇଁ ଭୟଙ୍କର ଦଣ୍ଡର ବ୍ୟବସ୍ଥା କରିଥିଲେ ।

ଜିଅସ୍‌ଙ୍କ ପୁତ୍ର ଟାଣ୍ଟାଲସ୍ ଗୋଟିଏ ମହାନ୍ ରାଜବଂଶର ପ୍ରଥମ ରାଜା । ଦେବତାଙ୍କ ପାଖରେ ଅପରାଧକରି ସେ ଭୟଙ୍କର ଦଣ୍ଡ ପାଇଥିଲେ । ଟାଣ୍ଟାଲସ୍‌ରୁ ଇଂରାଜୀ ଟାଣ୍ଟାଲାଇଜ୍ ଶବ୍ଦଟି ସୃଷ୍ଟି ।

ଟାଣ୍ଟାଲସ୍ ଗୁଡ଼ିଏ ପାଣିରେ ବୁଡ଼ି ରହିଥାନ୍ତି । ପବନରେ ପାଣିର ଲହଡ଼ି ତାଙ୍କ ଓଠରେ ବାଜୁଥାଏ । କିନ୍ତୁ ସେ ଟୋପାଏ ପାଣି ପିଇବା ସମ୍ଭବ ହୁଏନାହିଁ । କୂଳରେ ଥିବା ଫଳନ୍ତା ଗଛର ଡାଳ ପାଣି ଉପରକୁ ନଇଁ ଆସିଥାଏ । ପେନ୍ଥା ପେନ୍ଥା ସୁସ୍ୱାଦୁ ଫଳ ତାଙ୍କ ପାଟି ପାଖରେ ଝୁଲୁଥାଏ । କିନ୍ତୁ ଖାଇବାକୁ ପାଟି ମେଲାଇଲେ ପବନ ଫଳ ପେନ୍ଥାକୁ ଦୋହଲାଇ ଦିଏ । ପାଣି ଭିତରେ ବୁଡ଼ି ରହି, ପାଟି ପାଖରେ ଖାଦ୍ୟ ଥାଇ ଟାଣ୍ଟାଲସ୍ ଭୋକ ଶୋଷରେ ଛଟପଟ ହେଉଥାନ୍ତି । ଏ ଦଣ୍ଡ ଯଥେଷ୍ଟ

ନ ହେଲା ପରି ଯେ କୌଣସି ମୁହୂର୍ତ୍ତରେ ଖସିବ ଖସିବ ହେଉଥିବା ବିରାଟ ପଥରଟାଏ ତାଙ୍କ ମୁଣ୍ଡ ଉପରେ ଝୁଲୁଥାଏ ।

ପ୍ରୋମିଥିଅସ୍ ଓ ଟାଣ୍ଟାଲସ୍ ମିଥ୍ ଦୁଇଟିରୁ ଜଣାଯାଏ, ବହୁ ବିଷୟ ପରି ଭୟଙ୍କର ନରକ ଯନ୍ତ୍ରଣା ଉଦ୍ଭାବନ କରିବାରେ ଗ୍ରୀକ୍ ଜାତିର ବେଶ୍ ଦକ୍ଷତା ଥିଲା ! ଏହି ପ୍ରସଙ୍ଗରେ ସିସିଫସ୍ ମିଥ୍‌ଟି ମନକୁ ଆସେ । ସିସିଫସ୍ ଇଓଲସ୍‌ଙ୍କ ପୁତ୍ର । ଇଓଲସ୍‌ଙ୍କ ମୃତ୍ୟୁ ପରେ ଥେସାଲିର ସିଂହାସନ ସିସିଫସ୍‌ଙ୍କର ପ୍ରାପ୍ୟ ହୋଇଥିଲେ ମଧ୍ୟ ତାଙ୍କର ଭାଇ ମାଡି ବସିଲେ । ଡେଲଫାଇ ଧର୍ମପୀଠ ସହିତ ପରାମର୍ଶ କରି ସିସିଫସ୍ ଜାଣିଲେ ଯେ ଭାଇଙ୍କ ଝିଅକୁ ମନେଇ ପାରିଲେ ତା ଗର୍ଭଜାତ ସନ୍ତାନମାନେ ଠିକଣା ପ୍ରତିଶୋଧ ନେବେ । ସିସିଫସ୍ ଝିଆରୀକୁ ପ୍ରେମକଲେ ଓ ତାଙ୍କ ଔରସରୁ ଝିଆରୀର ଦୁଇଟି ସନ୍ତାନ ହେଲା । ମାତ୍ର ସିସିଫସ୍‌ଙ୍କର ଲକ୍ଷ୍ୟ ସିଂହାସନ ଉପରେ ଓ ତାଙ୍କର ପ୍ରେମ ଗୋଟାଏ ଛଳନା ବୋଲି ଜାଣିଲା ପରେ ଝିଆରୀ ନିଜର ସନ୍ତାନ ଦୁହିଁଙ୍କୁ ହତ୍ୟାକଲା । ଲୋକଙ୍କୁ ମୃତ ଶିଶୁ ଦୁହିଁଙ୍କୁ ଦେଖାଇ ସିସିଫସ୍ ପ୍ରଚାର କରିଦେଲେ ଯେ ତାଙ୍କ ଭାଇ ନିଜ କନ୍ୟା ସହିତ ପାପ-ପ୍ରଣୟରେ ଲିପ୍ତ ରହିବା ଫଳରେ ଶିଶୁ ଦୁଇଟି ଜନ୍ମ ହୋଇଥିଲେ । ଲୋକେ ଉତ୍ତ୍ୟକ୍ତ ହୋଇ ତାଙ୍କ ଭାଇଙ୍କୁ ଥେସାଲିରୁ ବିତାଡ଼ିତ କଲେ ।

ଦେବରାଜ ଜିଅସ୍‌ଙ୍କୁ ଅସନ୍ତୁଷ୍ଟ କରିଥିବାରୁ ସିସିଫସ୍‌ଙ୍କ ପାଇଁ ଯମାଳୟରେ କଠୋର ଦଣ୍ଡର ବ୍ୟବସ୍ଥା ହୋଇଥିଲା ।

ସିସିଫସ୍‌ଙ୍କର ଏହି ପାପ ପାଇଁ ସେ ଦଣ୍ଡ ପାଇବାର ଯୋଗ୍ୟ । ମାତ୍ର ଦେବତା-ମାନେ ଏ ପାପକୁ ସେମିତି କିଛି ବଡ଼ ମଣିଲେ ନାହିଁ । ସିସିଫସ୍ ଆଉ ଗୋଟିଏ ବଡ଼ ଅପରାଧ କଲେ । ସେଇଟି ଏହିପରି—ନଦୀ-ଦେବତା ତାଙ୍କ କନ୍ୟାକୁ ଖୋଜି ଖୋଜି ସିସିଫସ୍‌ଙ୍କ ପାଖରେ ପହଞ୍ଚିଲେ । ଏହି କନ୍ୟାକୁ ଜିଅସ୍ ହରଣ କରି ନେଇଥାନ୍ତି । ସିସିଫସ୍ ଏ କଥା ଜାଣିଥିଲେ କିନ୍ତୁ କିଛି ଲାଞ୍ଚ ନ ପାଇଲେ କିପରି ସତ୍ୟ ପ୍ରକାଶ କରିବେ ! ତାଙ୍କ ଦୁର୍ଗରେ ନଦୀ-ଦେବତା ଗୋଟିଏ ପ୍ରାକୃତିକ ଝରଣା ସୃଷ୍ଟି କରିଦେଲେ ସେ ଝିଅର ସନ୍ଧାନ ଦେବେ ବୋଲି ଜଣାଇଲେ । ନଦୀ-ଦେବତା ଏହି ସର୍ତ୍ତ ପୂରଣକରି ଝିଅର ଠିକଣା ପାଇଲେ । ଜିଅସ୍ କୌଣସି ପ୍ରକାରେ ନଦୀ-ଦେବତାଙ୍କ ଆକ୍ରମଣରୁ ରକ୍ଷା ପାଇଗଲେ । ଦେବରାଜଙ୍କର ସବୁ ରାଗ ପଡ଼ିଲା ସିସିଫସ୍‌ଙ୍କ ଉପରେ । ତାଙ୍କୁ ଯମାଳୟକୁ ବାନ୍ଧି ନେବାକୁ ଜିଅସ୍ ଯମରାଜାଙ୍କୁ

ଇଙ୍ଗିତ ଦେଲେ । ସିସିଫସ୍ କିନ୍ତୁ ଯମରାଜାଙ୍କୁ ଧରେଇ ଦେଲାପରି ଚତୁର । କପର ହାତକଡ଼ି ପିନ୍ଧିବାକୁ ହୁଏ ତାହା ନ ଜାଣିବାର ଛଳନା କରିବାରୁ ସିସିଫସ୍‌ଙ୍କୁ ଶିଖାଇବା ଉଦ୍ଦେଶ୍ୟରେ ଯମରାଜା ନିଜେ ହାତକଡ଼ି ପିନ୍ଧିଲେ । ସିସିଫସ୍ ଚଟାପଟ୍ ହାତକଡ଼ାର ତାଲା ଚିପିଦେଲେ । ଯମ ହେଲେ ବନ୍ଦୀ ! ଅସମ୍ଭବ ଅବସ୍ଥା । ଆଉ କେହି ମଲେନାହିଁ । ଏହାଦ୍ୱାରା ଅନ୍ୟ କାହାର କିଛି କ୍ଷତି ହେଉ ନ ହେଉ, ଯୁଦ୍ଧ-ଦେବତା କପରି ସମ୍ଭାଳି ରହନ୍ତେ ? ସିସିଫସ୍‌ଙ୍କୁ ବାନ୍ଧି ପକାଇ ସେ ଯମଙ୍କୁ ମୁକ୍ତ କଲେ । ସିସିଫସ୍ ଯମାଳୟକୁ ଘୋଷଡ଼ା ହୋଇ ଗଲେ । ସେଠାରେ ମଧ୍ୟ ଯମଙ୍କର ରାଣୀଙ୍କୁ ଠକି ସେ ପଳାଇ ଆସିଥିଲେ । ମାତ୍ର ପୁଣି ଥରେ ଧରାହୋଇ ସେ ଯମପୁରକୁ ଗଲେ ଓ ସେଠାରେ ତାଙ୍କ ପାଇଁ କଠୋର ଦଣ୍ଡର ବ୍ୟବସ୍ଥା କରାଗଲା ।

ଗୋଟିଏ ବିରାଟ ପଥର ଖଣ୍ଡକୁ ଠେଲି ଠେଲି ପାହାଡ଼ର ଶିଖର ପର୍ଯ୍ୟନ୍ତ ନେବା କାର୍ଯ୍ୟରେ ସିସିଫସ୍ ନିଯୁକ୍ତ ହେଲେ । ମାତ୍ର ଦେବତାଙ୍କ କଟ ଏପରି ଯେ ପାହାଡ଼ର ଶୀର୍ଷ ପାଖରୁ ପ୍ରତିଥର ପଥରଟି ଗଡ଼ିଆସେ । ଏହି ପଥରଟିକୁ 'ନର୍କର ପଥର' ନାମ ଦିଆଯାଇଛି । ଝାଳ ନାଳ ହୋଇ ସିସିଫସ୍ ପୁଣି ଥରେ ପାହାଡ଼ ତଳୁ ପଥରକୁ ଠେଲିବା କାମ ଆରମ୍ଭ କରନ୍ତି ।

ଏଠାରେ ସୂଚେଇ ଦିଆଯାଇପାରେ ଯେ ନୈତିକତାର ଲଙ୍ଘନ ଟାଣ୍ଟାଲସ୍ ବା ସିସିଫସ୍‌ଙ୍କର ଅସଲ ଅପରାଧ ନୁହେଁ । ଅମୃତ ଚୋରେଇ ଆଣିବା ବା ପୁଅକୁ ମାରିବା ପରି ନୃଶଂସ କାର୍ଯ୍ୟ ଯୋଗୁ ଦେବଗଣ ବିଶେଷ ବିରକ୍ତ ହେଉ ନ ଥିଲେ । ସେମାନଙ୍କର ବୁଦ୍ଧି ପରୀକ୍ଷା କରିବାର ବୁଦ୍ଧି କାଢ଼ିବାରୁ ଦେବତାମାନେ ଟାଣ୍ଟାଲସ୍‌ଙ୍କ ଉପରେ କ୍ରୁଦ୍ଧ ହୋଇ-ଥିଲେ । ସିସିଫସ୍ ଶବ୍ଦର ଅର୍ଥ ଖୁବ୍ ବୁଦ୍ଧିମାନ୍ । ତାଙ୍କର ବୁଦ୍ଧି ଯୋଗୁ ସିସିଫସ୍ ଦେବରାଜଙ୍କ କୋପ ଦୃଷ୍ଟିରେ ପଡ଼ିଲେ । ନାରୀ ହରଣ (ଝିଅ ଝିଆଣ୍ଡି ସମେତ) ବ୍ୟାପାର ଗ୍ରୀକ୍ ଦେବତାଙ୍କ ମଧ୍ୟରେ ଏତେ ପ୍ରଚଳିତ ଥିଲା ଯେ ସିସିଫସ୍‌ଙ୍କର ପ୍ରଥମୋକ୍ତ ଅପରାଧଟିକୁ ଦେବଗଣ ସାମାନ୍ୟ ମଣିଥିବେ । କିନ୍ତୁ ଲୁଚାଇନେଇ ସ୍ୱୟଂ ଦେବରାଜଙ୍କର ଗୋଟାଏ ଗୋପନୀୟ ବ୍ୟାପାର ପ୍ରକାଶ କରିଦେବା ଏକ ମାରାତ୍ମକ ଅପରାଧ । ବୁଦ୍ଧି ବଳରେ ଯମକୁ ବାନ୍ଧିବା ତା ଠାରୁ ମାରାତ୍ମକ । ମଣିଷ ଯେ ପର୍ଯ୍ୟନ୍ତ ପ୍ରକୃତିର ସନ୍ତାନ ହୋଇ ରହିଥିଲା, ସେ ପର୍ଯ୍ୟନ୍ତ ତାର ପାପପୁଣ୍ୟ ବୋଧ ଜାଗ୍ରତ ହୋଇ ନ ଥିଲା । ନୈତିକ ନିୟମ ସୃଷ୍ଟି ବୁଦ୍ଧିର କାର୍ଯ୍ୟ ।

ପଶୁବତ୍ ବଞ୍ଚିଥିବା ମଣିଷଠାରେ ବୁଦ୍ଧିର ଉଦୟ ହେଲାରୁ ସେ ମିଛ କହି ଓ ବୁଦ୍ଧି ବଳରେ ନାନା ଜାଲିଯାତି କାମ କରି ନିଜର ସ୍ୱାର୍ଥ ସାଧନ କଲା । ଅଧିକ ବୁଦ୍ଧି ହେଲା ପରେ ଯାଇ ସେ ଏ ସବୁର କୁପରିଣତି ସମ୍ପର୍କରେ ସଚେତନ ହେଲା ଓ ନୈତିକ ନିୟମ ଗଢ଼ିଲା । ତେଣୁ ସଭ୍ୟତାର ଆରମ୍ଭ ଯୁଗରେ ଆମ ଦୃଷ୍ଟିରୁ ଅତି ଜଘନ୍ୟ କାର୍ଯ୍ୟକୁ ବଡ଼ ଅପରାଧ ମନେ କରାଯାଉ ନ ଥିଲା । ମଣିଷର ବୁଦ୍ଧିକୁ କିନ୍ତୁ ଦେବତାମାନେ ସହି ପାରୁ ନ ଥିଲେ । ବୁଦ୍ଧି ବଳରେ ମଣିଷ ଶକ୍ତିଶାଳୀ ହୋଇ ଉଠିବ ବୋଲି ସେମାନେ ଭୟ କରୁଥିଲେ । ତେଣୁ ବୁଦ୍ଧିମାନ୍ ମଣିଷ ଦଣ୍ଡ ପାଇବାର ଅନେକ ଦୃଷ୍ଟାନ୍ତ ପ୍ରାଚୀନ ମିଥ୍‌ମାନଙ୍କରେ ଅଛି ।

ଟାଣ୍ଟାଲସ୍‌ଙ୍କ ପୁଅ ପିଲପ୍ସ ଗୋଟିଏ ମହାନ୍ ରାଜବଂଶର ପ୍ରତିଷ୍ଠାତା । ତାଙ୍କର ନାମାନୁସାରେ 'ପିଲୋପୋନେସିଅସ୍' ଅଞ୍ଚଳଟି ନାମିତ । କମ୍ ବୟସରୁ ପିଲପ୍ସଙ୍କୁ ଅନେକ ଝଡ଼ଝଞ୍ଜା ଭିତରେ ଗତି କରିବାକୁ ପଡ଼ିଥିଲା । ନିଜ ରାଜ୍ୟରୁ ବିତାଡ଼ିତ ହୋଇ ଅନେକ ଆଡ଼େ ଘୂରିଲା ପରେ ସେ ଏଲିସ୍ ନଗରରେ ପହଞ୍ଚିଥିଲେ । ସେଠାକାର ରାଜା ଇନମାଅସ୍‌ଙ୍କର ସୁନ୍ଦରୀ କନ୍ୟାକୁ ବିବାହ କରିବାକୁ ସେ ଦୃଢ଼ ପଣ କଲେ । ଝିଅର ବିବାହ ପାଇଁ ଇନମାଅସ ଗୋଟିଏ ସର୍ତ୍ତ ରଖିଥାନ୍ତି । ଯେଉଁ ଯୁବକ ତାଙ୍କୁ ରଥଦୌଡ଼ରେ ପରାସ୍ତ କରିବ ସେଇ ହେବ ତାଙ୍କର ଜାମାତା । ରଥ ଦୌଡ଼ରେ ଜିଣିଲେ କନ୍ୟାଲାଭ, ହାରିଲେ ମୁଣ୍ଡକାଟ । ଇନମାଅସ୍ ଯୁଦ୍ଧର ଦେବତା ଏରିଜ୍‌ଙ୍କର ପୁଅ । ପିତାଙ୍କ ଠାରୁ ସେ ଦୁଇଟି ଅତି ବେଗବାନ୍ ଦେବଅଶ୍ୱ ପାଇଥାଆନ୍ତି । ପୁଣି ଦେବ ଅଂଶରୁ ଜାତ ମିର୍‌ଟିଲସ୍ ତାଙ୍କର ବିଚକ୍ଷଣ ସାରଥି । ଏହି କାରଣରୁ ରଥଦୌଡ଼ରେ ଇନ୍‌ମାଅସ୍ ଥିଲେ ଅପରାଜେୟ । ତାଙ୍କ ସହିତ ପ୍ରତିଯୋଗିତାରେ ବିଜୟୀ ହେବାକୁ ପିଲପ୍ସ ସାଗର ଦେବତା ଓ ଅଶ୍ୱମାନଙ୍କର ପ୍ରଭୁ ପୋସିଡନ୍‌ଙ୍କୁ ପ୍ରାର୍ଥନା କଲେ । ସନ୍ତୁଷ୍ଟ ହୋଇ ପୋସିଡନ୍ ତାଙ୍କୁ ଉଡ଼ନ୍ତା ଅଶ୍ୱ ଯୋଗ୍ଯ ହୋଇଥିବା ସୁବର୍ଣ୍ଣର ରଥ ଦେଲେ । ଏହି ଅଶ୍ୱମାନେ ବିଦ୍ୟୁତ୍ ପରି ବେଗବାନ୍ ।

ପିଲପ୍ସ ଗୋଟିଏ ମହାନ୍ ରାଜବଂଶର ପ୍ରଥମ ରାଜପୁରୁଷ । ପିଲୋପୋନେସିଅସ୍ ନଗର ସଂପୃକ୍ତ ତାଙ୍କର ନାମାନୁସାରେ ନାମିତ । ରଥ ଦୌଡ଼ରେ ଇନମାଅସ୍‌ଙ୍କୁ ହରେଇ ସେ ତାଙ୍କର କନ୍ୟାଙ୍କୁ ବିବାହ କରିଥିଲେ ।

ଏହି ଦେବଦତ୍ତ ରଥରେ ବସି ଇଜିଆନ୍ ସମୁଦ୍ର ଉପରେ ନିମିଷକେ ଉଡ଼ିଯାଇ ପିଲପ୍ସ ଲେସ୍‌ବସ୍‌ରେ ପହଞ୍ଚିଲେ । ରଥର ବେଗ ସହି ନ ପାରି ପିଲପ୍ସଙ୍କ ସାରଥିର ମୃତ୍ୟୁ

ହେଲା । ଏପରି ଅଲୌକିକ ରଥ ପାଇ ମଧ୍ୟ ଇନମାଅସ୍ଙ୍କ ପ୍ରାସାଦ ପାଖରେ ପହଞ୍ଚି ପିଲପ୍ସ ଓହ୍ଲରିଗଲେ । ରାଜପ୍ରାସାଦ ଆଗରେ ପରାଜିତ ଯୁବକମାନଙ୍କର ମୁଣ୍ଡ ଧାଡ଼ି ହୋଇ ଟଙ୍ଗା ଯାଇଥିବାର ଦେଖିଲେ ମନରେ ଭୟ ଜାତ ହେବା ସ୍ୱାଭାବିକ୍ । ହେଲେ ସେମାନେ ପ୍ରତ୍ୟେକେ ଥିଲେ ବୀର ଯୁବକ । ପିଲପ୍ସ ଇନମାଅସ୍ଙ୍କ ସାରଥି ମିର୍ଥିଲସ୍ଙ୍କୁ ହାତ କଲେ । ହିପୋଡ଼ାମିଆଙ୍କ ଉପରେ ମିର୍ଥିଲସ୍ଙ୍କର ଅନେକ ଦିନରୁ ଆଖି ଥାଏ । କିନ୍ତୁ ରାଜାଙ୍କ ଭୟରେ ସେ ତାଙ୍କ ସହିତ ପ୍ରତିଯୋଗିତା କରି ପାରୁ ନ ଥିଲେ । ପିଲପ୍ସ କଥା ଦେଲେ ଯେ, ସେ ଜିଣିଲା ପରେ ହିପୋଡ଼ାମିଆଙ୍କୁ ରାତିକ ପାଇଁ ପାଇବାର ସୁଯୋଗ ମିର୍ଥିଲସ୍ଙ୍କୁ ମିଳିବ । ଏହା ଛଡ଼ା ରାଜ୍ୟରୁ ଗୋଟିଏ ଅଂଶ ସେ ପାଇବେ । ଏତିକି ଲାଞ୍ଚର ପ୍ରତିଶ୍ରୁତି ପାଇ ମିର୍ଥିଲସ୍ ରଥ ଚକର ଅଖ କାଢ଼ି ନେଇ ମହମର ଅଖ ଲଗାଇ ଦେଲେ । ଫଳରେ ଦୌଡ଼ ପ୍ରତିଯୋଗିତା ମଝିରେ ରଥ ଭାଙ୍ଗିଲା ଓ ସେଇ ଦୁର୍ଘଟଣାରେ ଇନମାଅସ୍ ମଲେ ।

ଅବଶ୍ୟ ନିଜର କଥା ରକ୍ଷା କଲା ପରି ନିର୍ବୋଧ ପିଲପ୍ସ ନୁହନ୍ତି । ଦିନେ ହିପୋଡ଼ାମିଆଙ୍କ ସହିତ ପିଲପ୍ସ ସମୁଦ୍ର କୂଳରେ ବୁଲୁଥିବା ସମୟରେ ମିର୍ଥିଲସ୍ ପୂର୍ବ ପ୍ରତିଶ୍ରୁତି ସ୍ମରଣ କରାଇ ଦେଇ ହିପୋଡ଼ାମିଆଙ୍କୁ ମାଗିଲେ । ପିଲପ୍ସ କୌଶଳରେ ମିର୍ଥିଲସ୍ଙ୍କୁ ସମୁଦ୍ର ମଝିକୁ ଠେଲି ଦେଇ ନିଶ୍ଚିନ୍ତ ହେଲେ । ତାଙ୍କର ମୃତ୍ୟୁ ପରେ ମିର୍ଥିଲସ୍ଙ୍କ ପିତା ହର୍ମିଜ୍ ଦେବ ରଥାକାରର ଏକ ନକ୍ଷତ୍ରପୁଞ୍ଜ ଆକାଶରେ ଗଢ଼ିଦେଇ ମିର୍ଥିଲସ୍ଙ୍କ ନାମରେ ନାମିତ କଲେ । ଯେଉଁ ସମୁଦ୍ରରେ ତାଙ୍କର ମୃତ୍ୟୁ ହେଲା, ସେହି ସମୁଦ୍ରର ନାମ ମିର୍ଥିଲସ୍ ସାଗର ରହିଛି । ହର୍ମିଜ୍ ଦେବଙ୍କୁ ଶାନ୍ତ କରାଇବାକୁ ପିଲପ୍ସ ତାଙ୍କର ଏକ ବଡ଼ ମନ୍ଦିର ତୋଳାଇ ଥିଲେ ।

ବୁଦ୍ଧି, ବୀରତ୍ୱ ଓ ସାହସ ବଳରେ ପିଲପ୍ସ ଅନେକ ନଗର ଜୟ କରି ସାମ୍ରାଜ୍ୟ ବିସ୍ତାର କରିଥିଲେ । ତାଙ୍କର ନାମାନୁସାରେ ତାଙ୍କ ରାଜ୍ୟର ନାମକରଣ ହୋଇଥିଲା ପିଲୋପନେସିଅସ୍—ଅର୍ଥାତ୍, ପିଲପ୍ସଙ୍କ ଦ୍ୱୀପ । ଏହାର ଅବସ୍ଥିତି ପ୍ରଧାନ ଗ୍ରୀକ୍ ଭୂଖଣ୍ଡର ଦକ୍ଷିଣରେ । ଏଲିସ୍, ଆର୍ଗୋଲିସ୍ (ରାଜଧାନୀ ନଗର ଆର୍ଗୋସ୍), କରିନ୍ଥ ଓ ଲାସିଡେମନ୍ (ରାଜଧାନୀ ନଗର ସ୍ପାର୍ଟା) ପରି ବିଶିଷ୍ଟ ନଗର ବର୍ତ୍ତମାନ ପିଲୋପନେସିଅସ୍ର ଅନ୍ତର୍ଗତ ।

ପିଲପ୍‌ସଙ୍କ ଝିଅ ଆର୍‌ଗୋସ୍‌ର ବିଖ୍ୟାତ ରଜା ପର୍ସିଅସ୍‌ଙ୍କ ପୁଅକୁ ବିବାହ କରିଥିଲେ । ଉରିଥିଅସ୍‌ ସେମାନଙ୍କର ସନ୍ତାନ । ଉରିଥିଅସ୍‌ଙ୍କର ଅକାଳ ମୃତ୍ୟୁ ଘଟିବାରୁ ପର୍ସିଅସ୍‌ଙ୍କର ସାନଭାଇ ଆର୍ଟିଆର୍ସ ସିଂହାସନ ଆରୋହଣ କଲେ । ଆଗାମେନନ୍‌ ଓ ମେନେଲାଉସ୍‌ ତାଙ୍କର ଦୁଇପୁଅ । ଦୁହେଁ ଟ୍ରୟ ଯୁଦ୍ଧର ପ୍ରଧାନ ନାୟକ । ଦୁଇ ଭାଇ ପିତାଙ୍କର ରାଜ୍ୟକୁ ବାଣ୍ଟିନେଲେ । ଆଗାମେନନ୍‌ଙ୍କ ରାଜ୍ୟର ରାଜଧାନୀ ମାଇସିନ । ମେନେଲାଉସ୍‌ଙ୍କ ରାଜ୍ୟର ରାଜଧାନୀ ସ୍ପାର୍ଟା । ଦୁଇଭାଇ ଲସିଡ଼େମନ୍‌ର ରଜାଙ୍କର ଦୁଇ ଝିଅଙ୍କୁ ବିବାହ କରିଥିଲେ । ସାନଝିଅ ହେଲେନ୍‌ ମେନେଲାଉସ୍‌ଙ୍କର ସ୍ତ୍ରୀ । ସେ ଅପୂର୍ବ ସୁନ୍ଦରୀ । ତାଙ୍କୁ କେନ୍ଦ୍ର କରି ଟ୍ରୟଯୁଦ୍ଧ ଘଟିଥିଲା ।

ପିଲପ୍‌ସଙ୍କ ବଂଶ ଇତିହାସ

ଉତ୍ତରରେ ବଓସିଆ (Boentia) ନଗର ପୁଞ୍ଜର ଗୌରବମୟ ଐତିହ୍ୟକୁ କେନ୍ଦ୍ର କରି ମହାନ୍‌ କମ୍ବଦନ୍ତୀମାନ ସୃଷ୍ଟି ହୋଇଥିଲା । ଖ୍ରୀ: ପୂ: ଚତୁର୍ଦ୍ଦଶ ଶତାବ୍ଦୀରେ ମିଶରର ବୀର ରାଜପୁତ୍ର କାଡ଼ମସ୍‌ ବଓସିଆର ପ୍ରଧାନ ନଗର ଥିବାଜ୍‌କୁ ପ୍ରତିଷ୍ଠା କରିଥିଲେ । କାଡମସ୍‌ଙ୍କର ଭଉଣୀ ଇଉରୋପ୍‌ ( Europe ) ର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଜିଅସ୍‌ ତାଙ୍କୁ ହରି ନେଲେ । ଗ୍ରୀକ୍‌ ଦେବତାଙ୍କର ରୋମାଞ୍ଚକର ପ୍ରେମ କାହାଣୀ ଶୁଣିଲେ ସେମାନଙ୍କ ପ୍ରତି ଈର୍ଷା ଆସେ । ମଣିଷ ଯାହା ସବୁ ପାଏନା ଓ ପାରେନା ସେପରି ବସ୍ତୁକୁ ଦେବତାଙ୍କ ସହିତ ଖଞ୍ଜି ଦେଇଛି ବୋଲି ଏଇ ସବୁ ପ୍ରେମ-କାହାଣୀରୁ ହୃତ୍‌ବୋଧ ହୁଏ ।

ମିଶରର ବୀର ରାଜପୁତ୍ର ହରଣ-ଗୃଲ ହୋଇଥିବା ଭଉଣୀକୁ ଖୋଜି ଖୋଜି ଆସି ଗ୍ରୀସ୍‌ରେ ଥିବାଜ୍‌ ନଗର ପ୍ରତିଷ୍ଠା କରିଥିଲେ । ସେକାଳରେ ମିଶରର ରାଜଧାନୀର ନାମ ଥିଲା ଥିବାଜ୍‌ ।

ଇଉରୋପ ସହଚରୀମାନଙ୍କ ସହିତ ସମୁଦ୍ର କୂଳରେ ବୁଲୁଥିବା ବେଳେ ପିତାଙ୍କର ଗାଈ ଗୋଠରେ ଗୋଟିଏ ଅପୂର୍ବ ସୁନ୍ଦର ତୁଷାର ଧବଳ ବୃଷଭ ଦେଖିଲେ । ବୃଷଭର ସୌନ୍ଦର୍ଯ୍ୟରେ ମୋହିତା ହୋଇ ଇଉରୋପ ତା ପାଖକୁ ଗଲେ । ହାଣ୍ଡପର ଷଣ୍ଢଟାଏ ପୁଣି ମେଣ୍ଢାଛୁଆ ପରି ଶାନ୍ତ ! ଇଉରୋପ ତା ସହିତ ଖେଳିବାକୁ ଲାଗିଲେ । ତାର ଚକଚକିଆ ଚିକ୍‌କଣ ଶିଙ୍ଘରେ ଫୁଲହାର ପିନ୍ଧାଇ ଦେଲେ । ଅଳ୍ପ ସମୟ ଭିତରେ ଶାନ୍ତ, କୌତୁକିଆ ବୃଷଭ ପିଠିରେ ବସିବାକୁ ତାଙ୍କୁ ଭୟ ଲାଗିଲା ନାହିଁ । ବୃଷଭ ଝୁଲି ଝୁଲି, ଖେଳେଇ ଖେଳେଇ ଇଉରୋପକୁ ସମୁଦ୍ର କୂଳରେ

ବୁଲନ୍ତ ବୁଲନ୍ତ ହଠାତ୍ ସମୁଦ୍ର ଭିତରକୁ ପଶିଗଲା ଓ ଇଗଲ ରୂପଧରି ତାଙ୍କୁ ପିଠିରେ ବସାଇ ଉଡ଼ାଇ ନେଲା ।

ସେ ବୃଷଭ ଆଉ କେହି ନୁହେଁ, ସ୍ୱୟଂ ଦେବରାଜ ଜିଅସ୍ । ଝିଅକୁ ଖୋଜି ବାହାର କରିବାକୁ ମିଶରର ରାଜା ପୁଅମାନଙ୍କୁ ବିଭିନ୍ନ ଦିଗରେ ପଠାଇଲେ । ଗ୍ରୀସ୍‌ର ଅନେକ ସ୍ଥାନରେ ଭଉଣୀକୁ ଖୋଜି କାଡ଼ମସ୍ କିଛି ସନ୍ଧାନ ପାଇଲେ ନାହିଁ । ଡେଲ୍‌ଫାଇ ଦେବ-ପୀଠରୁ କିଛି ସୂତ୍ର ପାଇବାର ଆଶାରଖି କାଡ଼ମସ୍ ସେଠାକୁ ଗଲେ । ଦୈବ ନିର୍ଦ୍ଦେଶ ହେଲା, ଭଉଣୀକୁ ଠାବ କରିବାର ଆଶା ପରିତ୍ୟାଗ କରି କାଡ଼ମସ୍ ଗୋଟିଏ ଗାଈର ଅନୁସରଣ କରନ୍ତୁ । ଯେଉଁଠି ଗାଈ ଥକି ପଡ଼ିଯିବ, ସେହିଠାରେ ସେ ଏକ ନଗର ପ୍ରତିଷ୍ଠା କରିବେ ।

ଗୋଟିଏ ସୁନ୍ଦର ଗାଈ କିଣି ଅନୁଚରମାନଙ୍କ ସହିତ କାଡ଼ମସ୍ ତାର ଅନୁସରଣ କଲେ । ଗାଈକୁ ମୁହୂର୍ତ୍ତେ ବିଶ୍ରାମ କରିବାକୁ ଦିଆଗଲା ନାହିଁ । ବିଓସିଆର ଗୋଟିଏ ସ୍ଥାନରେ ଗାଈ ପଡ଼ିଗଲା । କାଡ଼ମସ୍ ସେଇଠି ଥିବାଜ୍ ନଗର ପ୍ରତିଷ୍ଠା କରିଥିଲେ ।

ଗାଈଟିକୁ ଯଥାଶୀଘ୍ର ଏଥେନାଙ୍କ ପାଖରେ ଭୋଗ ଲଗାଇବା ପାଇଁ କାଡ଼ମସ୍ ତାଙ୍କର ସଙ୍ଗୀମାନଙ୍କୁ ଏରିଜ୍‌ଙ୍କ ଝରଣାରୁ ପବିତ୍ର ଜଳ ଆଣିବାକୁ ପଠାଇଲେ । ଏରିଜ୍‌ଙ୍କର ବିରାଟ ସର୍ପ ସେହି ଝରଣାର ଜଗୁଆଳୀ ବୋଲି କାହାକୁ ଜଣା ନଥିଲା । ଏହି ସର୍ପ କାଡ଼ମସ୍‌ଙ୍କର ଅନେକ ସଙ୍ଗୀକୁ ମାରି ପକାଇଲା । କ୍ରୋଧରେ କାଡ଼ମସ୍ ସର୍ପକୁ ବିନାଶ କରି ପବିତ୍ର ଜଳ ଆଣିଲେ ଓ ଏଥେନାଙ୍କ ପୂଜାକଲେ । ତାଙ୍କ ପୂଜାରେ ସନ୍ତୁଷ୍ଟ ହୋଇ ଏଥେନା ଆବିର୍ଭୂତା ହେଲେ ଓ ମୃତ ସର୍ପର ଦାନ୍ତଗୁଡ଼ିକୁ ମାଟିରେ ବୁଣିଦେବା ପାଇଁ ତାଙ୍କୁ ଉପଦେଶ ଦେଲେ । ଦେବୀଙ୍କ କଥା ମାନି କାଡ଼ମସ୍ କେତେଗୁଡ଼ିଏ ଦାନ୍ତ ମଞ୍ଜି ପରି ମାଟିରେ ବୁଣିଦେବା ମାତ୍ରେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଯୋଦ୍ଧାମାନେ ମାଟିରୁ ବାହାରି ପଡ଼ିଲେ । ସେମାନଙ୍କର 'ଯୁଦ୍ଧଂ ଦେହି' ଭାବ ଦେଖି କାଡ଼ମସ୍ ସେମାନଙ୍କ ଉପରକୁ ଢେଲାଟିଏ ଫୋପାଡ଼ିଲେ । ପରସ୍ପରକୁ ଢେଲା ପକାଇଥିବା ଦୋଷ ଦେଇ ସେମାନେ ନିଜ ମଧ୍ୟରେ ଘୋର ଯୁଦ୍ଧରେ ମାତିଲେ । ଶେଷରେ ମାତ୍ର ପାଞ୍ଚଜଣ ବଞ୍ଚିଲେ ଓ ସେମାନେ କାଡ଼ମସ୍‌ଙ୍କର ଆଜ୍ଞାବହ ହୋଇ ରହିବାପାଇଁ କଥାଦେଲେ ।

ସର୍ପକୁ ମାରିଥିବାର ଦଣ୍ଡ ସ୍ୱରୂପ କାଡ଼ମସ୍ ଆଠବର୍ଷ ଏରିଜ୍‌ଙ୍କ ଦାସହୋଇ ରହିଲେ । ଆଠବର୍ଷ ପରେ ଏଥେନା ତାଙ୍କୁ ବିଓସିଆ ଅନ୍ତର୍ଗତ ଗୋଟିଏ ରାଜ୍ୟର ରାଜା କରିଦେଲେ । ପ୍ରତ୍ନତତ୍ତ୍ୱବିତ୍‌ମାନେ ଥିବାଜ୍‌ରୁ କାଡ଼ମସ୍‌ଙ୍କର ଏକ ପ୍ରାସାଦ ପୁନରୁଦ୍ଧାର କରିଛନ୍ତି ।

ଏଥେନା କୃପା କରିବାରୁ କାଡ଼ମସ୍ ଏରିଜ୍ ଓ ଆଫ୍ରୋଡ଼ାଇଟ୍‌ଙ୍କର କନ୍ୟା ହାର୍ମୋନିଆ (ଯାହାଙ୍କ ନାମରୁ Harmonium ଶବ୍ଦ ସୃଷ୍ଟି ହୋଇଛି) ଙ୍କୁ ବିବାହ କଲେ । ଅଲିମ୍ପିଆର ସବୁ ଦେବତା ଏହି ବିବାହ ଉତ୍ସବରେ ଯୋଗ ଦେଇଥିଲେ । କୌଣସି ମନୁଷ୍ୟର ବିବାହରେ ଦେବତାଙ୍କର ଯୋଗଦାନ ସେଇ ପ୍ରଥମ । ସେମାନେ ହାର୍ମୋନିଆଙ୍କୁ ଅନେକ ମୂଲ୍ୟବାନ ଉପହାର ଦେଇଥିଲେ । ବିଖ୍ୟାତ ଲ୍ୟାଟିନ୍ କବି ଓଭିଡ଼ (ଖ୍ରୀ:ପୂ: ୪୬— ଖ୍ରୀଷ୍ଟାବ୍ଦ ୧୮ ଙ୍କର ମହାନ୍ କାବ୍ୟ Metamorphoses ରେ ଜିଅସ୍ ଓ ଇଉରୋପାଙ୍କ ପ୍ରେମଠାରୁ ଆରମ୍ଭ କରି କାଡ଼ମସ୍ ହାର୍ମୋନିଆଙ୍କ ବିବାହ ପର୍ଯ୍ୟନ୍ତ କାହାଣୀ ବର୍ଣ୍ଣିତ ହୋଇଛି ।

କାଡ଼ମସ୍‌ଙ୍କ ଅଣନାଡ଼ ଅଡ଼ିପସ୍ ଜଗତରେ ସୁବିଦିତ । ନିଜ ପିତାକୁ ହତ୍ୟାକରି ମାଆକୁ ବିବାହ କରିବା ଥିଲା ତାଙ୍କର ଭାଗ୍ୟଲିପି ।

ପିଲପ୍‌ସ ଓ କାଡ଼ମସ୍‌ଙ୍କୁ ନେଇ ସୃଷ୍ଟି ହୋଇଥିବା ମିଥ୍‌ମାନଙ୍କରେ ବସତି ସ୍ଥାପନ ପାଇଁ ଆକିଆନ୍‌ଙ୍କର ସଂଗ୍ରାମ ପ୍ରତିଫଳିତ । ବିଶେଷତଃ ଆର୍ଗୋ ଅଭିଯାନ କାହାଣୀରେ ରାଜ୍ୟପ୍ରତିଷ୍ଠା ପାଇଁ ଗ୍ରୀକ୍‌ଙ୍କର ଦୃଢ଼ସଙ୍କଳ୍ପ ଓ ସଂଗ୍ରାମ ରୂପ ପାଇଛି । ଟ୍ରୟପୂର୍ବର କାହାଣୀ ପରି ଆର୍ଗୋ ଅଭିଯାନର କାହାଣୀଟି ବୀରତ୍ୱ, ଦୁଃସାହସ, ଯୁଦ୍ଧ ଓ ପ୍ରେମ ଅଦ୍ଭୁତ କଳା କୌଶଳରେ ବୁଣା ହୋଇଥିବା ଏକ ଚିତ୍ତାକର୍ଷକ ଏପିକାଲ୍ କାହାଣୀ । ଗ୍ରୀସ୍‌ର ସୀମାଟପି ଦୂରଦୂରାନ୍ତରେ ନିଜର ଆଧିପତ୍ୟ ଜାହିର କରିବାର ପ୍ରଚେଷ୍ଟା ଓ ଅଭିଳାଷ ଏହି କାହାଣୀରେ ସୁସ୍ପଷ୍ଟ ।

ଆମେ ସଂକ୍ଷେପରେ ଆର୍ଗୋ ଅଭିଯାନ କାହାଣୀଟି ଏଠାରେ କହିବୁ । ବିଓସିଆର ରାଜା ଆଥେମାସ୍ (ସେ ସିସିଫସ୍‌ଙ୍କ ଭାଇ) କାଡ଼ମସ୍‌ଙ୍କ ଝିଅ ପ୍ରେମରେ ପଡ଼ି ତାଙ୍କୁ ବିବାହ କଲେ । ଫଳରେ ତାଙ୍କ ପ୍ରଥମରାଣୀ ନିନ୍ଦା ହେଲେ । ଦୁଇରାଣୀଙ୍କ ମଧ୍ୟରେ ବାଦ-ବିବାଦ ଲାଗି ରହିଥାଏ । ବଡ଼ ରାଣୀକୁ ଆଚ୍ଛାକରି ପାନେ ଦେବାକୁ ସାନରାଣୀ ଗୋଟିଏ

ଉପାସ୍ଥ ପାଞ୍ଚିଲେ । ରାଜ୍ୟର ନାରୀଗଣ ସାନରାଣୀକୁ ଭଲପାଆନ୍ତି । ତାଙ୍କ କଥାମାନ ସବୁ ସ୍ତ୍ରୀ ମାନେ ବାହାନକୁ ନିଆଁରେ ଭାଜି ଦେଲେ । ପୁରୁଷମାନେ କିଛି ଜାଣି ପାରିଲେ ନାହିଁ । ଯଥାବିଧି କୃଷକାମ ଆରମ୍ଭ ହେଲା । ମାତ୍ର ଦେଖାଗଲା ଯେ ରାଜ୍ୟସାରା କ୍ଷେତରେ ଗୋଟିଏ ଗଛ ବି ଜାଆଁ କୁ ନାହିଁ । ବଡ଼ ଅଦ୍ଭୁତ କଥା । କେଉଁ ଦେବତାର ଏ ଅଭିଶାପ କେଜାଣେ ? ଶୁଭାଶୁଭ ଗଣନାପାଇଁ ଡେଲ୍ଫାଇକୁ ଦୂତ ଗଲେ । ସାନରାଣୀଙ୍କ ଷଡ଼ଯନ୍ତ୍ର ଫଳରେ ଡେଲ୍ଫାଇରୁ ଖବର ଆସିଲା, ବଡ଼ରାଣୀର ପୁଅ ଫ୍ରିକ୍ସସ୍‌କୁ ବଳିଦେଲେ ଯାଇ ରାଜ୍ୟ ଦେବତାଙ୍କ କୋପରୁ ରକ୍ଷାପାଇବ ।

ବଡ଼ ଦୁଃଖରେ ଆମେଥସ୍ ପୁଅକୁ ବଳି ଦେବା ପାଇଁ ପାହାଡ ଉପରକୁ ନେଲେ । ମାତ୍ର ଠିକ୍ ସମୟରେ ହେରାକ୍ଲିଜ୍ ପହଞ୍ଚିଯାଇ ରାଜାଙ୍କ ହାତରୁ ଖଣ୍ଡା ଛଡ଼ାଇ ନେଲେ । ସେ କହିଲେ, ତାଙ୍କର ପିତା ଦେବ ଦେବ ଜିଅସ୍ ନରବଳି ବିରୁଦ୍ଧରେ । ବଡ଼ ରାଣୀ ଦେବୀ ହେରାଙ୍କର ଭକ୍ତ । ହେରାକ୍ଲିଜ୍ ରାଜାଙ୍କ ହାତରୁ ଖଣ୍ଡା ଛଡ଼ାଇ ନେବା ଅବସରରେ ଦେବୀ ଫ୍ରିକ୍ସସ୍‌ଙ୍କ ପାଖକୁ ଗୋଟିଏ ଉଡ଼ନ୍ତା ସୁବର୍ଣ୍ଣ ମେଷ ପଠାଇଦେଲେ । ଭଉଣୀ ହେଲ ସହିତ ମେଷ ପିଠିରେ ବସି ଫ୍ରିକ୍ସସ୍ ଉଡ଼ିଗଲେ । ଉଡ଼ିବା ବେଳେ ମୁଣ୍ଡ ବୁଲାଇ ଯିବାରୁ ମେଷ ପିଠିରୁ ଖସି ହେଲ ୟୁରୋପ ଓ ଏସିଆ ମଝିରେ ଥିବା ଅପ୍ରଶସ୍ତ ସମୁଦ୍ର ଗର୍ଭରେ ପଡ଼ିଲେ । ତାଙ୍କ ନାମାନୁସାରେ ଏହି ପ୍ରଣାଳୀର ନାମ ରହିଛି ହେଲେସ୍‌ପଣ୍ଟ ।

ଫ୍ରିକ୍ସସ୍ କିନ୍ତୁ ନିରାପଦରେ ହେଲେସ୍‌ପଣ୍ଟ ଟପି କଲ୍‌ଚିସ୍‌ରେ ପହଞ୍ଚିଲେ । ଏତେ ବାଧା କଟି ତାଙ୍କର ଜୀବନରକ୍ଷା ହୋଇଥିବାରୁ ସେ ଶେଷରେ ସୁବର୍ଣ୍ଣ ମେଷକୁ ଜିଅସ୍‌ଙ୍କ ପାଖରେ ବଳି ଦେଇଥିଲେ ।

ଏ ପର୍ଯ୍ୟନ୍ତ ଅସଲ ଆର୍ଗୋ ଅଭିଯାନ କାହାଣୀ ପାଖରେ ଆମେ ପହଞ୍ଚି ପାରି ନାହୁଁ ! ଗୋଟାଏ ଏପିକାଲ୍ କାହାଣୀ ପଛରେ ଦୁଇ ତିନ ପୁରୁଷର ଇତିହାସ ରହିବା ସ୍ୱାଭାବିକ୍ । କଲ୍‌ଚିସ୍ ଯେଉଁ ମେଷ ବଳି ଦେଲେ ତାର ଲୋମଶ ସୁବର୍ଣ୍ଣ ଚ୍ଛାଲକୁ କେନ୍ଦ୍ର କରି ଆର୍ଗୋ ଅଭିଯାନର ସୂତ୍ରପାତ ହେଲା ।

ବାଣିଜ୍ୟର ପ୍ରସାର ପାଇଁ ହେଲେସ୍‌ପଣ୍ଟ ଟପି ବ୍ଲାକ୍ ସି ଉପକୂଳବର୍ତ୍ତୀ ନଗରମାନଙ୍କରେ ଆଧିପତ୍ୟ ବିସ୍ତାର କରିବାର ସ୍ୱପ୍ନ ଆକିଆନ୍‌ମାନେ ଦେଖୁଥିଲେ ।

ଫ୍ରିକ୍ସସ୍ କାହାଣୀ, ଆର୍ଗୋ ଅଭିଯାନ କାହାଣୀ ସ୍ୱପ୍ନବିଭୋର ଗ୍ରୀକ୍‌ଜାତିର କଳ୍ପନା କନ୍ୟା ।

ଫ୍ରିକ୍ସସ୍‌ଙ୍କ ପିତା ଆମେଥସ୍‌ଙ୍କର ଦୁଇଭାଇ—ସିସିଫସ୍ ଓ ସାଲମୋନିଅସ୍ । ସାଲମୋନିଅସ୍‌ଙ୍କର ଗୋଟିଏ ଅତି ସୁନ୍ଦରୀ ଝିଅ ଥିଲା । ତାର ନାମ ଟିରୋ ।

ଟିରୋଙ୍କର ଜୀବନ ଯେପରି କରୁଣ ସେହିପରି ବିଚିତ୍ର । ଶୈଶବରୁ ସେ ବିମାତାଙ୍କର ନାନା ଅତ୍ୟାଚାର ସହିଥିଲେ । ଯୌବନରେ ପିତୃବ୍ୟ ସିସିଫସ୍‌ଙ୍କ ଦ୍ୱାରା ପ୍ରତାରିତ ହେଲେ ଓ ସିସିଫସ୍‌ଙ୍କ ଔରସରୁ ଜାତ ତାଙ୍କର ଦୁଇ ଶିଶୁ ସନ୍ତାନଙ୍କୁ ଟିରୋଙ୍କ ବିମାତା ମାରିଦେଲେ । ସମୁଦାୟ ଘଟଣାରେ ଦୁଃଖରେ ଭାଙ୍ଗି ପଡ଼ି ଟିରୋ ପ୍ରତିଦିନ ଏନିପିଅସ୍ ନଦୀକୂଳରେ ଘଣ୍ଟା ଘଣ୍ଟା ବସନ୍ତି । ମନର ଦୁଃଖ ଲାଘବ କରିବାକୁ ନିଘୁଞ୍ଚିଆରେ ବସି କାନ୍ଦନ୍ତି । ଏମିତି କ୍ରନ୍ଦନ ବିତିବା ଫଳରେ ଟିରୋଙ୍କ ହୃଦୟରେ ନଦୀ ପ୍ରତି ମମତା ଜାତ ହେଲା । କ୍ରମେ ମମତା ଗାଢ଼ ପ୍ରଣୟରେ ପରିଣତ ହେଲା । କିନ୍ତୁ ନଦୀ ଦେବତାଙ୍କ ଆଡ଼ୁ କୌଣସି ପ୍ରତ୍ୟୁତ୍ତର ମିଳିଲା ନାହିଁ । ସାଗର ଦେବତା ପୋସିଡନ୍ ଦେଖିଲେ, ଗୋଟିଏ ବଡ଼ ସୁଯୋଗ ଉପସ୍ଥିତ । ଶୁଖିଲାରେ ମାଛଟାଏ ଧରିହେବ । ନଦୀ ଦେବତାଙ୍କ ଛଦ୍ମବେଶରେ ପୋସିଡ଼ନ୍ ଟିରୋଙ୍କୁ ଗୋଟିଏ ନିର୍ଜ୍ଜନ ସ୍ଥାନକୁ ନେଇଗଲେ ଓ ମନ୍ତ୍ରବଳରେ ତାଙ୍କୁ ଶୁଆଇ ପକାଇଲେ । ନିଦ ଭାଙ୍ଗିବା ବେଳକୁ ଟିରୋ ଦେଖନ୍ତି, ସେ ମନର ଦେବତାଙ୍କ ବାହୁବନ୍ଧନରେ ନାହାନ୍ତି; ଜଣେ ଅଚିହ୍ନା ପୁରୁଷ ଦ୍ୱାରା ଧର୍ଷିତା ହେଉଛନ୍ତି । ନିଜର ପରିଚୟ ଦେଇ ଅଚିହ୍ନା ପୁରୁଷ କହିଲେ, ସେ ସ୍ୱୟଂ ମହାମାନ୍ୟ . ପୋସିଡ଼ନ୍ । ତାଙ୍କ ପାଖରେ ନଦୀ ଦେବତା ଅତି ସାମାନ୍ୟ । ତାଙ୍କ ଔରସରୁ ଟିରୋଙ୍କର ଉତ୍ତମ ଯମଜ ସନ୍ତାନ ଜାତ ହେବେ ।

ସିସିଫସ୍ ତାଙ୍କର ଝିଆରୀ ଟିରୋଙ୍କୁ ପ୍ରତାରିତ କରିଥିଲେ । ପରେ ସାଗର ଦେବତା ମଧ୍ୟ ତାଙ୍କୁ ପ୍ରତାରିତ କରି ଧର୍ଷଣ କରିଥିଲେ । ଗ୍ରୀସ୍‌ର ବିଖ୍ୟାତ ବୀର ଜାସନ୍ ଟିରୋଙ୍କ ନାତି ।

ଧର୍ଷଣକାରୀଙ୍କ ପରିଚୟ ଟିରୋଙ୍କ ଦୁଃଖ ଘୁଞ୍ଚାଇ ପାରିଲା ନାହିଁ । ବିମାତାଙ୍କ ଭୟରେ ସେ ନବଜାତ ଶିଶୁ ଦୁହିଁଙ୍କୁ ପାହାଡ଼ରେ ଛାଡ଼ି ଆସିଲେ । ପୋସିଡ଼ନ୍‌ଙ୍କ ଔରସରୁ ଜାତ ଟିରୋଙ୍କର ଗୋଟିଏ ସନ୍ତାନର ନାମ ପିଲିଆସ୍ ।

ପରେ, ଘଟଣା ଚକ୍ରରେ ଟିରୋ ଥେସାଲି ଅନ୍ତର୍ଗତ ଆଓଲକସ୍‌ର ରାଜାଙ୍କୁ ବିବାହ କଲେ । ତାଙ୍କର ଗୋଟିଏ ପୁଅହେଲା । ଏହାଙ୍କ ନାମ ଇସନ୍ । ନ୍ୟାୟତଃ ଆଓଲକ୍‌ସର ସିଂହାସନ ଇସନ୍‌ଙ୍କର ପ୍ରାପ୍ୟ । ମାତ୍ର ଇସନ୍‌ଙ୍କୁ ବନ୍ଦୀକରି ପିଲିଆସ୍ ରାଜାହେଲେ ।

ଜାସନ୍ ଇସନ୍‌ଙ୍କର ପୁତ୍ର । ପିଲିଆସ୍‌ଙ୍କ ଭୟରେ ଇସନ୍‌ଙ୍କର କେତେକ ବନ୍ଧୁ ଶିଶୁ ଜାସନ୍‌କୁ ନେଇ ଜଙ୍ଗଲରେ ଲୁଚି ଆସିଲେ । ଜଙ୍ଗଲରେ ଏହି ଶିଶୁକୁ ପାଳିଲେ ଚିରନ୍ । ଚିରନ୍ ଜଣେ ସେଣ୍ଟର (Centaur—ଏହାଙ୍କର ଅର୍ଦ୍ଧାଙ୍ଗ ମନୁଷ୍ୟ ଓ ଅର୍ଦ୍ଧାଙ୍ଗ ଅଶ୍ୱ । କେବଳ ଜାସନ୍‌ଙ୍କର ନୁହଁନ୍ତି; ଆକିଲିସ୍, ଇନିଆନ୍ ଓ ଆଉ କେତେକ ବିଖ୍ୟାତ ବୀରଙ୍କର ଧର୍ମପିତା ହୋଇଛନ୍ତି ଚିରନ୍) ।

ଯୌବନରେ ପଦାର୍ପଣ କରି ଜାସନ୍ ପିଲିଆସ୍‌ଙ୍କ ପାଖରେ ଉପସ୍ଥିତ ହେଲେ ଓ ନିଜର ପୈତୃକ ରାଜ୍ୟ ଫେରସ୍ତ ମାଗିଲେ । ତାଙ୍କର ତେଜ ଓ ବିକ୍ରମ ପିଲିଆସ୍‌ଙ୍କୁ ଶଙ୍କିତ କଲା । ଜାସନ୍‌ଙ୍କୁ ବିନାଶ କରିବାକୁ ସେ ଏକ କୂଟ ବୁଦ୍ଧି ପାଞ୍ଚିଲେ । ଛଳନା କରି କହିଲେ, ବୃଦ୍ଧ କାଳରେ ଶାସନ ଦାୟିତ୍ୱରୁ ଅବ୍ୟାହତି ପାଇବାକୁ ସେ ବ୍ୟାକୁଳ । ସେ ମନ ଖୁସିରେ ଜାସନ୍‌ଙ୍କୁ ରାଜ୍ୟ ଅର୍ପଣ କରିଦେବେ କିନ୍ତୁ ତା ପୂର୍ବରୁ ରାଜ୍ୟକୁ ଅଭିଶାପରୁ ରକ୍ଷା କରିବାକୁ ହେବ । କଥା ହେଉଛି, ସେମାନଙ୍କ ବଂଶର ଫ୍ରିକ୍‌ସସ୍ ସୁଦୂର କଲ୍‌ଚିସ୍‌ରେ ପ୍ରାଣତ୍ୟାଗ କଲେ । ସେଠାରେ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଯଥାବିଧି ସମାପିତ ହୋଇ ନଥିବାରୁ ଫିକ୍‌ସସ୍‌ଙ୍କ ପ୍ରେତାତ୍ମା ଶାନ୍ତିରେ ନାହିଁ । ଡେଲ୍‌ଫାଇ ଧର୍ମପୀଠର ନିର୍ଦ୍ଦେଶ ଅନୁସାରେ ସୁବର୍ଣ୍ଣର ମେଷଚ୍ଛାଲ ସହିତ ଫିକ୍‌ସସ୍‌ଙ୍କ ପ୍ରେତାତ୍ମାକୁ ନ ଆଣିବାଯାଏ ଆଓଲକସ୍ ରାଜ୍ୟର ସମୃଦ୍ଧି ସମ୍ଭବ ନୁହେଁ । ତେଣୁ ସୁବର୍ଣ୍ଣର ମେଷଚ୍ଛାଲ ଆଣିବା ପରେ ଯାଇ ଜାସନ୍ ରାଜ୍ୟ ଫେରିପାଇବେ ।

ପିଲିଆସ୍ ତାଙ୍କୁ ସାକ୍ଷାତ ମୃତ୍ୟୁ ମୁଖକୁ ପଠାଉଛନ୍ତି ବୋଲି ଜାସନ୍ ଜାଣିଥିଲେ । କଲ୍‌ଚିସ୍‌ରେ ଏରିଜ୍‌ଙ୍କର ବଗିଚାରେ ଗୋଟିଏ ଗଛରେ ସୁବର୍ଣ୍ଣ ମେଷ ଚ୍ଛାଲ ଝୁଲି ରହିଛି । ଦିନ ରାତି ଏରିଜ୍‌ଙ୍କର ଭୟଙ୍କର ଡ୍ରାଗନ୍ ତାକୁ ଜଗି ରହିଛି । ଯଦି କୌଣସି ପ୍ରକାରେ ଏହା ଚୋରି ଯାଏ ତେବେ କଲ୍‌ଚିସ୍ ରାଜାଙ୍କର ମୃତ୍ୟୁ ହେବ ବୋଲି ଭବିଷ୍ୟବାଣୀ ଥାଏ । ତେଣୁ କଲ୍‌ଚିସ୍‌ରେ କୌଣସି ବିଦେଶୀର ପ୍ରବେଶ ନିଷେଧ । ଅଚିହ୍ନା ବିଦେଶୀ କଲ୍‌ଚିସ୍‌ରେ ପଶିଲେ ମାତ୍ରେ ତାକୁ ମାରି ଦିଆଯାଏ । ଏତେ ବିପଦ ସତ୍ତ୍ୱେ ଜନ୍ମଭୂମିକୁ ଅଭିଶାପମୁକ୍ତ

କରିବାକୁ ଜାସନ୍ ସୁବର୍ଣ୍ଣ ମେଷ ଗ୍ଲୁଲ ଆଣିବା ପାଇଁ ସଂକଳ୍ପ କଲେ । ପ୍ରଥମେ ସେ ଗୋଟିଏ ବିରାଟ ଜାହାଜ ତିଆରି କରାଇଲେ । ଏହାର ନାମ ଆର୍ଗୋ (ଅର୍ଥାତ୍ ଦ୍ରୁତଗାମୀ) । ତାଙ୍କ ସହିତ ଦୁଃସାହସିକ ଅଭିଯାନରେ ଯୋଗ ଦେବାକୁ ଜାସନ୍ ଗ୍ରୀସ୍‌ର ବୀର ଯୁବକ-ମାନଙ୍କୁ ଆହ୍ୱାନ କଲେ । ଟ୍ରୟ ସହିତ ଯୁଦ୍ଧ କରିବାକୁ ଗ୍ରୀସ୍‌ର ସବୁ ବୀର ଯେପରି ଠୁଳ ହୋଇଥିଲେ; ସେହିପରି ଜାସନ୍‌ଙ୍କ ଅଭିଯାନରେ ଯୋଗ ଦେବାକୁ ତତ୍କାଳୀନ ଗ୍ରୀସ୍‌ର ବିଖ୍ୟାତ ବୀରମାନେ ଆଗ୍ରହରେ ଆଗେଇ ଆସିଲେ । ଗ୍ରୀକ୍ ବୀରଙ୍କର ଶିରୋମଣି ହେରକ୍ଲିଜ୍ କେବଳ ଜାସନ୍‌ଙ୍କ ସହିତ ଯୋଗ ଦେଲେ ନାହିଁ, ତାଙ୍କର ନେତୃତ୍ୱକୁ ମଧ୍ୟ ମାନି ନେଲେ । ହେରକ୍ଲିଜ୍‌ଙ୍କ ବ୍ୟତୀତ ରାଜା ପିଲିଆସ୍‌ଙ୍କ ପୁତ୍ର ଆକାଷ୍ଟସ୍, ଆର୍ଗୋର ଥେସ୍‌ପିଆନ୍ ନିର୍ମାତା, ଆର୍ଗୋସ୍, ଏଥେନ୍‌ସର ବୀର ରାଜପୁତ୍ର ଥିସିଅସ୍, ଏରିଜ୍‌ଙ୍କ ପୁତ୍ର ଆସ୍‌କାଲଫସ୍, ହର୍ମିଜ୍‌ଙ୍କ ପୁତ୍ର ଇଚିଅନ୍, ଆପୋଲୋଙ୍କ ପୁତ୍ର ଇଡ୍‌ମୋନ୍, ପୋସିଡନ୍‌ଙ୍କ ପୁତ୍ର ବିଚକ୍ଷଣ ଜାହାଜ କାପ୍ତାନ୍ ନାଉପ୍ଲିଅସ୍, ଟ୍ରୟ ଯୁଦ୍ଧର ବିଶିଷ୍ଟ ବୀର ଆଜାକ୍‌ସଙ୍କ ପିତା ଓଇଲଅସ୍ ଥ୍ରେସ୍‌ର କବି ଅର୍ଫିଅସ୍, ଗ୍ରୀସ୍‌ର ସର୍ବଶ୍ରେଷ୍ଠ ଶିକାରୀ କୁମାରୀ ଆଟାଲାଣ୍ଟା, * ବୋରିଆସ୍ (ଉତ୍ତର ପବନ ଦେବତା) ଙ୍କର ବୀରପୁତ୍ର (ତାଙ୍କର ପକ୍ଷ ଥିଲା ଓ ସେ ଉଡ଼ି ପାରୁଥିଲେ) କାଲାଇସ୍ ଏବଂ ଆହୁରି ଅନେକ ଦେବପୁତ୍ର ଓ ଗ୍ରୀକ୍‌ବୀର ଆର୍ଗୋ ଅଭିଯାନରେ ଯୋଗ ଦେଇଥିଲେ । ପରସ୍ପର ସହିତ ଯୁଦ୍ଧରତ ଗ୍ରୀସ୍‌ର ବଡ଼ ସବୁ ନଗର ରାଷ୍ଟ୍ରର ବୀରମାନେ ଗୋଟିଏ ଲକ୍ଷ୍ୟ ହାସଲ ପାଇଁ ଏକାଠି ହୋଇଥିବା ଗ୍ରୀକ୍ ଜାତିର ଏକ ତାତ୍ପର୍ଯ୍ୟ ପୂର୍ଣ୍ଣ ଘଟଣା ।

ସୁବର୍ଣ୍ଣର ମେଷଗ୍ଲୁଲ ଆଣିବାକୁ ଜାସନ୍ ଗୋଟିଏ ବିରାଟ ଜାହାଜ ନିର୍ମାଣ କରାଇଲେ । ତାର ନାମ ଆର୍ଗୋ । ଜାସନ୍‌ଙ୍କ ସହିତ ଗ୍ରୀସ୍‌ର ବିଖ୍ୟାତ ବୀର ମାନେ ଆର୍ଗୋ ଅଭିଯାନରେ ବାହାରିଲେ ।

ଜାସନ୍ ଓ ତାଙ୍କର ଦଳ ଅନେକ ଝଡ଼ ଝଞ୍ଜା ଭିତରେ ଗତି କରି କଲ୍‌ଚିସ୍‌ରେ ପହଞ୍ଚିଥିଲେ । ବାଟରେ ସେମାନେ ଯେଉଁସବୁ ସଙ୍କଟର ସମ୍ମୁଖୀନ ହୋଇଥିଲେ, ଏଠାରେ

---

* କୌଣସି କାରଣରୁ କାଲିଡନ୍‌ର ରାଜାଙ୍କ ଉପରେ କୁପିତା ହୋଇ ଦେବୀ ଆର୍ଟିମିସ୍ ସେ ରାଜ୍ୟରେ ଉତ୍ପାତ କରିବାକୁ ଏକ ଭୟଙ୍କର ବରାହ ପଠାଇଥିଲେ । ରାଜାଙ୍କ ଅନୁରୋଧରେ ବରାହ ବଧ କରିବାକୁ ଗ୍ରୀସ୍‌ର ବଡ଼ ବୀରମାନେ ଆସିଲେ । ସେମାନଙ୍କ ମଧ୍ୟରେ ଜାସନ୍, ଥିସିଅସ୍ ଓ ନେଷ୍ଟରଙ୍କ ପରି ମହାବୀର ଶ୍ରେଣୀ ଅନ୍ତର୍ଭୁକ୍ତ । ମାତ୍ର

ସେ ଗୁଡ଼ିକୁ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ତେବେ ଏଠାରେ ଗୋଟିଏ ଚିତ୍ତାକର୍ଷକ ଘଟଣାର ଉଲ୍ଲେଖ କରାଯାଉଛି । ବିଶ୍ରାମ ନେବା ପାଇଁ ଆର୍ଗୋ ଲେମନସ୍ ବନ୍ଦରରେ ଅଟକିଲା । ବର୍ଷକ ପୂର୍ବରୁ ଲେମ୍‌ନସ୍ ରେ ଏକ ବଡ଼ ବିପର୍ଯ୍ୟୟ ଘଟି ଯାଇଥାଏ । ଏହାର କାରଣ, ଏହି ଦ୍ୱୀପର ନାରୀ ଓ ପୁରୁଷଙ୍କ ମଧ୍ୟରେ କଳହ । ଘଟଣା ହେଉଛି, ପୁରୁଷମାନେ ସେମାନଙ୍କ ସ୍ତ୍ରୀମାନଙ୍କୁ ଅବହେଳା କରି ଥ୍ରେସୀୟ ଯୁବତୀମାନଙ୍କ ସହିତ ଦିନ କାଟିଲେ । ନିଜ ରମଣୀଙ୍କର ଦେହର ଦୁର୍ଗନ୍ଧ ସହି ନ ପାରି ପୁରୁଷମାନେ ଥ୍ରେସୀୟ ଯୁବତୀଙ୍କର ଶରଣ ଗଲେ । ଲେମନସ୍‌ର ନାରୀମାନେ ଯୋଜନଗନ୍ଧା କାହିଁକି ହେଲେ, ତାହା ନିର୍ଦ୍ଦିଷ୍ଟ ଭାବେ ଜଣାନାହିଁ ।

ପ୍ରମିଳା ରାଜ୍ୟ ଲେମ୍‌ନସ୍ ଦ୍ୱୀପରେ ଆର୍ଗୋ ଦଳ କିଛି କାଳ କଟାଇ ଥିଲେ ।

---

ସେମାନେ ସମସ୍ତେ ବିଫଳ ହେଲେ ଓ ଆଟାଲାଣ୍ଟା ବରହକୁ ମାରିଲେ । ଡେଲ୍‌ଫାଇ ଧର୍ମପୀଠରୁ ଆଟାଲାଣ୍ଟା ଜାଣିଥିଲେ ଯେ ବିବାହ କରିବା ତାଙ୍କ ପକ୍ଷରେ ମଙ୍ଗଳକର ନୁହେଁ । ମାତ୍ର ପିତା ତାଙ୍କୁ ବିବାହ ଦେବାକୁ ଚାହିଁବାରୁ ଆଟାଲାଣ୍ଟା ଗୋଟିଏ ପଣ କଲେ । ଯେଉଁ ଯୁବକ ତାଙ୍କୁ ଦୌଡ଼ ପ୍ରତିଯୋଗିତାରେ ହରାଇ ଦେବ, ସେ ତାକୁ ବିବାହ କରିବେ । କିନ୍ତୁ ଯୁବକ ହାରିଗଲେ ତାଙ୍କୁ ପ୍ରାଣ ଦେବାକୁ ପଡ଼ିବ । ଅନେକ ପ୍ରଣୟ ପ୍ରାର୍ଥୀଙ୍କୁ ମୃତ୍ୟୁ ବରଣ କରିବାକୁ ପଡ଼ିଥିଲା । ଆଟାଲାଣ୍ଟାଙ୍କ ସମକକ୍ଷ ଦୌଡ଼ାଳୀ ଗ୍ରୀସ୍‌ରେ କେହି ନଥିଲେ । ବରାହ ବଧ ସମୟରେ ଆଟାଲାଣ୍ଟାଙ୍କୁ ଦେଖି ତାଙ୍କ ପ୍ରେମରେ ପଡ଼ିଥିବା ଜଣେ ବୀର ମେଲାନିଅନ୍ ଗୋଟିଏ ବୁଦ୍ଧି କଲେ । ଆଫ୍ରୋଡାଇଟ୍‌ଙ୍କୁ ସନ୍ତୁଷ୍ଟ କରି ସେ ତିନୋଟି ସୁନା ଆତ ଆଣିଥିଲେ । ପ୍ରତିଯୋଗିତା ବେଳେ ମେଲାନିଅନ୍ ଥରି ଥରି କରି ସୁନା ଆତ ତିନୋଟିକୁ ତିନଥର ଗଡ଼େଇ ଦେଲେ । ଲୋଭରେ ସୁନା ଆତକୁ ନଇଁପଡ଼ି ଗୋଟେଇବାରେ ସମୟ ନଷ୍ଟ କରିଥିବାରୁ ଆଟାଲାଣ୍ଟା ହାରିଥିବା କାହାଣୀଟି ସୁବିଦିତ । ଆଟାଲାଣ୍ଟାଙ୍କର ବୈବାହିକ ଜୀବନର କରୁଣ ପରିସମାପ୍ତି ଘଟିଲା ।

ଶର ଚାଳନାରେ ଆଟାଲାଣ୍ଟାଙ୍କ ଲକ୍ଷ୍ୟ ଅବ୍ୟର୍ଥ । ସେତିକି ନୁହେଁ, ଦୌଡ଼ାଳୀ ଭାବେ ସେ ଥିଲେ ସମଗ୍ର ଗ୍ରୀସ୍‌ରେ ଅଦ୍ୱିତୀୟା । ତିନୋଟି ସୁନା ଆତ ଦ୍ୱାରା ପ୍ରଲୋଭିତ କରି ମେଲାନିଅନ୍ ତାଙ୍କୁ ଦୌଡ଼ ପ୍ରତିଯୋଗିତାରେ ହରାଇ ବିବାହ କରିଥିଲେ ।

ଅନୁମାନ କରାଯାଏ, ଲେମ୍‌ନସ୍‌ର ନାରୀମାନେ ଓଡ଼୍ ନାମକ ଗଛରୁ ନୀଳ ରଙ୍ଗ ପ୍ରସ୍ତୁତ କରୁଥିଲେ । ଓଡ଼୍ ଗଛର ଗନ୍ଧ ଉତ୍କଟ ।

ପୁରୁଷଙ୍କର ଢଙ୍ଗ ଦେଖି ସ୍ତ୍ରୀମାନେ ନିର୍ଦ୍ଦୟ ଭାବେ ନିଜ ନିଜର ସ୍ୱାମୀଙ୍କୁ ହତ୍ୟା କରିଥିଲେ । ଲେମ୍‌ନସ୍‌ରେ ନାରୀ-ଶାସନ ପ୍ରଚଳିତ ଥିଲା ବୋଲି ଅନୁମାନ କରାଯାଏ । ଯାହାହେଉ, ଏହି ଦ୍ୱୀପରୁ ପୁରୁଷ ଜାତି ଲୋପ ପାଇଲା । ଆର୍ଗୋ ଜାହାଜ ସେମାନଙ୍କର ଦ୍ୱୀପ ଆଡ଼କୁ ଅଗ୍ରସର ହେଉଥିବାର ଦେଖି ଲେମ୍‌ନସ୍‌ର ରମଣୀମାନେ ମନେକଲେ, ଥ୍ରେସ୍ ସେମାନଙ୍କ ରାଜ୍ୟ ଅଧିକାର କରିବାକୁ ଆସୁଛି । ମାତ୍ର ଠିକ୍ ସମ୍ବାଦ ପାଇବା ପରେ ବୀର ଗ୍ରୀକ୍ ଯୁବକଙ୍କ ସହିତ ବନ୍ଧୁତା କରିବାକୁ ସେମାନେ ସ୍ଥିର କଲେ । ବିଧବା ନାରୀମାନେ ହୃଦୟଙ୍ଗମ କଲେ, ଏ ଏକ ପରମ ସୁଯୋଗ ସମାଗତ । ବୀର ଗ୍ରୀକ୍ ଯୁବକମାନଙ୍କୁ ପଟେଇ ରଖିପାରିଲେ ଯାଇ ଲେମ୍‌ନସ୍ କାଳକ୍ରମେ ଜନଶୂନ୍ୟ ହେବାର ବିପଦରୁ ରକ୍ଷା ପାଇବ । ଯୁବତୀ ନାରୀଙ୍କର ପ୍ରେମ ସମ୍ଭାଷଣରେ ଭୁଲି ଆର୍ଗୋ ଦଳ ସେମାନଙ୍କ ଆତିଥ୍ୟ ଗ୍ରହଣ କଲେ ଓ ରହୁ ରହୁ ବର୍ଷେ ବିତିଗଲା । ସେମାନଙ୍କର ସନ୍ତାନମାନେ ଜନ୍ମ ହେବାକୁ ଲାଗିଲେ । ଗ୍ରୀକ୍ ବୀରଙ୍କର ଏପରି କାଣ୍ଡ କାରଖାନା ଦେଖି ହିନେ ହେର୍କ୍ୟୁଲ୍ସ୍ ରାଗରେ ସମସ୍ତଙ୍କୁ ଗୋଟି ଗୋଟି କରି ଡାକି ଏକାଠି କଲେ ଓ ଆର୍ଗୋ ଉପରକୁ ଉଠାଇ ଜାହାଜ ଛାଡ଼ିଲେ ।

ବହୁ ବନ୍ଧୁଙ୍କର ସାହାଯ୍ୟ, ବହୁ ଶତ୍ରୁ ଓ ପ୍ରତିବନ୍ଧକର ମୁକାବିଲା କରି ଆର୍ଗୋ ଦଳ କଲ୍‌ଚିସ୍‌ରେ ପହଞ୍ଚିଲା । ଦେବୀ ହେରା ଓ ଦେବୀ ଏଥେନାଙ୍କର ପ୍ରିୟ ଭକ୍ତ ଜାସନ୍ କିପରି କୃତକାର୍ଯ୍ୟ ହେବେ ସେଥିପାଇଁ ଦୁଇ ଦେବୀ ଉପାୟ ସ୍ଥିର କରିଥାନ୍ତି । ବିଚକ୍ଷଣା ରାଜଜେମା ମିଡ଼ିଆର ସାହାଯ୍ୟରେ କାର୍ଯ୍ୟ ସିଦ୍ଧ ହୋଇପାରିବ । ମାତ୍ର ମିଡ଼ିଆ କାହିଁକି ପିତାଙ୍କର ଶତ୍ରୁକୁ ସାହାଯ୍ୟ କରିବେ ? ସେଥିପାଇଁ ଏକମାତ୍ର ପନ୍ଥା ହେଉଛି, ମିଡ଼ିଆ ହୃଦୟରେ ଜାସନ୍‌ଙ୍କ ପ୍ରତି ପ୍ରେମ ସୃଷ୍ଟି କରିବା । ଏରସ୍ (ଗ୍ରୀସ୍‌ର କନ୍ଦର୍ପ)ଙ୍କ ସାହାଯ୍ୟ ବଳରେ ଏ କଥା ହୋଇ ପାରିବ । ଜାସନ୍‌ଙ୍କ ସହିତ ରାଜଜେମାର ଯେଉଁ ଚକ୍ଷୁ ହେବା ମୁହୂର୍ତ୍ତରେ ଏରସ୍ ତାକୁ ଲକ୍ଷ୍ୟ କରି ଶର ବିନ୍ଧିବେ । କିଛି ଲାଞ୍ଚ ପାଇ ଏରସ୍ ଏ କାର୍ଯ୍ୟ କରିବାକୁ ରାଜି ହୋଇଗଲେ ।

ଫ୍ରିକ୍ସସ୍‌ଙ୍କର ଜଣେ ପୁଅକୁ ଧରି ଜାସନ୍ ରାଜାଙ୍କ ପାଖକୁ ଗଲେ ଓ ସୁବର୍ଣ୍ଣର ମେଷଚର୍ମ ଦାବୀକଲେ । ରାଜା ଦେଖିଲେ ଜାସନ୍‌ଙ୍କୁ ସିଧାସଳଖ ମନା କରିଦେବା ସୁବିଧା କଥା ନୁହେଁ । ସେ ସର୍ତ୍ତ ରଖିଲେ ଯେ ହିଫାଷ୍ଟସ୍ ଦେବତା ଗଢ଼ିଥିବା ଦୁଇଟି ଭୟଙ୍କର ବୃଷଭକୁ ଯୋଚି ଜାସନ୍ ଏରିଜ୍‌ଙ୍କ ମନ୍ଦିର ଜମି ଚାଷ କରିପାରିଲେ ତାଙ୍କର ଦାବୀ ପୂରଣ ହେବ । ଏହି ବୃଷଭଙ୍କର ପିତ୍ତଳର ଗୋଡ଼ । ନାକ ପୁଡ଼ାରୁ ଅଗ୍ନି ନିର୍ଗତ ହେଉଥାଏ । କାଡ଼୍‌ମସ୍ ଯେଉଁ ସର୍ପଦନ୍ତ ବୁଣିଥିଲେ ରାଜାଙ୍କ ପାଖରେ ସେହି ସର୍ପଦନ୍ତରୁ କିଛି ଥିଲା । ଜମି ଚଷିଲା ପରେ ଜାସନ୍‌ଙ୍କୁ ଏହି ଦନ୍ତ ବୁଣିବାକୁ ହେବ ।

କାଲ୍‌ଚିସ୍‌ର ରାଜା ମେଷଚର୍ମ ଦେବାକୁ ସିଧା ମନା ନ କରି ଗୋଟିଏ ଅସମ୍ଭବ ସର୍ତ୍ତ ବାଢ଼ିଲେ । ଜାସନ୍‌ଙ୍କ ପ୍ରେମରେ ପଡ଼ିଯାଇ ବିଚକ୍ଷଣା ରାଜଜେମା ମିଡ଼ିଆ ତାଙ୍କୁ ସାହାଯ୍ୟ କଲେ । ମିଡ଼ିଆଙ୍କ ଜୀବନ ଘଟଣା ବହୁଳ ଓ ସେ ଗ୍ରୀସ୍‌ର ଜଣେ ବିଖ୍ୟାତ ନାରୀ ।

ରାଜାଙ୍କ ସହିତ ଜାସନ୍ ଉଚିବାଚ ହେଉଥିବା ସମୟରେ ମିଡ଼ିଆ ଭିତରୁ ଆସି ପହଞ୍ଚିଲେ । ଏରସ୍ ଏ ସୁଯୋଗ ଛାଡ଼ିଲେ ନାହିଁ । ସନ୍ଧ୍ୟାବେଳେ ଜାସନ୍ ନିଜ ପ୍ରକୋଷ୍ଠରେ ବସି ଚିନ୍ତାମଗ୍ନ ଥିବା ସମୟରେ ମିଡ଼ିଆଙ୍କ ଦୂତ ଆସି ପହଞ୍ଚିଲା । ମିଡ଼ିଆ ଖବର ପଠାଇଥାନ୍ତି, ତାଙ୍କୁ ବିବାହ କରିବାକୁ ରାଜି ହେଲେ ସେ ଜାସନ୍‌ଙ୍କୁ ସାହାଯ୍ୟ କରିବେ । ଦେବତାଙ୍କୁ ସାକ୍ଷୀ ରଖି ଜାସନ୍ ଖବର ପଠାଇଲେ, ମିଡ଼ିଆଙ୍କ ସାହାଯ୍ୟରେ କୃତକାର୍ଯ୍ୟ ହେଲେ ସେ ଆନନ୍ଦରେ ତାଙ୍କୁ ଜୀବନ ସଙ୍ଗିନୀ ରୂପେ ବାଛିନେବେ ।

ମିଡ଼ିଆ ଗୁଣିଗାରେଡ଼ି ବିଦ୍ୟାରେ ଅଦ୍ୱିତୀୟା । ସେ ଜାସନ୍‌ଙ୍କୁ ଗୋଟିଏ ବୋତଲରେ ମନ୍ତ୍ରସିଦ୍ଧ ଫୁଲରସ ଦେଲେ । ତାହା କିଛି ସାଧାରଣ ଫୁଲର ରସ ନୁହେଁ । ପ୍ରୋମିଥିଅସ୍ ଦଣ୍ଡ ଭୋଗୁଥିବା ବେଳେ ତାଙ୍କ ଶରୀରରୁ ଝରିଥିବା ରକ୍ତରୁ ଯେଉଁ ଫୁଲ ଫୁଟିଥିଲେ ସେଇ ଫୁଲର ରସକୁ ମନ୍ତୁରେଇ ମିଡ଼ିଆ ଦେଇଥିଲେ । ଏହାକୁ ଦେହରେ ବୋଳିବା ଫଳରେ ବୃଷଭଙ୍କର ନାସିକାରୁ ନିର୍ଗତ ହେଉଥିବା ଅଗ୍ନିଶିଖାର ତାପରୁ ଜାସନ୍ ରକ୍ଷା ପାଇବେ । ମିଡ଼ିଆଙ୍କ ଠାରୁ ଏହିପରି ସାହାଯ୍ୟ ପାଇ ଜାସନ୍ ସେହି ଭୟଙ୍କର ବୃଷଭଦ୍ୱୟଙ୍କୁ ବଳପୂର୍ବକ ଯୋଚି ଜମି ଚଷିଲେ ଓ ରାତିରେ ସର୍ପଦନ୍ତ ବୁଣିଲେ । ନିମିଷକେ ଭୂଇଁରୁ ସଶସ୍ତ୍ର ଯୋଦ୍ଧାମାନେ ବାହାରି ପଡ଼ିଲେ । କାଡ଼୍‌ମସ୍‌ଙ୍କ ପରି ଜାସନ୍ ସେମାନଙ୍କ ଉପରକୁ ଢେଲାଟିଏ ଫୋପାଡ଼ିବାରୁ ପରସ୍ପର ସହିତ ଯୁଦ୍ଧ କରି ସମସ୍ତେ ମଲେ ।

ଜାସନ୍ ଅସମ୍ଭବ ସର୍ତ୍ତ ପୂରଣ କରି ପାରିବେ ବୋଲି ରାଜାଙ୍କର ବିଶ୍ୱାସ ନ ଥିଲା । ଜାସନ୍ ସଫଳ ହେଲା ପରେ ରାଜା ନିଜ କଥା ରକ୍ଷା ନ କରି ତାଙ୍କ ସହିତ ଖେଳିଲେ । ଶେଷରେ ମିଡ଼ିଆଙ୍କ ସାହାଯ୍ୟରେ ତାଙ୍କୁ ସୁବର୍ଣ୍ଣର ମେଷଗୁଚ୍ଛଳ ମିଳିଲା । ଆର୍ଗୋ ଜାହାଜଠାରୁ ମଧ୍ୟ ଆକାରରେ ବଡ଼ ଗୋଟିଏ ସର୍ପ ବିନିଦ୍ର ରହି ସୁବର୍ଣ୍ଣର ଗୁଚ୍ଛଳକୁ ଜଗିଥାଏ । ମିଡ଼ିଆ ମନ୍ତ୍ର ବଳରେ ତାକୁ ଶୁଆଇ ପକାଇବାରୁ ଜାସନ୍ ସୁବର୍ଣ୍ଣର ମେଷଗୁଚ୍ଛଳ ନେଇ ଆସିଲେ ।

ମିଡ଼ିଆଙ୍କୁ ସାଙ୍ଗରେ ଧରି ଜାସନ୍ କଲ୍ଚିସ୍ ଛାଡ଼ିଲେ । ଫେରିବାବେଳେ କମ୍ ବିପଦର ସମ୍ମୁଖୀନ ହେବାକୁ ପଡ଼ିଲା ନାହିଁ । ବାଟରେ ହେଲେସ୍ପଣ୍ଟଠାରେ ଟ୍ରୋଜାନ୍ ମାନଙ୍କ ସହିତ ସଂଗ୍ରାମ ହେବ ବୋଲି ଆର୍ଗୋଦଳ ଆଶଙ୍କା କରୁଥାନ୍ତି । ସେମାନଙ୍କ ସହିତ ହେରକ୍ଲିଜ୍ଙ୍କ ବନ୍ଧୁ ରାଜାମାନେ ଦେଇଥିବା ଛଅଟି ଯୁଦ୍ଧ ଜାହାଜ ଥାଏ । ଟ୍ରୟ ପାଖରେ ଜାହାଜ ଅଟକାଇ ହେରକ୍ଲିଜ୍ ଲଓମିଡ଼ନ୍ଙ୍କ ପାଖକୁ ଯାଇଥିଲେ । ପୂର୍ବରୁ ହେରକ୍ଲିଜ୍ ଦୁଇଟି ଦୁର୍ଦ୍ଧାନ୍ତ ମଣିଷଖିଆ ଅଶ୍ୱ ଲଓମିଡନ୍ଙ୍କ ଜିମା ଛାଡ଼ିଥାନ୍ତି । ଏହି ଅଶ୍ୱଦ୍ୱୟଙ୍କୁ ଫେରାଇବାକୁ ରାଜା କୁଣ୍ଠିତ ହେଉଛନ୍ତି ଦେଖି ହେରକ୍ଲିଜ୍ ତାଙ୍କୁ ଓ ତାଙ୍କର ପୁଅମାନଙ୍କୁ ମାରି ପକାଇଲେ । କେବଳ ରାଜାଙ୍କର ଶିଶୁପୁତ୍ର ପ୍ରିୟାମ୍ଙ୍କ ବଞ୍ଚି ରହିଲା । ପ୍ରିୟାମ୍ଙ୍କ ଅମଳରେ ଗ୍ରୀସ୍ ଓ ଟ୍ରୟ ମଧ୍ୟରେ ମହାସମର ଘଟିଲା ।

ସୁବର୍ଣ୍ଣ ମେଷଗୁଚ୍ଛଳ ଧରି ଫେରିବା ବାଟରେ ଆର୍ଗୋଦଳ ସହିତ ଟ୍ରୋଜାନ୍ଙ୍କର ସଂଗ୍ରାମ ହେଲା । ଗ୍ରୀସ୍ ସହିତ ଟ୍ରୟର ଏଇ ପ୍ରଥମ ବିବାଦ । ପରେ ଟ୍ରୟ ମହା-ଯୁଦ୍ଧରେ ଦୁଇଦେଶ ପରସ୍ପରକୁ ଭେଟିଥିଲେ ।

ଆର୍ଗୋଦଳର ସମସ୍ତେ ମୃତ୍ୟୁ ମୁଖରେ ପଡ଼ିଛନ୍ତି ବୋଲି ଭୁଲ୍ ଖବର ପାଇ ପିଲିଆସ୍ ନିଶ୍ଚିନ୍ତ ଥାଆନ୍ତି । ଜାସନ୍ ଫେରିଆସି ଶୁଣିଲେ, ପିଲିଆସ୍ ତାଙ୍କର ପିତାମାତାଙ୍କୁ ହତ୍ୟା କରିଛନ୍ତି । ମିଡ଼ିଆଙ୍କ ସାହାଯ୍ୟରେ ସେ ପିଲିଆସ୍ଙ୍କୁ ହତ୍ୟାକରି ନିଜର ପୈତୃକ ରାଜ୍ୟ ଫେରି ପାଇଲେ । ମିଡ଼ିଆଙ୍କ ବାପା କରିନ୍ଥ ରାଜାଙ୍କ ପୁତ୍ର । କୌଣସି କାରଣରୁ ତାଙ୍କ ବାପା କଲ୍ଚିସ୍ର ଅଧିପତି ହୋଇଥିଲେ । କରିନ୍ଥର ତତ୍କାଳୀନ ରାଜାଙ୍କର ମୃତ୍ୟୁହେବାରୁ ରାଜ୍ୟଲୋକେ ମିଡ଼ିଆଙ୍କର ସ୍ୱାମୀ ଜାସନ୍ଙ୍କୁ ସିଂହାସନ ଅର୍ପଣ କଲେ । ଜାସନ୍ ଓ ମିଡ଼ିଆ ସୁଖରେ ଦଶବର୍ଷ କଟାଇବା ପରେ ଦୁହିଁଙ୍କ ଜୀବନର ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ଜାସନ୍ ଥିବାଜ୍ ରାଜକନ୍ୟାଙ୍କ ପ୍ରେମରେ ପଡ଼ିଲେ । ସେଥିପାଇଁ ମିଡ଼ିଆଙ୍କ ସହିତ ତାଙ୍କର କଳି ହେଲା । ଶେଷରେ ଥିବାଜ୍ ରାଜକନ୍ୟାଙ୍କୁ

ସଉଭୁଣୀ ଭାବେ ଗ୍ରହଣ କରିବାର ଛଳନା କରି ମିଡ଼ିଆ ତାଙ୍କ ପାଖକୁ ଗୋଟିଏ ଅତି ସୁନ୍ଦର ପୋଷାକ ପଠାଇଲେ । ତାକୁ ପିନ୍ଧିଲାମାତ୍ରେ ରାଜକନ୍ୟା ଜଳିଗଲେ । ଅଗ୍ନିକାଣ୍ଡରେ ରାଜାଙ୍କ ସମେତ ରାଜବାଟୀର ବହୁ ଲୋକ ମଲେ । ଜାସନ କୌଣସିମତେ ରକ୍ଷା ପାଇଗଲେ ।

ଜାସନ୍‌ଙ୍କ ଭୟରେ ମିଡ଼ିଆ ଏଥେନ୍ସକୁ ପଳାଇଲେ । ତାଙ୍କୁ ବିବାହକରି ଏଥେନ୍ସର ରାଜା ଇଜିଅସ୍ ଆପଣାକୁ କୃତାର୍ଥ ମଣିଲେ । ଇଜିଅସ୍‌ଙ୍କ ପୁତ୍ର ଥିସିଅସ୍ ଏଥେନ୍ସ ଫେରି ଆସିବା ସମୟରେ ମନ୍ତ୍ରବଳରେ ତାଙ୍କୁ ମାରିଦେବା ପାଇଁ ମିଡ଼ିଆ ଚକ୍ରାନ୍ତ କରୁଥିବା କଥା ପୂର୍ବରୁ କୁହାଯାଇଛି । ଏଥେନ୍ସରୁ ମିଡ଼ିଆ ଇଟାଲି ପଳାଇଲେ ଓ ସେଠାକାର ଲୋକଙ୍କୁ ସାପମନ୍ତ୍ର ଶିଖାଇଲେ । ଇଟାଲିରେ ମିଡ଼ିଆ ଜଣେ ଦେବୀ ରୂପେ ପୂଜା ପାଆନ୍ତି । ଗ୍ରୀକ୍ ପୁରାଣରେ ମିଡ଼ିଆ ଏକ ବଳିଷ୍ଠ ଚରିତ୍ର । ତାଙ୍କ ସମ୍ପର୍କରେ ଅନେକ କାହାଣୀ ରହିଛି ।

ଆର୍ଗୋ କିମ୍ବଦନ୍ତୀ ଭିତରେ ଗ୍ରୀକ୍ ଜାତିର ସ୍ୱପ୍ନ ଓ ଆସ୍ପୃହା ନିହିତ । ହେଲେସ୍‌ପଣ୍ଟ ବାଟେ ଗ୍ରୀକ୍ ଜାହାଜ ଯାତାୟାତ ସହ୍ୟ କରୁ ନଥିବାରୁ ଟ୍ରୋଜାନ୍‌ମାନଙ୍କୁ ହେରାକ୍ଲିଜ୍ ଉପଯୁକ୍ତ ଶିକ୍ଷା ଦେଇଥିଲେ । ମାତ୍ର ଟ୍ରୟକୁ ଦମନକରି ରଖିବା ପାଇଁ ତାହା ଯଥେଷ୍ଟ ନଥିଲା । ହେରାକ୍ଲିଜ୍‌ଙ୍କ ଗୋଟିଏ ପୁରୁଷ ଅନ୍ତେ ଗୋଟିଏ ଆର୍ଗୋ ନୁହେଁ, ଶହ ଶହ ଗ୍ରୀକ୍ ଜାହାଜ ଟ୍ରୟ ଅଭିମୁଖେ ଯାତ୍ରା କରିଥିଲା । ଗ୍ରୀସ୍‌ର ସର୍ବଶ୍ରେଷ୍ଠ ବୀରଙ୍କ ସମେତ ହଜାର ହଜାର ସୈନିକ ଟ୍ରୟ ସହିତ ଲଢିବାକୁ ପଣକରି ବାହାରିଲେ । ହୋମର୍‌ଙ୍କ କହିବା ଅନୁସାରେ ମେନେ-ଲାଉସ୍‌ଙ୍କର ଭୁବନ ମୋହିନୀ ସ୍ତ୍ରୀ ହେଲେନ୍‌ଙ୍କୁ ଟ୍ରୟ ରାଜା ପ୍ରିୟାମ୍‌ଙ୍କ ପୁତ୍ର ପ୍ୟାରିସ୍ ଚୋରାଇ ନେବାରୁ ଗ୍ରୀକ୍ ନଗର ଗୁଡ଼ିକ ଏକାଠି ହୋଇ ଟ୍ରୟ ଆକ୍ରମଣ କଲେ । ଏହା ସତ ହୋଇପାରେ କିନ୍ତୁ ସମୁଦାୟ ସତ୍ୟ ଏତିକି ନୁହେଁ । ହୁଏତ ପ୍ୟାରିସ୍ ହେଲେନ୍‌ଙ୍କୁ ସତରେ ଚୋରାଇ ନେଇ-ଥିଲେ । କିନ୍ତୁ ତାହା ଯୁଦ୍ଧରେ ଗୋଟିଏ ଆଳ ମାତ୍ର । ଏହିପରି ଏକ ଭାବପ୍ରବଣତା ମୂଳକ ଘଟଣାରେ ଯୋଦ୍ଧାଙ୍କୁ ମତାଇବା ସହଜ । ହେଲେସ୍‌ପଣ୍ଟ ଦେଇ ବ୍ଲାକ୍ ସି' ଆଡ଼କୁ ଯାଉଥିବା

ଗ୍ରୀକ୍‌ମାନେ ଅଧିକ ଶକ୍ତିଶାଳୀ ହୁଅନ୍ତୁ ବୋଲି ଟ୍ରୋଜାନ୍‌ମାନେ ଚାହୁଁ ନ ଥିଲେ ସମୁଦ୍ରରେ ଆଧିପତ୍ୟ ବିସ୍ତାର କରିବା ପାଇଁ ଗ୍ରୀକ୍ ଓ ଟ୍ରୋଜାନ୍‌ଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଚାଲିଥିଲା । ଦୁଇ ଦେଶ ମଧ୍ୟରେ ମହାଯୁଦ୍ଧର ଅସଲ କାରଣ ଏଇୟା । ହେଲେନ୍‌ଙ୍କ ଚୋରି ଗୋଟାଏ ଆଳ ମାତ୍ର ।

ପଣ୍ୟବାହୀ ଗ୍ରୀକ୍ ଜାହାଜଗୁଡ଼ିକରୁ ଟ୍ରୋଜାନ୍‌ମାନେ ଯେଉଁ ପ୍ରଚୁର କର ଆଦାୟ କରୁଥିଲେ, ତହିଁରୁ ରକ୍ଷା ପାଇବା ଥିଲା ଅସଲ ଉଦ୍ଦେଶ୍ୟ । ଟ୍ରୟକୁ ପଦାନତ ନ କଲେ ତାର ନେତୃତ୍ୱ ମାନି ନେଇଥିବା ନଗରଗୁଡ଼ିକକୁ ଗ୍ରୀସ୍‌କୁ ଅବଜ୍ଞା କରୁଥିବେ ବୋଲି ଗ୍ରୀକ୍‌ମାନେ ଜାଣିଥିଲେ । ସେ ପର୍ଯ୍ୟନ୍ତ ବ୍ଲାକ୍ ସି' ଉପକୂଳରେ ଗ୍ରୀକ୍ ଉପନିବେଶମାନ ଉଠେଇ ପାରିବ ନାହିଁ । ଏହାହିଁ ଯୁଦ୍ଧର ଭିତର କାରଣ ।

ହୋମର୍‌ଙ୍କ କହିବା ଅନୁସାରେ ଟ୍ରୟଯୁଦ୍ଧ ଦଶବର୍ଷ କାଳ ଚାଲିଥିଲା । ଖ୍ରୀ: ପୂ: ୫ମ ଶତାବ୍ଦୀର ଗ୍ରୀକ୍ ଐତିହାସିକ ହିରୋଡ଼ୋଟସ୍ ପଚାରନ୍ତି, ଗୋଟିଏ ନାରୀପାଇଁ ଦଶବର୍ଷ ଯୁଦ୍ଧ ଚାଲିଥିଲା ବୋଲି କିଏ ବିଶ୍ୱାସ କରିବ ? ଗ୍ରୀକ୍ ନାଟ୍ୟକାର ୟୁରିପିଡ଼ିଜ୍ (ଖ୍ରୀ: ପୂ: ୫ମ ଶତାବ୍ଦୀ)ଙ୍କ ମତରେ ଜନସଂଖ୍ୟା ବୃଦ୍ଧି ଯୋଗୁ ରାଜ୍ୟ ବିସ୍ତାର ଉଦ୍ଦେଶ୍ୟରେ ଗ୍ରୀକ୍‌ମାନେ ଟ୍ରୟ ଆକ୍ରମଣ କରିଥିଲେ ।



[ଖ୍ରୀ:ପୂ ଷଷ୍ଠ ଶତାବ୍ଦୀର ଏକ କଳସୀ ଅଙ୍କିତ ଚିତ୍ରରେ ଆକିଲସ୍ ଓ ହେକ୍ଟର ଯୁଦ୍ଧ କରୁଛନ୍ତି । ଆକିଲସ୍‌ଙ୍କ ପାଖରେ ଏଥେନା ଓ ହେକ୍ଟରଙ୍କ ପାଖରେ ଜିଅସ୍ ଦଣ୍ଡାୟମାନ । ]

ଟ୍ରୟ ଯୁଦ୍ଧରେ ଆକିଲସ୍ ଥିଲେ ଗ୍ରୀକ୍ ପକ୍ଷର ପ୍ରଧାନ ବୀର । ଆଗାମେମନନ୍ ଗ୍ରୀକ୍‌ମାନଙ୍କର ନେତା । ଚତୁର ଅଡ଼ିସିଅସ୍ ସେମାନଙ୍କର ବୁଦ୍ଧିଦାତା । ଏମାନଙ୍କ ବ୍ୟତୀତ ନେଷ୍ଟର୍, ଆଜାକ୍ସ ପ୍ରଭୃତି ମହାନ୍ ବୀରମାନେ ଗ୍ରୀକ୍ ପକ୍ଷରେ ଥିଲେ । ଟ୍ରୋଜାନ୍‌ମାନେ ମଧ ବୀର ଜାତି । ତାଛଡ଼ା ଟ୍ରୟର ଅଲଂଘ୍ୟ ପାଚେରି ନଗରକୁ ସୁରକ୍ଷିତ କରି ରଖିଥିଲା । ପ୍ୟାରିସଙ୍କ ବଡ଼ ଭାଇ ହେକ୍ଟର ଥିଲେ ଟ୍ରୟର ମହାନ୍ ବୀର । ହୋମର୍‌ଙ୍କ କାବ୍ୟରେ ଦଶବର୍ଷର ଘଟଣା ବହୁଳ ଯୁଦ୍ଧ ବର୍ଣ୍ଣନା ଭିତରେ ମଣିଷ ଜୀବନର ବିପୁଳତା ଓ ବୈଚିତ୍ର୍ୟ ଚମତ୍କାର ଭାବେ ଫୁଟି ପାରିଛି ।



[ଆମାଜନ୍‌ର ବୀର ରାଣୀ ପେନ୍ଥେସିଲିଆ ଟ୍ରୟ ପକ୍ଷରେ ରହି ଲଢ଼ୁଥିଲେ । ଆକିଲସ୍‌ଙ୍କ ସହିତ ଘମାଘୋଟ ଯୁଦ୍ଧରେ ତାଙ୍କର ମୃତ୍ୟୁ ହୋଇଥିଲା । ଗ୍ରୀସ୍‌ରୁ ମିଳିଥିବା ଗୋଟିଏ କପ୍‌ରେ ଅଙ୍କିତ ଚିତ୍ର ଦୁହିଁଙ୍କ ମଧ୍ୟରେ ଯୁଦ୍ଧକୁ ରୂପ ଦେଇଛି । ]

ଟ୍ରୟ ଯୁଦ୍ଧ ଖ୍ରୀଷ୍ଟପୂର୍ବ ଦ୍ୱାଦଶ ଶତାବ୍ଦୀର ଘଟଣା । ଏହା ଆକିଆନ୍‌ଙ୍କର ଯୁଦ୍ଧ । ଏତେ ବଡ଼ ମହାଯୁଦ୍ଧର ନାୟକ ଆକିୟାନ୍‌ଙ୍କର ଗ୍ରୀକ୍ ସଭ୍ୟତା ପ୍ରତି କୌଣସି ଉଲ୍ଲେଖଯୋଗ୍ୟ ଅବଦାନ ନାହିଁ । ବସ୍ତୁତଃ କୌଣସି ମୌଳିକ ସଭ୍ୟତା ଗଢ଼ିବା ପରିବର୍ତ୍ତେ ଅବକ୍ଷୟମାନ ମାଇସିନୀୟ ସଭ୍ୟତାକୁ ବଞ୍ଚାଇ ରଖିବା ଆକିଆନ୍‌ଙ୍କର ଐତିହାସିକ ଭୂମିକା । ଟ୍ରୟଯୁଦ୍ଧରେ ଜୟଲାଭ କରିବା ପରେ ଆକିଆନ୍‌ମାନେ ସୁସ୍ଥ ଭାବେ ଥଇଥାନ ହୋଇ ଏକ ଉଚ୍ଚତର ସଭ୍ୟତା ଗଠନ ଦିଗରେ ବ୍ରତୀ ହେବା ଇତିହାସର ସ୍ୱାଭାବିକ ଗତି ପରି ମନେହୁଏ । ମାତ୍ର ଭିନ୍ନ ପଥରେ ଯିବାକୁ ଇତିହାସ ନିଜେ ବାଛିନେଲା ।

ଦେଶ ଛାଡ଼ି ଦୀର୍ଘକାଳ ସୁଦୂର ବିଦେଶରେ ଯୁଦ୍ଧରେ ବ୍ୟସ୍ତ ରହିବା ଫଳରେ ଆକିଆନ୍‌ଙ୍କର ବଳ ଭାଙ୍ଗିଗଲା । ଟ୍ରୟ ଓ ଆଖପାଖ ନଗରରୁ ସେମାନେ କିଛି ଧନ

ଲୁଟିଥିଲେ ସତ, କିନ୍ତୁ ଗ୍ରୀସ୍‌ରୁ ବ୍ଲାକ୍ ସି' ପର୍ଯ୍ୟନ୍ତ ଯାଇ ବାଣିଜ୍ୟ କରିବାକୁ ଆଉ ସେମାନଙ୍କର ଉତ୍ସାହ ନ ଥିଲା । କିଛିକାଳ ପରେ ହୁଏତ ସେମାନଙ୍କର କ୍ଳାନ୍ତି ଦୂର ହୋଇଥାଆନ୍ତା । ମାତ୍ର ଟ୍ରଯ୍ ଯୁଦ୍ଧ ସରିବାର ପଚାଶବର୍ଷ ନ ପୂରୁଣୁ ଗୋଟିଏ ନୂତନ ଇଣ୍ଡୋ ୟୁରୋପୀୟ ଜାତି ଗ୍ରୀସ୍‌ରେ ପ୍ରବେଶ କଲେ । ନୂତନ ଅନୁପ୍ରବେଶକାରୀଙ୍କ ସହିତ ପୁରାତନ ବାସିନ୍ଦାଙ୍କର ଦ୍ୱନ୍ଦ୍ୱ ଉପୁଜିବା ସ୍ୱାଭାବିକ୍ । ଉନ୍ନତ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଡୋରିଆନ୍‌ମାନେ ଆକିଆନ୍‌ଙ୍କୁ ପରାସ୍ତ କଲେ । ଡୋରିଆନ୍‌ଙ୍କର ଲୌହ ନିର୍ମିତ ଅସ୍ତ୍ରଶସ୍ତ୍ର ଆକିଆନ୍‌ଙ୍କର ବ୍ରୋଞ୍ଜ ନିର୍ମିତ ଅସ୍ତ୍ରଶସ୍ତ୍ରଠାରୁ ଉନ୍ନତ । ଡୋରିଆନ୍‌ମାନଙ୍କ ମାଧ୍ୟମରେ ଗ୍ରୀସ୍‌ରେ ଲୌହର ପ୍ରବେଶ ଘଟିଥିଲା ।

ଟ୍ରୟ୍ ଯୁଦ୍ଧ ଆକିଆନ୍‌ଙ୍କର ଯୁଦ୍ଧ । ଗ୍ରୀକ୍ ସଭ୍ୟତା ପ୍ରତି ସେମାନଙ୍କର ମୌଳିକ ଅବଦାନ ନାହିଁ । ଯୁଦ୍ଧରେ ଜିଣିଲେ ମଧ୍ୟ ଆକିଆନ୍‌ଙ୍କ ମନୋବଳ ଭାଙ୍ଗିଗଲା । ଏପରି ପରିସ୍ଥିତିରେ ଡୋରିଆନ୍‌ମାନେ ଆସି ଗ୍ରୀସ୍‌ରେ ପହଞ୍ଚିଲେ ।

ପିଲୋପୋନେସିଅସ୍ ଓ କ୍ରିଟ୍—ଅର୍ଥାତ୍ ମାଇସିନୀୟ ସଭ୍ୟତାର ଚରମ ବିକାଶ ଘଟିଥିବା ଅଞ୍ଚଳ ଡୋରିଆନ୍‌ଙ୍କ ଦ୍ୱାରା ସମ୍ପୂର୍ଣ୍ଣ ଧ୍ୱଂସ ହୋଇଥିଲା । କଳା ଓ ସୌନ୍ଦର୍ଯ୍ୟର ମୂଲ୍ୟ ବୁଝୁ ନ ଥିବା ଦୁର୍ଦ୍ଧର୍ଷ, ଅସଭ୍ୟ ଜାତି ପିଲୋପୋନେସିଅସ୍‌ର କାରୁକାର୍ଯ୍ୟ ବିମଣ୍ଡିତ କୋଠାବାଡ଼ି ଓ କଳାକୃତିଗୁଡ଼ିକୁ ଧ୍ୱଂସ କଲେ । ସ୍ପାର୍ଟା ନଗର ଡୋରିଆନ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ । ଯୁଦ୍ଧ ପାଇଁ ଆପଣାକୁ ସମର୍ଥ କରି ଗଢ଼ିବା ଓ ରଣକ୍ଷେତ୍ରରେ ଜୀବନ ପଣ କରି ଲଢ଼ିବାର ସ୍ପାର୍ଟୀୟ ଜୀବନାଦର୍ଶ ଡୋରିଆନ୍‌ଙ୍କର ରକ୍ତଗତ ଗୁଣ ।

ସ୍ପାର୍ଟା ଓ କରିନ୍ଥ ନଗର ଯୁଦ୍ଧପ୍ରିୟ ଡୋରିଆନ୍‌ଙ୍କ ଦ୍ୱାରା ପ୍ରତିଷ୍ଠିତ ।

ଡୋରିଆନ୍‌ଙ୍କ ସହିତ ଗ୍ରୀସ୍‌ରେ ଲୌହ ଯୁଗ ପ୍ରବେଶ କରିଥିଲା । ଲୌହ ଯୁଗରେ କଳା, ସାହିତ୍ୟ ଓ ଉନ୍ନତ ରୁଚିର ଅଧୋଗତି ଲକ୍ଷ୍ୟ କରି ଗ୍ରୀକ୍ କବି ହେସିଓଡ଼୍ (ଖ୍ରୀ: ପୂ: ୮ମ ଶତାବ୍ଦୀ) କହିଲେ, 'ଲୁହାର ଆବିଷ୍କାର ମଣିଷ ପକ୍ଷରେ କ୍ଷତିକାରକ ।'

ଲୌହ ନିର୍ମିତ ଉନ୍ନତ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଆକ୍ରମଣକାରୀଙ୍କ ଭୟରେ ଅନେକ ଆକିଆନ୍ ପର୍ବତ ସଙ୍କୁଳ ପିଲୋପୋନେସିଅସ୍‌ର ଉତ୍ତରାଞ୍ଚଳକୁ ପଳାଇଲେ । ଆଉ କେତେକଙ୍କୁ ଡୋରିଆନ୍‌ମାନେ ଆଟିକା (ଏଥେନ୍‌ସର ଚତୁଃପାର୍ଶ୍ୱ ଅଞ୍ଚଳ) ପର୍ଯ୍ୟନ୍ତ ଖେଦି ନେଇଥିଲେ ।

ଆଟିକାରେ ପ୍ରତିରୋଧର ସମ୍ମୁଖୀନ ହୋଇ ସେମାନେ ଫେରି ଆସିଲେ । ଡୋରିଆନ୍‌ମାନେ ଆଟିକା ଅଧିକାର କଲେ ନାହିଁ ସତ, ତେବେ ସେମାନେ ମାଡ଼ି ଆସୁଛନ୍ତି ଖବର ପାଇ ଅନେକ ଏଥେନ୍‌ସ-ବାସୀ ପ୍ରାଣ ବିକଳରେ ଜନ୍ମମାଟି ଛାଡ଼ି ଇଜିଆନ୍ ସମୁଦ୍ର ପାରି ହୋଇ ଏସିଆ ମାଇନର୍‌କୁ ପଳାଇଲେ । ଏସିଆ ମାଇନର୍‌ରେ ସେମାନେ ପ୍ରତିଷ୍ଠା କରିଥିବା ନଗରମାନଙ୍କ ମଧ୍ୟରେ ଆୟୋନିଆ ପ୍ରଧାନ । ଗ୍ରୀସ୍‌ରେ ଚାଲିଥିବା ସଂଘର୍ଷରୁ ମୁକ୍ତ ଥିବା ଆୟୋନିଆରେ ରୋପିତ ହୋଇ ଗ୍ରୀକ୍ ସଂସ୍କୃତି ସ୍ୱଚ୍ଛନ୍ଦରେ ବଢ଼ିବାକୁ ଲାଗିଲା । ଯେଉଁମାନେ ପ୍ରାଣ ବଞ୍ଚାଇବାକୁ ଜନ୍ମଭୂମିର ମୋହ କାଟି ଆୟୋନିଆ ପଳାଇଗଲେ, ସେମାନେ ସାଙ୍ଗରେ ନେଇଗଲେ ଗ୍ରୀକ୍ ଜାତିର ବୁନିଆଦ, ଠେକ ଆଉ ଟ୍ରୟ ଯୁଦ୍ଧରେ ଗ୍ରୀକ୍‌ମାନଙ୍କ ବୀରତ୍ୱର ଅସଂଖ୍ୟ କାହାଣୀ । ଜନ୍ମ-ଭୂମିକୁ ଛାଡ଼ି ଆସିଥିବା ଏହି ଲୋକମାନଙ୍କ ପାଇଁ ଗ୍ରୀକ୍ ଜାତିର ସୌନ୍ଦର୍ଯ୍ୟ ଓ କଳାବୋଧ ଆହୁରି ପ୍ରିୟ ହୋଇ ପଡ଼ିଲା । ଆୟୋନିଆରେ ଜନ୍ମ ନେଲେ ଗ୍ରୀକ୍ ମହାକବି ହୋମର୍ । ଲୋକମୁଖରେ ବଞ୍ଚିଥିବା ଗ୍ରୀକ୍‌ମାନଙ୍କର ବୀରତ୍ୱ କାହାଣୀକୁ ନେଇ ସେ ମହାକାବ୍ୟ ରଚନା କଲେ ।

ଡୋରିଆନ୍‌ଙ୍କ ଭୟରେ ଅନେକ ଆକିୟାନ୍ ଆଟିକା ପର୍ଯ୍ୟନ୍ତ ଓ କେତେକ ସମୁଦ୍ର ଟପି ସୁଦୂର ଆୟୋନିଆ ପର୍ଯ୍ୟନ୍ତ ପଳାଇଲେ ଏଥେନ୍‌ସ ଓ ଆୟୋନିଆ ଆକିଆନ୍‌ଙ୍କର ନଗର ।

ସତେକ ଅଗ୍ରଗାମୀ ମିଶରୀୟ ଓ ବେବିଲୋନୀୟ ସଭ୍ୟତା ଗ୍ରୀକ୍‌ମାନଙ୍କୁ ଅପେକ୍ଷା କରି ସେତେବେଳ ପର୍ଯ୍ୟନ୍ତ ଏସିଆ ମାଇନର୍‌ରେ ବଞ୍ଚିଥିଲେ । ନୂତନ ଗ୍ରୀକ୍ ସଭ୍ୟତା ଏବଂ ପୁରାତନ ମିଶରୀୟ ଓ ବେବିଲୋନୀୟ ସଭ୍ୟତାର ମିଳନ ପୀଠ ହେଲା ଆୟୋନିଆ । ସଭ୍ୟତାର ଏପରି ନୂତନ ପରୀକ୍ଷା ଆୟୋନିଆରେ ଚାଲିଥିବା ବେଳେ ଗ୍ରୀସ୍‌ରେ ଘୋର ବିଶୃଙ୍ଖଳାର ରାଜତ୍ୱ । ସାମାଜିକ ଓ ରାଜନୈତିକ କ୍ଷେତ୍ରରେ ବିପର୍ଯ୍ୟୟ ଘଟିଗଲା । ନୂତନ ଆଗନ୍ତୁକ ଓ ପୁରାତନ ବାସିନ୍ଦାଙ୍କ ମଧ୍ୟରେ ଖଣ୍ଡଯୁଦ୍ଧ ଲାଗି ରହିବା ଫଳରେ କୃଷି ଓ ବାଣିଜ୍ୟ ବାଧାପ୍ରାପ୍ତ ହେବା ସ୍ୱାଭାବିକ । କୌଣସି ବ୍ୟକ୍ତି ରାସ୍ତା ଘାଟରେ ଆପଣାକୁ ନିରାପଦ ମଣୁ ନ ଥିଲା । ଡୋରିଆନ୍ ଓ ଆକିଆନ୍‌ଙ୍କର ସଂଘର୍ଷ ଦୁଇଶତାବ୍ଦୀ ଧରି ଗ୍ରୀସ୍‌କୁ ଅସ୍ଥିର ରଖିଲା ।

ଗ୍ରୀସ୍ ଘୋର ବିଶୃଙ୍ଖଳା ଭିତରେ ଗତି କରୁଥିବା ବେଳେ ଆୟୋନିଆରେ ରୋପିତ ହୋଇଥିବା ଗ୍ରୀକ୍ ସଭ୍ୟତା ବଢ଼ିଲା । ପ୍ରାଚୀନ ମିଶରୀୟ ଓ ବେବିଲୋନୀୟ ସଭ୍ୟତା ଏଥିପାଇଁ ଉପାଦାନ ଯୋଗାଇଲେ ।

ଆକଆନ୍‌ମାନେ ଅନ୍ତତଃ ମାଇସିନୀୟ ସଭ୍ୟତାର କ୍ଷୟ ପ୍ରକ୍ରିୟାକୁ ରୋକିଥିଲେ ମାତ୍ର ଡୋରିଆନ୍‌ଙ୍କର ଆଗମନ ପରେ ସଭ୍ୟତାର ରଥଚକ୍ର ଦ୍ରୁତବେଗରେ ନିମ୍ନ ଦିଗରେ ଧାବିତ ହେଲା ।

ଆପଣାକୁ ଶ୍ରେଷ୍ଠଜାତି ମଣୁଥିବା ଡୋରିଆନ୍‌ମାନେ ପ୍ରଥମରୁ ନିଜ ରକ୍ତର ଶୁଦ୍ଧତା ରକ୍ଷା କରିବା ବିଷୟରେ ଖୁବ୍ ସତର୍କ ଥିଲେ । ମାତ୍ର କିଛି କାଳ ପରେ ବିଜିତ ଓ ବିଜେତାଙ୍କ ମଧ୍ୟରେ ବୈବାହିକ ସମ୍ପର୍କ ସ୍ଥାପିତ ହେଲା । କେବଳ ଏ ଦୁଇ ଜାତିଙ୍କ ମଧ୍ୟରେ ନୁହେଁ, ପ୍ରାଚୀନ ଅଧିବାସୀଙ୍କ ସହିତ ନୂତନ ଆଗନ୍ତୁକମାନଙ୍କର ବିବାହ ଚାଲିଲା । ବିଭିନ୍ନ ଜାତିର ଲୋକଙ୍କର ରକ୍ତର ମିଳନ ସମସ୍ତଙ୍କୁ ମିଶାଇ ଗୋଟିଏ ଜାତିରେ ପରିଣତ କରିବାର ସ୍ୱାଭାବିକ ପ୍ରକ୍ରିୟା । ପୁଣି ବିଭିନ୍ନ ଉପଜାତିର ବୈଶିଷ୍ଟ୍ୟ ଓ ପରମ୍ପରାର ମିଳନରୁ ଗୋଟିଏ ସୁସ୍ଥ ସବଳ ଜାତି ଗଢ଼ି ଉଠିବା ଏକ ଜୈବିକ ନିୟମ ବୋଲି କୁହାଯାଇପାରେ ।

ଖ୍ରୀ: ପୂ ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ଡୋରିଆନ୍‌ମାନେ ଗୋଟିଏ ଛେକରେ ଗ୍ରୀସ୍‌ରେ ପ୍ରବେଶ କରିଥିଲେ ବୋଲି ମନେ କରିବା ଭୁଲ୍ । ଦଳ ଦଳ ଇଣ୍ଡୋ-ୟୁରୋପୀୟ ଯାଯାବର ଖ୍ରୀ: ପୂ ୮ମ ଶତାବ୍ଦୀ ପର୍ଯ୍ୟନ୍ତ ଗ୍ରୀସ୍‌ରେ ପ୍ରବେଶ କରୁଥିଲେ । ପ୍ରକୃତି ତାର ପର୍ବତମାଳା ଓ ସମୁଦ୍ର ଦ୍ୱାରା ଗ୍ରୀସ୍‌କୁ ଅନେକ ଛୋଟ ଛୋଟ ଖଣ୍ଡରେ ବିଭକ୍ତ କରିଛି । ଜଣେ ଜଣେ ଦଳପତିଙ୍କ ନେତୃତ୍ୱରେ ଆସି ଏମାନେ ଗ୍ରୀସ୍‌ର ଗୋଟିଏ ଗୋଟିଏ ଅଞ୍ଚଳ ମାଡ଼ି ବସୁଥିଲେ । ଗୋଟିଏ ଗୌର ବର୍ଣ୍ଣ ଇଣ୍ଡୋ-ୟୁରୋପୀୟ ଯାଯାବର ଦଳ ଅନ୍ୟ ଏକ ଦଳକୁ ଭିନ୍ନ ଜାତି ବୋଲି ମନେ କରୁ ନ ଥିଲେ । କିନ୍ତୁ ସେମାନଙ୍କ ମଧ୍ୟରେ ବିବାଦ ଲାଗିବା ସ୍ୱାଭାବିକ୍ ।

ଖ୍ରୀ: ପୂ ଦ୍ୱାଦଶରୁ ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ଦଳ ଦଳ ଇଣ୍ଡୋ-ୟୁରୋପୀୟ ଜାତି ଗ୍ରୀସ୍‌ରେ ପଶିଥିଲେ । ଏହି ନୂତନ ଆଗନ୍ତୁକଗଣ ପୁରାତନ ଅଧିବାସୀଙ୍କ ସହିତ ମିଶି ଗୋଟିଏ ଜାତି ସୃଷ୍ଟି କଲେ ।

ବିଭିନ୍ନ ଛେକରେ ଆସିଥିବା ଯାଯାବର ଦଳଙ୍କର ପରସ୍ପର ସହିତ ତଥା ଗ୍ରୀସ୍‌ର ପ୍ରାଚୀନ ଅଧିବାସୀଙ୍କ ସହିତ ମିଶାମିଶି ପ୍ରକ୍ରିୟା ଦୀର୍ଘ ପାଞ୍ଚ ଶତାବ୍ଦୀ ଧରି ଚାଲିଲା । ଏହା ଫଳରେ ଗୋଟାଏ ଜାତି ସୃଷ୍ଟି ହେବା ସମ୍ଭବ ହେଲା କିନ୍ତୁ ସମୁଦାୟ ଗ୍ରୀସ୍ ଗୋଟିଏ ଦେଶ

ହୋଇପାରିନାହିଁ । ଏହାର କାରଣ, ପ୍ରାକୃତିକ ପ୍ରାଚୀର ଦ୍ୱାରା ବନ୍ଦ ଖଣ୍ଡରେ ଥିବା ଗୋଟିଏ ଗୋଟିଏ ଅଞ୍ଚଳର ବାସିନ୍ଦାମାନେ ଆରମ୍ଭରୁ ସ୍ୱତନ୍ତ୍ର ଓ ସ୍ୱାଧୀନ ଭାବେ ବାସକଲେ । ପୁଣି ଗୋଟିଏ ଅଞ୍ଚଳ ତାର ସ୍ୱାତନ୍ତ୍ର୍ୟ ଓ ଅଧିକାରକୁ ହରାଇବାକୁ ନ ଚାହିଁବା ସ୍ୱାଭାବିକ ।

ବିଭିନ୍ନ ଇଣ୍ଡୋୟୁରୋପୀୟ ଦଳ ଓ ପ୍ରାଚୀନ ଅଧିବାସୀ ମିଶି ଗୋଟିଏ ଜାତି ଗଢ଼ିଲେ କିନ୍ତୁ ସମୁଦାୟ ଗ୍ରୀସ୍ ଗୋଟିଏ ଦେଶ ହୋଇ ପାରିଲା ନାହିଁ ।

ଗ୍ରୀସ୍‌ର ଭୌଗୋଳିକ ଗଠନ ଓ ଇତିହାସର ଗତି ତାକୁ ଗୋଟିଏ ଦେଶ ରୂପେ ଗଢ଼ି ହେବାକୁ ଦେଲାନାହିଁ । ଏହା ପରିବର୍ତ୍ତେ ଗ୍ରୀସ୍‌ରେ ଶ୍ରେଷ୍ଠ ଶ୍ରେଷ୍ଠ ନଗର-ରାଷ୍ଟ୍ର (City-State) ମାନ ଗଢ଼ି ଉଠିଲେ । ନିଜର ଅଧିକାର ଓ ସ୍ୱାର୍ଥକୁ ନେଇ ଶ୍ରେଷ୍ଠ ନଗର-ରାଷ୍ଟ୍ରଗୁଡ଼ିକ ସାମାନ୍ୟ ଘଟଣାରେ ଯୁଦ୍ଧରେ ମାତୁଥିଲେ । ଏହା ସତ୍ତ୍ୱେ କ୍ରିଟିଆନ୍, ମାଇସିନିଆନ୍, ଆକିଆନ୍, ଡୋରିଆନ୍ ଓ ଓରିଏଣ୍ଟାଲ୍—ଏଇ ପାଞ୍ଚୋଟି ସଂସ୍କୃତିର ସଂଘର୍ଷ-ସମନ୍ୱୟ ଗ୍ରୀସ୍‌ରେ ଘଟିଲା । ଫଳରେ ଡୋରିଆନ୍‌ଙ୍କର ଯୁଦ୍ଧଖୋର ପ୍ରକୃତି, ଆକିଆନ୍‌ଙ୍କର ସାମାଜିକ ଶୃଙ୍ଖଳାବୋଧ, ଶାସନ ଓ ବାଣିଜ୍ୟ ବୁଦ୍ଧି, କ୍ରିଟିଆନ୍ ଓ ମାଇସିନିଆନ୍‌ଙ୍କର ସୌନ୍ଦର୍ଯ୍ୟବୋଧ ଓ ସୃଜନକ୍ଷମତା ସମନ୍ୱିତ ହେବାର ସୁଯୋଗ ଆସିଥିଲା । ଦୃଷ୍ଟାନ୍ତ ସ୍ୱରୂପ, କରିନ୍‌ଥ, ଆର୍‌ଗୋସ୍ ଓ ସାଇକୋନ୍ ପରି ଡୋରିଆନ୍ ନଗରରେ କେବଳ ସାମରିକ ଶକ୍ତି ବୃଦ୍ଧି କରିବାର ଆଦର୍ଶ ଅଳ୍ପକାଳ ମଧ୍ୟରେ ବଦଳି ଯାଇଥିଲା । ଅନ୍ୟାନ୍ୟ ମୂଲ୍ୟ ପ୍ରତି ସେମାନେ ଦୃଷ୍ଟି ଦେଲେ । ଏପରିକି ଜୀବନକୁ ବାଜି ମାରି ଯୁଦ୍ଧକ୍ଷେତ୍ରରେ ଲଢ଼ିବାପାଇଁ ଶୈଶବରୁ ତାଲିମ୍ ଦିଆଯାଉଥିବା ସ୍ପାର୍ଟାରେ କେବେ କେବେ ଗୀତି କବିଙ୍କର କୂଜନ ଶୁଭୁଥିଲା ।

ଶ୍ରେଷ୍ଠ ଶ୍ରେଷ୍ଠ ନଗରରାଷ୍ଟ୍ରମାନଙ୍କରେ ବିଭକ୍ତ ଗ୍ରୀସ୍‌ରେ କିପରି ଏଡ଼େ ମହାନ୍ ସଂସ୍କୃତି ସମ୍ଭବିଲା, ତାହା ଆମକୁ ଚକିତ କରେ । ଯେତେବେଳେ ସମୁଦାୟ ଗ୍ରୀସ୍‌କୁ କବଳିତ କରିବାପାଇଁ ପାରସ୍ୟ ଗ୍ରୀସ୍‌କୁ ଆକ୍ରମଣ କଲା, ସେତେବେଳେ ଯାଇଁ ଗ୍ରୀକ୍‌ମାନେ ପରସ୍ପର ମଧ୍ୟରେ ଥିବା ନିବିଡ଼ ସାମଞ୍ଜସ୍ୟ ଦେଖିପାରିଲେ । ଜାତୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ସେମାନେ ପାରସ୍ୟ ବିରୁଦ୍ଧରେ ଏକଜୁଟ ହେଲେ । ଏହାର ପରେ ପରେ ହିଁ ଗ୍ରୀକ୍ ଇତିହାସର ସ୍ୱର୍ଣ୍ଣଯୁଗ ଆରମ୍ଭ ହୋଇଥିଲା ।



# ଗ୍ରୀକ୍ ଜାତିର ବିଜୟ ସୂତ୍ର

ଗ୍ରୀସ୍‌ବାସୀଙ୍କୁ ବାନ୍ଧି ରଖିଥିଲା—

※ ଗୋଟିଏ ସାଧାରଣ ଭାଷା

※ ମହାକବି ହୋମର୍

※ ଗ୍ରୀକ୍ ଦେବଦେବୀ ଓ ଧର୍ମ ସମ୍ପ୍ରଦାୟ

※ ଅଲମ୍ପିକ୍ସ ଓ ଅନ୍ୟାନ୍ୟ କ୍ରୀଡ଼ା ପ୍ରତିଯୋଗିତା

ଗ୍ରୀସ୍‌ର ଶ୍ରେଷ୍ଠ ଶ୍ରେଷ୍ଠ ନଗର ରାଷ୍ଟ୍ରଗୁଡ଼ିକ ନିଜ ନିଜର ସ୍ୱକୀୟ ଧାରାରେ ବିକଶିତ ହୋଇଥିଲେ । ପ୍ରତ୍ୟେକ ନଗରରାଷ୍ଟ୍ରର ସମାଜ, ଶାସନ ରୀତି ଓ ଆଦର୍ଶରେ ସ୍ୱାତନ୍ତ୍ର୍ୟ ଥିଲା । ମାତ୍ର ଗୋଟିଏ ନଗର ରାଷ୍ଟ୍ରକୁ ଏକ ବିଚ୍ଛିନ୍ନ ଦ୍ୱୀପ ମନେକରିବା ଠିକ୍ ନୁହେଁ । ସବୁ ବିଭେଦ ଓ ସ୍ୱାତନ୍ତ୍ର୍ୟ ସତ୍ତ୍ୱେ ବିଭିନ୍ନ ନଗରର ଅଧିବାସୀଗଣ ଗୋଟିଏ ଜାତି ଭାବେ ଜଗତରେ ପରିଚିତ । କାଳର ଗତିରେ ନଗର ନଗର ମଧ୍ୟରେ ବିଭେଦ ଲୁଚିଯାଇ ସେମାନଙ୍କ ଭିତରେ ଥିବା ଗଭୀରତର ସାମ୍ୟ ହିଁ ପ୍ରକାଶିତ ହୋଇଛି ।

ଗ୍ରୀକ୍‌ମାନେ ଆପଣାର ନାମକରଣ କରି ନ ଥିଲେ । 'ଗ୍ରୀକ୍' ନାମଟି ରୋମାନ୍‌ଙ୍କର । ଶ୍ୱେତାଙ୍ଗ ଇଣ୍ଡୋ-ୟୁରୋପୀୟ ଯାଯାବର ପଶୁପାଳକ ଜାତିକୁ ସେମାନେ ଗ୍ରୀକ୍ ନାମ ଦେଇଥିଲେ । ଗ୍ରୀକ୍‌ମାନେ ଯେଉଁ ଭୂଖଣ୍ଡରେ ପ୍ରବେଶ କଲେ ତାହାର ନାମ ଗ୍ରୀସ୍ ।

ଗ୍ରୀକ୍‌ମାନେ ଆପଣାକୁ କହୁଥିଲେ ହେଲେନେସ୍ । ସେମାନେ ସମସ୍ତେ ଗୋଟିଏ ମାଆ ହେଲେନ୍ (Hellen) ଙ୍କ ସନ୍ତାନ ବୋଲି ବିଶ୍ୱାସ କରୁଥିଲେ । ଯଦି ଏକଥା ସତ, ତେବେ ସେମାନଙ୍କ କଳକୁ ଭ୍ରାତୃତ୍ୱବାଦ ବୋଲି କହିବାକୁ ହେବ ! ଗ୍ରୀକ୍‌ମାନେ ଗୋଟିଏ ମାଆର ସନ୍ତାନ—ଏହି ମର୍ମରେ ଏକ ସୁନ୍ଦର ମିଥ୍ ଅଛି । ସେଇଟି ଏହିପରି—

ଥରେ ମନୁଷ୍ୟଙ୍କର ମନ୍ଦକର୍ମ ଦେଖି ଜିଅସ୍ କ୍ରୁଦ୍ଧ ହେଲେ ଓ ମନୁଷ୍ୟଜାତିକୁ ଧ୍ୱଂସ କରିବାକୁ ଇଚ୍ଛା କରି ପୃଥିବୀକୁ ଏକ ପ୍ରଳୟଙ୍କର ବନ୍ୟା ପଠାଇଲେ । ପ୍ରୋମିଥିଅସ୍‌ଙ୍କ ପୁତ୍ର ଡିଉକାଲିଅନ୍ ଜିଅସ୍‌ଙ୍କର ଭକ୍ତ । ପ୍ରଳୟଙ୍କରୀ ବନ୍ୟା ବିଷୟରେ ଡିଉକାଲିଅନ୍‌ଙ୍କୁ ପ୍ରୋମିଥିଅସ୍ ପୂର୍ବରୁ ସତର୍କ କରି ଦେଇଥିଲେ । ଗୋଟିଏ ଭେଳା ତିଆରି କରି ପ୍ରସ୍ତୁତ ଥିବାରୁ ଡିଉକାଲିଅନ୍ ସ୍ତ୍ରୀ ପିର୍‌ହା (Pyrrha) ଙ୍କ ସହିତ ନଅଦିନ କାଳ ଅସହାୟ ଭାବେ ଭାସିବା ପରେ ଭେଳାଟି ଗୋଟିଏ ଗିରିଶୃଙ୍ଗରେ ଲାଗିଲା । କ୍ୱଚିତ କେଉଁ ସୁଉଚ୍ଚ ଗିରିଶୃଙ୍ଗ ବ୍ୟତୀତ ସମଗ୍ର ପୃଥିବୀ ଜଳମଗ୍ନ । ପ୍ରଳୟରୁ ଏହି ଗୋଟିକ ଦମ୍ପତି ବଞ୍ଚି ଥାଆନ୍ତି । ଜୀବନ ରକ୍ଷା ହେବାରୁ ସ୍ୱାମୀ-ସ୍ତ୍ରୀ ଜିଅସ୍‌ଙ୍କୁ ପୂଜା କଲେ । ଦେବରାଜ ସନ୍ତୁଷ୍ଟ ହୋଇ ବର ଯାଚିବାରୁ ଦୁହେଁ ତନୟରେ ନୂତନ ସୃଷ୍ଟିର ଉପାୟ ମାଗିଲେ । ନିର୍ଦ୍ଦେଶ ହେଲା, ସ୍ୱାମୀ-ସ୍ତ୍ରୀ ଛିଡ଼ା ହୁଅନ୍ତୁ ଓ ନିଜ ନିଜ ମାଆର ଅସ୍ଥିକୁ ହାତରେ ଧରି ପଛକୁ ଫିଙ୍ଗନ୍ତୁ । ଦୁହିଁଙ୍କର ମାଆ ଅନେକ ପୂର୍ବରୁ ଦେହତ୍ୟାଗ କରିଥାନ୍ତି । ଗିରିଶୃଙ୍ଗରେ ମାତାଙ୍କର ଅସ୍ଥି ବା ଆସିବ କେଉଁଠୁ ? ଦୈବ ନିର୍ଦ୍ଦେଶକୁ ଡିଉକାଲିଅନ୍ ଅର୍ଥ କଲେ; ପୃଥିବୀ ସେମାନଙ୍କର ମାଆ ଓ ପଥର ହେଉଛି ପୃଥିବୀମାତାର ଅସ୍ଥି । ଦୁହେଁ ପଥର ଖଣ୍ଡମାନ ଧରି କାନ୍ଧ ଉପର ଦେଇ ପଛକୁ ଫିଙ୍ଗିଲେ ।

ଗ୍ରୀକ୍‌ମାନେ ହେଲେନସ୍ ନାମରେ ଆତ୍ମପରିଚୟ ଦେଉଥିଲେ । କାରଣ ସେମାନେ ହେଲେନ୍‌ଙ୍କ ସନ୍ତାନ । ହେଲେନ୍ ପ୍ରୋମିଥିଅସ୍‌ଙ୍କ ନାତି ଓ ଡିଉକାଲିଅନ୍‌ଙ୍କ ପୁଅ ।

ପିର୍‌ହା ଫିଙ୍ଗିଥିବା ପଥରରୁ କନ୍ୟା ଓ ଡିଉକାଲିଅନ୍‌ଙ୍କ ପଥରରୁ ପୁତ୍ରମାନେ ସୃଷ୍ଟି ହେଲେ । ଏମାନେ ଦୁହିଁଙ୍କର ସନ୍ତାନ ଭାବେ ପରିଚିତ । ଡିଉକାଲିଅନ୍ ଓ ପିର୍‌ହାଙ୍କର ଜ୍ୟେଷ୍ଠପୁତ୍ରଙ୍କର ନାମ ହେଲେନ୍ * । ସେ ସବୁ ଗ୍ରୀକ୍‌ଙ୍କର ଜନକ । ହେଲେନ୍‌ଙ୍କର ଦୁଇପୁଅ

* ଟ୍ରୟ ଯୁଦ୍ଧର ନାୟିକାଙ୍କ ସହିତ ଏହାଙ୍କର କେବଳ ନାମଗତ ମେଳ ରହିଛି ।

ଡୋରସ୍ ଓ ଇଓଲସ୍ (Aeolus) । ଆୟନ (Ion) ଓ ଆକାଅସ୍ (Achaeus) ହେଲେନ୍‌ଙ୍କର ଦୁଇନାତି । ଡୋରସ୍, ଇଓଲସ୍, ଆୟନ୍ ଓ ଆକାଅସ୍—ଏହି ଚାରିଜଣଙ୍କଠାରୁ ଡୋରିଆନ୍, ଇଓଲିଆନ୍ (Aeolian), ଆୟୋନିଆନ୍ (Ionian) ଓ ଆକିଆନ୍‌ମାନେ ଉଦ୍ଭବ ହେଲେ । ଚାରୋଟି ଜାତି କିନ୍ତୁ ସମସ୍ତେ ଗୋଟିଏ ପରିବାରର । ମିଥ୍ ମାଧ୍ୟମରେ ଏଇ ଗୁରୁତ୍ୱପୂର୍ଣ୍ଣ କଥାଟି ପ୍ରକାଶ ପାଇଛି । ସମସ୍ତେ ହେଲେନ୍‌ଙ୍କ ବଂଶଧର ହୋଇଥିବାରୁ ହେଲେନିକ୍ ନାମରେ ପରିଚିତ । ସେମାନଙ୍କର ବାସସ୍ଥଳୀ ଗ୍ରୀସ୍ ଓ ଏସିଆ ମାଇନର୍‌କୁ ହେଲେନିକ୍‌ମାନେ ହେଲାସ୍ ନାମ ଦେଇଥିଲେ ।

## ଗ୍ରୀକ୍ ଭାଷା ଓ ଲିପି

ଖ୍ରୀ:ପୂ: ତ୍ରୟୋଦଶ ଶତାବ୍ଦୀରୁ ଗ୍ରୀକ୍ ଉପଦ୍ୱୀପରେ ଗୋଟିଏ ଭାଷା ପ୍ରଚଳିତ ଥିଲା । ତାହା ପର୍ସିଆନ୍ ଓ ସଂସ୍କୃତର ସମଗୋଷ୍ଠୀ ଗୋଟିଏ ଇଣ୍ଡୋ ୟୁରୋପୀୟ ଭାଷା । ଅବଶ୍ୟ ଏ କଥା ସତ ଯେ ଗ୍ରୀସ୍‌ର ବିଭିନ୍ନ ଅଞ୍ଚଳରେ ଗ୍ରୀକ୍ ଭାଷାର ଉପଭାଷାମାନ ଚଳୁଥିଲା । ଗ୍ରୀସ୍‌ର ଶିକ୍ଷିତ ଲୋକେ କିନ୍ତୁ ଲିଖିତ ଗ୍ରୀକ୍ ଭାଷା ସହିତ ପରିଚିତ ଥିଲେ । ହୋମର୍, ପ୍ଲେଟୋ ଓ ଅନ୍ୟାନ୍ୟ ଗ୍ରୀକ୍ କବିମାନେ କୌଣସି ଉପଭାଷାରେ ନୁହେଁ, ଗ୍ରୀକ ଭାଷାରେ ହିଁ ଲେଖିଥିଲେ । ଖ୍ରୀ: ପୂ: ୫ମ ଶତାବ୍ଦୀ ବେଳକୁ ଗ୍ରୀକ୍ ଭାଷା ଗୋଟିଏ ଉନ୍ନତ ଓ ମାର୍ଜିତ ଭାଷାରେ ପରିଣତ ହୋଇଥିଲା ।

ଗ୍ରୀକ୍‌ମାନେ ଫିନସିଆନ୍‌ଙ୍କ ଠାରୁ ଲିପିର ବ୍ୟବହାର ଶିକ୍ଷା କଲେ । ବାଣିଜ୍ୟ ଉଦ୍ଦେଶ୍ୟରେ ଫିନସିଆ (Phoenicia)ର ବଣିକମାନେ ଗ୍ରୀସ୍ ଆସୁଥିଲେ । କ୍ରିଟ୍ ଓ ମାଇସିନର ଅଧୋଗତି ପରେ ଫିନସିଆନ୍‌ମାନେ ହୋଇଥିଲେ ସମୁଦ୍ରର ରାଜା । ଆକର୍ଷଣୀୟ ବେଶ ପୋଷାକରେ ସେମାନେ ନାନା ପ୍ରକାର ସୁନ୍ଦର ଜିନିଷ ଧରି ଗ୍ରୀସ୍‌ରେ ପହଞ୍ଚୁଥିଲେ । ସେମାନଙ୍କର କଳା ମଚ୍ ମଚ୍ ଦାଢ଼ି, ସୁନ୍ଦର ପୋଷାକ ଓ ଚକ୍‌ଚକ୍ ଗହଣର ଯେପରି ଅଭିନବ ଓ ଆକର୍ଷଣୀୟ, ପଣ୍ୟଦ୍ରବ୍ୟ ସବୁ ସେହିପରି ଲୋଭନୀୟ । ରଙ୍ଗୀନ୍ କାଚ ବୋତଲ, ରଙ୍ଗ-ବେରଙ୍ଗୀ ମୃଣ୍ମୟ ପାତ୍ର, ଚୀନାମାଟିର ଚକ୍‌କଣ ବାସନ ଓ

ଫିନସିଆନ୍ ବଣିକଙ୍କ ଠାରୁ ଗ୍ରୀକ୍‌ମାନେ ଲିପି ଶିକ୍ଷା କଲେ । କ୍ରିଟ୍ ଓ ମାଇସିନ ପରେ ସାମୁଦ୍ରିକ ବାଣିଜ୍ୟରେ ଫିନସୀ ଆଧିପତ୍ୟ ବିସ୍ତାର କରିଥିଲା ।

ଓ ଆହୁରି ଅନେକ ପ୍ରକାର ଜିନିଷ ଧରି ଫିନିସିଆର ଜାହାଜ ଗ୍ରୀସ୍ ଉପକୂଳରେ ଲାଗୁଥିଲା । ସେମାନେ ଯେଉଁ ବାସନକୁସନ ନେଇ ଆସୁଥିଲେ, ସେ ସବୁରେ ମିଶର, ବେବିଲୋନ୍ ଓ ଆସିରିଆର ଚିତ୍ର ଅଙ୍କିତ ହୋଇଥିଲା । ସରଳ ଓ ନିରାଡ଼ମ୍ବର ଜୀବନ ବଞ୍ଚୁଥିବା ଗ୍ରୀକ୍‌ମାନେ ଆଶ୍ଚର୍ଯ୍ୟ ଚକିତ ହୋଇ ସାତ ସମୁଦ୍ର ପାରିରୁ ଆସିଥିବା ବିଦେଶୀ ବଣିକଙ୍କର ଜିନିଷ ପତ୍ର ଦେଖୁଥିଲେ ଓ କିଣୁଥିଲେ ଫିନିସିଆନ୍ ବଣିକଙ୍କର ସୌଖୀନ ପଣ୍ୟଦ୍ରବ୍ୟ ଗ୍ରୀକମାନଙ୍କୁ ପ୍ରାଚୀନ ଜଗତର କଳା ସମ୍ବନ୍ଧ ପରିଚିତ କରାଇ ଦେଇଥିଲା ।

କେବଳ ଲିପି ଶିକ୍ଷା ନୁହେଁ, ଫିନିସିଆନ୍ ଠାରୁ ଗ୍ରୀକ୍‌ମାନେ ବହୁ ବିଷୟ ଶିକ୍ଷା କରିଥିଲେ । ସେମାନେ ଆଣୁଥିବା ସୁନ୍ଦର ଓ ଚିତ୍ରିତ ବାସନ ଇତ୍ୟାଦି ଦେଖି ଗ୍ରୀକ୍‌ଙ୍କର କଳା-ନେତ୍ର ଖୋଲି ଗଲା ।

ଫିନିସିଆନ୍‌ମାନେ ଗୋଟିଏ ସିମିଟିକ୍ (Semitic) ଜାତି । ସ୍ଥାୟୀ ଭାବେ ବସବାସ କରିବା ପୂର୍ବରୁ ଏହି ସିମିଟିକ ଜାତି ମରୁଭୂମିରେ ପଶୁ ଚରାଇ ଘୂରି ବୁଲୁଥିଲେ । କାଳକ୍ରମେ ଏହି ଯାଯାବରମାନେ ଭୂମଧ୍ୟ ସାଗର ଉପକୂଳରେ ଟିର୍ ( Tyre ) ଓ ସିଡନ୍ ( ବର୍ତ୍ତମାନ ଲେବାନନ୍‌ର ଅନ୍ତର୍ଗତ ) ନଗର ଦୁଇଟି ସ୍ଥାପନ କରି ସେଠାରେ ସ୍ଥାୟୀ ଭାବେ ବାସ କଲେ । ସମୁଦ୍ର କୂଳରେ ବାସ କରିବା ଫଳରେ ଏକଦା ମରୁଭୂମିରେ ବୁଲୁଥିବା ଲୋକମାନେ ସମୁଦ୍ର ପ୍ରତି ଆକୃଷ୍ଟ ହେଲେ । ସମୁଦ୍ରରେ ଜାହାଜ ମେଲି ସେମାନେ ଗ୍ରୀସ୍ ଇଟାଲି ଓ ସ୍ପେନ୍‌ରେ ମାଇ ପହଞ୍ଚିଲେ ।

ଧନ ଅର୍ଜନ କରିବା ବ୍ୟତୀତ ଫିନିସିଆନ୍‌ଙ୍କର ଅନ୍ୟ କୌଣସି ବିଷୟ ପ୍ରତି ଲକ୍ଷ୍ୟ ନ ଥିଲା । ବେପାର ଦୃଷ୍ଟିରୁ ସେମାନେ ଧାତୁକାମ ଓ ଚିତ୍ରାଙ୍କନ ଇତ୍ୟାଦି ପ୍ରତି ଧ୍ୟାନ ଦେଇ ବେଶ୍ ଦକ୍ଷତା ହାସଲ କରିଥିଲେ । ଫଳରେ ମିଶରୀୟ ଓ ବେବିଲୋନୀୟ ପ୍ରାଚୀନ କଳା କେବଳ ବଞ୍ଚିଲେ ନାହିଁ, ଗ୍ରୀସ୍‌ରେ ପହଞ୍ଚି ଗ୍ରୀକ୍‌ମାନଙ୍କୁ ଉଦ୍‌ବୁଦ୍ଧ କଲେ । ହିବ୍ରୁ ରାଜା ସୋଲୋମନ୍‌ଙ୍କ ଅମଳରେ ଜେରୁଜେଲମ୍ ଠାରେ ନିର୍ମିତ ହୋଇଥିବା ବିଖ୍ୟାତ ମନ୍ଦିର ଫିନିସିଆନ୍‌ଙ୍କର କୀର୍ତ୍ତି ।

ବେପାର ଦୃଷ୍ଟିରୁ ଫିନିସିଆନ୍‌ମାନେ କଳା କୌଶଳରେ ଦକ୍ଷତା ହାସଲ କରିବାର ଉଦ୍ୟମ ଅବ୍ୟାହତ ରଖିଥିଲେ । ହିସାବ କିତାବ ଟିପି ରଖିବାର ଆବଶ୍ୟକତା

ଅନୁଭବ କରି ସେମାନେ ମେସୋପଟାମିଆର ସୁମେରିଆନ୍‌ଙ୍କ ଠାରୁ ବର୍ଣ୍ଣମାଳା ଶିଖିଥିଲେ । ଏହି ବର୍ଣ୍ଣମାଳାର ଅନେକ ଉନ୍ନତି ସାଧନ କରି ସେମାନେ ଏକ ନୂତନ ବର୍ଣ୍ଣମାଳା ସୃଷ୍ଟି କଲେ । ବିଦେଶୀ ବଣିକଙ୍କର ନାନା ପ୍ରକାର ସୁନ୍ଦର ବାସନ କୁସନ, କାଠ ଓ ହାତୀଦାନ୍ତର



[ ଖ୍ରୀ: ପୂ ସପ୍ତମ ଶତାବ୍ଦୀର ଫିନିସିଆନ୍ ପାତ୍ର । ରୁପା ପାତ୍ରରେ ସୁନା ଗୁଣ୍ଡଣୀ ହୋଇଛି । ଅଙ୍କିତ ଚିତ୍ରରେ ମିଶରୀୟ ଓ ଆସିରିଆନ୍ କଳାର ପ୍ରଭାବ ସ୍ପଷ୍ଟ । ସିଂହକୁ ଖେଦିବା ଓ ଶିକାର କରିବା ଆସିରିଆନ୍‌ଙ୍କର ପ୍ରିୟ ଥିଲା । ଫିନିସିଆନ୍ କଳା ଦୁଷ୍ପ୍ରାପ୍ୟ । ତେଣୁ ବୋଷ୍ଟନ୍ ମିଉଜିୟମ୍‌ରେ ସୁରକ୍ଷିତ ଏହି ପାତ୍ରଟି ଏକ ଅମୂଲ୍ୟ ଐତିହାସିକ ସମ୍ପଦ । ]

କାରୁକାର୍ଯ୍ୟ ଦେଖି ଗ୍ରୀକ୍‌ମାନଙ୍କ ମନରେ କଳା ସୃଷ୍ଟିର ପ୍ରେରଣା ଜାଗ୍ରତ ହୋଇଥିଲା । ଗ୍ରୀକ୍‌ମାନଙ୍କୁ ଏକ ମହାନ୍ କଳାକାର ଜାତି ଭାବେ ଗଢ଼ିବାରେ ଏହି ପ୍ରେରଣାର ଉଲ୍ଲେଖ-ଯୋଗ୍ୟ ଅବଦାନ ରହିଛି । ପୁଣି ଫିନିସିଆନ୍‌ଙ୍କ ଠାରୁ ଗ୍ରୀକ୍‌ମାନେ ବର୍ଣ୍ଣମାଳା ଶିଖିଥିଲେ । ମାତ୍ର ଗ୍ରୀସ୍‌ରେ ହିସାବକିତାବ ଟିପିବା ପରି ଏକ ସୀମିତ ଆବଶ୍ୟକତା ମଧ୍ୟରେ ବର୍ଣ୍ଣ-ମାଳାର ବ୍ୟବହାର ଆବଦ୍ଧ ରହିଲା ନାହିଁ । ଲେଖାପଢ଼ା ଶିଖି ଅଳ୍ପ କାଳ ଭିତରେ ସେମାନେ ବିଶ୍ୱର ଜ୍ଞାନଭଣ୍ଡାରକୁ ବିପୁଳ ସାହିତ୍ୟ ସମ୍ପଦରେ ଭରିଦେଲେ ।

ଫିନସିଆନ୍‌ଙ୍କ ଠାରୁ ବର୍ଣ୍ଣମାଳା ଶିଖି ଗ୍ରୀକ୍‌ମାନେ ତାହାର କେତେକ ଉନ୍ନତି ସାଧନ କରିଥିଲେ । ବର୍ଣ୍ଣମାଳାରେ ସ୍ୱରବର୍ଣ୍ଣକୁ ଯୋଡ଼ିବା ଗ୍ରୀକ୍‌ଙ୍କର କୃତିତ୍ୱ । ଉନ୍ନତ ଗ୍ରୀକ୍ ବର୍ଣ୍ଣମାଳା ଇଟାଲୀରେ ପହଞ୍ଚି ରୋମାନ୍‌ମାନଙ୍କ ହାତରେ କେତେକାଂଶରେ ପରିବର୍ତ୍ତିତ ହେଲା । ଏହି ପ୍ରକ୍ରିୟାରେ ୟୁରୋପୀୟ ଭାଷାମାନଙ୍କର ଜନନୀ ଲାଟିନ୍ ଭାଷାର ସୃଷ୍ଟି । ଗ୍ରୀକ୍ ମୂଳ ଭାଷା ହୋଇଥିବାରୁ ଅନେକ ଇଂରେଜୀ ଶବ୍ଦ ଗ୍ରୀକ୍ ଭାଷାରୁ ଉତ୍ପତ୍ତି ଲାଭ କରିଛି ।

ଫିନସିଆନ୍‌ଙ୍କ ଠାରୁ ଗ୍ରୀକଙ୍କର ଉଚ୍ଚାରଣ ସାମାନ୍ୟ ବଦଳିଯିବା ସ୍ୱାଭାବିକ୍ । ସେମାନେ ଫିନସିଆନ୍‌ଙ୍କର ପ୍ରଥମ ବର୍ଣ୍ଣ "ଏଲ୍‌ଫା"କୁ କହିଲେ ଆଲ୍‌ଫା, ଦ୍ୱିତୀୟ ବର୍ଣ୍ଣ 'ବେଥ୍'କୁ କହିଲେ ବିଟା । ଆଲ୍‌ଫା, ବିଟାରୁ ଇଂରାଜୀ ଆଲ୍‌ଫାବେଟ୍ (alphabet) ଶବ୍ଦଟି ସୃଷ୍ଟି ।

ଗ୍ରୀକ୍‌ମାନେ ଫିନସିଆନ୍‌ଙ୍କ ଠାରୁ ଯେ କେବଳ ବର୍ଣ୍ଣମାଳା ଶିକ୍ଷା କଲେ ସେତିକ ନୁହେଁ, ପାପିରସ୍ ଗଛର କାଣ୍ଡ କାଟି ସିଲଟ ପରି ବ୍ୟବହାର କରିବାର କୌଶଳ ମଧ୍ୟ ସେହିମାନଙ୍କ ଠାରୁ ଶିଖିଲେ । ଫିନସିଆର ନଗର ବେବିଲୋନ୍‌ରୁ ପାପିରସ୍ ଗଛ (ବଣୁଆ ତୃଣଜାତୀୟ ଗଛ) ନିଆଯାଇ ଗ୍ରୀସ୍ ମାଟିରେ ରୋପଣ କରାଗଲା । ପାପିରସ୍‌ରୁ ପ୍ରସ୍ତୁତ ଗ୍ରନ୍ଥକୁ ଗ୍ରୀକ୍‌ମାନେ କହିଲେ ବିବିଲିଆ । ବାଇବେଲ୍ ଶବ୍ଦଟି ଏଇଥିରୁ ଆସିଛି । ବାଇବେଲ୍‌ର ଆକ୍ଷରିକ ଅର୍ଥ ବହି ।

ପାପିରସ୍ ଗଛକୁ କାଟି ସିଲଟ ତିଆରି କରି ସେଥିରେ ଲେଖିବାର କୌଶଳ ଗ୍ରୀକ୍‌ମାନେ ଶିଖିଥିଲେ । ପାପିରସ୍‌ରୁ ପେପର୍ ଶବ୍ଦଟି ସୃଷ୍ଟି ।

ଧାତୁ ଦ୍ରବ୍ୟର ନିର୍ମାଣ କୌଶଳ, ଜାହାଜ ନିର୍ମାଣ, ଲୁଗାବୁଣା ଓ ରଙ୍ଗ ଦେବା (Dye) ପ୍ରଭୃତି ଟେକ୍‌ନିକ୍‌ଗୁଡ଼ିକୁ ଗ୍ରୀକ୍‌ମାନେ ଫିନସିଆନ୍‌ଙ୍କ ପାଖରୁ ଶିଖିନେଲେ । କେତୋଟି ନୂଆ କଥା ଜାଣି ବୁଦ୍ଧିମାନ୍ ଗ୍ରୀକ୍ ଜାତି ସନ୍ତୁଷ୍ଟ ହୋଇ ରହିଲା ନାହିଁ । ସେମାନେ ପ୍ରାଚୀନ ମିଶର ଓ ବେବିଲୋନ୍‌ର ଜ୍ଞାନ ବିଜ୍ଞାନ ସମ୍ପର୍କରେ ଅଧିକ ଜାଣିବା ପାଇଁ କୌତୂହଳୀ ହେଲେ । ଏ ଦିଗରେ ମଧ୍ୟ ସେମାନଙ୍କୁ ଫିନସିଆନ୍‌ଙ୍କର ସାହାଯ୍ୟ ମିଳିଲା । ବେବି-ଲୋନ୍‌ରେ ଆବିଷ୍କୃତ ଜଳଘଣ୍ଟା ଓ ସୂର୍ଯ୍ୟଘଣ୍ଟାର ନିର୍ମାଣକୌଶଳ ଓ ବେବିଲୋନୀୟ ମାପ ପଦ୍ଧତି ସେମାନେ ଶିଖିଥିଲେ । ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ହିସାବ କିତାବ, କାଲେଣ୍ଡର

ମିଶ୍ରୀୟମ, ଷନଶଡ଼ ଷାଠିଏ ଡ଼ିଗ୍ରୀରେ ବୃତ୍ତର ବିଭକ୍ତିକରଣ ଇତ୍ୟାଦି ବିଷୟରେ ଜ୍ଞାନ ପାଇଁ ଗ୍ରୀକ୍‌ମାନେ ବେବିଲୋନ୍ ପାଖରେ ଋଣୀ । ସେମାନେ ମିଶରରୁ ଜ୍ୟାମିତି ଓ ଜ୍ୟୋତିର୍ବିଜ୍ଞାନ ଶିକ୍ଷା କରିଥିବା ସମ୍ଭବ । ଖ୍ରୀ:ପୂ ୭ମ ଶତାବ୍ଦୀରୁ ଆରମ୍ଭକରି ବିଭିନ୍ନ ସମୟରେ ଥେଲିଜ୍, ପିଥାଗୋରସ୍, ସୋଲୋନ୍, ପ୍ଲେଟୋ ଓ ଡ଼ିମୋକ୍ରିଟସ୍ ପ୍ରଭୃତି ବିଶିଷ୍ଟ ଗ୍ରୀକ୍ ମନୀଷୀମାନେ ମିଶର ଯାଇଥିଲେ । ମିଶରର ପ୍ରାଚୀନ ସାଂସ୍କୃତିକ ବିଭବ ସେମାନଙ୍କୁ ମୁଗ୍‌ଧ ଓ ଉଦ୍‌ବୁଦ୍ଧ କରିଥିଲା ।

## ମହାକବି ହୋମର

ଗ୍ରୀକ୍‌ମାନଙ୍କର କେବଳ ଗୋଟିଏ ଭାଷା ନଥିଲା । ସେମାନଙ୍କର ଜଣେ ମହାକବି ଥିଲେ । ହୋମର୍ ଆୟୋନିଆ ବା କୌଣସି ଅଞ୍ଚଳର କବି ନୁହନ୍ତି । ସେ ଗ୍ରୀକ୍ ଜାତିର କବି । ହୋମର୍‌ଙ୍କୁ କେନ୍ଦ୍ରକରି ଗ୍ରୀକ୍ ଭୂଖଣ୍ଡରେ ବାସକରୁଥିବା ଲୋକଗୁଡ଼ିକ ଗୋଟିଏ ଜାତି ଭାବେ ଦାନା ବାନ୍ଧିଲେ କହିବା ଅତ୍ୟୁକ୍ତି ହେବନାହିଁ । ମହାକବି ଜାତିପାଇଁ ଗୋଟିଏ ଭାବରାଜ୍ୟ ଗଢ଼ିଦିଏ । ସେଇ ଭାବରାଜ୍ୟରେ ବାସକରିବା ଫଳରେ ଅସଲ ଜାତୀୟତା ସୃଷ୍ଟି ହୁଏ । ସକଳ ବିଭିନ୍ନତା ସତ୍ତ୍ୱେ ବିଶାଳ ଭାରତବର୍ଷର ଅଧିବାସୀଗଣ ରାମାୟଣ ଓ ମହାଭାରତ ପାଇଁ ଗୋଟିଏ ଜାତି ହୋଇଛନ୍ତି । କାରଣ, ରାମାୟଣ ମହାଭାରତରେ ଭାରତ-ବର୍ଷର ଯଥାର୍ଥ ଜାତୀୟ ଭାବାଦର୍ଶ ଓ ଜାତୀୟ ଜୀବନ ଚର୍ଯ୍ୟା ପ୍ରକାଶ ପାଇଛି ।

ଗ୍ରୀସ୍‌ର ପ୍ରାୟ ସବୁ କବି ଓ ନାଟ୍ୟକାର ହୋମର୍‌ଙ୍କ ପାଖରେ ଋଣୀ । ଯେପରି ରାମାୟଣ ଓ ମହାଭାରତର କାହାଣୀଗୁଡ଼ିକୁ ଆଶ୍ରୟ କରି ଭାରତବର୍ଷର କବିମାନେ ଯୁଗ ଯୁଗ ଧରି କାବ୍ୟ, କବିତା ଓ ନାଟକ ଇତ୍ୟାଦି ଲେଖିଲେ, ହୋମର୍‌ଙ୍କର ମହାକାବ୍ୟ ଦୁଇଟିରୁ ଗ୍ରୀକ୍ କବି ନାଟ୍ୟକାରମାନେ ସେହିପରି ବିଷୟବସ୍ତୁ ସଂଗ୍ରହ କରିଛନ୍ତି ।

ଯେଉଁ ଭାଷାରେ ମହାକବି ହୋମର୍, ସୋଫୋକ୍ଲିଜ୍ ଓ ୟୁରିପିଡ଼ିଜ୍‌ଙ୍କ ପରି ମହାନ୍ ନାଟ୍ୟକାର ଓ ପ୍ଲେଟୋଙ୍କ ପରି ମହାନ୍ ଦାର୍ଶନିକ ଲେଖିଗଲେ; ରାଜନୈତିକ ପ୍ରତିବନ୍ଧକ ଭାଙ୍ଗି ସେହି ଭାଷାଭାଷୀ ଲୋକଙ୍କ ମଧ୍ୟରେ ହୃଦୟର ବନ୍ଧନ ସୃଷ୍ଟି ହେବା ଖୁବ୍ ସ୍ୱାଭାବିକ୍ ।

## ଗ୍ରୀକ୍ ଦେବ ଦେବୀ

ଇଣ୍ଡୋ-ୟୁରୋପୀୟ ବିଭିନ୍ନ ସୁଅଧାରରେ ଭାସି ଆସି ଗୋଟିଏ ଗୋଟିଏ ଦଳ ତାର ଦେବଦେବୀଙ୍କ ସହିତ ଗ୍ରୀସ୍‌ରେ ପ୍ରବେଶ କରିଥିଲା । ବିଭିନ୍ନ ଇଣ୍ଡୋ-ୟୁରୋପୀୟ ଦଳର

କେତେଜଣ ସାଧାରଣ ଦେବଦେବୀ ଅବଶ୍ୟ ଥିଲେ । ତଥାପି ପ୍ରାଚୀନ ହିନ୍ଦୀୟ ଓ ଅନ୍ୟାନ୍ୟ ଦେବଦେବୀଙ୍କ ସହିତ ନବାଗତ ଦେବଦେବୀମାନେ ଦୁଇତିନି ଶତାବ୍ଦୀ ମଧ୍ୟରେ ଅଭିନ୍ନ ଭାବେ ମିଶିଗଲେ । ଏହି ପ୍ରକ୍ରିୟାରେ ଅନେକ ଦେବତା ବିସ୍ମୃତ ହେଲେ, କେତେକ ନବଜନ୍ମ ଲାଭକଲେ । ଗୌଣ ମୁଖ୍ୟ ଓ ମୁଖ୍ୟ ଗୌଣ ହେଲେ । ଗ୍ରୀକ୍ ଦେବଦେବୀଙ୍କର ଏନ୍ତୁଡ଼ିଶାଳାର କିଛି ଖବର ଇତିହାସ ରଖିଛି, ଅନେକ ଖବର ଇତିହାସର ଅଗୋଚର । ଆମେ କିନ୍ତୁ ସବୁ ବିଷୟ ଭିତରକୁ ପଶିବୁ ନାହିଁ । ଏନ୍ତୁଡ଼ିଶାଳାରୁ ବାହାରି ଆସିଥିବା ଦେବଦେବୀଙ୍କର ମହିମା ଓ କାର୍ଯ୍ୟକଳାପ ସମ୍ବନ୍ଧରେ କିଛି ଆଲୋଚନା କରିବା ଆମର ଉଦ୍ଦେଶ୍ୟ ।

ଗ୍ରେଟ ଗ୍ରେଟ ନଗର ରାଷ୍ଟ୍ରରେ ବିଭକ୍ତ ଗ୍ରୀସ୍ ବହୁ ଦେବତାଙ୍କ ପୂଜାପାଇଁ ଉପଯୁକ୍ତ କ୍ଷେତ୍ର ଥିଲା । ଗ୍ରୀସ୍‌ର ଧାତୁରେ ଏକେଶ୍ୱରବାଦ ନ ଚଳିବାର କଥା ପ୍ରତ୍ୟେକ ନଗରର ଜଣେ ଇଷ୍ଟଦେବ ଥିଲେ । ଏପରିକି, ପ୍ରତ୍ୟେକ ପରିବାର ତା ଇଷ୍ଟଦେବତାଙ୍କୁ ପୂଜୁଥିଲା । ଗୋଟିଏ ପରିବାରର ଇଷ୍ଟଦେବ ନଗରର ଇଷ୍ଟଦେବଙ୍କ ଠାରୁ ଭିନ୍ନ ହୋଇ ପାରନ୍ତି । ଗୋଟିଏ ଗ୍ରୀକ୍ ଘରେ ଘରର ଇଷ୍ଟଦେବଙ୍କ ପାଖରେ ଅଲିଭା ଦୀପଟିଏ ଦିନରାତି ଜଳୁଥିଲା । ଜନ୍ମ, ମୃତ୍ୟୁ ଓ ବିବାହ ପରି ପରିବାରର ବିଶେଷ ଘଟଣା ଉପଲକ୍ଷେ ଇଷ୍ଟଦେବଙ୍କ ପାଖରେ ବିଧି ମୁତାବକ ପୂଜା ହେଉଥିଲା । ଇଷ୍ଟଦେବଙ୍କ ପାଖରେ ଭୋଗ ଲାଗିବା ପରେ ଯାଇ ଘର-ଲୋକେ ଖାଉଥିଲେ । ପ୍ରତ୍ୟେକ ଗୋଷ୍ଠୀ ଓ ଉପଜାତିର ମଧ୍ୟ ଜଣେ ଜଣେ ଇଷ୍ଟଦେବ ଥିଲେ । ହୋମର୍‌ଙ୍କ କାବ୍ୟରୁ ଆମେ ଜାଣୁ ଯେ ପ୍ରତ୍ୟେକ ବୀର ଜଣେ ଇଷ୍ଟଦେବଙ୍କୁ ପୂଜା କରୁଥିଲେ । ତାଙ୍କଠାରୁ ସେ ସବୁ ପ୍ରକାର ସାହାଯ୍ୟ ଓ ବୁଦ୍ଧି ପାଉଥିଲେ ।

ଗ୍ରୀସ୍‌ର ପ୍ରତି ନଗର, ଗୋଷ୍ଠୀ ଓ ଉପଜାତିର ଜଣେ ଜଣେ ଇଷ୍ଟ-ଦେବ ଥିଲେ । ପ୍ରତ୍ୟେକ ପରିବାରର ଜଣେ ଇଷ୍ଟଦେବ । ଘରେ ଇଷ୍ଟଦେବଙ୍କ ପାଖରେ ଦିନରାତି ଅଲିଭା ଦୀପଟିଏ ଜଳୁ-ଥିଲା । ନଗରର ଇଷ୍ଟଦେବଙ୍କ ମନ୍ଦିରରେ ମଧ୍ୟ ଅଲିଭା ଦୀପ ଥିଲା ।

ନଗର ମନ୍ଦିରରେ ନଗରର ଆରାଧ୍ୟ ଦେବତା ବା ଇଷ୍ଟଦେବଙ୍କର ମନ୍ଦିର ଥିଲା । ସେଠାରେ ସେ ପୂଜା ପାଉଥିଲେ । ତାଙ୍କ ପାଖରେ ନଗର ତରଫରୁ ଅଲିଭା ଦୀପ ଜଳୁଥିଲା । ଏହି ପବିତ୍ର ଦୀପକୁ ନଗର ପ୍ରତିଷ୍ଠାତା ଜଳାଇ ଥିଲେ ବୋଲି ଲୋକଙ୍କର ବିଶ୍ୱାସ । ଅଗ୍ନିଶିଖା ସେହି ମହାନ୍ ବୀରପୁରୁଷଙ୍କର ଉପସ୍ଥିତିର ପ୍ରତୀକ । ନାଗରିକମାନେ ଏକାଠି ରୁଣ୍ଡହୋଇ

ଇଷ୍ଟଦେବଙ୍କର ପୂଜା କରନ୍ତି । ତାଙ୍କୁ ସ୍ୱୀକାର କରୁନଥିବା ବ୍ୟକ୍ତି ନାଗରିକ ହେବାକୁ ଅଯୋଗ୍ୟ । ଯୁଦ୍ଧବେଳେ ଇଷ୍ଟଦେବଙ୍କ ପ୍ରତିମୂର୍ତ୍ତିକୁ ଆଗରେ ରଖି ସେନାବାହିନୀ ଯୁଦ୍ଧଯାତ୍ରା କରୁଥିଲେ । ନଗରର ପ୍ରଧାନ ମାଜିଷ୍ଟ୍ରେଟ ନଗର ଦେବତାଙ୍କ ଠାରୁ କ୍ଷମତାପ୍ରାପ୍ତ ବୋଲି ଲୋକେ ବିଶ୍ୱାସ କରୁଥିଲେ ।

ହିନ୍ଦୁ ଦେବତାଙ୍କ ପରି ଗ୍ରୀକ୍ ଦେବଦେବୀଙ୍କ ସଂଖ୍ୟା ଅଗଣିତ । ଜଗତର ସବୁ ପ୍ରକାର ଅନ୍ତରାଳରେ ଗ୍ରୀକ୍ ମାନସ ଜଣେ ଦେବତାଙ୍କୁ କଳ୍ପନା କରିଥିଲା । ପ୍ରତ୍ୟେକ ଗୁଣ, ପ୍ରତ୍ୟେକ କଳା, ଦକ୍ଷତା କୌଶଳ ଏପରିକି ଋତୁ, ମାସ, ଦିନ, ରାତି ଓ ପ୍ରହରର ଜଣେ ଜଣେ ଦେବତା । ଗ୍ରୀକ୍ ଦେବତାମାନେ ଅତିମାତ୍ରାରେ ମାନବୀୟ । ଗ୍ରୀକ୍ ଦେବଦେବୀଙ୍କୁ ଲକ୍ଷ୍ୟକରି ଦାର୍ଶନିକ ଜେନୋଫେନ୍ସ ମନ୍ତବ୍ୟ କରିଥିଲେ, ବଳଦମାନେ ଚିତ୍ର ଆଙ୍କୁଥିଲେ ବା କବିତା ଲେଖିଥିଲେ, ସେମାନଙ୍କ କଳାକୃତିରେ ଦେବତାଙ୍କର ରୂପ ବଳଦଙ୍କ ପରି ହୋଇଥାଆନ୍ତା ! ଅର୍ଥାତ୍ ମଣିଷ ଦେବତାଙ୍କୁ ଗଢିଥିବାରୁ ସେମାନଙ୍କୁ ନିଜ ଛାଞ୍ଚରେ ଗଢ଼ିଛି । ସତକଥା । ଗ୍ରୀକ୍ ଦେବଦେବୀଙ୍କୁ ଲକ୍ଷ୍ୟ କଲେ ଏହା ହୃଦୟଙ୍ଗମ କରିହୁଏ । ଏବଂ ହିନ୍ଦୁ-ଧର୍ମର ଦେବଦେବୀ କଳ୍ପନା ବା ସୃଷ୍ଟି ମଧ୍ୟ ବହୁ ଦିଗରୁ ଗ୍ରୀକ୍ ଦେବଦେବୀଙ୍କ ସହ ତୁଳନୀୟ ?

ମଣିଷ ସହିତ ଗ୍ରୀକ୍ ଦେବଦେବୀଙ୍କର ସାମଞ୍ଜସ୍ୟ ଥିବାରୁ ସେମାନଙ୍କର ଜନ୍ମ-ଇତିହାସ, କାର୍ଯ୍ୟକଳାପ ଓ କୀର୍ତ୍ତି ଅପକୀର୍ତ୍ତି ସମ୍ବନ୍ଧୀୟ ଉପାଖ୍ୟାନଗୁଡ଼ିକ ଏତେ ରସାଳ ଓ ମନମତାଣିଆ । ଗ୍ରୀକ୍ ଦେବତାମାନେ ଅମର ଓ ଅତିମାନବିକ ଶକ୍ତିର ଅଧିକାରୀ । ଏଇ ଦୁଇଟି ଗୁଣ ନ ଥିଲେ ସେମାନେ ମଣିଷ ସହିତ ସମାନ ହୋଇଆଆନ୍ତେ । ସ୍ୱର୍ଗ ସେମାନଙ୍କର ନିବାସ ନୁହେଁ, ମନୁଷ୍ୟର ଅଗମ୍ୟ ଅଲମ୍ପସ୍ର ପର୍ବତ ଶିଖର ସେମାନଙ୍କର ବାସସ୍ଥଳୀ । ରାତିରେ ଦେବତାମାନେ ଅଲମ୍ପସ୍‌ରେ ବିଶ୍ରାମ କରନ୍ତି । ଜରୁରୀ ପରିସ୍ଥିତି ଉପୁଜିଲେ ମନ୍ତ୍ରଣା କରିବାକୁ ଦେବତାଙ୍କର ମିଟିଙ୍ଗ୍ ଅଲମ୍ପସ୍‌ରେ ବସେ । ଅନ୍ୟ ସମୟରେ ସେମାନେ ନାନା କାର୍ଯ୍ୟରେ ପଦାରେ ବୁଲି ବୁଲୁଥାନ୍ତି । ଏ କଳ୍ପନା ସହିତ ଆମ ହିନ୍ଦୁ ଦେବଦେବୀମାନଙ୍କର ବହୁ ସମୟରେ ମେରୁ ବା ହିମାଳୟ ପର୍ବତରେ ଅଧିବାସ କରିବା କଥା ମନକୁ ଆସେ ।

ଭୋଗ ପାଇବାକୁ ଦେବତାଙ୍କର ଖୁବ୍ ଲାଳସା । ଭୋଗ ପାଇଲେ ନ୍ୟାୟ ଅନ୍ୟାୟ ନ ବିଚାରି ସେମାନେ ମନୁଷ୍ୟକୁ ସାହାଯ୍ୟ କରନ୍ତି । ସବୁବେଳେ ମଣିଷଙ୍କ ପିଠି

ପଡ଼ୁଥାନ୍ତି । ମଣିଷଙ୍କ ବ୍ୟାପାରରେ ହସ୍ତକ୍ଷେପ କରନ୍ତି । ଯୁଦ୍ଧରେ ଜଣକ ପଟେ ରହି ସକ୍ରିୟ ଭାଗ ନେବାରେ ସେମାନଙ୍କର ଖୁବ୍ ଆନନ୍ଦ । ଯୁଦ୍ଧ ପୂର୍ବ ନାହିଁ ତ ମନ ଖୁସିରେ ବଣ ପାହାଡ଼ରେ ବୁଲି, ଝରଣା କୂଳରେ କେଉଁ ଅପ୍‌ସରୀକୁ ଛକି ବସ ବା କେଉଁ ସୁନ୍ଦରୀ ରାଜକନ୍ୟାକୁ ପାଇବାର ଫନ୍ଦି କରି—ଗ୍ରୀକ୍ ଦେବତାଙ୍କର ଜୀବନ ଦର୍ଶନ ମୋଟାମୋଟି ଏହିପରି । କହିବା ବାହୁଲ୍ୟ, ଏମାନେ ମଣିଷର ଆଧ୍ୟାତ୍ମିକ କ୍ଷୁଧା ମେଣ୍ଟାଇ ପାରନ୍ତି ନାହିଁ । ମଣିଷକୁ ଏକ ନୈତିକ ଜୀବନ ଯାପନ ପାଇଁ ପ୍ରେରଣା ଦେଇ ପାରନ୍ତି ନାହିଁ । ଦେବଗଣଙ୍କର ଅନ୍ୟାୟ ଓ କପଟ ଆଚରଣ ବିଷୟ ପରବର୍ତ୍ତୀ ଗ୍ରୀକ୍ ଦାର୍ଶନିକମାନେ ଉଲ୍ଲେଖ କରିଛନ୍ତି । ଅବଶ୍ୟ ଏହି ବିଷୟରେ ହିନ୍ଦୁ ଦେବଦେବୀଙ୍କ ସହିତ ଗ୍ରୀକ୍ ଦେବଦେବୀଙ୍କୁ ସମାନ ଆସନରେ ବସାଇ ହେବ ନାହିଁ ।

ଗ୍ରୀକ୍ ଦେବଦେବୀଙ୍କ ଠାରୁ ଆଧ୍ୟାତ୍ମିକ କ୍ଷୁଧାର ଖାଦ୍ୟ ଦାବୀ କରିବା ଯଥାର୍ଥ ନୁହେଁ । କାରଣ ଗ୍ରୀକ୍‌ଧର୍ମ ବା ଦେବଦେବୀ ମଣିଷର ଆତ୍ମିକ ଜ୍ୱଳନରୁ ଜାତ ନୁହନ୍ତି । ପାଶ୍ଚାତ୍ୟ ଭୂଖଣ୍ଡରେ ପ୍ରଥମ କରି ଭଗବାନ ଯିଶୁଖ୍ରୀଷ୍ଟ ଏକ ଆଧ୍ୟାତ୍ମିକ ଧର୍ମ ସଂସ୍ଥାପନ କଲେ । ଜଣେ ଗ୍ରୀକ୍‌ର ଆଧ୍ୟାତ୍ମିକ ଆବଶ୍ୟକତା ବରଂ ତା ଜାତିର ମହାନ୍ ଟ୍ରାଜେଡ଼ି ଓ ବଡ଼ ଦାର୍ଶନିକଙ୍କର ଦର୍ଶନ ଦ୍ୱାରା କେତେକାଂଶରେ ପୂରଣ ହେଉଥିଲା ।

ମଣିଷ ସହିତ ଗ୍ରୀକ୍ ଦେବତାଙ୍କର ସାମଞ୍ଜସ୍ୟ ରହିଛି । ସେମାନେ ଅନେକ ମାନବୀୟ ଦୋଷ ଦୁର୍ବଳତାରୁ ମୁକ୍ତ ନୁହନ୍ତି । ସେମାନଙ୍କ ଠାରୁ ଆଧ୍ୟାତ୍ମିକ ଖାଦ୍ୟ ମିଳେନା । ଗ୍ରୀକ୍ ଜାତିର କଳା ଚେତନାରୁ ଗ୍ରୀକ୍ ଦେବ-ଦେବୀଗଣ ଜାତ ।

କଳା ପ୍ରାଣ ଗ୍ରୀକ୍ ଜାତିର କଳା-ଚେତନାରୁ ଗ୍ରୀକ୍ ଦେବଦେବୀଙ୍କର ଜନ୍ମ । ଗ୍ରୀସ୍‌ର ସମ୍ଭ୍ରାନ୍ତ, ଧନୀ ବ୍ୟକ୍ତିଙ୍କର ନୈଶ୍ୟଭୋଜରେ ସ୍ୱଭାବ-କବିମାନେ ଅତିଥି-ମାନଙ୍କୁ ଦେବଦେବୀଙ୍କ ସମ୍ପର୍କରେ ସୁନ୍ଦର କାହାଣୀ ସବୁ ଶୁଣାଉଥିଲେ । ସେଇମାନଙ୍କ ତୁଣ୍ଡରେ ଏଇ ସରସ କାହାଣୀମାନ ବ୍ୟାପିଲା । ପୁଣି ଏତେ ଦେବଦେବୀ ନ ଅଣ୍ଟିଲା ପରି କଳ୍ପନାବିଳାସୀ ଗ୍ରୀକ୍ ମାନସ ଅଗଣିତ ଅପ୍‌ସରୀ, ଜଳପରୀ ଓ କିନ୍ନର କିନ୍ନରୀଙ୍କୁ ସୃଷ୍ଟି କଲା । ଏ ବିଷୟରେ ଭାବିଲେ ଉଇଲ୍ ଡୁରାଣ୍ଟଙ୍କ ମନ୍ତବ୍ୟଟି ମନକୁ ପାଇଯାଏ । ଗ୍ରୀକ୍ ଦେବଦେବୀଙ୍କ ପ୍ରସଙ୍ଗରେ ସେ କହିଛନ୍ତି, ବହୁନାରୀ ରମଣ କାମନା ପରି ବହୁ ଦେବାର୍ଚ୍ଚନା ( Polytheism ) ପ୍ରତି ମଣିଷର ସହଜାତ ପ୍ରବଣତା।

ରହିଛି । ବାସ୍ତବତଃ ! ଜଣେ ନାରୀ ଯେତେ ସୁନ୍ଦରୀ ଓ ପ୍ରେମଶୀଳା ହୁଅନ୍ତୁ, ଜଣେ ଦେବତା—ଏପରିକି ଇଷ୍ଟଦେବତା ମଧ୍ୟ ହୁଅନ୍ତୁ, ମଣିଷର ମନ ଜଣେ ନାରୀ ବା ଜଣେ ଦେବତାଙ୍କୁ ନେଇ ସନ୍ତୁଷ୍ଟ ହୁଏନା ।

କଳାପ୍ରିୟ ଗ୍ରୀକ୍ ଜାତିର କଳ୍ପନାରୁ ଜନ୍ମ ନେଇଥିବା ବହୁ ଦେବତା, ଅଗଣିତ ଅପ୍ସରୀ, ଜଳପରୀ ଓ ବଣ ଦେବୀଙ୍କର ବିହାର ଭୂମିରେ ଗ୍ରୀସ୍ ପରିଣତ ହେଲା ।

ଗ୍ରୀକ୍ ଜାତିର ସ୍ୱପ୍ନମଖା ରଙ୍ଗୀନ୍ କଳ୍ପନାରୁ ଅସଂଖ୍ୟ ଅପ୍ସରୀ, କନ୍ୟାରୀ, ଜଳପରୀ, ସାଟୀର୍ ଓ ବଣ-ଦେବୀ ସୃଷ୍ଟି ହୋଇ ଗ୍ରୀସ୍‌ର ଜଙ୍ଗଲ, ପାହାଡ଼ ଓ ନଦନଦୀରେ ଆସ୍ଥାନ ଜମାଇଦେଲେ । ଜଣେ ଜଳପରୀ ବାସ କରୁ ନ ଥିବା ଝରଣାଟିଏ କେଉଁଠି ନ ଥିଲା । ଏପରି ବଣଟିଏ ନଥିଲା ଯାହା କୌଣସି ଦେବୀଙ୍କର କ୍ରୀଡ଼ାସ୍ଥଳୀ ନୁହେଁ । ପ୍ରତି ନଈ, ପାହାଡ଼ ଓ ସମୁଦ୍ର ସହିତ କିଛି ନା କିଛି କିମ୍ବଦନ୍ତୀ, ମିଥ୍, କାହାଣୀ ଯୋଡ଼ ହୋଇଗଲା ।

ଗ୍ରୀସର ସବୁ ଦେବଦେବୀ ଅବଶ୍ୟ ଏକ ସମୟରେ ଜନ୍ମ ହୋଇ ନ ଥିଲେ । ଅସଂଖ୍ୟ ଦେବତାଙ୍କ ମଧ୍ୟରୁ କିଏ ମାଇସିନିଆନ୍, କିଏ ଡୋରିଆନ୍ ବା ଆକିଆନ୍ ତାହା ଚିହ୍ନଟ କରିବା ସର୍ବଦା ସମ୍ଭବ ନୁହେଁ । ପୁଣି ଜାତିର ଭାଗ୍ୟରବି ଅସ୍ତ ହେବା ସହିତ ତାର ଦେବତାଙ୍କର ସମଦଶା ଘଟିଥିଲା । ପରାଜିତର ଦେବତା ବିଜୟୀ ଜାତିର ଦେବତାଙ୍କର ଅଧୀନ ହେଉଥିଲେ । ଉଦାହରଣ ସ୍ୱରୂପ, ଡୋଡୋନାର ବିଖ୍ୟାତ ମନ୍ଦିରରେ ପୂର୍ବରୁ ପୂଜା ପାଉଥିବା ବସୁଧାମାତା ଗିଆ ( Gaea )ଙ୍କୁ ହଟେଇ ତାଙ୍କ ସ୍ଥାନରେ ଜିଅସ୍‌ଙ୍କୁ ପ୍ରତିଷ୍ଠା କରାଯାଇଥିଲା । ସେହିପରି ସମୟର ଗତିରେ ପ୍ରସିଦ୍ଧ ଧର୍ମପୀଠ ଡେଲ୍‌ଫାଇର ଆସନ ଆପୋଲୋଙ୍କୁ ଛାଡ଼ି ଦେଇ ଗିଆଙ୍କୁ ହଟିଯିବାକୁ ପଡ଼ିଲା ।

ଗ୍ରୀସ୍‌ର ପ୍ରଧାନ ଦେବଦେବୀ ହେଉଛନ୍ତି ଅଲିମ୍ପିଆନ୍ । ଅନ୍ୟ ଦେବତାମାନେ ବିସ୍ମୃତି ଗର୍ଭକୁ ଚାଲିଯାଇଛନ୍ତି । ଆକିଆନ୍ ଓ ଡୋରିଆନ୍‌ଙ୍କ ସମୟରେ ଗ୍ରୀସ୍‌ରେ ଅଲିମ୍ପିଆନ୍ ଦେବଗଣଙ୍କର ଆବିର୍ଭାବ । ବିଜୟୀ ଜାତିର ଦେବତା ଭାବେ ସେମାନେ ଗ୍ରୀସ୍‌ର ପୁରାତନ ଦେବଦେବୀଙ୍କ ଉପରେ ପ୍ରାଧାନ୍ୟ ବିସ୍ତାର କଲେ । ହୋମର୍‌ଙ୍କ କାବ୍ୟରେ ଆମେ କେବଳ ସେଇମାନଙ୍କୁ ଭେଟୁ । ଗ୍ରୀସ୍‌ର ଜନସାଧାରଣ ଯେ ଅନ୍ୟ ଦେବତାଙ୍କର ପୂଜା ବନ୍ଦକରି ଦେଇଥିଲେ ତା ନୁହେଁ । କଥା ହେଉଛି, ହୋମର୍ ଯେଉଁମାନଙ୍କ ବନ୍ଦନା ଗାଇଲେ ସେମାନେ ଐତିହାସିକ ପ୍ରସିଦ୍ଧି ଲାଭକରିବା ସ୍ୱାଭାବିକ୍ ।

ନୂତନ ଓ ପୁରାତନ ଅସଂଖ୍ୟ ଗ୍ରୀକ୍ ଦେବଦେବୀଙ୍କୁ ସାତୋଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ । ସ୍ୱର୍ଗପୁରର ଦେବତା, ମର୍ତ୍ତ୍ୟପୁରର ଦେବତା, ପାତାଳର ଦେବତା, ପଶୁ-ରୂପୀ ଦେବତା, ଉଦରଭୂତର ଦେବତା, ପ୍ରେତଲୋକର ଦେବତା ଓ ଅଲିମ୍ପିଆନ୍ ଦେବତା । ଏପରି ବିଭାଗୀକରଣ କେବଳ ବୁଝାମଣାର ସୁବିଧାପାଇଁ କରାଯାଇଛି । ଜଣେ ଦେବତା ଗୋଟିଏ ବିଭାଗ ମଧ୍ୟରେ ସୀମାବଦ୍ଧ ହୋଇ ନ ପାରନ୍ତି । ଜଣେ ପାତାଳର ଦେବତା ମଧ୍ୟ ଉଦରଭୂତର ଦେବତା ହୋଇଥିବା ସମ୍ଭବ । ଜିଅସ୍ ସ୍ୱର୍ଗପୁରର ଦେବତା । ତାଙ୍କୁ ପ୍ରେତଲୋକର ଦେବତା ଭାବେ ଗଣାଯାଇ ପାରେ । ସେ ମଧ୍ୟ ଅଲିମ୍ପିଆନ୍ ଦେବତା । ମୋଟ ଉପରେ ଉପରୋକ୍ତ ଶ୍ରେଣୀ ବିଭାଗଟି କୃତ୍ରିମ ଓ ସ୍ୱେଚ୍ଛାନୁସାରୀ ।

## ସ୍ୱର୍ଗପୁରର ଦେବତା—

ଏମାନଙ୍କ ମଧ୍ୟରେ ସର୍ବପ୍ରାଚୀନ ଦେବତା ଅନ୍ତର୍ଗତ । ଅନାଦି କାଳରୁ ସ୍ୱର୍ଗ ବା ଆକାଶ ପ୍ରତି ମଣିଷର ରହସ୍ୟମୟ ଆକର୍ଷଣ ରହି ଆସିଛି । ଅତି ପ୍ରାଚୀନ କାଳରୁ ଗ୍ରୀକ୍‌ମାନେ ସମୁଦାୟ ଆକାଶକୁ ଦେବତା ଭାବେ ଗ୍ରହଣ କରିଥିଲେ । କାଳକ୍ରମେ ଆକାଶର ସାକାର ବିଗ୍ରହ ରୂପେ ୟୁରାନସ୍ ପୂଜା ପାଇଲେ । ୟୁରାନସ୍‌ର ଅର୍ଥ ଆକାଶ । ପରବର୍ତ୍ତୀ କାଳର ଜିଅସ୍ ୟୁରାନସ୍‌ଙ୍କର ରୂପାନ୍ତର । ଆମ ଇନ୍ଦ୍ରଙ୍କପରି ଜିଅସ୍ ମେଘର ଦେବତା । ଗ୍ରୀସ୍‌ରେ ଟାଣ ଖରାହୁଏ । ବୃଷ୍ଟିର ପରିମାଣ କମ୍ । ତେଣୁ ସୂର୍ଯ୍ୟଦେବତା ବା ହେଲିଓସ୍ (Helios) ଗ୍ରୀସ୍‌ରେ ଜଣେ ଗୌଣ ଦେବତା । ଆଗାମେମନନ୍ ସୂର୍ଯ୍ୟୋପାସକ ଥିଲେ । ସୂର୍ଯ୍ୟଙ୍କର ରଥଟାଣିବା ପାଇଁ ସ୍ପାର୍ଟାରେ ଅଶ୍ୱବଳୀ ଦେବାର ପ୍ରଥାଥିଲା । ଗ୍ରୀସ୍‌ରେ ଚନ୍ଦ୍ର (Selene)ଙ୍କର ପୂଜା ନ ଥିଲା କହିଲେ ଚଳେ । ଗ୍ରହ ତାରକାଙ୍କର ଅବସ୍ଥା ତଦ୍ରୂପ ।

## ମର୍ତ୍ତ୍ୟପୁରର ଦେବତା—

ଅଧିକାଂଶ ଗ୍ରୀକ୍ ଦେବତା ମର୍ତ୍ତ୍ୟର ବାସିନ୍ଦା । ଆଦ୍ୟକାଳରୁ ବସୁନ୍ଧରା ଗି (Ge) ବା ଗିଆ (Gaea) ଦେବୀ ରୂପେ ପୂଜା ପାଉଥିଲେ । ସେ ସର୍ବଂସହା, କୃପାମୟୀ, ମାଆ ଧରଣୀ । ଗିଆଙ୍କୁ ବାଦ୍‌ଦେଲେ ଗ୍ରୀସ୍‌ର ଜଳ, ସ୍ଥଳ, ବାୟୁମଣ୍ଡଳ, ଏପରିକି ପ୍ରତ୍ୟେକ ବିଶିଷ୍ଟ ବୃକ୍ଷ, ବିଶେଷତଃ ପର୍ବତ ଓକ୍‌ଗଛ ସହସ୍ର ସହସ୍ର ଦେବଦେବୀଙ୍କର ବାସସ୍ଥଳୀ । ପ୍ରକୃତିର ପ୍ରତ୍ୟେକ ଶୋଭାବନ୍ତ ଓ ରହସ୍ୟମୟ ସ୍ଥାନକୁ ଜଣେ ଦେବୀ ବା ଦେବତା ନିଜର

ଆସ୍ଥାନଭାବେ ବାଛି ନେଇଥିଲେ । ସମୁଦ୍ର, ନଈ ଓ ହ୍ରଦମାନ ଜଳପରୀ ଓ ଜଳକନ୍ୟାଙ୍କର ନିବାସ ହୋଇଥିଲା । ବାୟୁବାସୀ ଦେବତାମାନଙ୍କ ମଧ୍ୟରେ ଇଓଲସ୍ ମୁଖ୍ୟ । ଅନ୍ୟ ବାୟୁବାସୀ ଦେବତାମାନେ ହେଉଛନ୍ତି ବୋରିଆସ୍, ଜେଫିର୍, ନୋଟସ୍ ଓ ୟୁରସ୍ । ବନରେ ଦେବତା ପାନ୍ (Pan) ଗ୍ରୀକଙ୍କର ଜଣେ ବଶିଷ୍ଟ ଦେବତା । ପ୍ରକୃତିର ଶୋଭା ଦେଖି ସଦାପ୍ରସନ୍ନ ପାନ୍ ବଣଜଙ୍ଗଲରେ ବୁଲୁଥାଆନ୍ତି । ବଂଶୀବାଦନ ତାଙ୍କର ଅନ୍ୟତମ ସଉକ୍ । ଘୋର ଅରଣ୍ୟରେ ତାଙ୍କର ବଂଶୀଧ୍ୱନି ଶୁଣି ମେଷପାଳକମାନେ ପାନିକ୍ (ଗ୍ରସ୍ତଥା) ହୋଇ ଯାଆନ୍ତି । 'ପାନ୍'ରୁ ପାନିକ୍ (Panic) ଶବ୍ଦଟିର ସୃଷ୍ଟି । ପାନ୍‌ଙ୍କର ଆକୃତି ବଡ଼ ବିଚିତ୍ର । ତାଙ୍କର ଅର୍ଦ୍ଧାଙ୍ଗ ଛାଗଳ ଓ ଅର୍ଦ୍ଧାଙ୍ଗ ମନୁଷ୍ୟ । ପାନ୍‌ଙ୍କର ଦୁଇଟି ଶିଙ୍ଗ, ଛେଳି ଦାଢ଼ି, ପାଦ ଛେଳି ଖୁରପରି । ଚେହେରା ଏପରି କଦାକାର ଅଥଚ ନାରୀ ସଙ୍ଗ ଲାଭ କରିବାକୁ ଏହି କାମୁକ ଦେବତାଙ୍କର ପ୍ରବଳ ବାସନା ! ବନରେ ସାଟୀର୍‌ମାନେ (ଅର୍ଦ୍ଧାଙ୍ଗ ଛାଗଳ, ଅର୍ଦ୍ଧାଙ୍ଗ ମନୁଷ୍ୟ) ତାଙ୍କର ଅନୁଚର । ବଣପରୀଙ୍କ ସହିତ ଖେଳିବା, ବୁଲିବା ଓ ନୃତ୍ୟ କରିବାରେ ତାଙ୍କର ସମସ୍ତ କଟେ ।



[ପ୍ରେମ ଓ ସୌନ୍ଦର୍ଯ୍ୟର ଦେବୀ ଆଫ୍ରୋଡ଼ାଇଟ୍ ପାନ୍‌ଙ୍କ ସହିତ ଲୁଡ଼ୁ ଖେଳୁଛନ୍ତି । ଗୋଟିଏ ମତ ଅନୁସାରେ ଦୁହେଁ ସ୍ୱାମୀ ସ୍ତ୍ରୀ । ଗ୍ରୀକ୍ କନ୍ଦର୍ପ ଏରସ୍ ସେମାନଙ୍କ ପୁଅ । ଖେଳରେ କଳି ଲାଗିଛି । ଏରସ୍ ମାଆଙ୍କ ପକ୍ଷ ନେଇଛନ୍ତି । ତଳେ ବସି ତାଙ୍କ ହଂସ ଘୁମୋଉଛି । ]

## ଉର୍ବରତାର ଦେବତା—

ନିଜର ତଥା ପଶୁ ପକ୍ଷୀଙ୍କର ବଂଶବୃଦ୍ଧି ବିଷୟଟି ଆଦିମ ମଣିଷକୁ ପ୍ରଚୁର ବିସ୍ମୟ ଯୋଗାଉଥିଲା । ପ୍ରାଚୀନ କାଳର ଅଧିକାଂଶ ଜାତି ପରି ଗ୍ରୀକ୍‌ମାନେ କ୍ଷେତର ଉର୍ବରତା ଓ ନରନାରୀଙ୍କର ସନ୍ତାନ ଉତ୍ପାଦନ କ୍ଷମତାକୁ ମିଶେଇ ଦେଖୁଥିଲେ । ସନ୍ତାନ ଉତ୍ପାଦନର ପ୍ରତୀକ ଭାବେ ଲିଙ୍ଗ ଡିମିଟର୍, ଡାଇଓନିସସ୍ ଓ ହର୍ମିଜ୍ ପ୍ରଭୃତି ଦେବଦେବୀଙ୍କର ପୂଜାବିଧି

ଭିତରେ ସ୍ଥାନ ପାଇଥିଲା । ଡାଇଓନିସସ୍‌ଙ୍କର ପୂଜାସ୍ତୋତ୍ର ପାଳନ ସମୟରେ ଲିଙ୍ଗଙ୍କର ଏକ ଶୋଭାଯାତ୍ରା ହେଉଥିଲା ।

ଏଥେନ୍‌ସ, ଆର୍‌ଗୋସ୍ ପ୍ରଭୃତି କେତେକ ନଗର ଦେବୀପୂଜାର ପୀଠ ଥିଲା । ଶସ୍ୟ ଉତ୍ପାଦନର ଦେବୀ ଡିମିଟର୍ ଜଣେ ବିଶିଷ୍ଟା ଦେବୀ । ଦେବଙ୍କ ଗୁରୁ ଜିଅସ୍ ତାଙ୍କୁ ବଳପୂର୍ବକ ବିବାହ କରିଥିଲେ । ଜିଅସ୍‌ଙ୍କ ଔରସରୁ ଡିମିଟର୍‌ଙ୍କର ଗୋଟିଏ କନ୍ୟା ଓ ଗୋଟିଏ ପୁତ୍ର ଜାତ ହୋଇଥିଲା । କନ୍ୟାର ନାମ କୋର୍ (ସବୁଜ ଶସ୍ୟ କେଣ୍ଡା) । ପରେ ସେ ପର୍ସିଫୋନ୍ ନାମରେ ପରିଚିତ ହେଲେ । ତାଙ୍କ ବିଷୟରେ ଗୋଟିଏ ସୁନ୍ଦର ମିଥ୍ ରହିଛି । କୋର୍‌ଙ୍କୁ ହେଡିଜ୍ ହରଣ କରିନେଇ ପାତାଳରେ ରଖିଲେ । ଝିଅକୁ ନ ପାଇ ଡିମିଟର୍ ପାଗଳ ପରି ହେଲେ ଓ ଚତୁର୍ଦ୍ଦିଗ ଖୋଜିଲେ । ଦଶଦିନ କାଳ ସେ ଅନ୍ନଜଳ ସ୍ପର୍ଶ କଲେନାହିଁ । ଦଶମ ଦିନ ଇଲୁସିସ୍ ନଗରରେ ନଗରର ରାଜପୁତ୍ର ତାଙ୍କୁ କୋର୍‌ଙ୍କ ସନ୍ଧାନ ଦେଲେ । ଡିମିଟର୍ ସନ୍ତୁଷ୍ଟ ହୋଇ ରାଜପୁତ୍ରଙ୍କୁ କୃଷିବିଦ୍ୟା ପ୍ରଦାନ କଲେ ଏବଂ ପୃଥିବୀସାରା ଏହାର ପ୍ରଚାରପାଇଁ ତାଙ୍କୁ ନିର୍ଦ୍ଦେଶ ଦେଲେ । ଦେବୀଙ୍କଠାରୁ ବିହନ ଓ ସର୍ପ-ଚାଳିତ ଗୋଟିଏ ଲଙ୍ଗଳ ପାଇ ରାଜପୁତ୍ର ତାଙ୍କ ଆଦେଶ ପାଳନ କଲେ ।

ଡିମିଟର୍‌ଙ୍କ କନ୍ୟା ପର୍ସିଫୋନ୍‌ଙ୍କୁ ମୃତ୍ୟୁଦେବତା ହେଡିଜ୍ ହରି ନେଇଥିଲେ । ଆକ୍ରମଣକାରୀ ଜାତିର ପୁରୁଷମାନେ ଯେପରି ପରାଜିତ ଜାତିର ନାରୀଙ୍କୁ ବଳ-ପୂର୍ବକ ବିବାହ କରନ୍ତି, ସେହିପରି ଜିଅସ୍, ପୋସିଡନ ପ୍ରଭୃତି ବିଜୟୀ ଜାତିର ଦେବଗଣ ପ୍ରାଚୀନ ବାସିନ୍ଦାଙ୍କର ଦେବୀମାନଙ୍କ ପ୍ରତି ବଳାତ୍କାର କରିଥିଲେ ।

ଝିଅ ପାତାଳପୁରୀରେ ବନ୍ଦୀ ଶୁଣି ଡିମିଟର୍ ଅଲିମ୍ପସ୍ ଫେରିଲେ ନାହିଁ । କାରଣ ଜିଅସ୍‌ଙ୍କ ଜ୍ଞାତସାରରେ ହେଡିଜ୍ ଏପରି ଅପକର୍ମ କରିବାକୁ ସାହସ କରିଥିବେ ବୋଲି ଦେବୀ ନିଶ୍ଚିତ ଥିଲେ । ଏହା ମଧ୍ୟ ମିଥ୍ୟା ନୁହେଁ । ଦେବୀଙ୍କର କ୍ରୋଧ ଯୋଗୁ ବୃକ୍ଷମାନେ ବନ୍ଧ୍ୟା ହୋଇଗଲେ । ଘାସ ଗଛଟିଏ ମଧ୍ୟ ପୃଥିବୀରେ କଅଁଳିଲା ନାହିଁ । ମିଠାକଥା ଓ ମୂଲ୍ୟବାନ୍ ଉପହାର ଦେଇ ଡିମିଟର୍‌ଙ୍କୁ ସନ୍ତୁଷ୍ଟ କରିବାର ଚେଷ୍ଟା ବିଫଳ ହେଲା । ତେଣୁ ପର୍ସିଫୋନ୍‌ଙ୍କୁ ଫେରାଇ ଦେବାକୁ ଜିଅସ୍ ହେଡିଜ୍‌ଙ୍କ ପାଖକୁ ଖବର ପଠାଇଲେ ।

ଦିନରାତି କାନ୍ଦୁଥିବା ଓ କୌଣସି ଖାଦ୍ୟ ସ୍ପର୍ଶ କରୁ ନ ଥିବା ପର୍ସିଫୋନ୍‌ଙ୍କୁ ଅଟକାଇବା ପାଇଁ ହେଡିଜ୍ ମଧ୍ୟ ଚାହୁଁ ନ ଥିଲେ । ତେଣୁ ଜିଅସ୍‌ଙ୍କ ଦୂତ ହର୍ମିଜ୍‌ଙ୍କ ସାଙ୍ଗରେ ସେ

ପର୍ସିଫୋନ୍‌ଙ୍କୁ ଛାଡ଼ିଦେଲେ । ହର୍ମିଜ୍‌ଙ୍କ ରଥ ଛୁଟୁ ନ ଛୁଟୁଣୁ ଜଣେ ଯମଦୂତ ଆସି ଖବର ଦେଲା ଯେ ପର୍ସିଫୋନ୍ ମୃତ୍ୟୁରାଜାଙ୍କ ବଗିଚାରୁ ଗୋଟିଏ ଡାଳିମ୍ବ ତୋଳି ସାତୋଟି ମଞ୍ଜି ଖାଇଥିବାର ସେ ଦେଖିଛି । କଥା ହେଉଛି, ଥରେ ମୃତ୍ୟୁଲୋକର ଖାଦ୍ୟ ଖାଇଲେ ଆଉ ସେଠାରୁ ଫେରିବାର ନିୟମ ନାହିଁ । ତେଣୁ ହର୍ମିଜ୍‌ଙ୍କ ପଛେ ପଛେ ହେଡ଼ିଜ୍‌ଙ୍କ ରଥ ଛୁଟିଲା । ଝିଅକୁ ଫେରି ପାଇବା ପରେ ପୁଣି ଗୋଟାଏ ଗଣ୍ଡଗୋଳିଆ କଥା ଶୁଣି ଡିମିଟର୍ ବ୍ୟସ୍ତ ହୋଇପଡ଼ିଲେ । ଶେଷରେ ଦେବୀ ରିଆଙ୍କ ମଧ୍ୟସ୍ଥତାରେ ସ୍ଥିର ହେଲା ଯେ ପାତାଳପୁରର ରାଣୀ ହୋଇ ପର୍ସିଫୋନ୍ ତିନିମାସ ସେଠାରେ ରହିବେ ଓ ବର୍ଷର ବାକି ନଅମାସ ସେ ପୃଥିବୀକୁ ଆସିବେ । ଏ କାହାଣୀର ଗୋଟିଏ ତାତ୍ପର୍ଯ୍ୟ ହେଉଛି, ଶସ୍ୟକ୍ଷେତ୍ର ବର୍ଷକ ନଅମାସ ଶସ୍ୟଶ୍ୟାମଳା ହୋଇ ରହୁଥାଏ ଓ ତିନିମାସ ପଡ଼ିଆ ରହେ ।

ଏହି ମିଥ୍‌ଟିକୁ ଟିକିନିଖି ବର୍ଣ୍ଣନା କରିବା ଓ ବିଶ୍ଳେଷଣ କରିବାର ଅବକାଶ ଏଠାରେ ନାହିଁ । ପ୍ରାଚୀନକାଳରେ କୃଷି ସମ୍ପର୍କୀୟ ଗୁପ୍ତ କର୍ମକାଣ୍ଡ ବିଧାନମାନ ନାରୀ ପୂଜାରିଣୀମାନଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ପୁରୁଷପ୍ରାଧାନ୍ୟ ଯୁଗ ଆରମ୍ଭ ହେଲାରୁ ପୁରୁଷମାନେ ବଳାତ୍କାର କରି ଏଇସବୁ ବିଧାନ ନାରୀଙ୍କ ଠାରୁ ନେଇ ଆସିଥିଲେ । କୋର୍‌ଙ୍କ ପ୍ରତି ହେଡ଼ିଜ୍‌ଙ୍କର ବା ଡିମିଟର୍‌ଙ୍କ ପ୍ରତି ଜିଅସ୍‌ଙ୍କର ବଳାତ୍କାର ଏହାର ପ୍ରତୀକ ।

ମିଥ୍ ଭିତରେ ଜାତିର ଇତିହାସ, ଚଳଣି, ଆଶା, ଅଭିଳାଷ, ସଫଳତା ଓ ବିଫଳତା ଫେଣ୍ଟି ହୋଇ ରହିଥାଏ । ମିଥ୍ କିପରି ଇତିହାସ ପ୍ରତି ବିଶ୍ୱସ୍ତ ଓ ପ୍ରତୀକଧର୍ମୀ ତାର ଦୃଷ୍ଟାନ୍ତସ୍ୱରୂପ ଡିମିଟର୍ ସମ୍ପର୍କିତ ଆଉ ଗୋଟିଏ ମିଥ୍‌ର ଉଲ୍ଲେଖ କରାଯାଇପାରେ । କାଡ଼ମସ୍ ଓ ହାର୍ମୋନିଆଙ୍କ ବିବାହ ଉତ୍ସବରେ ଡିମିଟର୍ ଓ ଟିଟାନ୍ ଇଆସିଅନ୍‌ଙ୍କର ଭେଟ ହୋଇଥିଲା । ଦୁହେଁ ପରସ୍ପର ପ୍ରତି ଆକୃଷ୍ଟ ହେଲେ । ଉତ୍ସବରେ ପ୍ରଚୁର ସୁରାପାନର ବ୍ୟବସ୍ଥା ଦୁହିଁଙ୍କୁ ଅଥୟ କଲା । ଇଆସିଅନ୍ ଓ ଡିମିଟର୍ ଚୁପ୍‌ଚାପ୍ ଉତ୍ସବରୁ ଖସିଆସିଲେ । ପାଖରେ ତିନିଥର କର୍ଷିତ ପଡ଼ିଆ କ୍ଷେତ । ସେଇ ହେଲା ସେମାନଙ୍କର ମିଳନ ଶଯ୍ୟା । ଫେରିବା ପରେ ସେମାନଙ୍କର ହାବଭାବ ଓ ଦେହରେ କାଦୁଅ ଦାଗ ଦେଖି ଘଟଣାଟା ବୁଝିବାକୁ ଜିଅସ୍‌ଙ୍କୁ ବାକି ରହିଲା ନାହିଁ । କ୍ରୋଧରେ ବଜ୍ର ପେଷି ସେ ଇଆସିଅନ୍‌ଙ୍କୁ ନାଶ କଲେ ।

ଅଧିକ ଫଳ ପାଇବା ଆଶାରେ ବହନ ବୁଣିବା ପୂର୍ବରୁ କ୍ଷେତରେ ଶସ୍ୟଦେବୀଙ୍କର ପୌରହିତ୍ୟ ଓ ରାଜାଙ୍କର ଯୌନ ସଙ୍ଗମ ହେବାର ବିଧି ପ୍ରାଚୀନ କାଳରେ ବହୁ ସ୍ଥାନରେ ଚଳୁଥିଲା । ଏ ବିଧି ଅଳ୍ପକାଳ ପୂର୍ବେ ମଧ୍ୟ ବାଲ୍‌କନ୍‌ବାସୀଙ୍କ (Balkans) ମଧ୍ୟରେ ପ୍ରଚଳିତ ଥିଲା । ଡିମିଟିର୍ ଓ ଇଓାସିଅନ୍ ସମ୍ପର୍କୀୟ ମିଥ୍ ଏହିପରି ବିଧିର ମିଥ୍‌ରୂପ । ଦୁଇଥର ତିନଥର ଚାଷ ହୋଇଥିବା କ୍ଷେତକୁ ଯିବା ସମ୍ପର୍କରେ କୁହାଯାଏ ଯେ ଏଥେନ୍‌ସରେ କ୍ଷେତ ତିନଥର ଚାଷ ହେଉଥିଲା ।

## ପଶୁରୂପୀ ଦେବତା :

କ୍ରିଟ୍‌ରେ ବୃଷଭଙ୍କ ପୂଜା ବିଶେଷ ଭାବେ ପ୍ରଚଳିତ ଥିଲା । ଗ୍ରୀସ୍‌ରେ ମଧ୍ୟ ବୃଷଭପୂଜା ବହୁ ରହିଥିଲା । ବୃଷଭ ଶକ୍ତିଶାଳୀ ଓ ଉତ୍ପାଦନକ୍ଷମ । ସେ ଜିଅସ୍ ଓ ଡାଇଓନିସସ୍‌ଙ୍କର ସହଚର । ଉଭୟ ଦେବତା ଅନେକ ସମୟରେ ବୃଷଭ ରୂପ ଧାରଣ କରୁଥିଲେ । ହୁଏତ ବୃଷଭ ଜିଅସ୍‌ଙ୍କର ପୂର୍ବ ସଂସ୍କରଣ । ଜିଅସ୍‌ଙ୍କର ସ୍ତ୍ରୀ ହେରାଙ୍କର ଆଖିକୁ ଗାଈର ଆଖି ସହିତ ତୁଳନା କରାଯାଏ । ତେଣୁ ହେରା ପବିତ୍ର ଗାଭୀଙ୍କର ପୂର୍ବ ସଂସ୍କରଣ ହୋଇ ପାରନ୍ତି । କ୍ରିଟ୍‌ର ସର୍ପପୂଜା ମଧ୍ୟ ପରବର୍ତ୍ତୀ କାଳରେ ଲୋପ ପାଇ ନ ଥିଲା । ସର୍ପ ପ୍ରଜନନ ଶକ୍ତିର ପ୍ରତୀକ । ଖ୍ରୀ:ପୂ: ୫ମ ଶତାବ୍ଦୀର ଏଥେନ୍‌ସରେ ସର୍ପଦେବୀଙ୍କର ମନ୍ଦିର ଥିବାର ପ୍ରମାଣ ମିଳିଛି । ଗ୍ରୀକ୍ କଳାରେ ହର୍ମିଜ୍ ଓ ଆପୋଲୋଙ୍କର ଚିତ୍ର ସହିତ ସର୍ପର ଚିତ୍ର ଦେଖିବାକୁ ମିଳେ ।

## ପାତାଳର ଦେବତା :

ପାତାଳ ଭୟଙ୍କର ଦେବତାଙ୍କର ବାସସ୍ଥଳୀ । ଗିରିଗୁହା ଓ ପ୍ରାକୃତିକ ଗର୍ଭମାନଙ୍କରେ ଗ୍ରୀକ୍‌ମାନେ ଦେବତାଙ୍କର ଅସ୍ତିତ୍ୱ କଳ୍ପନା କରିଥିଲେ । ଲୋକେ ଏମାନଙ୍କୁ ଶ୍ରଦ୍ଧାରେ ନୁହେଁ, ଭୟରେ ପୂଜୁଥିଲେ । ସେମାନଙ୍କର ପୂଜାର ସମୟ ରାତି ।

ପାତାଳରେ ଯମପୁର । ମୃତ୍ୟୁର ଦେବତାଙ୍କର ନାମ ହେଡ଼ିଜ୍ ବା ପ୍ଲୁଟୋ । ମାଟିରେ ଉଠୁଥିବା ଯେ କୌଣସି ଗଛ ପ୍ଲୁଟୋଙ୍କ ଇଚ୍ଛାନୁସାରେ ଉତ୍ପାଦନକ୍ଷମ ହୁଏ ।

## ପ୍ରେତଶକ୍ତିଙ୍କର ଦେବତା :

• ପ୍ରାଚୀନ କାଳରେ ପ୍ରେତ ପୂଜା ପ୍ରଚଳିତ ଥିଲା । ପ୍ରେତମାନେ ମନୁଷ୍ୟର ଉପକାର ବା ଅପକାର କରିବାକୁ ସକ୍ଷମ । ସେମାନଙ୍କର ଅଶୁଭ ଦୃଷ୍ଟିରୁ ରକ୍ଷା ପାଇବାକୁ ଲୋକେ ସେମାନଙ୍କୁ ପୂଜା କରୁଥିଲେ । କୌଣସି ବଡ ବୀରର ଆତ୍ମା ଜଣେ ବ୍ୟକ୍ତି ମଧ୍ୟରେ ପ୍ରବେଶ କରି ତା ଦ୍ୱାରା ମହତ୍ କାର୍ଯ୍ୟ କରାଇ ନେଇପାରେ ବୋଲି ଲୋକେ ବିଶ୍ୱାସ କରୁଥିଲେ ।

## ଅଲମ୍ପିଆନ ଦେବଗଣ :

ଅଲମ୍ପିଆର ଅଲମ୍ପସ୍ ପର୍ବତ ଶୃଙ୍ଗରେ ବାସକରୁଥିବା ଦେବତାମାନେ ଏହି ନାମରେ ପରିଚିତ । ଏମାନେ ବିଜୟୀ ଆକିଆନ୍ ଓ ଡୋରିଆନ୍‌ଙ୍କର ଦେବତା । ଗ୍ରୀସ୍‌କୁ ଅଲମ୍ପିଆନ୍ ଦେବତାମାନେ ଆସିଯିବା ପରେ ପୁରାତନ ଦେବଦେବୀ ନଗଣ୍ୟ ହୋଇଗଲେ । ହୋମର୍ ଓ ହେସିଓଡ୍‌ଙ୍କ କାବ୍ୟରେ ଅଲମ୍ପସ୍‌ର ଦେବତାଙ୍କ ବ୍ୟତୀତ ଅନ୍ୟ ଦେବତାଙ୍କୁ ପ୍ରାୟ ଦେଖିବାକୁ ମିଳେନା ।

ଗ୍ରୀକ୍‌ମାନେ ବିଶ୍ୱାସ କରୁଥିଲେ ଯେ ପୃଥିବୀ ଚଟକା ଓ ଥାଳପରି ଗୋଲ୍ । ଅଲମ୍ପସ୍ ପର୍ବତ ପୃଥିବୀର କେନ୍ଦ୍ରସ୍ଥଳରେ ଅବସ୍ଥିତ । ଏହି ଗିରିରାଜଙ୍କର ଶୃଙ୍ଗ ଦେବ-ଦେବୀଙ୍କର ନିବାସ । ସେମାନେ କେଉଁଠୁ ଆସିଲେ ? କିପରି ସୃଷ୍ଟି ହେଲେ ? ସେମାନଙ୍କର ସୃଷ୍ଟି ଇତିହାସ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି କାହାଣୀ ସହିତ ଜଡ଼ିତ ।

ସୃଷ୍ଟି ଆରମ୍ଭ ହେବା ପୂର୍ବରୁ ସବୁ ଥିଲା Chaos—ବିଶୃଙ୍ଖଳ । 'କେଅସ୍'ର ତାତ୍ପର୍ଯ୍ୟ—ଯାହାଥିଲା ତାହା ଆକାରହୀନ, ରୂପହୀନ, ଅନିର୍ଦ୍ଦିଷ୍ଟ । କେଅସ୍‌ରୁ ପୃଥିବୀମାତା ସୃଷ୍ଟି ହେଲେ । (କୌଣସି ପ୍ରାଚୀନ ସୃଷ୍ଟିତତ୍ତ୍ୱରେ ସଙ୍ଗତି ଖୋଜିବା ବୃଥା । କେଅସ୍‌ରୁ କିପରି ପୃଥିବୀ ସୃଷ୍ଟି ହେଲା ସେ ପ୍ରଶ୍ନ ନ ପଚାରିବା ଭଲ) ।

ପରବର୍ତ୍ତୀ କାଳରେ ପୃଥିବୀମାତା ଜିଆ (Gaea) ନାମ ଧାରଣ କଲେ । ପୃଥିବୀକୁ ଘେରି ନୀଳ ଆକାଶ । ଆକାଶ ଦେବତା ୟୁରାନସ୍‌ଙ୍କ ସହିତ ଗିଆଙ୍କର ବିବାହ ହେଲା । ଗିଆଙ୍କ ଗର୍ଭରୁ ପ୍ରଥମେ ଭୟଙ୍କର ରାକ୍ଷସମାନେ ଜନ୍ମହେଲେ । ତାପରେ ଜନ୍ମନେଲେ ସାଇକ୍ଲୋପ୍‌ସ ନାମରେ ଖ୍ୟାତ ତିନିଜଣ ହିଂସ୍ର ଓ ଅମିତ ପରାକ୍ରମୀ ସନ୍ତାନ । ସେହି ଦୁର୍ଦ୍ଦାନ୍ତ ପିଲଙ୍କୁ

ଯାବାଡ଼ି କରିବା ପାଇଁ ୟୁରାନସ୍ ସେମାନଙ୍କୁ ନେଇ ଅନ୍ଧାରିଆ ପାତାଳପୁରରେ ଫୋପାଡ଼ିଲେ । ସାଇକ୍ଲୋପ୍‌ସଙ୍କ ପରେ ଜନ୍ମ ହୋଇଥିବା ସନ୍ତାନମାନେ ଟିଟାନ୍ ନାମରେ ଖ୍ୟାତ । ସେମାନେ ସଂଖ୍ୟାରେ ସାତଜଣ । ସାଇକ୍ଲୋପମାନେ ପାତାଳପୁରରେ ବନ୍ଦୀ ହୋଇ ରହିବାରୁ ଜିଆ ଅସନ୍ତୁଷ୍ଟ ହୋଇ ପିତାଙ୍କ ବିରୁଦ୍ଧରେ ଟିଟାନ୍‌ଙ୍କୁ ମତାଇଲେ । ଯାନଭିଇ କ୍ରୋନସ୍‌ଙ୍କ ନେତୃତ୍ୱରେ ଟିଟାନ୍‌ମାନେ ୟୁରାନସ୍‌ଙ୍କୁ ପରାସ୍ତ କରି ତାଙ୍କର ଗାଦି ମାଡ଼ି ବସିଲେ ।

ସାଇକ୍ଲୋପ୍‌ସଙ୍କୁ ଟିଟାନ୍‌ଗଣ ଉଦ୍ଧାର କରି କ୍ରୋନସ୍‌ଙ୍କୁ ନେତାଭାବେ ବାଛିଲେ । ମାତ୍ର ନେତା ହେବା ପରେ କ୍ରୋନସ୍‌ଙ୍କର ପ୍ରଥମ କାର୍ଯ୍ୟ ହେଲା ସାଇକ୍ଲୋପ୍‌ସଙ୍କୁ ନେଇ ସେମାନଙ୍କ ପୂର୍ବସ୍ଥାନରେ ବନ୍ଦୀ କରି ରଖିବା ।

କ୍ରୋନସ୍ ନିଜର ଭଉଣୀ ରିଆ ( 'hea )ଙ୍କୁ ବିବାହ କଲେ । ତାଙ୍କର ପୁନ ଦ୍ୱାରା କ୍ରୋନସ୍ ଗାଦିଚ୍ୟୁତ ହେବେ ବୋଲି ମୃତ୍ୟୁ ପୂର୍ବରୁ ୟୁରାନସ୍ କହି ଯାଇଥିଲେ । 'ମୂଳୁ ମାଇଲେ ଯିବ ସରି' ନୀତିରେ କ୍ରୋନସ୍ ପ୍ରତିବର୍ଷ ଜନ୍ମ ହେଉଥିବା ନିଜର ଶିଶୁ ସନ୍ତାନଙ୍କୁ ଗିଳି ଦିଅନ୍ତି । ପିତୃ ଗର୍ଭରେ ତାଙ୍କର ପୁଅ ଝିଅ ସମାଧି ନେଉଥିବାର ଦେଖି ରିଆଙ୍କର କ୍ରୋଧ ହେଲା । ସନ୍ତାନକୁ ବଞ୍ଚାଇବା ଉଦ୍ଦେଶ୍ୟରେ ଜିଅସ୍ ଜନ୍ମ ହେବା ପୂର୍ବରୁ ରିଆ କ୍ରିଟ୍‌ର ଗୋଟିଏ ନିର୍ଜନ ପର୍ବତକୁ ପଳାଇଲେ । ସେଇଠି ରିଆଙ୍କର ମହାନ୍ ପୁଅ ଜିଅସ୍‌ଙ୍କର ଜନ୍ମ । ଯାଆଡ଼ାର ଛାଗଳ ଠାରୁ କ୍ଷୀର (ଯାହାଙ୍କ ଠାରୁ ପାନ୍ ମଧ କ୍ଷୀର ପାନ କରୁଥିଲେ) ଓ ମହୁଫେଣାର ମହୁ ଖାଇ ଜିଅସ୍ ବଢିଲେ । ବଣର ସୁନ୍ଦରୀ ପରୀମାନେ ତାଙ୍କୁ ପାଳିଲେ । ଗୁହା ବାହାରେ ମନ୍ତ୍ରପାଠ କରୁଥିବା ପୁରୋହିତଙ୍କର ଉଚ୍ଚ ସ୍ୱରରେ ଛୋଟ ଶିଶୁର କାନ୍ଦ ବୁଡ଼ି ଯାଉଥିଲା ।

ଆକାଶଦେବ ୟୁରାନସ୍ ଆଦି ଦେବତା । ପୃଥିବୀମାତା ଗିଆ ଆଦି ଦେବୀ । ଦୁହିଁଙ୍କର ପୁତ୍ର ମାନଙ୍କ ମଧ୍ୟରେ କଳି କନ୍ଦଳ ଓ ଅବିଶ୍ୱାସ ଲାଗି ରହିଥିଲା । ଗ୍ରୀକ୍ ଦେବତାମାନଙ୍କର ଏହା ବଂଶ ପରମ୍ପରା ।

ଶିଶୁକୁ ପ୍ରସବ କରିସାରି ରିଆ ଫେରିଗଲେ ଓ କନା ଗୁଡ଼ା ହୋଇଥିବା ପଥର ଖଣ୍ଡେ କ୍ରୋନସ୍‌ଙ୍କ ହାତକୁ ବଢ଼ାଇଦେଲେ । ସେଇଟିକୁ ନବଜାତ ଶିଶୁ ଧରି ନେଇ ଗିଳି ପକାଇଲେ । ଏଣେ ଜିଅସ୍ କ୍ରିଟ୍‌ରେ ମେଷପାଳକଙ୍କ ମେଳରେ ବଢ଼ୁଥାନ୍ତି । ଯଥା ସମୟରେ ସେ ଜଣେ ବଳିଷ୍ଠ ଓ ସୁନ୍ଦର ଯୁବକ ହେଲେ । ମାତାଙ୍କର ସହାୟତାରେ ସେ କ୍ରୋନସ୍‌ଙ୍କର

ଜଣେ ପରିଚାରକ ଭାବେ ନିଯୁକ୍ତ ହେଲେ । ସୁଯୋଗ ଦେଖି ଦିନେ ଜିଅସ୍ ପିତାଙ୍କୁ କିଛି ମନ୍ତ୍ରସ୍ତ ପାଣି ପିଆଇ ଦେଲେ । ଏହାର ପ୍ରଭାବରେ କ୍ରୋନସ୍ ଯେଉଁମାନଙ୍କୁ ଗିଳିଥିଲେ ଗୋଟି ଗୋଟି କରି ସେମାନଙ୍କୁ ବାନ୍ତି କଲେ । ପ୍ରଥମେ ବାହାରିଲା କନାଗୁଡ଼ା ପଥର ଖଣ୍ଡ । ତା'ପରେ ଜିଅସ୍‌ଙ୍କର ପାଞ୍ଚଜଣ ଭାଇଭଉଣୀ । ସେମାନେ ହେଉଛନ୍ତି ହେଷ୍ଟିଆ ( ପରିବାର ଓ ବସ୍ତିର ମଙ୍ଗଳକାରିଣୀ ଦେବୀ ) ଡିମିଟର୍, ହେରା, ପ୍ଲୁଟୋ ଓ ପୋସିଡନ ( Poseidon ) । ତିନିଜଣ ଦେବୀ ଓ ଜିଅସ୍‌ଙ୍କୁ ମିଶାଇ ତିନିଜଣ ଦେବତା ।

କ୍ରୋନସ୍ ଟିଟାନ୍‌ଙ୍କର ନେତା । ଜିଅସ୍ ତାଙ୍କର ସାନ ପୁଅ ଓ ଦେବତାଙ୍କର ମୁଖ୍ୟ । ଟିଟାନ୍ ଓ ଦେବତାଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ହୋଇଥିଲା ଓ ଟିଟାନ୍-ମାନେ ହାରିଲେ ।

ଏହାପରେ ଦେବତା ଓ ଟିଟାନ୍‌ଙ୍କ ମଧ୍ୟରେ ତୁମୂଳ ଯୁଦ୍ଧ ଲାଗିଲା । ଦେବତାମାନେ ସେମାନଙ୍କର ଉଦ୍ଧାରକର୍ତ୍ତା ଜିଅସ୍‌ଙ୍କୁ ନେତା ଭାବେ ବାଛି ନେଲେ । କ୍ରୋନସ୍ ଦୁର୍ବଳ ହୋଇଯାଇଥିବାରୁ ଟିଟାନ୍‌ଙ୍କର ନେତୃତ୍ୱ ଗ୍ରହଣ କଲେ ମହାବଳୀ ଆଟ୍‌ଲସ୍ । ଯୁଦ୍ଧ ଚାଲିଲା ଦଶବର୍ଷ । ଭୟଙ୍କର ଯୁଦ୍ଧ । ଏ ଯୁଦ୍ଧରେ ତିନିପୁର କମ୍ପିଲା । ପୃଥିବୀ ଉପରେ ଆକାଶ ଭାଙ୍ଗି ପଡ଼ିବା ପରି ଶବ୍ଦରେ ପ୍ରାଣୀମାନେ ସ୍ତବ୍ଧ ହେଲେ । ମେଦିନୀ ଦୋହଲିଲା, ସମୁଦ୍ର କୂଳଲଙ୍ଘନ କରି ମାଡ଼ି ଆସିଲା । ପୃଥିବୀକୁ ଅନ୍ଧକାର ଘୋଟିଗଲା । ମନେ ହେଲା, ପ୍ରଳୟ ହେବ ।

ପୃଥିବୀମାତା କହିଦେଲେ ଯେ, ତାଙ୍କର ନାତି ଜିଅସ୍ ସାଇକ୍ଲୋପ୍‌ସଙ୍କର ସାହାଯ୍ୟ ନେଲେ ଯାଇ ଜିତିବେ । ଜିଅସ୍ କୌଶଳରେ ସାଇକ୍ଲୋପ୍‌ସଙ୍କୁ ପାତାଳପୁରର ବନ୍ଦିଶାଳାରୁ ଉଦ୍ଧାର କଲେ । ସେମାନେ ପ୍ରୀତ ହୋଇ ଜିଅସ୍‌ଙ୍କୁ ବଜ୍ର, ପୋସିଡନ୍‌ଙ୍କୁ ଗୋଟିଏ ତ୍ରିଶୂଳ ଏବଂ ପ୍ଲୁଟୋଙ୍କୁ ଗୋଟିଏ କୁହୁକ ଟୋପି ଉପହାର ଦେଲେ । ଏ ଟୋପିର ଗୁଣ ହେଉଛି, ଯିଏ ଏହାକୁ ପିନ୍ଧିବ ସେ ଅନ୍ୟମାନଙ୍କୁ ଅଦୃଶ୍ୟ ହୋଇଯାଏ । ( ମୃତ୍ୟୁଦେବଙ୍କର ଏକ୍ସପଣ୍ଡ ଟୋପି ନିତାନ୍ତ ଆବଶ୍ୟକ ) । ପ୍ଲୁଟୋ ଏହି ଟୋପି ପିନ୍ଧି କ୍ରୋନସ୍‌ଙ୍କ ଅସ୍ତ୍ର ଶସ୍ତ୍ର ଚୋରାଇ ଆଣିଲେ । ଦେବତାମାନଙ୍କ ସହାୟତାରେ ଜିଅସ୍ ଜୟଯୁକ୍ତ ହେଲେ ଓ ସାଇକ୍ଲୋପ୍‌ସ ଯେଉଁଠି ବନ୍ଦୀ ଥିଲେ ଟିଟାନ୍‌ଙ୍କୁ ସେହି ସ୍ଥାନରେ ବନ୍ଦୀ କରି ରଖାଗଲା । ସେମାନେ ହେଲାସ୍‌ରେ ପ୍ରବେଶ କରିବାର ଆଶଙ୍କା ଚିରକାଳ ପାଇଁ ଦୂର ହେଲା । ଟିଟାନ୍‌ଙ୍କର ସେନାପତି ଆଟ୍‌ଲସ୍ ଆକାଶକୁ କାନ୍ଧେଇ ଧରି ରଖିବାର ଦଣ୍ଡ ପାଇଲେ ।

ବ୍ୟକ୍ତିର ଅବଚେତନ ଯେପରି ସ୍ୱପ୍ନ ମାଧ୍ୟମରେ ପ୍ରକାଶିତ ହୁଏ, ସେହିପରି ମିଥ୍‌ରୁ ଜାତିର ଅବଚେତନର ପରିଚୟ ମିଳେ । ସ୍ୱପ୍ନ ଓ ମିଥ୍ ମଧ୍ୟରେ ଆଉ ଗୋଟିଏ ସାମଞ୍ଜସ୍ୟ ଅଛି । ସ୍ୱପ୍ନ ପରି ମିଥ୍‌ର ଅର୍ଥ ବୁଝିବା କଷ୍ଟକର । ଆହୁରି ମଧ୍ୟ, ସ୍ୱପ୍ନ ପରି ମିଥ୍‌ର ବିଭିନ୍ନ ବ୍ୟାଖ୍ୟା କରାଯାଏ । ମିଥ୍‌ର ବ୍ୟାଖ୍ୟା କରି ତାହାକୁ ଜାତିର ଆଶା, ଆକାଂକ୍ଷା ଓ ଇତିହାସ ସହିତ ଯୋଡ଼ି ଦେଖିବା ଖୁବ୍ ଚିତ୍ତାକର୍ଷକ । ଜାତିକୁ ଘନିଷ୍ଠ ଭାବେ ଚିହ୍ନିବାରେ ମିଥ୍‌ର ବ୍ୟାଖ୍ୟାମାନ ସାହାଯ୍ୟ କରନ୍ତି । ମାତ୍ର ମିଥ୍-ବିଶ୍ଳେଷଣର ସୁଯୋଗ ଆମର ନାହିଁ । ତେବେ କେଉଁଠି କିପରି ସେ ଲୋଭ ସମ୍ବରଣ କରିବା ସମ୍ଭବ ହୋଇନାହିଁ ।

ଗ୍ରୀସ୍‌ର ପ୍ରାକ୍-ହେଲେନିକ୍ ଲୋକମାନେ ଟିଟାନ୍-ପୂଜକ । ଆକ୍ରମଣକାରୀ ହେଲେନିକ୍‌ଗଣ ଜିଅସ୍ ଓ ଅନ୍ୟ ଦେବତାଙ୍କର ପୂଜକ । ଟିଟାନ୍ ଓ ଦେବତାଙ୍କର ଲଢ଼େଇରେ ହେଲେନିକଙ୍କର ଦେବତାମାନେ ବିଜୟୀ ହୋଇଥିଲେ । ପ୍ରଥମ ଶତାବ୍ଦୀର ଐତିହାସିକ ଥାଲସ୍‌ଙ୍କ ମତରେ ଟିଟାନ୍ ଓ ଦେବତାଙ୍କ ମଧ୍ୟରେ ଯୁଦ୍ଧ ସମ୍ପର୍କୀୟ ମିଥ୍ ଖ୍ରୀ. ପୂ ୧୫୦୦ ବେଳର ସୃଷ୍ଟି । ଏହି ସମୟରେ ଟିଟାନ୍‌ଙ୍କ ବାସଭୂମି ଥେସାଲିରେ ହେଲେନିକ୍‌ଙ୍କର ଶକ୍ତିର ପ୍ରାଧାନ୍ୟ ଅନୁଭୂତ ହୋଇଥିଲା ।

ପ୍ଲୁଟୋ, ପୋସିଡନ୍ ଓ ଜିଅସ୍ ତିନିଭାଇ । ସେମାନେ ତିନିବାର ହେଲେନିକ୍ ଆକ୍ରମଣର ପ୍ରତୀକ । ଆୟୋନିଆନ୍, ଇଓଲିଆନ୍ ଓ ଆକିଆନ୍ —ଏ ତିନି ଜାତି ପରି ପରି ଗ୍ରୀସ୍ ଆକ୍ରମଣ କରିଥିଲେ । ପ୍ରାକ୍-ହେଲେନିକ୍ ଗ୍ରୀକ୍ ବାସିନ୍ଦାଗଣ ପୃଥିବୀ ମାତାଙ୍କର ପୂଜକ । ସେମାନେ ଆୟୋନିଆନ୍‌କୁ ଅୟୋ (Io) ଙ୍କ ସନ୍ତାନ ଭାବେ ଗ୍ରହଣ କରି ନିଜ ସହିତ ମିଶାଇ ଦେଲେ, ଇଓଲିଆନ୍‌ଙ୍କୁ ମଧ୍ୟ ସମ୍ମାନ ଦେଲେ । କିନ୍ତୁ ଆକିଆନ୍‌ଙ୍କୁ ନିଜ ସହିତ ସାମିଲ୍ କରିପାରିଲେ ନାହିଁ । ପ୍ଲୁଟୋ, ପୋସିଡନ୍ ଓ ଜିଅସ୍ ପୃଥିବୀମାତାଙ୍କର ସନ୍ତାନ । ସେମାନଙ୍କର ପିତା ପ୍ରଥମ ଦୁଇପୁଅଙ୍କୁ ଗର୍ଭସାତ୍ କରିଦେଲେ । ମାତ୍ର ପ୍ରତିରୋଧ କଲେ ଜିଅସ୍ । ପିତାଙ୍କ ସହିତ ତାଙ୍କର ଯୁଦ୍ଧ ଅନିବାର୍ଯ୍ୟ ହେଲା । ଜିଅସ୍ (ଆକିଆନ୍‌ଙ୍କ ଦେବତା) ପିତାଙ୍କୁ ଗାଦିଚ୍ୟୁତ କରି ନିଜେ ଗାଦି ଦଖଲ କଲେ ।

ତିନିଜଣ ପୁରୁଷ ଦେବତା ପ୍ଲୁଟୋ, ପୋସିଡନ୍ ଓ ଜିଅସ୍ ମାତୃପୂଜକଙ୍କର ଦେଶ ଗ୍ରୀସ୍ ଉପରେ ତିନିବାର ବିଧର୍ମୀଙ୍କର ଆକ୍ରମଣର ପ୍ରତୀକ । ଏହି କଥାଟି ଅତ୍ୟନ୍ତ

ତାପୂର୍ଯ୍ୟପୂର୍ଣ୍ଣ । 'ଗ୍ରୀକ୍'ର ଆକ୍ଷରିକ ଅର୍ଥ ଧରଣୀମାତାର ପୂଜାରୀ (Greeks— Worshipper of Grey Goddess) । ଗ୍ରୀକ୍ ସମେତ ପ୍ରାଚୀନ ୟୁରୋପରେ କୌଣସି ଦେବତା ନ ଥିଲେ । ସମସ୍ତେ ଥିଲେ ଦେବୀ ପୂଜକ । ଖ୍ରୀ. ପୂ. ଦୁଇହଜାର ବେଳକୁ ଆର୍ଯ୍ୟମାନେ ଇନ୍ଦ୍ର, ମିତ୍ର ଓ ବରୁଣ (ପରେ, ଗ୍ରୀସ୍‌ରେ ସେମାନେ ଜିଅସ୍, ପୋସିଡନ୍ ଓ ପ୍ଳୁଟୋ ନାମରେ ରୂପାନ୍ତରିତ)—ଏହି ତିନିଜଣ ପୁରୁଷ ଦେବତାଙ୍କୁ ଧରି ଗ୍ରୀସ୍‌ରେ ପ୍ରବେଶ କରିଥିଲେ । ସେମାନେ ହେଉଛନ୍ତି ଇଓଲିଆନ୍ ଓ ଆୟୋନିଆନ୍ । ପରବର୍ତ୍ତୀ କାଳର ଆକିଆନ୍ ଓ ଡୋରିଆନ୍‌ଙ୍କ ପରି ସେମାନେ ଭୟଙ୍କର ଓ ଦୁର୍ଦ୍ଧର୍ଷ ନୁହନ୍ତି । ଇଓଲିଆନ୍ ଓ ଆୟୋନିଆନ୍ ମାନେ ପ୍ରାଧାନ୍ୟ ବିସ୍ତାର କରିବାକୁ ଚେଷ୍ଟା ନକରି ଗ୍ରୀସ୍‌ର ପ୍ରଚଳିତ ଧର୍ମ ଓ ସମାଜ ବ୍ୟବସ୍ଥାକୁ ମାନିନେଲେ । ଫଳରେ ସେମାନଙ୍କ ଦେବତାମାନେ ହେଲେ ସ୍ଥାନୀୟ ଦେବୀଙ୍କର ପୁତ୍ର । ଗ୍ରୀସ୍‌କୁ ଆସି ଏହି ଆର୍ଯ୍ୟମାନେ ହୋଇଥିଲେ ଗ୍ରୀକ୍ (ମାତୃପୂଜକ) ।

ଖ୍ରୀ. ପୂ. ଜନ୍ମର ଦୁଇହଜାର ବର୍ଷ ପୂର୍ବରୁ ଗ୍ରୀସ୍ ସମେତ ସମଗ୍ର ୟୁରୋପ ଥିଲା ଦେବୀଭୂମି । ଲୋକେ ଥିଲେ ମାତୃପୂଜକ । ସମାଜରେ ନାରୀର ପ୍ରାଧାନ୍ୟଥିଲା । ରାଜ୍ୟର କର୍ତ୍ତ୍ରୀ ଥିଲେ ରାଣୀ ଏବଂ କନ୍ୟା ହେଉଥିଲା ଉତ୍ତରାଧିକାରିଣୀ । ଆର୍ଯ୍ୟମାନେ ଦେବତାଙ୍କୁ ନେଇ ଆସିଲେ । ନବୀନ ମାନଙ୍କର ଦେବତା ଓ ପ୍ରାଚୀନଙ୍କର ଦେବୀଙ୍କ ମଧ୍ୟରେ ସଂଘର୍ଷ ଅନେକ ଗ୍ରୀକ୍ ମିଥ୍‌ରେ ରୂପ ପାଇଛି ।

ତେବେ ସେମାନଙ୍କ ଆଗମନର ପ୍ରଭାବ ସମାଜ ଉପରେ ପଡ଼ିଲା । ନବାଗତମାନେ ଗୋଟିଏ ସଂଭ୍ରାନ୍ତ କ୍ଷତ୍ରୀଗୋଷ୍ଠୀ ଗଢ଼ିଲେ । ସେମାନଙ୍କ ହାତକୁ ଶାସନ-କ୍ଷମତା ଆସିଲା । ଆର୍ଯ୍ୟ ପୁରୁଷ ଦଳପତି ବା ରାଜ୍ୟର ରାଜା ହେଲା କିନ୍ତୁ ଧର୍ମର ମୁଖ୍ୟ ହୋଇ ରହିଲା ନାରୀ । ଏହି ବ୍ୟବସ୍ଥା ହୁଏତ ଯୁଗ ଯୁଗ ଧରି ଚାଲି ଆସିଥିଲା । କିନ୍ତୁ ଆର୍ଯ୍ୟଙ୍କ ଆଗମନ ପରେ ପୁରୁଷ ନାରୀ ଅଧୀନରୁ ଅର୍ଥାତ୍ ରାଜଶକ୍ତି ଧର୍ମଶକ୍ତିର ଅଧୀନରୁ ମୁକ୍ତ ହେବାକୁ ଚେଷ୍ଟା କଲା । ଆର୍ଯ୍ୟଙ୍କ ଆଗମନ ପୂର୍ବରୁ ଅନାର୍ଯ୍ୟ ଦଳପତି ବା ରାଜା ରାଣୀଙ୍କର ସ୍ୱାମୀ ଭାବେ ସମସ୍ତ କ୍ଷମତା ଉପଭୋଗ କରୁଥିଲେ । ତାଙ୍କର ସ୍ୱତନ୍ତ୍ର କ୍ଷମତା ନଥିଲା । ସେ ଥିଲେ ରାଣୀଙ୍କର ଉପଗ୍ରହ ମାତ୍ର । ସେତେବେଳେ ବର୍ଷକୁ ଥରେ ରାଣୀଙ୍କର ସ୍ୱାମୀ ବଦଳାଇବା ଥିଲା ପ୍ରଥା । ଫଳରେ ପୁରୁଣା ରାଜାଙ୍କୁ ମରିବାକୁ ପଡ଼ୁଥିଲା ଓ ରାଣୀଙ୍କର ନୂଆ ସ୍ୱାମୀ ରାଜା ହେଉଥିଲେ । ବର୍ଷକପାଇଁ ରାଜା ହୋଇ (ରାଜାଙ୍କ ଆୟୁଷ ପରି ରାଜ୍ୟ ମଧ୍ୟ ଶ୍ରେଷ୍ଠ) କେତେ କାଳ ଧରି କେତେ ସହସ୍ର ରାଜା ବଳି ପଡ଼ିଛନ୍ତି କିଏ ତାର ହିସାବ ରଖିଛି ? ରାଜ୍ୟ ଓ

ଜୀବନ ଉନ୍ନତ୍ତର ଲୋଭରେ କ୍ୱଚିତ କେହି ଚତୁର ରାଜା ରାଣୀଙ୍କର ଉତ୍ତରାଧିକାରିଣୀ କନ୍ୟାକୁ ବିବାହ କରୁଥିଲେ । ପ୍ରାଣରକ୍ଷା କରିବାପାଇଁ ଏହାଥିଲା ତାଙ୍କର ଏକମାତ୍ର ଉପାୟ ।

ଜିଅସ୍, ପୋସିଡନ୍ ଓ ଆପୋଲୋ ନାମଗୁଡ଼ିକ ଇଣ୍ଡୋୟୁରୋପୀୟ ଦଳଙ୍କର ଆଗମନ ପୂର୍ବରୁ ମଧ୍ୟ ଥିଲା । ରାଜା ଜିଅସ୍ ବା ପୋଡ଼ସନ୍ ଉପାଧି ଧାରଣକରି ଶାସନ କରୁଥିଲେ । ମାତ୍ର ସେତେବେଳେ ଜିଅସ୍ ଥିଲେ ଜଣେ ଉପଦେବତା । ସେ ପ୍ରତିବର୍ଷ ବା (ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ) ମରି ପୁଣି ନୂତନ ଜନ୍ମ (ନୂଆ ରାଜା ରୂପେ) ନେଉଥିଲେ । ପ୍ରାଚୀନ କ୍ରିଟ୍‌ରେ 'ଜିଅସ୍' ପ୍ରତିବର୍ଷ ମରି ପୁନର୍ଜନ୍ମ ଲଭୁଥିବାର ପ୍ରବାଦ ଅଛି । ଖ୍ରୀ. ପୂ. ତ୍ରୟୋଦଶ ଶତାବ୍ଦୀରେ ଆକିଆନ୍‌ମାନେ ଆସିଲା ପରେ ଏହି ପରମ୍ପରା କ୍ରମଶଃ ଶକ୍ତିହୀନ ହେଲା । ଆକିଆନ୍ ରାଜା ବା ଦଳପତି ଦର୍ଶାଇଲେ ଯେ ଦେବ ଦେବ ଜିଅସ୍ ଅମର । ତେଣୁ ତାଙ୍କର ପ୍ରତିନିଧିଙ୍କୁ ବଳିଦେବା ଅସଙ୍ଗତ । ଆକିଆନ୍‌ଙ୍କ ସମୟରେ ରାଜା ଓ ଦଳପତିମାନେ ଆଜୀବନ କ୍ଷମତାରେ ରହିଲେ । ଡୋରିଆନ୍‌ଙ୍କ ବେଳକୁ ଏହି ପରମ୍ପରା ପ୍ରତିଷ୍ଠିତ ହୋଇଗଲା । ବାପଘର ଛାଡ଼ି ଯୁବରାଜଙ୍କୁ ରାଜ୍ୟ ବୁଲି କେଉଁ ରାଜକନ୍ୟାର ପସନ୍ଦଯୋଗ୍ୟ ହେବାପାଇଁ ସାଧନ କରିବାକୁ ପଡ଼ିଲା ନାହିଁ । ରାଜକୁମାର ହେଲେ ରାଜ୍ୟର ଉତ୍ତରାଧିକାରୀ । ବିବାହ ପରେ ଅଡ଼ିସିଅସ୍ ତାଙ୍କର ପତ୍ନୀ ପିନିଲୋପିଙ୍କୁ ବାପଘର ପରିତ୍ୟାଗ କରି ତାଙ୍କ ରାଜ୍ୟକୁ ଆସିବା ପାଇଁ ପ୍ରବର୍ତ୍ତାଉଥିବା କଥା ଆମେ ହୋମରଙ୍କ କାବ୍ୟରେ ପଢ଼ିବାକୁ ପାଉ ।

ଇଣ୍ଡୋୟୁରୋପୀୟଙ୍କ ଆଗମନ ପୂର୍ବରୁ ଦଳପତି ବା ରାଜା ଜିଅସ୍ ନାମ ଗ୍ରହଣ କରୁଥିଲେ । ସେତେବେଳେ ଜିଅସ୍ ଥିଲେ ମରଣଶୀଳ । ମାତ୍ର ଆର୍ଯ୍ୟଙ୍କର ଜିଅସ୍ ଦେବ ଅମର । ଏହି ଯୁକ୍ତିରେ ଆର୍ଯ୍ୟ ଦଳପତି ବା ରାଜା ବଳି ପଡ଼ିବାରୁ ରକ୍ଷା ପାଇଲେ ।

ମୂଳ ବାସିନ୍ଦାଙ୍କର ନାରୀ ପ୍ରଧାନ ସମାଜ ବ୍ୟବସ୍ଥା, ଦେବୀପୂଜା ଓ ନବାଗତଙ୍କର ପୁରୁଷ ପ୍ରଧାନ ସମାଜ ବ୍ୟବସ୍ଥା ଓ ନୂତନ ଦେବଗଣଙ୍କ ମଧ୍ୟରେ ସଂଘର୍ଷମୟ ଇତିହାସ ସମ୍ବନ୍ଧରେ ସଚେତନ ରହିଲେ ସେହିକାଳରେ ସୃଷ୍ଟି ହୋଇଥିବା ଗ୍ରୀକ୍ ମିଥ୍‌ଗୁଡ଼ିକ ଅତ୍ୟନ୍ତ ଚିତ୍ତାକର୍ଷକ ଓ ଅର୍ଥପୂର୍ଣ୍ଣ ହୁଅନ୍ତି । (ଅବଶ୍ୟ ମିଥ୍‌ରୁ ଗୋଟିଏ ଯୁକ୍ତିଯୁକ୍ତ ଅର୍ଥ ଖୋଜିବା ବୃଥା । ଗୋଟିଏ ମିଥ୍‌ରେ ବହୁ କାହାଣୀ ମିଶି ଯାଇଥାଏ । ଗୋଟିଏ ମିଥ୍‌ର ଅନେକ ଅର୍ଥ ଓ ଅନେକ ବ୍ୟାଖ୍ୟା । ) ଉଦାହରଣ ସ୍ୱରୂପ, ଦେବତାମାନେ ଅପ୍‌ସରୀଙ୍କୁ ପ୍ରଲୁବ୍ଧ କରିବା ଉଦ୍ଦେଶ୍ୟକୁ

ନେଇ ଯେତେ ମିଥ୍ ରହିଛି, ସେଗୁଡ଼ିକ ହେଲେନିକ୍ ଦଳପତିଙ୍କର ସ୍ଥାନୀୟ ଦେବୀ ମୂଳାଧାରିଣୀ ବା ଉତ୍ତରାଧିକାରିଣୀ ରାଜକନ୍ୟାମାନଙ୍କ ସହିତ ବିବାହର ପ୍ରତୀକ । ଏହିପରି ମିଥ୍‌ରେ ଦେବୀ ହେରାଙ୍କର ଭୂମିକା ହେଉଛି, ଦେବତା ଓ ଅପ୍‌ସରାଙ୍କ ପ୍ରେମର ପ୍ରବଳ ପ୍ରତିରୋଧ କରିବା । ହେରା ଥିଲେ ରକ୍ଷଣଶୀଳ ଧର୍ମର ପ୍ରତୀକ ।

ଅଲିମ୍ପିଆନ୍ ଦେବ ପରିଷଦ ହେଲେନିକ୍ ଓ ପ୍ରାକ୍ ହେଲେନିକ୍ ଦୃଷ୍ଟିଭଙ୍ଗୀର ଏକ ସାଲିସ୍ ବୋଲି କୁହାଯାଇପାରେ । ମୂଳ ଅଧିବାସୀଙ୍କୁ ସନ୍ତୁଷ୍ଟ କରିବାପାଇଁ ହେଲେନିକ୍-ମାନେ ଏହିପରି ସାଲିସ୍ କରିଥିଲେ । ଅଲିମ୍ପିଆନ୍ ଦେବ ପରିଷଦର ପ୍ରଧାନ ଦେବଦେବୀ ବାରଜଣ । ଛଅଜଣ ଦେବୀ ଓ ଛଅଜଣ ଦେବତା । ଦେବରାଜ ଜିଅସ୍ ସେମାନଙ୍କର ମୁଖ୍ୟ । ଯେଉଁ କାଳରେ ଅଲିମ୍ପିଆନ୍ ଦେବଦେବୀ ସୃଷ୍ଟି ହେଲେ, ତାର କିଛିକାଳ ପରେ ଗ୍ରୀକ୍ ସମାଜରେ ନାରୀର ପ୍ରାଧାନ୍ୟ ଦ୍ରୁତ ଭାବରେ କମିଲା । ଦେବୀମାନେ କିନ୍ତୁ ସେମାନଙ୍କ ଆସନରେ ଅଟଳ ରହିଲେ । ହୋମର୍ ଓ ହେସିଓଡ୍‌ଙ୍କ ପରି ଜାତିର ବନ୍ଦନୀୟ କବିମାନେ ପ୍ରତ୍ୟେକ ଦେବଦେବୀଙ୍କର ଶକ୍ତି, କ୍ଷମତା ଓ ବିଭାଗକୁ ଯେପରି ବାଣ୍ଟି ଦେଇଥିଲେ, ତାହା ଅପରିବର୍ତ୍ତିତ ରହିବା ସ୍ୱାଭାବିକ୍ । ତେବେ, ପରବର୍ତ୍ତୀ କାଳରେ ଡାଇଓନିସସ୍‌ଙ୍କ ଆଗମନ ହେତୁ ବାରଜଣିଆ ଦେବମଣ୍ଡଳୀ ମଧ୍ୟରୁ ଦେବୀ ହେଷ୍ଟିଆଙ୍କୁ ଡାଇଓନିସସ୍‌ଙ୍କ ପାଇଁ ଆସନ ଛାଡ଼ିଦେବାକୁ ପଡ଼ିଲା । ପୁରୁଷଙ୍କ ଆଧିପତ୍ୟ ଯୁଗରେ ଏହିପରି ଘଟିବାର କଥା ।

ଶିଶୁ ଜନ୍ମ ହେବାରେ ପୁରୁଷର ଗୋଟିଏ ଭୂମିକା ଅଛି ବୋଲି ମଣିଷ ଅନେକ ପରେ ଜାଣିଲା । ଏପରି ଏକ ବୈପ୍ଳବିକ ଜ୍ଞାନ ଆଲୋଡ଼ନ ସୃଷ୍ଟି କରିବା ସ୍ୱାଭାବିକ୍ । ଈଶ୍ୱରଙ୍କୁ ଦେବୀ ରୂପେ ପୂଜିବାରେ ବାଧା ସୃଷ୍ଟି ହେବାର ଏହା ଏକ କାରଣ ।

ପଣ୍ଡିତମାନେ କହନ୍ତି, ଜିଅସ୍‌ଙ୍କର ବଜ୍ର ଓ ପୋସିଡନ୍‌ଙ୍କର ତ୍ରିଶୂଳ ଦେବୀ ଗ୍ରହଣ କରୁଥିବା ଦୁଇପଟ ଧାରୁଆ କଟାରୀର ରୂପାନ୍ତର । କଟାରୀର ଏହିପରି ଚିତ୍ତାକର୍ଷକ ଓ ରହସ୍ୟମୟ ବିବର୍ତ୍ତନ ଇତିହାସ ଭିତରକୁ ପଶିବାକୁ ଆମେ ଚେଷ୍ଟା କରିବା ନାହିଁ । ଅଲିମ୍ପିଆନ୍ ଦେବଗଣଙ୍କ ସୃଷ୍ଟିର ପୃଷ୍ଠଭୂମି ସମ୍ପର୍କରେ ଏତିକି ସୂଚନା ଦେଇ ଆମେ ଏଥର ସେମାନଙ୍କର ବଂଶ ଇତିହାସ ପାଖକୁ ଫେରିଯିବା ।

ଟିଟାନ୍‌ମାନେ ପରାସ୍ତ ହେବାପରେ ଲଟେରୀ ଦ୍ୱାରା ତିନି ଭାଇଙ୍କର ଭାଗବଣ୍ଟା ହୋଇଗଲା । ଜିଅସ୍‌ଙ୍କ ଭାଗରେ ପଡ଼ିଲା ଆକାଶ, ପୋସିଡନ୍ ହେଲେ ସମୁଦ୍ରର ଅଧିପତି ଆଉ ପାତାଳପୁର ପ୍ଲୁଟୋଙ୍କ (ତାଙ୍କର ଅନ୍ୟନାମ ହେଡ଼ିଜ୍-Hades) ଭାଗରେ ପଡ଼ିଲା । ପୃଥିବୀ ତିନିଜଣଙ୍କର ସାଧାରଣ ସମ୍ପତ୍ତି ହୋଇ ରହିଲା । କାରଣ ପୃଥିବୀ ହେଉଛି ସବୁ ଦେବତାଙ୍କର ଅତି ପ୍ରିୟ ।

ତିନି ପ୍ରଧାନ ଦେବତା ଜିଅସ୍, ପୋସିଡନ୍ ଓ ପ୍ଲୁଟୋଙ୍କ ମଧ୍ୟରେ କ୍ଷମତା ଓ ରାଜ୍ୟ ବଣ୍ଟନ ହୋଇଗଲା । ପୃଥିବୀ ତିନିଭାଇଙ୍କର ସାଧାରଣ ସମ୍ପତ୍ତି ହୋଇ ରହିଲା ।

ସାଗର ଦେବତା ପୋସିଡନ୍ (Poseidon)ଙ୍କର ଯଶସମ୍ମାନ ଜିଅସ୍‌ଙ୍କ ଠାରୁ କମ୍ ନୁହେଁ । ଯଦିଚ ଶକ୍ତି ଦୃଷ୍ଟିରୁ ସେ ଜିଅସ୍‌ଙ୍କର ସମକକ୍ଷ ନୁହନ୍ତି । ସମୁଦ୍ର ଭିତରେ ତାଙ୍କର ସୁରମ୍ୟ ପ୍ରାସାଦ । ଏଥେନ୍‌ସ ନଗର ପାଇଁ ଦେବୀ ଏଥେନାଙ୍କ ସହିତ ତାଙ୍କର କଳହ ହୋଇଥିଲା । ଏପରି ପ୍ରବାଦର ତାତ୍ପର୍ଯ୍ୟ ଅଛି । ନୌଯୁଦ୍ଧ ନୌବାଣିଜ୍ୟରେ ଏଥେନ୍‌ସ ଥିଲା ଗ୍ରୀସ୍‌ରେ ଅପ୍ରତିଦ୍ୱନ୍ଦୀ । ପ୍ରଜ୍ଞା ଓ ଯୁଦ୍ଧର ଦେବୀ ଏବଂ ସାଗରର ଦେବତାଙ୍କ ମଧ୍ୟରୁ କିଏ ଏଥେନ୍‌ସର ଇଷ୍ଟଦେବ, ସେ ବିଷୟ ନେଇ ଲୋକଙ୍କ ଭିତରେ ଗଣ୍ଡଗୋଳ ହୋଇଥିବା ସମ୍ଭବ ।

ହେଡ଼ିଜ୍ ପାତାଳର ଅଧିପତି । ପାତାଳରେ ତାଙ୍କର ବଂଶ ବଢ଼ି ଚାଲିଲା । ମାତ୍ର ଦେବତାମାନେ ଅଲିମ୍ପସ୍‌ର ଦେବଦେବୀଙ୍କ ପରି ଆକର୍ଷଣୀୟ ନୁହନ୍ତି । କାରଣ ଅଲିମ୍ପସ୍ ସ୍ୱର୍ଗ ନୁହେଁ, ପୃଥିବୀକୁ ଲାଗିଥିବା ଅଧାସ୍ୱର୍ଗ । ତେଣୁ ପୃଥିବୀ ଓ ତା'ର ବାସିନ୍ଦାଙ୍କ ସହିତ ଅଲିମ୍ପିଆନ୍ ଦେବତାମାନେ ଜଡ଼ିତ ହୋଇ ପଡ଼ିବା ସ୍ୱାଭାବିକ୍ ।

ଅଲିମ୍ପସ୍‌ର ଶୋଭାରେ ସନ୍ତୁଷ୍ଟ ହୋଇ ଜିଅସ୍ ସେହି ପର୍ବତରେ ବାସ କରିବାକୁ ସ୍ଥିର କଲେ । ଦେବରାଣୀ ହେରା ତାଙ୍କର ସ୍ତ୍ରୀ । ତେବେ ହେରାଙ୍କ ପୂର୍ବରୁ ଜଣେ ଦୁଇଜଣ ଓ ପରେ ଅନେକ (ସାମୟିକ ଭାବେ । ସେମାନେ ଅଧିକାଂଶ ମାନବୀ ବା ଅପ୍‌ସରୀ) ସ୍ତ୍ରୀ ସେ ଗ୍ରହଣ କରିଥିଲେ । ଜିଅସ୍‌ଙ୍କ ପ୍ରଥମ ସ୍ତ୍ରୀ ମେଟିସ୍ ଜଣେ ଟିଟାନ୍ । ସେ ପ୍ରଜ୍ଞା, ଚିନ୍ତନ ଓ ଶୃଙ୍ଖଳାର ଦେବୀ । ମେଟିସ୍ ଗର୍ଭବତୀ ଥାଆନ୍ତି । ଧରଣୀମାତା ଜିଆ ଭବିଷ୍ୟବାଣୀ କଲେ ଯେ ତାଙ୍କର ଝିଅଟିଏ ହେବ । କିନ୍ତୁ ମେଟିସ୍‌ଙ୍କ ଦ୍ୱିତୀୟ ସନ୍ତାନ ଜିଅସ୍‌ଙ୍କୁ ବିତାଡ଼ିତ କରି ଗାଦି ମାଡ଼ି ବସିବ । ନୂଆ କଥା ଆଉ କ'ଣ ? ଏହାତ ଜିଅସ୍‌ଙ୍କର ବଂଶ ପରମ୍ପରା ! ସବୁ ବିଷୟ ଶୁଣି ପ୍ରଥମ ସନ୍ତାନ ଜନ୍ମ କରିବା ପୂର୍ବରୁ ଜିଅସ ମେଟିସ୍‌ଙ୍କୁ ଗିଳି ଦେଲେ । ମୃତ୍ୟୁ ମାରିଲେ

ଯାଏ । ଜିଅସ୍ ଦେବତାମାନଙ୍କୁ ବୁଝେଇ ଦେଲେ, ପେଟ ଭିତରେ ଥାଇ ମେଟିସ୍ ତାଙ୍କୁ ବୁଦ୍ଧି ଦେଉଛନ୍ତି ! ମେଟିସ୍‌ଙ୍କ ଗର୍ଭରେ ଥିବା ଶିଶୁର କି ଦଶା ହେଲା ସେ ପ୍ରସଙ୍ଗକୁ ଆମେ ଯଥାସ୍ଥାନରେ ଆସିବା ।



[ ପ୍ରାଚୀନ ଗ୍ରୀସ୍‌ରୁ ମିଳିଥିବା ଅଲିମ୍ପସ୍ ଗିରିଶୃଙ୍ଗରେ ଦେବତାଙ୍କର ବୈଠକରେ ଏକ ଅପୂର୍ବ ଚିତ୍ର । ମଝିରେ ଦେବରାଜ ଜିଅସ୍ । ତାଙ୍କ ପାଖରେ ବସିଛନ୍ତି ଆଇନ୍ ଶୃଙ୍ଖଳାର ଦେବୀ ଥିମିସ୍ । ଥିମିସ୍‌ଙ୍କ ସମ୍ମୁଖରେ ଏଥେନା ଦଣ୍ଡାୟମାନ । ଲରେଲ୍ ମାଳ ଧରି ଭକ୍ତିଶ୍ରୀ ଏଥେନାଙ୍କ ଆଡ଼କୁ ଉଡ଼ି ଆସିବାକୁ ଉଦ୍ୟତ । ବାମ କଡ଼ରେ ବସିଛନ୍ତି ଆଫ୍ରୋଡ଼ାଇଟ୍ । ପାଖରେ ତାଙ୍କ ସହଚରୀ ପେଲ୍ଲୋ । ଡାହାଣ କଡ଼ରେ ଅଶ୍ୱ ଉପରେ ଚନ୍ଦ୍ରଦେବୀ ସିଲିନ୍ । ସନ୍ଧ୍ୟାତାରା ହେସ୍‌ପର୍‌ରସ୍ ତାଙ୍କୁ ବାଟ କଢ଼ାଇ ନେଉଛନ୍ତି ।]

ଗ୍ରୀକ୍ ଭାଷାରେ ହେରା ଶବ୍ଦଟି ହେଲା ମୂଳ 'ହରଓ୍ୱା' ଶବ୍ଦର ଅପଭ୍ରଂଶ । ହର୍‌ଓ୍ୱାର ଅର୍ଥ ରକ୍ଷାକର୍ତ୍ତ୍ରୀ । ଅଲିମ୍ପିଆନ୍‌ଙ୍କ ପୂର୍ବରୁ ସର୍ବଶକ୍ତିମୟୀ ଦେବୀଭାବେ ହେରା ସାମୋସ୍ ଓ ଆର୍‌ଗୋସ୍‌ରେ ପୂଜା ପାଉଥିଲେ । ହେରାଙ୍କୁ ଜିଅସ୍‌ଙ୍କର ବଳପୂର୍ବକ ବିବାହ ଗ୍ରୀସ୍ ଉପରେ କ୍ରିଟ୍ ଓ ମାଇସିନିର ଆଧିପତ୍ୟର ପ୍ରତୀକ । କେତେକ ହେଲେନେସ୍ ପ୍ରଥମେ କ୍ରିଟ୍ ଓ ମାଇସିନିରେ ପହଞ୍ଚିଥିଲେ । ସେମାନଙ୍କ ଦେବତା ଜିଅସ୍ କୋକିଳ ରୂପରେ

ହେରାଙ୍କୁ ଧରା ଦେଇଥିଲେ । ହେରା ସ୍ନେହରେ ପିକକୁ ଛାତିରେ ଚାପି ଧରିବାରୁ କୋକିଳ ତାର ନିଜରୂପ ଧରି ହେରାଙ୍କୁ ବଳାତ୍କାର କଲା । ବାଧ୍ୟ ହୋଇ ହେରା ଜିଅସ୍‌ଙ୍କୁ ବିବାହ କଲେ । ମାଇସିନିରୁ କୋକିଳ ଧରିଥିବା ଉଲଗ୍ନା ଦେବୀମୂର୍ତ୍ତି ମିଳିଛି । ସେହିପରି ହି ଠରୁ ଦେବୀଙ୍କର ଦୁଇପଟ ଧାରୁଆ କଟାରୀ ଉପରେ କୋକିଳ ବସିଥିବା ଗୋଟିଏ କଟାରୀ ମିଳିଛି ।

ଅଲିମ୍ପସ୍ ହେଲା ଜିଅସ୍ ଓ ହେରାଙ୍କର କ୍ରୀଡ଼ାଭୂମି । ସେଇଠି ସେମାନଙ୍କର ବଂଶ ଦ୍ରୁତବେଗରେ ବଢ଼ିଚାଲିଲା । ମନୁଷ୍ୟମାନେ ଯେପରି ଦେବତାଙ୍କୁ ଦେଖି ନ ପାରିବେ ସେଥିପାଇଁ ମେଘମାଳ ଅଲିମ୍ପସ୍ ପର୍ବତକୁ ଢାଙ୍କି ରଖିଥାଏ । ନିର୍ମଳ ରାତିରେ ଯେଉଁ ଛାୟାପଥ ଦିଶେ ତାହା ଦେବତାଙ୍କର ପ୍ରାସାଦକୁ ଲମ୍ବିଥିବା ରାଜପଥ ବ୍ୟତୀତ ଆଉ କିଛି ନୁହେଁ । ପ୍ରତ୍ୟେକ ଦେବତାର ଅଲଗା ପ୍ରାସାଦ । ତେବେ ସେମାନେ ପ୍ରତିଦିନ ଏକାଠି ଅମୃତ ମଣୋହି ଓ ସୁରାପାନ (Nectar—ଦେବତାଙ୍କର ସୁରା) କରନ୍ତି । ସେତେବେଳେ ମିଉଜ୍‌ମାନେ ଗୀତ ଗାଆନ୍ତି, ଆପୋଲୋ ବୀଣାବାଦନ କରନ୍ତି । ସୂର୍ଯ୍ୟାସ୍ତ ପରେ ଦେବତାମାନେ ମନୁଷ୍ୟଙ୍କ ପରି ବିଶ୍ରାମ ନିଅନ୍ତି ଓ ରାତିରେ ନିଦ୍ରା ଯାଆନ୍ତି ।

ଅଲିମ୍ପସ୍‌ର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଦେବରାଜ ଓ ଦେବରାଣୀ ସେଠାରେ ବାସ କଲେ । ଅଲିମ୍ପସ୍‌ରେ ତାଙ୍କର ପରିବାର ଗଢ଼ି ଉଠିଲା ।

ଜିଅସ୍‌ଙ୍କର ବହୁ ସ୍ତ୍ରୀ ଗ୍ରହଣ ଦ୍ରୁତବେଗରେ ଦେବତାଙ୍କର ବଂଶବୃଦ୍ଧିରେ ସାହାଯ୍ୟ କଲା । ମେଟିସ୍‌ଙ୍କ ପରେ ଥିମିଜ୍ (Themis)ଙ୍କୁ ସେ ବିବାହ କରିଥିଲେ । ଥିମିଜ୍‌ଙ୍କ ଗର୍ଭରୁ ବାରୋଟି ସନ୍ତାନ ଜାତ ହେଲେ । ସେମାନେ ହେଉଛନ୍ତି ଦିନର ବାରଘଣ୍ଟା । ୟୁରିନୋମ (Eurynome) ନାମକ ଆଉ ଜଣେ ସ୍ତ୍ରୀ ତାଙ୍କୁ ତିନୋଟି କନ୍ୟା ଉପହାର ଦେଇଥିଲେ । ସେମାନେ ଗ୍ରେସ୍ (Grace) ଭଗିନୀଭାବେ ଖ୍ୟାତ । ନିମୋସିନ୍ (Mnemosyne)ଙ୍କ ଗର୍ଭରୁ ଜିଅସ୍‌ଙ୍କର ନଅଟି କନ୍ୟା ଜନ୍ମ ନେଲେ । ସେମାନେ ମ୍ୟୁଜେସ୍ ଦେବୀ ରୂପେ ପୂଜିତ । ମ୍ୟୁଜେସ୍ ଭଗିନୀଗଣ କଳା, କବିତା ଓ ସଙ୍ଗୀତର ଦେବୀ । ଏମାନଙ୍କ ପରେ ଜିଅସ୍ ହେରାଙ୍କୁ ବିବାହ କରି ତାଙ୍କୁ ଅଲିମ୍ପିଆର ରାଣୀର ସମ୍ମାନ ଦେଇଥିଲେ । ଏରିଜ୍, ହିଫେଷ୍ଟାସ୍ ଓ ହିବି (ଯୌବନର ଦେବୀ)ଙ୍କ ପରି ଯୋଗ୍ୟ ପୁତ୍ରକନ୍ୟାଙ୍କର ଜନନୀ ଦେବୀ ହେରା । ହେରାଙ୍କ

ସହିତ ଜିଅସ୍‌ଙ୍କର କ୍ୱଚିତ୍ ଉତ୍ତମ ସମ୍ପର୍କ ରହେ । ଜିଅସ୍‌ଙ୍କର ନୂଆ ନୂଆ ପ୍ରେମ ବ୍ୟାପାର ହେରାଙ୍କୁ ଭଲ ନ ଲାଗିବା ସ୍ୱାଭାବିକ୍ । ହେରା ନିଜେ ଜଣେ ଆଦ୍ୟ ଦେବୀ ଓ ଜିଅସ୍‌ଙ୍କ ଠାରୁ ତାଙ୍କର ସମ୍ମାନ କିଛି କମ୍ ନୁହେଁ । ଉଭୟଙ୍କ ମଧ୍ୟରେ ବିବାଦ ଲାଗି ରହୁଥିଲେ ମଧ୍ୟ ଜିଅସ୍ ହେରାଙ୍କୁ କୌଣସି ଦଣ୍ଡ ଦେବାକୁ ଭୟ କରୁଥିଲେ ।

ପ୍ରତ୍ୟେକ ନଗରର ବୀର ପୁରୁଷମାନେ କୌଣସି ନା କୌଣସି ସୂତ୍ରରେ ଜିଅସ୍‌ଙ୍କର ବଂଶଧର ବୋଲି ପ୍ରମାଣ କରିବାର ବ୍ୟାକୁଳତାରୁ ନଗରର କବିଏ ନୂଆ ନୂଆ ଅପ୍ସରୀ ବା ମାନବୀଙ୍କ ସହିତ ଜିଅସ୍‌ଙ୍କୁ ଯୋଡ଼ୁଥିଲେ । ତାଙ୍କର ଜଣାଶୁଣା ଦୁର୍ବଳତା ହେତୁ କବିଙ୍କର ଫାନ୍ଦିବା କଥା ସତ ଭାବେ ଚଳି ଯାଉଥିଲା ।

ଅଲିମ୍ପସ୍‌ର କେତେକ ବିଶିଷ୍ଟ ଦେବଦେବୀଙ୍କର ପରିଚୟ ଦିଆଯାଉଛି ।

**ଏଥେନା :**

ବିଦ୍ୟାର ଆଦର କରୁଥିବା ଏଥେନ୍ସବାସୀଙ୍କର ଆରାଧ୍ୟ ଦେବୀ ଏଥେନା । ସେ ବିଦ୍ୟାଦାତ୍ରୀ । ଏଥେନାଙ୍କ ଜନ୍ମ ପରେ ଜଗତରେ ସାହିତ୍ୟର ଉନ୍ମେଷ ଘଟିଲା । ତାଙ୍କର ଜନ୍ମ ଇତିହାସ ଖୁବ୍ ଚିତ୍ତାକର୍ଷକ ।

ଥରେ ଜିଅସ୍‌ଙ୍କର ଭୟଙ୍କର ମୁଣ୍ଡବ୍ୟଥା ହେଲା । ଦେବତାମାନଙ୍କୁ କିଛି ବୁଦ୍ଧି ଦିଶିଲା ନାହିଁ । ଏରିଜ୍ ଏପରି ମୁଣ୍ଡବ୍ୟଥାର କାରଣ ବାରିପାରିଲେ ଓ ଜିଅସ୍‌ଙ୍କ ମୁଣ୍ଡ ଫଟାଇବା ଆବଶ୍ୟକ ବୋଲି ଜଣାଇଲେ । ତତକ୍ଷଣା ହିଫେଷ୍ଟାସ୍ ସଙ୍ଗେ ସଙ୍ଗେ ଏରିଜ୍‌ଙ୍କ ପ୍ରସ୍ତାବ କାର୍ଯ୍ୟକାରୀ କଲାରୁ ଜିଅସ୍‌ଙ୍କ ମୁଣ୍ଡଭିତରୁ ଅସ୍ତ୍ରଶସ୍ତ୍ର ଓ ନାନା ଭୂଷଣରେ ଶୋଭିତା ଦେବୀ ଏଥେନା ବାହାରି ଆସିଲେ ।

ଏଥେନା ମେଟିସ୍‌ଙ୍କର କନ୍ୟା । ଜିଅସ୍ ମେଟିସ୍‌ଙ୍କୁ ଗର୍ଭସାତ୍ କରିଥିବାରୁ ତାଙ୍କ ମୁଣ୍ଡ ଫଟାଇ ଏଥେନାଙ୍କୁ ବାହାରିବାକୁ ପଡ଼ିଲା ।

ଏଥେନା ଏଥେନ୍ସ ନଗରର ଆରାଧ୍ୟା ଦେବୀ । ତାଙ୍କ ପରି ଶୁଦ୍ଧ, ପବିତ୍ର ଓ ବହୁଗୁଣ ପ୍ରଦାୟିନୀ ଦେବୀ ଗ୍ରୀସ୍‌ରେ ବିରଳ । ଅଲିମ୍ପିଆନ୍ ଦେବଦେବୀମାନେ ସର୍ବଦା କୌଣସି ପ୍ରେମ ବ୍ୟାପାରରେ ବ୍ୟସ୍ତ ଥାଆନ୍ତି । ଏଥେନା ଏହାର ବ୍ୟତିକ୍ରମ । ବଂଶୀ, ତୂରୀ ଠାରୁ

ଆରମ୍ଭକର ଲଙ୍ଗଳ, ଜୁଆଳୀ, ଘୋଡ଼ାର ଲଗାମ, ରଥ ଓ ଜାହାଜ ପର୍ଯ୍ୟନ୍ତ ବସ୍ତୁଗୁଡ଼ିକୁ ଏଥେନା ସୃଷ୍ଟି କରିଥିଲେ । ସେ ସଂଖ୍ୟାବିଜ୍ଞାନ ଏବଂ ରନ୍ଧନ, ସିଲେଇକାମ ପ୍ରଭୃତି ନାରୀମାନଙ୍କର ସବୁ ଆବଶ୍ୟକୀୟ ବିଦ୍ୟାର ଶିକ୍ଷାଦାତ୍ରୀ । ସେ ଯୁଦ୍ଧର ଦେବୀ କିନ୍ତୁ ଯୁଦ୍ଧର ଦେବତା ଏରିଜ୍‌ଙ୍କ ପରି ଯୁଦ୍ଧଖୋର ବା ଯୁଦ୍ଧପ୍ରିୟ ନୁହନ୍ତି । ଏଥେନା ଯୁଦ୍ଧ ଭଲ ପାଆନ୍ତି ନାହିଁ । କିନ୍ତୁ ଥରେ ଯୁଦ୍ଧରେ ପଶିଲେ ସେ ଅଜେୟ । ଏଥେନାଙ୍କର ଯୁଦ୍ଧକୌଶଳ ଯୋଗୁ ଏରିଜ୍ ମଧ୍ୟ ତାଙ୍କର ସମକକ୍ଷ ହୋଇପାରନ୍ତି ନାହିଁ ।

ଏଥେନ୍ସର ନାରୀମାନେ ଚିରକୁମାରୀ ଏଥେନାଙ୍କୁ ପବିତ୍ରତା ଓ ସଚ୍ଚରିତ୍ରର ମୂର୍ତ୍ତିମନ୍ତ ଦେବୀ ରୂପେ ପୂଜା କରୁଥିଲେ । ବୀର ହେବାର ଆଶୀର୍ବାଦ ଭିକ୍ଷା କରି ଯୁବକମାନେ ତାଙ୍କୁ ପୂଜୁଥିଲେ ।

**ଆପୋଲୋ :**

କଳା ଓ ସଙ୍ଗୀତପ୍ରିୟ ଦେବତା । ସେ ଜିଅସ୍‌ଙ୍କ ପୁତ୍ର । ମାଆଙ୍କର ନାମ ଲିଟୋ । ଗ୍ରୀକ୍‌ମାନେ ସଂଯମକୁ ମଣିଷର ଏକ ପ୍ରଧାନ ସଦ୍‌ଗୁଣ ବୋଲି ମଣୁଥିଲେ । ଆପୋଲୋ ସଂଯମର ଦେବତା । ସମଦର୍ଶୀ ଆପୋଲୋ ଗ୍ରୀକ୍‌ମାନଙ୍କର ଆଇନ୍ ପ୍ରଣୟନକାରୀ । ଦେବୀ ଏଥେନାଙ୍କ ବ୍ୟତୀତ ଆପୋଲୋଙ୍କ ପରି ଦେବୋପମ ମହାମାୟତା ଅନ୍ୟ କୌଣସି ଅଲିମ୍ପିକ୍ ଦେବତାଙ୍କର ନ ଥିଲା ।

ଏଥେନ୍ସରେ ଆପୋଲୋଙ୍କର ଯଥେଷ୍ଟ ସମ୍ମାନ ଓ ପ୍ରଭାବ ଥିଲା । ପ୍ରସିଦ୍ଧ ଡେଲ୍‌ଫାଇ ଧର୍ମପୀଠରେ ଆପୋଲୋ ପୂଜା ପାଉଥିଲେ । ଡେଲ୍‌ଫାଇର ବିଶେଷତ୍ୱ ହେଉଛି, ସେ ପୀଠର ପୂଜକ ଦେବତାଙ୍କ କୃପାରୁ ଭବିଷ୍ୟ କଥା କହି ପାରୁଥିଲେ । ପ୍ରଶ୍ନ ପଚାରିବାକୁ ସାରା ଗ୍ରୀସ୍‌ର ଲୋକେ ଡେଲ୍‌ଫାଇ ଆସୁଥିଲେ । ନଗରର ଅନେକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ସମ୍ପର୍କରେ ପ୍ରଶ୍ନ ଧରି ଦୂରଦୂରାନ୍ତର ଦୂତ ଓ ନଗରପତିମାନେ ଡେଲ୍‌ଫାଇରେ ପହଞ୍ଚୁଥିଲେ । ବିଶେଷତଃ ଯୁଦ୍ଧ ସମୟରେ ଡେଲ୍‌ଫାଇ ଧର୍ମପୀଠର ପରାମର୍ଶ ନ ନେଇ ଗ୍ରୀକ୍‌ମାନେ କୌଣସି ସିଦ୍ଧାନ୍ତ ନେଉ ନ ଥିଲେ । ଏପରିକି ଗ୍ରୀସ୍ ବାହାରର ଦେଶମାନେ ପରାମର୍ଶ ନେବାକୁ ଡେଲ୍‌ଫାଇ ଆସୁଥିଲେ । ସବୁ ନଗରର ଲୋକଙ୍କର ତୀର୍ଥଭୂମି ରୂପେ ଗ୍ରୀକ୍‌ମାନଙ୍କ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ଦିଗରେ ଡେଲ୍‌ଫାଇର ଭୂମିକା ଉଲ୍ଲେଖଯୋଗ୍ୟ ।

ଡେଲ୍‌ଫାଇଠାରେ ଗୋଟିଏ ଗଭୀର ଫାଟ ଥିଲା । ତା ଭିତରୁ ଶ୍ୱାସରୁଦ୍ଧକାରୀ ଗ୍ୟାସ୍ ନିର୍ଗତ ହେଉଥିଲା । ଲୋକେ ଏହି ଗ୍ୟାସ୍‌କୁ ଆପୋଲୋଙ୍କର ନିଃଶ୍ୱାସପ୍ରଶ୍ୱାସ ବୋଲି ମନେକରୁଥିଲେ । ଆଜି ଗୋଟିଏ ମତ ହେଉଛି, ଆପୋଲୋ ମାରିଥିବା ମହାସର୍ପ ପଚିବା ଫଳରେ ତହିଁରୁ ଦୁର୍ଗନ୍ଧ ବାଷ୍ପ ବାହାରୁଥିଲା । ତାଙ୍କ ମାଆଙ୍କର ପୁରାତନ ଶତ୍ରୁ ମହାସର୍ପ ପାଇଥନ୍ (Python)କୁ ଆପୋଲୋ ଡେଲ୍‌ଫାଇଠାରେ ବଧ କରିଥିଲେ ।

ଆକାଆନ୍‌ମାନେ ଡେଲ୍‌ଫାଇଠାରେ ଥିବା ଦେବୀ ବସୁଧାଙ୍କର ମନ୍ଦିର ଭାଙ୍ଗି ଥିଲେ । ଆପୋଲୋଙ୍କର ମହାସର୍ପ ବଧ ଏହାର ପ୍ରତୀକ ହୋଇପାରେ ।

ଭୟଙ୍କର ଧୂଆଁ ଉଠୁଥିବା ସ୍ଥାନରେ ଗୋଟିଏ ଉଚ୍ଚ ତିନିଗୋଡ଼ିଆ ଚଉକି ଉପରେ ପୂଜାରିଣୀ କାଲେସୀ ବସି ନିଶାକାରକ ଲରେଲ୍ ପତ୍ର ଚୋବାଇ ଚାଲିଥାନ୍ତି । କିଛି ପ୍ରଶ୍ନ କରାଗଲେ କାଲେସୀ ବଡ଼ବଡ଼ ହୁଅନ୍ତି । ସେହି ଅବୋଧ ଶବ୍ଦଗୁଡ଼ିକୁ ପାଖରେ ଥିବା ଅନ୍ୟ ପୂଜାରୀ ପୂଜାରିଣୀମାନେ ବ୍ୟାଖ୍ୟା କରି ଗୋଟାଏ ଅର୍ଥ ବାହାର କରନ୍ତି । ଗୋଟିଏ ପକ୍ଷ, ପୁରୋହିତମାନଙ୍କୁ ଲାଞ୍ଚଦେଇ ଦେବତାଙ୍କ ପାଖରୁ ଆପଣାକୁ ସୁହାଇଲାପରି ନିର୍ଦ୍ଦେଶ ଆଣିବା ଘଟଣା ବିରଳ ନ ଥିଲା ।

ଏରିଜ୍ (Ares) :

ଏରିଜ୍ ଜିଅସ୍‌ଙ୍କ ପୁତ୍ର । ସେ ଯୁଦ୍ଧର ଦେବତା । ତାଙ୍କ ଭଉଣୀଙ୍କର ନାମ ଇରିଜ୍ (Eris) । ଇରିଜ୍‌ର ଗ୍ରୀକ୍ ଅର୍ଥ କଳହ । ସେ ଅତ୍ୟନ୍ତ କଳହପ୍ରିୟା । ଖଟମିଛ ପ୍ରଚାରକରି ଯୁଦ୍ଧ ଲଗାଇ ଦେବାର କଳାରେ ସେ ନିପୁଣା । ତେଣୁ ଭାଇଙ୍କର ଖୁବ୍ ପ୍ରିୟ । ଯୁଦ୍ଧ ଦେଖି ଓ ଯୁଦ୍ଧରେ ଭାଗ ନେଇ ଏରିଜ୍ ଆନନ୍ଦ ପାଆନ୍ତି । ଭାଇ ଭଉଣୀ ଦୁହେଁ କାହା ସପକ୍ଷରେ ନ ଥାନ୍ତି ବା କାହାକୁ ଭଲପାଆନ୍ତି ନାହିଁ । ଦୁଇଟି ନଗର ମଧ୍ୟରେ କପଟ କଳି ଓ ଯୁଦ୍ଧ ଲଗୁ ଏଇୟା ସେମାନଙ୍କର କାମ୍ୟ । ଜିଅସ୍, ହେରା ଓ ଅନ୍ୟ କୌଣସି ଦେବଦେବୀ (ଇରିଜ୍‌ଙ୍କ ବ୍ୟତୀତ) ଏରିଜ୍‌ଙ୍କୁ ଭଲପାଆନ୍ତି ନାହିଁ । ତେବେ ସୌନ୍ଦର୍ଯ୍ୟର ଦେବୀ ଆଫ୍ରୋଡାଇଟ୍‌ଙ୍କର ଏରିଜ୍‌ଙ୍କ ପ୍ରତି ଟିକିଏ ଶ୍ରଦ୍ଧା ଥାଏ । ଏହା ଆଫ୍ରୋଡାଇଟ୍‌ଙ୍କର କୁଟିଳ ସ୍ୱଭାବର ଏକ ପ୍ରମାଣ । କେବଳ ନିଜ ସ୍ୱାର୍ଥ ଯୋଗୁ ହେଉଜ୍ ଏରିଜ୍‌ଙ୍କୁ ଶ୍ରଦ୍ଧା

କରନ୍ତି । ସ୍ୱାର୍ଥଟି ହେଉଛି, ଯୁଦ୍ଧଲାଗି ଯେଉଁ ସବୁ ଯୁବଜନମାନେ ମରନ୍ତି, ସେମାନେ ହେଡିଜ୍‌ଙ୍କର ପ୍ରଜା ହୁଅନ୍ତି ।

ଏରିଜ୍ ଯୁଦ୍ଧର ଦେବତା, କିନ୍ତୁ ଅପରାଜେୟ ସବୁ ନୁହନ୍ତି । ଏଥେନା ତାଙ୍କୁ ଦୁଇଥର ପରାସ୍ତ କରିଥିଲେ । ଥରେ ହେରାକ୍ଲିସ୍ ତାଙ୍କୁ ଗୋଡ଼ାଇବାରୁ ସେ ଭୟରେ ଅଲିମ୍ପସ୍ ପଳାଇଥିଲେ । ଏରିଜ୍ ଥ୍ରେସ୍‌ର ଦେବତା । ଥ୍ରେସ୍‌ବାସୀ ଯୁଦ୍ଧଖୋର ଥିଲେ ଓ ଯୁଦ୍ଧରୁ ଆନନ୍ଦ ପାଉଥିଲେ ।

**ହର୍ମିଜ (Hermes) :**

ହିଫେଷ୍ଟାସ୍‌ଙ୍କୁ ବାଦ ଦେଲେ ହର୍ମଜ୍‌ଙ୍କ ପରି ଆକର୍ଷଣୀୟ ବ୍ୟକ୍ତିତ୍ୱ ଆଉ ଅଲିମ୍ପସ୍‌ରେ ନାହାନ୍ତି । ତାଙ୍କର ପିତା ଜିଅସ୍ ଓ ମାତା ଆଟଲସ୍‌ଙ୍କ କନ୍ୟା ମାଇଆ । ହର୍ମିଜ୍ ଜନ୍ମହେବା ପରେ ତାଙ୍କର ମାଆ ନବଜାତ ଶିଶୁକୁ ଗୋଟିଏ ସ୍ଥାନରେ ଆବଦ୍ଧ କରି ରଖିଲେ । ମାତ୍ର ହର୍ମିଜ୍ ଅତିଶୀଘ୍ର ବଡ଼ିଗଲେ ଓ ଦିନେ କୌଣସିଠାରେ ମାଆଙ୍କର ବନ୍ଧନରୁ ମୁକ୍ତ ହୋଇ ପଦାକୁ ପଳାଇଲେ । ଉଦ୍ଦେଶ୍ୟ, କେଉଁଠି କିଛି ମଜା କରିବା । ବନ୍ଧା ହୋଇ ପଡ଼ି ରହିବାକୁ କାହାକୁ ଭଲଲାଗେ ?

ଦିନେ ବାଳକ ହର୍ମିଜ୍ ଦେଖିଲେ, ଆପୋଲୋ ଗୁଡ଼ିଏ ସୁନ୍ଦର ଗାଈ ଚରାଉଛନ୍ତି । ସେମାନଙ୍କୁ ଚୋରାଇ ନେବାକୁ ହର୍ମିଜ୍ ସ୍ଥିର କଲେ । ଗାଈ ଗୋଠକୁ ହର୍ମଜ୍ ଏପରି ଚତୁରତାର ସହିତ ଚୋରାଇ ନେଲେ ଯେ, ଆପୋଲୋ କିଛି ଜାଣିପାରିଲେ ନାହିଁ । ବାଲ୍ୟକାଳରୁ ଚୌର୍ଯ୍ୟବିଦ୍ୟାରେ ଯେ ଏପରି ପାରଙ୍ଗମ, ତାଙ୍କୁ ଚୋର ତସ୍କରମାନେ ପୂଜା କରିବା ସ୍ୱାଭାବିକ । ସଫଳତା ଭିକ୍ଷାକରି ଚୋରମାନେ ତାଙ୍କୁ ପ୍ରାର୍ଥନା କରନ୍ତି ।

ଆପୋଲୋଙ୍କ ଦୂତମାନେ ଗାଈଗୋଠକୁ ଚତୁର୍ଦ୍ଦିଗ ଖୋଜି ନୟାନ୍ତ ହେଲେ । ଜଣେ ଦୂତ ହର୍ମିଜ୍ ରହିଥିବା ପାହାଡ଼ ନିକଟରେ ଯାଉଥିଲେ । ହର୍ମିଜ୍‌ଙ୍କର ଲାଳନପାଳନ ଦାୟିତ୍ୱରେ ଥିବା ପକ୍ଷୀ ସହିତ ତାଙ୍କର ଭେଟହେଲା । ଜଣେ ଅତି ବୁଦ୍ଧିମାନ୍ ଦେବଶିଶୁ ଜନ୍ମ ହୋଇଛି ବୋଲି ପକ୍ଷୀଜଣକ ଦୂତଙ୍କୁ ଜଣାଇଲେ । ଏଇ ଶିଶୁ କଇଁଚର ଖୋଳ ଓ ଗାଈର ଅନ୍ତରୁ ସୁନ୍ଦର ସୁନ୍ଦର ଖେଳଣା ବାଦ୍ୟଯନ୍ତ୍ର ତିଆରି କରୁଛି ବୋଲି ଦୂତ ଖବର ପାଇଲେ । ପିଲାଟା ଗାଈ ଅନ୍ତ କେଉଁଠୁ ପାଇଲା ? ଏଇ କଥା ନେଇ ପକ୍ଷୀ ଓ ଦୂତ ମଧ୍ୟରେ

ବରଷା ଲାଗିଲା । ଯୋଗକୁ ଆପୋଲୋ ଆସି ପହଞ୍ଚିଗଲେ । ସେ ଜାଣିପାରିଲେ ଯେ ବାଳକ ହର୍ମିଜ୍ ଗାଈ ଚୋରାଇଛନ୍ତି । ତେଣୁ ମାଇଆଙ୍କୁ ସେ ଧମକାଇ ଗାଈଗୁଡ଼ିକୁ ଫେରସ୍ତ ମାଗିଲେ । ସାନ ପିଲା, ଯାହାକୁ ସେ ଏପର୍ଯ୍ୟନ୍ତ ଆବଦ୍ଧ କରି ରଖିଛନ୍ତି, ସେ କିପରି ଚୋରି କରିବା ସମ୍ଭବ ? ତେଣୁ ବୃଥା ଅପବାଦ ହେଉଥିବାରୁ ମାଇଆ ଓଲଟି ଆପୋଲୋଙ୍କ ସହିତ କଳି ଲଗାଇଲେ । କଥା ଜିଅସ୍‌ଙ୍କ ପର୍ଯ୍ୟନ୍ତ ଗଲା । ଜିଅସ୍ ସବୁ ବୁଝିଲେ ମଧ୍ୟ ଶ୍ରେଷ୍ଠ ପୁଅକୁ ଧରାପକାଇବେ କିପରି ? ତେଣୁ ମିଛ କହି ଫାଙ୍କିବାକୁ ସେ ପରୋକ୍ଷରେ ହର୍ମିଜ୍‌ଙ୍କୁ ଉତ୍ସାହିତ କଲେ । ଆପୋଲୋ କିନ୍ତୁ ନଛୋଡ଼ବନ୍ଦା । ଶେଷରେ ଆଉ ଉପାୟ ନ ପାଇ ହର୍ମିଜ୍ ସତକଥା ମାନିଗଲେ । ମାରି ସାରିଥିବା ଦୁଇଟି ଗାଈଙ୍କ ବ୍ୟତୀତ ଅନ୍ୟଗୁଡ଼ିକୁ ଫେରାଇ ନେବାକୁ ହର୍ମିଜ୍ ଆପୋଲୋଙ୍କୁ ନିମନ୍ତ୍ରଣ କଲେ । କଳି ତୁଟିଗଲା ।

ଆପୋଲୋଙ୍କୁ ଡାକିନେଇ ହର୍ମିଜ ନୂଆ କରି ଉଦ୍ଭାବନ କରିଥିବା କଇଁଚ ଖୋଳରେ ତିଆରି ବୀଣା ତାଙ୍କୁ ଦେଖାଇଥିଲେ । ସେହି ବୀଣା ବଜାଇ ଆପୋଲୋଙ୍କର କେତୋଟି ବନ୍ଦନାଗୀତି ସେ ଏତେ ସୁନ୍ଦରଭାବେ ଗାଇଲେ ଯେ ଆପୋଲୋ ମୁଗ୍ଧ ହୋଇଗଲେ । ଆଉ ଗାଈ ଫେରସ୍ତ ନେବେ କ'ଣ ? ଓଲଟି ପ୍ରସ୍ତାବ ଦେଲେ, ହର୍ମିଜ୍ ଗାଈମାନଙ୍କୁ ରଖି ପ୍ରତିବଦଳରେ ବୀଣାଟିକୁ ତାଙ୍କୁ ଦିଅନ୍ତୁ । ସେଇଆହିଁ ହେଲା । ଗାଈମାନେ ଚରୁଥାନ୍ତି । ଖଣ୍ଡେ ବାଉଁଶ କାଟି ତାକୁ ଗାଈଆଳଙ୍କ ବଂଶୀ କରି ହର୍ମିଜ ବଜାଇଲେ । ଏତେ ସୁନ୍ଦର, ଏତେ ମନମତାଣିଆ ସ୍ୱର ! ବଇଁଶୀଟିକୁ ପାଇବାକୁ ଆପୋଲୋଙ୍କର ମନ ଛକ୍‌ପକ୍ ହେଲା । ଆପୋଲୋ ବଂଶୀଟି ମାଗିଲେ । ପ୍ରତି ବଦଳରେ ସେ ଗାଈଙ୍କୁ ବଶ କରିବାର ସୁବର୍ଣ୍ଣ ଦଣ୍ଡ ଯାଚିଲେ । ତାହା ପାଇଲେ ହର୍ମିଜ୍ ହେବେ ମେଷପାଳକ ଓ ଗାଈଆଳଙ୍କର ଦେବତା । ହର୍ମିଜ୍ ଦେଖିଲେ, ଏଇ ସୁଯୋଗରେ ଆପୋଲୋଙ୍କ ଠାରୁ ଆଉ କିଛି ଆଦାୟ କରିହେବ । ସୁବର୍ଣ୍ଣଦଣ୍ଡ ସହିତ ଆଗତ ଭବିଷ୍ୟ ବିଦ୍ୟା ସେ ଆପୋଲୋଙ୍କୁ ମାଗିଲେ ।

ପିଲାଦିନୁ ଦେଣନେଣ ବ୍ୟାପାରରେ ପଶି ନିଜର ଫାଇଦା ଉଠାଇବାରେ ତାଙ୍କର ଏପରି କ୍ଷମତା । ହର୍ମିଜ୍ ସବୁ ଜୁଆଡ଼ୀଙ୍କର ଦେବତା !

ମଧୁର ବଚନ କହି ହର୍ମିଜ୍ ପ୍ରଥମେ ଆପୋଲୋଙ୍କର ମନ ଜିଣି ନେଇଥିଲେ । ତାଙ୍କର ବାଗ୍ମିତା ଓ ଅନ୍ୟଙ୍କୁ ପ୍ରବର୍ତ୍ତାଇବାର କଳା ଅତୁଳନୀୟ । ସେ ବାଗ୍ମିତାର ଦେବତାଭାବେ ପୂଜା ପାଆନ୍ତି ।

ଅଲମ୍ପସ୍ ଫେରି ହର୍ମିଜ୍ ଜିଅସ୍‌ଙ୍କୁ ସବୁକଥା ଜଣାଇଥିଲେ । ଆଉ କେବେ ପର-ଦ୍ରବ୍ୟ ହରଣ ନ କରିବାକୁ ଜିଅସ୍ ତାଙ୍କୁ ସତର୍କ କରିଦେଲେ । ତେବେ ହର୍ମିଜ୍‌ଙ୍କର ବାଗ୍ମିତା, ପ୍ରବର୍ତ୍ତାଇବାର କଳା ଓ ଉଦ୍ଭାବନ ଶକ୍ତିର ପ୍ରଶଂସା ନ କରି ଜିଅସ୍ ରହି ପାରିଲେନାହିଁ । ଜିଅସ୍ ତାଙ୍କ ଉପରେ ପ୍ରସନ୍ନ ଜାଣିପାରି ହର୍ମିଜ୍ ନିବେଦନ କଲେ ଯେ ତାଙ୍କୁ ଦେବତାଙ୍କର ମୁଖପାତ୍ର ଓ ବାର୍ତ୍ତାବହ କରାଯାଉ । ମିଛୁଆଙ୍କୁ ଏପରି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟଭାର ଦେବା କ'ଣ ଉଚିତ୍ ? ଜିଅସ୍‌ଙ୍କ ମନୋଭାବ ବାରିପାରି ହର୍ମିଜ୍ ପ୍ରତିଶ୍ରୁତି ଦେଲେ, ସେ କେବେ ମିଛ କହିବେ ନାହିଁ । ତେବେ ସର୍ବଦା ସମୁଦାୟ ସତ୍ୟ ପ୍ରକାଶ କରିବେ ବୋଲି ଜବାବ୍ ଦେବାକୁ ଅକ୍ଷମ ! ହର୍ମିଜ୍‌ଙ୍କର ଅକପଟ ସତ୍ୟ କଥନରେ ଜିଅସ୍ ଖୁସିହୋଇ ତାଙ୍କୁ ସେହି ପଦରେ ନିଯୁକ୍ତ କଲେ । ହର୍ମିଜ୍‌ଙ୍କୁ ଦେବଦୂତଙ୍କର ସାଜପୋଷାକ ମିଳିଲା । ସେହି ପୋଷାକରେ ତାଙ୍କୁ ଦେବତା ଓ ମନୁଷ୍ୟ ସମସ୍ତେ ସମ୍ମାନ କରନ୍ତି । ଜିଅସ୍ ହର୍ମିଜ୍‌ଙ୍କ ହାତେ ସୁବର୍ଣ୍ଣ ପାଦୁକା ଦେଇଥିଲେ । ଏହା ପିନ୍ଧିଲେ ସେ ନିମିଷକେ ତିନିପୁର ବୁଲିପାରିବେ । ଦେବଦୂତର ଦାୟିତ୍ୱ ସହିତ ଜିଅସ୍ ତାଙ୍କ ବାଣିଜ୍ୟର ଦେବତା ପଦରେ ଅଭିଷିକ୍ତ କଲେ । ଏହାଛଡ଼ା ଶାନ୍ତି ସ୍ଥାପନ, ଭ୍ରମଣକାରୀଙ୍କର ନିରାପତ୍ତା ପ୍ରଭୃତି ଆଉ କେତେକ ଦାୟିତ୍ୱ ତାଙ୍କୁ ମିଳିଲା ।

ତିନି ଭାଗ୍ୟଦେବୀଙ୍କ ସହିତ ମିଶି ହର୍ମିଜ୍ ବର୍ଣ୍ଣମାଳା ଉଦ୍ଭାବନ କରିଥିଲେ । ଓଜନ ମାପ, ଜ୍ୟୋତିର୍ବିଜ୍ଞାନ ଓ ଅଲିଭ୍ ବୃକ୍ଷ ତାଙ୍କର ଉଦ୍ଭାବନ । ଏସବୁ ସାଙ୍ଗକୁ ହର୍ମିଜ୍ ମାଲକୁସ୍ତି ର ଦେବତା ଭାବେ ପୂଜା ପାଆନ୍ତି । ମୋଟଉପରେ ତାଙ୍କର ପ୍ରତିଭା ଯେପରି ବହୁମୁଖୀ, ବ୍ୟକ୍ତିତ୍ୱ ଓ କାର୍ଯ୍ୟକଳାପ ସେହିପରି ଚିତ୍ତାକର୍ଷକ ।

ହେଲେନିକ୍‌ମାନଙ୍କ ପୂର୍ବରୁ ଗ୍ରୀସ୍‌ରେ ହର୍ମିଜ୍ ପଥରର ଲିଙ୍ଗରୂପେ ପୂଜା ପାଉଥିଲେ । କାଳକ୍ରମେ ତାଙ୍କର ବିବର୍ତ୍ତନ ଘଟି ସେ ଅଲମ୍ପସ୍‌ର ହର୍ମିଜ୍‌ରେ ପରିଣତ ହେଲେ ।

## ଏରସ୍ (Eros) :

ଗ୍ରୀସ୍‌ର କନ୍ଦର୍ପ ଦେବ । ଆଦ୍ୟରୁ ଏରସ୍ କିଙ୍ଗ ରୂପେ ପୂଜା ପାଉଥିଲେ । ଅଲମ୍ପସ୍‌ର ଦେବତାଙ୍କ ମଧ୍ୟରେ ଏରସ୍ ଜଣେ ଲଘୁଚେତା ଗୌଣଦେବତା ଭାବେ ପରିଗଣିତ । ସୌନ୍ଦର୍ଯ୍ୟର ରାଣୀ ଆଫ୍ରୋଡାଇଟ୍ ତାଙ୍କର ମାଆ । ତେବେ ପିତା କିଏ ସେ ବିଷୟରେ ମତାନ୍ତର ରହିଛି । କୁହାଯାଏ ଯେ ଏରିଜ୍ ତାଙ୍କର ପିତା । ହର୍ମିଜ୍ ହୋଇଥିବା ମଧ୍ୟ ସମ୍ଭବ । ଏପରିକି ସ୍ୱୟଂ କଅସ୍ ତାଙ୍କର ପିତା ବୋଲି କେତେକଙ୍କର ବିଶ୍ୱାସ । ଆଉ ଗୋଟିଏ ମତ ହେଉଛି, ସବୁ ଦେବତାଙ୍କ ପୂର୍ବରୁ ଏରସ୍‌ଙ୍କର ଜନ୍ମ । କନ୍ଦର୍ପ ନ ଥାଇ ଅନ୍ୟମାନେ ସୃଷ୍ଟି ହେଲେ କିପରି ? ଏହି ମତାବଲମ୍ବୀମାନେ କହନ୍ତି, ଏରସ୍ ବିଶ୍ୱ-ଅଣ୍ଡ (World-egg)ରୁ ଜାତ । ସେ ଆଦ୍ୟ ଦେବତା । ଆଦ୍ୟ ପୃଥିବୀମାତା ଓ ଏରସ୍‌ଙ୍କର ଆବିର୍ଭାବ ଏକ ସମୟରେ ଘଟିଥିଲା ।

ଏରସ୍‌ଙ୍କ ଯୋଗୁ ଯୌନକାମନା ଜାତ ହୁଏ । ତାଙ୍କର ଗରିମା ବିଷୟରେ ଯିଏ ଯାହା କହୁନା କାହିଁକି, ଅଲମ୍ପସ୍‌ର ଏରସ୍‌ଙ୍କ କାର୍ଯ୍ୟକଳାପ ବାଳସୁଲଭ ଓ ଦାୟିତ୍ୱହୀନ । ସେ ତାଙ୍କର ସୁବର୍ଣ୍ଣ ପକ୍ଷ ବିସ୍ତାର କରି ଚାରିଆଡ଼େ ଉଡ଼ୁଥାନ୍ତି ଓ ଯେଉଁଠି ସେଠି, ଯାହାକୁ ତାକୁ ତାଙ୍କର ଶର ମାରନ୍ତି ।

## ହେଷ୍ଟିଆ (Hestia) :

ହେଷ୍ଟିଆ କଅସ୍‌ଙ୍କ ଭଉଣୀ ଓ ଅଲମ୍ପସ୍‌ର ଜଣେ ସମ୍ମାନିତା ଦେବୀ । ଏଥେନା ଓ ଆର୍ଟିମିସ୍‌ଙ୍କ ପରି ହେଷ୍ଟିଆ କଳିଗୋଳ ଓ ଯୁଦ୍ଧଠାରୁ ଦୂରେଇ ରହନ୍ତି । ମର୍ଯ୍ୟାଦା ଦୃଷ୍ଟିରୁ ଅଲମ୍ପସ୍‌ର ଖୁବ୍ କମ୍ ଦେବଦେବୀ ତାଙ୍କ ସହିତ ତୁଳନୀୟ । ଉପରୋକ୍ତ ଦୁଇ ଦେବୀଙ୍କ ପରି ହେଷ୍ଟିଆ ଚିରକୁମାରୀ ।

ହେଷ୍ଟିଆ ହେଉଛନ୍ତି ପ୍ରତି ଗ୍ରୀକ୍ ଘରେ ଓ ନଗରରେ ଥିବା ଅଗ୍ନିକୁଣ୍ଡର ଦେବୀ । ଗ୍ରୀକ୍‌ମାନଙ୍କ ପାଇଁ ତାଙ୍କର ଅଗ୍ନିକୁଣ୍ଡ ଅତି ପବିତ୍ର । ଅଗ୍ନିକୁଣ୍ଡ ପାଖରେ ସେମାନେ ଦେବଦେବୀଙ୍କୁ ଭୋଗ ଲଗାନ୍ତି । ସର୍ବପ୍ରଥମେ ହେଷ୍ଟିଆ ଭୋଗ ଗ୍ରହଣ କରନ୍ତି । ପରିବାରର ମଙ୍ଗଳ ତାଙ୍କରି କୃପା ଉପରେ ନିର୍ଭର କରେ । ସେ ଯେପରି ଭଦ୍ର ସେହିପରି ଦୟାଳୁ । ଆମର ପ୍ରାଚୀନ ଭାରତରେ ମଧ୍ୟ ପ୍ରତି ସମ୍ଭ୍ରାନ୍ତ ପରିବାରରେ ଗୋଟିଏ ଲେଖାଁ ଅଗ୍ନିଗୃହ ଥିଲା ଓ ସେଠାରେ ଏକ କୁଣ୍ଡରେ ଅଗ୍ନି ସୁରକ୍ଷିତ ଥିଲେ ।

## ଆର୍ଟିମିସ ବା ଡିଏନା (Artemis or Diana) :

ଜିଅସ୍‌ଙ୍କର କନ୍ୟା ଓ ଆପୋଲୋଙ୍କର ଭଉଣୀ । ଆପୋଲୋଙ୍କ ପରି ମହାମାରୀ ସୃଷ୍ଟି କରି ମଣିଷଙ୍କୁ ନିପାତ କରିଦେବା ଓ ମହାମାରୀ କବଳରୁ ମଣିଷକୁ ରକ୍ଷା କରିବାର ଶକ୍ତି ତାଙ୍କର ଅଛି । ମାତ୍ର ସବୁ ବିଷୟ ପ୍ରତି ସେ ନିଃସ୍ପୃହ ।

ଆର୍ଟିମିସ୍‌ଙ୍କର ଶୈଶବରେ ଥରେ ଜିଅସ୍ ତାଙ୍କୁ ବର ଯାଚିଥିଲେ । ଚିରକୁମାରୀ ରହିବାପାଇଁ ଆର୍ଟିମିସଙ୍କର ଇଚ୍ଛା ଥିଲା । ତେଣୁ ସେ ଜିଅସ୍‌ଙ୍କୁ ତାହାହିଁ ମାଗିଲେ । ବାସ୍ତବିକ ! ସର୍ବଶକ୍ତିମାନ୍ ଜିଅସ୍ ବଳ ନ ପାଇଲେ ଅଲିମ୍ପସ୍‌ରେ କୁମାରୀ ରହିବା ଦୁଃସାଧ୍ୟ ବ୍ୟାପାର ! ତା ପରେ ଆର୍ଟିମିସ୍ ତାଙ୍କର ସମବୟସ୍କା ଷାଠିଏ ଜଣ ଜଳପରୀ ମାଗିଲେ । ଏମାନେ ତାଙ୍କର ସଖୀ । ଏମାନଙ୍କ ବ୍ୟତୀତ ଜିଅସ୍ ତାଙ୍କୁ ବହୁ ଦାସୀ ଦେଇଥିଲେ ।

ତାଙ୍କର ସଖୀ ହେବାକୁ ଆର୍ଟିମିସ୍ ଯେଉଁ ଜଳପରୀଙ୍କୁ କନ୍ୟା ମାଗିଥିଲେ ସେମାନେ ସମସ୍ତେ ଆଗ୍ରହରେ ନିଜ ନିଜର କନ୍ୟାଙ୍କୁ ଛାଡ଼ି ଦେଇଥିଲେ । ସଖୀମାନଙ୍କ ସହିତ ବଣ ଜଙ୍ଗଲରେ ବୁଲି ଶିକାର କରିବାରେ ଆର୍ଟିମିସ୍‌ଙ୍କର ଖୁବ୍ ସଉକ୍ । ଅନ୍ୟ କିଛି କରିବାକୁ ବା ଭାବିବାକୁ ତାଙ୍କର ବେଳ ନ ଥାଏ । ଧନୁଶର ଚାଳନାରେ ଆର୍ଟିମିସ୍ ସିଦ୍ଧହସ୍ତା । ତାଙ୍କର ଲକ୍ଷ୍ୟ ଅବ୍ୟର୍ଥ ।

ଗ୍ରୀସର ବଣ ପାହାଡ଼ ନିଅଣ୍ଟ ହେଉଥିବାରୁ ଆର୍ଟିମିସ୍ ଚନ୍ଦ୍ରଲୋକରେ ମଧ୍ୟ ଶିକାର କରନ୍ତି ବୋଲି ଅନେକଙ୍କର ବିଶ୍ୱାସ । ସେ ଚନ୍ଦ୍ରଲୋକର ଦେବୀ ଭାବେ ପୂଜା ପାଆନ୍ତି । କୌଣସି କଥା ପ୍ରତି ଆର୍ଟିମିସ୍‌ଙ୍କର ଆଗ୍ରହ ନ ଥିଲେ ମଧ୍ୟ ଗର୍ଭକଷ୍ଟ ପାଉଥିବା ନାରୀଙ୍କର ବିକଳ ପ୍ରାର୍ଥନା ସହି ନ ପାରି ସେ ସେମାନଙ୍କୁ ଉଦ୍ଧାର କରନ୍ତି । ଆର୍ଟିମିସ୍ ଜନ୍ମ ହେଲା ବେଳେ ତାଙ୍କ ମାଆଙ୍କର କୌଣସି କଷ୍ଟ ହୋଇ ନ ଥିଲା । ଏହି କାରଣରୁ ଗ୍ରୀକ୍‌ଦେବୀମାନେ ଆର୍ଟିମିସ୍‌ଙ୍କୁ ସୁଖ ପ୍ରସବର ଦେବୀ ରୂପେ ବାଛିଥିଲେ ।

## ହିଫେଷ୍ଟାସ୍ (Hephaestus) :

ଜିଅସ୍ ଓ ହେରାଙ୍କର ପୁତ୍ର । ହିଫେଷ୍ଟାସ୍ ଜନ୍ମରୁ ଖଞ୍ଜ ଓ କଦାକାର । ମାତ୍ର ତାଙ୍କ ପରି ପ୍ରତିଭାବାନ୍ ଦେବତା ଅଲିମ୍ପସ୍‌ରେ ନାହାନ୍ତି । ପରବର୍ତ୍ତୀ କାଳରେ ରୋମାନ୍‌ମାନେ ତାଙ୍କୁ ଭଲ୍‌କାନ୍ ନାମରେ ପୂଜା କରୁଥିଲେ ।

ହ୍ୱିଫେଷ୍ଟାସ୍‌ଙ୍କ ଜନ୍ମ ବୃତ୍ତାନ୍ତ ବଡ଼ ରହସ୍ୟମୟ । ଜିଅସ୍ ନାମକୁ ମାତ୍ର ତାଙ୍କର ପିତା । କଥା ହେଉଛି, ଜିଅସ୍ ଏକାକୀ ଏଥେନାଙ୍କୁ ଜନ୍ମ ଦେବାରୁ ହେରା ଈର୍ଷାନ୍ୱିତା ହୋଇଥିଲେ ଓ କୌଣସି ପୁରୁଷର ସାହାଯ୍ୟ ନ ନେଇ ଗୋଟିଏ ସନ୍ତାନର ଜନନୀ ହେବାକୁ ସ୍ଥିର କଲେ । ହ୍ୱିଫେଷ୍ଟାସ୍ ସେହି ସନ୍ତାନ । ଅପ୍ରାକୃତିକ ଉପାୟରେ ଜନ୍ମ ହୋଇଥିବାରୁ ସେ ଖଞ୍ଜ ।

ଗ୍ରୀସ୍‌ର ବିଶ୍ୱକର୍ମା । ହ୍ୱିଫେଷ୍ଟାସ୍‌ଙ୍କ ପରି ଅସୁନ୍ଦର ଦେବତାଙ୍କୁ ସୌନ୍ଦର୍ଯ୍ୟର ଦେବୀ ବାଛିଥିବା ନିୟତିର ପରିହାସ । କହିବା ବାହୁଲ୍ୟ, ହ୍ୱିଫେଷ୍ଟାସ୍‌ଙ୍କ ପ୍ରତିଭା ଦେଖି ଆଫ୍ରୋଡ଼ାଇଟ ତାଙ୍କୁ ସ୍ୱାମୀ ରୂପେ ବରଣ କରିଥିଲେ ।

ହ୍ୱିଫେଷ୍ଟାସ୍ ଅଲିମ୍ପସ୍‌ର ବିଚକ୍ଷଣ ଇଞ୍ଜିନିୟର । ନୂତନ ଉଦ୍ଭାବନ ପ୍ରତିଭା ପାଇଁ ସେ ବିଖ୍ୟାତ । ଦେବତାଙ୍କ ମଧ୍ୟରେ ସେ କେବଳ ପ୍ରତିଭାବାନ୍ ନୁହନ୍ତି, ଅନେକ ପ୍ରତିଭାବାନ ବୈଜ୍ଞାନିକଙ୍କ ପରି ଆଡ଼ବାଇଆ ମଧ୍ୟ । ତେଣୁ ତାଙ୍କର କାର୍ଯ୍ୟକଳାପ ଦେବତାମାନଙ୍କୁ ପ୍ରଚୁର ଆମୋଦ ଯୋଗାଇ ଥାଏ ।

ହ୍ୱିଫେଷ୍ଟାସ୍‌ଙ୍କ ତତ୍ତ୍ୱାବଧାନରେ ଦେବତାଙ୍କର ପ୍ରାସାଦମାନ ନିର୍ମିତ ହୋଇଥିଲା । କେତେଜଣ ସୁବର୍ଣ୍ଣର ନାରୀ ନିର୍ମାଣ କରିଥିବା ତାଙ୍କର ଅଦ୍ଭୁତ ଉଦ୍ଭାବନ କ୍ଷମତାର ଦୃଷ୍ଟାନ୍ତ । ଏହି ସୁବର୍ଣ୍ଣ ପ୍ରତିମାମାନେ ହ୍ୱିଫେଷ୍ଟାସ୍‌ଙ୍କୁ କାମରେ ସାହାଯ୍ୟ କରନ୍ତି । ଏମାନେ ଜଟିଳ କାର୍ଯ୍ୟ କରିପାରନ୍ତି, ଏପରିକି କଥା ମଧ୍ୟ ବୁଝନ୍ତି । ଆଧୁନିକ ପରିଭାଷାରେ କହିଲେ, ଅତି ଉନ୍ନତ କମ୍ପ୍ୟୁଟର ବା ନିର୍ମାଣ କରିବାର କ୍ଷମତା ହ୍ୱିଫେଷ୍ଟାସ୍‌ଙ୍କର ଥିଲା ।

ଚମତ୍କାର ସୂକ୍ଷ୍ମକାମ ହୋଇଥିବା ଅଳଙ୍କାର ଗଢ଼ିଦେବାରେ ହ୍ୱିଫେଷ୍ଟାସ୍ ବିଶେଷ ଦକ୍ଷ ଥିଲେ । ହେରାଙ୍କ ପାଇଁ ଅତି ସୁନ୍ଦର ଅଳଙ୍କାରମାନ ଗଢିଦେବାରୁ ପ୍ରୀତ ହୋଇ ହେରା ତାଙ୍କୁ ସୌନ୍ଦର୍ଯ୍ୟର ରାଣୀ ଆଫ୍ରୋଡ଼ାଇଟ୍‌ଙ୍କୁ ବିବାହ କରିବାରେ ସାହାଯ୍ୟ କରିଥିଲେ । ଖଞ୍ଜ ଓ କଦାକାର ହ୍ୱିଫେଷ୍ଟାସ୍ ସୌନ୍ଦର୍ଯ୍ୟର ଦେବୀଙ୍କୁ ବିବାହ କରିବା ନିୟତିର ପରିହାସ । ଆଫ୍ରୋଡ଼ାଇଟ୍ ହୁଏତ ଜାଣିଥିଲେ, ଏମିତିକା ଆଡ଼ବାଇଆକୁ ବିବାହ କଲେ ବିବାହ ପରେ ଅନ୍ୟ ଦେବତାଙ୍କ ସହିତ ନିର୍ବିଘ୍ନରେ ମାତି ହେବ !

## ଆଫ୍ରୋଡ଼ାଇଟ୍ (Aphrodite) :

ସୌନ୍ଦର୍ଯ୍ୟର ଦେବୀ । ତାଙ୍କ ସୁନ୍ଦର ପଣର କି ତୁଳନା ଅଛି ? ଆଫ୍ରୋଡ଼ାଇଟ୍ କେବଳ ସୌନ୍ଦର୍ଯ୍ୟର ଦେବୀ ନୁହନ୍ତି, ସେ କାମନାର ପ୍ରତିମୂର୍ତ୍ତି । ତାଙ୍କର ଜନ୍ମ-ଇତିହାସ

ରହସ୍ୟମୟ । ତେବେ ଯେପରି ଭାବେ ସେ ଆବିର୍ଭୂତା ହେଲେ ତାହା ସୌନ୍ଦର୍ଯ୍ୟର ଦେବୀଙ୍କ ପାଇଁ । ଗୋଟିଏ ଶଙ୍ଖ ଉପରେ ବସି ସମୁଦ୍ରର ଫେନିଳ ତରଙ୍ଗରେ ଭାସି ଭାସି ଆସି ସେ କୂଳରେ ଲାଗିଥିଲେ । ଚତୁଃପାର୍ଶ୍ୱରେ ସୁନ୍ଦରୀ ଜଳପରୀଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଜଳସାଗର ଭିତରୁ ସମ୍ପୂର୍ଣ୍ଣ ଅନାବୃତା ଶୋଭାର ସାଗର ଉଠି ଆସିଲେ ।

ସୌନ୍ଦର୍ଯ୍ୟର ଦେବୀ ଆଫ୍ରୋଡ଼ାଇଟ୍—ଯୁଆଡ଼େ ଯାଆନ୍ତି ସେଆଡ଼େ ଫୁଲ ଫୁଟିଯାଏ । ସେ ପ୍ରଥମେ ଆସି ପହଞ୍ଚିଲେ ଗୋଟିଏ କ୍ଷୁଦ୍ର ଦ୍ୱୀପରେ । ସେଠାରୁ ଗଲେ ପିଲୋପୋନେସିଅସ । ଭକ୍ତଙ୍କର ପୂଜା ଗ୍ରହଣ କରିବାକୁ ଗୋଟିଏ ଗୋଟିଏ ସ୍ଥାନରେ କିଛି କାଳ ଅଟକି ଶେଷରେ ଯାଇ ଅଲିମ୍ପସରେ ପହଞ୍ଚିଲେ ।

ଆଫ୍ରୋଡ଼ାଇଟ୍‌ଙ୍କର ଜନ୍ମ ଅଲିମ୍ପିଆରେ ନୁହେଁ । ଅର୍ଥାତ୍ ଏହି ଦେବୀ ଅନ୍ୟାନ୍ୟ ନାମରେ ପୂର୍ବରୁ ପୂଜା ପାଉଥିଲେ । ପ୍ରାଚ୍ୟରୁ ଆସି ସେ ଗ୍ରୀସ୍‌ରେ ପ୍ରବେଶ କରିଥିବା ସମ୍ଭବ । କରିନ୍ଥ, ସ୍ପାର୍ଟା ଥେସ୍‌ପିଆ ଓ ଏଥେନ୍ସରେ ଆଫ୍ରୋଡ଼ାଇଟ୍ ବିଶେଷ ସମ୍ମାନ ପାଇଥିଲେ । କିନ୍ତୁ ଦେବୀ ପୂଜାର ଗୁରୁତ୍ୱ କମି ପୁରୁଷ ଯୁଗର ପ୍ରାଧାନ୍ୟ ଆସିବା ପରେ ଆଫ୍ରୋଡ଼ାଇଟ୍‌ଙ୍କ ସମ୍ମାନ କ୍ଷୁଣ୍ଣ କଲା ପରି ତାଙ୍କ ନାମରେ ଅନେକ ପ୍ରେମକାହାଣୀ ସୃଷ୍ଟି ହେଲା । କେବଳ ଏହି କାହାଣୀ ଗୁଡ଼ିକର ସ୍ୱାଦ ଯୋଗୁ ନୁହେଁ, ଗ୍ରୀକ୍ ସାହିତ୍ୟରେ ସେମାନଙ୍କର ଗୁରୁତ୍ୱ ଦୃଷ୍ଟିରୁ ଏଠାରେ କେତୋଟି କାହାଣୀ ସଂକ୍ଷେପରେ କୁହାଯାଉଛି ।

ଏରିଜ୍‌ଙ୍କ ସହିତ ଆଫ୍ରୋଡ଼ାଇଟ୍‌ଙ୍କର ଗୁପ୍ତ ପ୍ରଣୟ ଅନେକ ଦିନ ଚାଲିଲା । ତାଙ୍କର ସ୍ୱାମୀ ହିଫେଷ୍ଟାସ୍ ଏହାର କିଛି ଟେର୍ ପାଉ ନ ଥିଲେ । କାନକୁହାମାନେ କିନ୍ତୁ କେତେଦିନ ଚୁପ୍ ରହନ୍ତେ ? କଥାଟା ହିଫେଷ୍ଟାସ୍‌ଙ୍କ କାନରେ ପଡ଼ିଗଲା । ଅତି କୌଶଳରେ ଗୋଟିଏ ଜାଲ ତିଆରି କରି ତାକୁ ଆଫ୍ରୋଡ଼ାଇଟ୍‌ଙ୍କ ପଲଙ୍କରେ ହିଫେଷ୍ଟାସ୍ ଖଞ୍ଜି ଦେଲେ । ଏହାପରେ ସ୍ତ୍ରୀଙ୍କଠାରୁ ବିଦାୟ ନେଇ ଗୋଟିଏ ଜରୁରୀ କାର୍ଯ୍ୟ ବାହାନାରେ ସେ ବାହାରିଗଲେ । ଏ ସୁଯୋଗର ସଦ୍‌ବ୍ୟବହାର କରିବାପାଇଁ ଏରିଜ୍‌ଙ୍କ ପାଖକୁ ତୁରନ୍ତ ଖବର ଗଲା । ଆଫ୍ରୋଡ଼ାଇଟ୍ ଓ ଏରିଜ୍ ପରସ୍ପରକୁ ଆଲିଙ୍ଗନ କରିଥିବା ଅବସ୍ଥାରେ ପୂର୍ବରୁ ସଜା ହୋଇଥିବା ଜାଲ ଦୁହିଁଙ୍କୁ ଛନ୍ଦି ପକାଇଲା । ବହୁ ଚେଷ୍ଟା କରି ମଧ୍ୟ ହିଫେଷ୍ଟାସ୍‌ଙ୍କ ବୁଦ୍ଧିରେ ନିର୍ମିତ ସେହି ଧାତବ ଜାଲରୁ ସେମାନେ ମୁକୁଳି ପାରିଲେ ନାହିଁ ।

ସକାଳ ହେଲା । କରୁଣ କାର୍ଯ୍ୟ ବାହାନାରେ ଯାଇଥିବା ହେଫେଷ୍ଟାସ୍ ସକାଳୁ ଆସି ପହଞ୍ଚିଗଲେ । ଆଜି ସେହି ଅପୂର୍ବ ଦୃଶ୍ୟ ଦେଖିବାକୁ ଦେବତାମାନଙ୍କୁ ଡାକି ଆଣିଲେ ! ବଣନିଆଁ ପରି ଏ ସମ୍ବାଦ ଅଲିମ୍ପସରେ ବ୍ୟାପିଗଲା । ସେ ଲଜ୍ଜାଜନକ ଦୃଶ୍ୟ ଦେଖିବାକୁ ଦେବୀମାନେ ଅବଶ୍ୟ ଆସିଲେ ନାହିଁ ।

ଜାଲ ପାଖରେ ଠିଆହୋଇ ଆପୋଲୋ ଦେବ ହର୍ମିଜ୍‌ଙ୍କୁ ଗମ୍ଭୀର ଭାବେ ପଚାରିଲେ, "ଏରିଜଙ୍କ ସ୍ଥାନ ଅଧିକାର କରିବାକୁ କଣ ତମେ ରାଜି ହେବ । ଠିକ୍ ଏମିତି, ଜାଲ ଭିତରେ ।"

ମହାଜ୍ଞାନୀ, ନ୍ୟାୟପରାୟଣ ଓ ସଂଯମର ଦେବତା ଆପୋଲୋ ଏ ପ୍ରଶ୍ନ ପଚାରୁଛନ୍ତି ! ଅବଶ୍ୟ ଠିକଣା ଦେବତାଙ୍କୁ ବାଛି ପଚାରିଲେ । ହର୍ମିଜ୍ ଉତ୍ତର ଦେଲେ, "ମହାଭାଗ ଆପୋଲୋ ! ମୋର କେଉଁଠୁ ଏଡ଼େ ଭାଗ୍ୟ ହେବ ! ଏ ଜାଲ ତିନ ପରସ୍ତ ହେଉ, ଅଲିମ୍ପସ୍‌ର ଦେବତାଙ୍କ ସହିତ ସବୁ ଦେବୀମାନେ ପଛେ ଜାଲ ଚାରିପଟେ ରୁଣ୍ଡ ହୋଇ-ଥାଆନ୍ତୁ, ତଥାପି ଗୋଟିଏ ପଲକରେ ଆଫ୍ରୋଡ଼ାଇଟ୍‌ଙ୍କୁ କୋଳରେ ଧରି ଶୋଇ ପାରନ୍ତି କି !"

ହର୍ମିଜ୍‌ଙ୍କ କଥାଶୁଣି ଦେବତାମାନେ ଉଚ୍ଚହାସ୍ୟ କଲେ । ଜିଅସ୍ କିନ୍ତୁ ରାଗିଗଲେ । ହେଫେଷ୍ଟାସ୍‌ଙ୍କ ନିର୍ବୋଧ କାର୍ଯ୍ୟ ତାଙ୍କୁ ବିରକ୍ତ କଲା । ପୋସିଡନ୍ ଓ ଆଉ କେତେଜଣ ହେଫେଷ୍ଟାସ୍‌ଙ୍କ ପ୍ରତି ସହାନୁଭୂତିଶୀଳ ହୋଇ ଏରିଜ୍‌ଙ୍କୁ ଗାଳି ଦେଲେ । ଏ ଘଟଣା ପରେ ବିବାହ ବିଚ୍ଛେଦ ବ୍ୟତୀତ ଅନ୍ୟ ଗତି ନାହିଁ । ପୋସିଡନ୍ ପ୍ରସ୍ତାବ ଦେଲେ, ହେଫେଷ୍ଟାସ୍‌ଙ୍କର ବିବାହକାଳୀନ ଉପହାରର ସମତୁଲ ମୂଲ୍ୟ ଏରିଜ୍‌ଙ୍କୁ ବହନ କରିବାକୁ ପଡ଼ିବ । ଏଇ ସର୍ତ୍ତରେ ଏରିଜ୍‌ଙ୍କୁ ଜାଲରୁ ମୁକୁଳା ଯିବ । ଅସଲକଥା ହେଉଛି ଏରିଜ୍‌ଙ୍କର ସୌଭାଗ୍ୟ ପୋସିଡନ୍ ସହ୍ୟ କରିପାରୁ ନଥିଲେ !

ହେଫେଷ୍ଟାସ୍ ଗମ୍ଭୀର ହୋଇ କହିଲେ ଯେ, ପରେ ଏରିଜ୍ ଫାଙ୍କିଲେ ପୋସିଡନ୍‌ଙ୍କୁ ଜାଲ ଭିତରେ ପଶିବାକୁ ପଡ଼ିବ !

"କ'ଣ ଆଫ୍ରୋଡାଇଟ୍‌ଙ୍କ ସହିତ ?" ଆପୋଲୋ ବିଦ୍ରୂପ କଣ୍ଠରେ ପଚାରିଲେ ।

ପୋସିଡନ୍ ସଲଜ୍ଜ ଉତ୍ତର ଦେଲେ, "ଏରିଜ୍ ଫାଙ୍କିଦେବେ ବୋଲି ମୁଁ ଭାବୁ-ନାହିଁ । ଯଦି ସେପରି ଘଟେ, ମୁଁ ତାଙ୍କ ଋଣ ସୁଝି ଆଫ୍ରୋଡାଇଟ୍‌ଙ୍କୁ ବିବାହ କରିବି ।"

ଏରିଜ୍ ଓ ଆଫ୍ରୋଡାଇଟ୍ ମୁକୁଳିଲା ପରେ ଶରୀର ଶୁଦ୍ଧ କରିବାକୁ ଆଫ୍ରୋଡାଇଟ୍ ସମୁଦ୍ରରେ ପ୍ରବେଶ କଲେ ।

ଏରିଜ୍‌ଙ୍କ ଔରସରୁ ଆଫ୍ରୋଡାଇଟ୍‌ଙ୍କର ତିନୋଟି ସନ୍ତାନ ଜାତ ହୋଇଥିଲେ । ଫୋବସ୍, ଡିମସ୍ ଓ ହାର୍ମୋନିଆ । ସେମାନେ ଉପରୋକ୍ତ ଘଟଣା ପୂର୍ବରୁ ଜନ୍ମ ହୋଇଥିଲେ । ଆପୋଲୋଙ୍କ ପ୍ରଶ୍ନର ସ୍ପଷ୍ଟ ଉତ୍ତର ଦେଇଥିବାରୁ ହର୍ମିଜ୍‌ଙ୍କ ପ୍ରତି ଦେବୀଙ୍କର କୃପା ହେଲା । ହର୍ମିଜ୍‌ଙ୍କ ଔରସରେ ଆଫ୍ରୋଡାଇଟ୍‌ଙ୍କର ଗୋଟିଏ ସନ୍ତାନ ହୋଇଥିଲା । ଦୁହିଁଙ୍କର ନାମ ମିଶି ସନ୍ତାନର ନାମ ରହିଲା ହର୍ମାଫ୍ରୋଡାଇଟ୍ । ବଡ଼ ବିଚିତ୍ର ସନ୍ତାନ । ହର୍ମାଫ୍ରୋଡାଇଟ୍ ପୁରୁଷ ନୁହନ୍ତି କି ନାରୀ ନୁହନ୍ତି—ସେ ଉଭୟଲିଙ୍ଗୀ । ହର୍ମାଫ୍ରୋଡାଇଟ୍ ମାଙ୍କଡ଼ଚଆ-ମାନଙ୍କର ଦେବତା ! ଯଥା ସମୟରେ ପୋସିଡନ୍ ମଧ୍ୟ ଆଫ୍ରୋଡାଇଟ୍‌ଙ୍କ ପ୍ରେମଲାଭ କରିଥିଲେ ଓ ପୋସିଡନ୍‌ଙ୍କ ଔରସରୁ ତାଙ୍କର ଦୁଇଟି ପୁତ୍ର ଜାତ ହୋଇଥିଲା ।

ମାଙ୍କଡ଼ଚଆ ମାନଙ୍କର ଜଣେ ଗ୍ରୀକ୍ ଦେବତା ଅଛନ୍ତି । ଯେ ହର୍ମିକ୍ ଓ ଆଫ୍ରୋଡ଼ାଇଟ୍‌ଙ୍କ ପୁତ୍ର ।

କହିବା ବାହୁଲ୍ୟ, ଜାଲରୁ ମୁକୁଳିଲା ପରେ ଏରିଜ୍ ହିଫେଷ୍ଟାସ୍‌ଙ୍କ ବିବାହପଣ ଫେରାଇବାର ନାମ ଧରିଲେ ନାହିଁ । ପୋସିଡନ୍‌ଙ୍କର କାମନା ପୂରଣ ହୋଇଥିବାରୁ ଆଫ୍ରୋଡାଇଟ୍‌ଙ୍କୁ ବିବାହ କରିବାର ଝାମେଲା ଭିତରେ ସେ ପଶିବାକୁ ଚାହିଁଲେ ନାହିଁ । ସର୍ବୋପରି ହିଫେଷ୍ଟାସ୍ ଯେ ପ୍ରକୃତରେ ଆଫ୍ରୋଡ଼ାଇଟ୍‌ଙ୍କୁ ଛାଡ଼ପତ୍ର ଦେବାକୁ ଚାହୁଁଥିଲେ, ତା ନୁହେଁ ! କାରଣ ସେ ତାଙ୍କର ସ୍ତ୍ରୀଙ୍କୁ ଖୁବ୍ ଭଲ ପାଉଥିଲେ । ଦେବତାଙ୍କ ମାୟାରେ କିଏ ପଶି ପାରିବ ?

ଆଫ୍ରୋଡାଇଟ୍ ଅଦ୍ୱିତୀୟା ସୁନ୍ଦରୀ । ପୁଣି ତାଙ୍କ ପାଖରେ ଏପରି ଏକ କୁହୁକ ବଳୟ ଥିଲା ଯାହା ବଳରେ ସମସ୍ତେ ତାଙ୍କ ପ୍ରତି ଆକୃଷ୍ଟ ହେଉଥିଲେ । ଏପରିକି ନିଜର ଧର୍ମପିତା ଜିଅସ୍‌ଙ୍କୁ ପ୍ରଲୁବ୍ଧ କରିବାକୁ ଆଫ୍ରୋଡ଼ାଇଟ୍ ଛାଡୁ ନଥିଲେ । ପ୍ରତିଶୋଧ ନେବା-ପାଇଁ ଜିଅସ୍ ଆଫ୍ରୋଡାଇଟ୍‌ଙ୍କୁ ଜଣେ ମନୁଷ୍ୟ ପ୍ରତି ଆସକ୍ତ କରାଇ ଦେଲେ । ସେହି

ଭାଗ୍ୟବାନ୍ ମନୁଷ୍ୟର ନାମ ଆଙ୍କିସିଜ୍ (Anchises) । ସେ ଜଣେ ଅତି ସୁନ୍ଦର ରାଜପୁତ୍ର । କୌଣସି କାରଣରୁ ଇଦା ପାହାଡ଼ରେ ଗୋଟିଏ ମେଷପାଳକର କୁଡ଼ିଆରେ ଆଙ୍କିସିଜ୍ ଶୋଇଥିବା ସମୟରେ ଆଫ୍ରୋଡ଼ାଇଟ୍ ଜଣେ ରାଜକନ୍ୟାର ଛଦ୍ମବେଶରେ ପହଞ୍ଚି ତାଙ୍କ ସହିତ ରାତି ଯାପନ କଲେ । ସକାଳେ ବିଦାୟ ନେଲାବେଳେ ସେ ନିଜର ପରିଚୟ ଦେଲେ । ତାଙ୍କର ପରିଚୟ ଶୁଣି ଆଙ୍କିସିଜ୍‌ଙ୍କର ହୃତ୍‌କମ୍ପ ହେଲା । ମାତ୍ର ତାଙ୍କୁ ଅଭୟ ପ୍ରଦାନ କରି ଏ ଘଟଣା କାହା ଆଗରେ ପ୍ରକାଶ ନ କରିବାକୁ ସତର୍କ କରିଦେଇ ଆଫ୍ରୋଡ଼ାଇଟ୍ ଚାଲିଗଲେ ।

ରାଜପୁତ୍ର ଆଙ୍କିସିଜ୍‌ଙ୍କ ସହିତ ଆଫ୍ରୋଡ଼ାଇଟଙ୍କ ପ୍ରେମ କାହାଣୀ ।

ଥରେ ବନ୍ଧୁମେଳରେ ମଦ୍ୟପାନ କରି ମାତାଲ ଥିବା ବେଳେ ଜଣେ ବନ୍ଧୁ ଆଙ୍କିସିଜ୍‌ଙ୍କୁ କୌଣସି ଏକ ଅପୂର୍ବ ସୁନ୍ଦରୀ ରାଜକନ୍ୟା ପ୍ରସଙ୍ଗରେ ପଚାରିଦେଲେ, "ଆଫ୍ରୋଡ଼ାଇଟ୍‌ଙ୍କ ସହିତ ରାତିଯାପନ କରିବା ଅପେକ୍ଷା ଏହି ରାଜକନ୍ୟାଙ୍କ ସହିତ ରାତିଯାପନ କରିବା ଆପଣଙ୍କର ଅଧିକ କାମ୍ୟ ନୁହେଁ କି ?" ବେପରୁଆ ଭାବେ ଆଙ୍କିସିଜ୍ ଉତ୍ତର ଦେଲେ, "ମୁଁ ଦୁହିଁଙ୍କୁ ଉପଭୋଗ କରିଥିବାରୁ ମୋ ନିକଟରେ ଏପରି କାଳ୍ପନିକ ପ୍ରଶ୍ନ ଅବାନ୍ତର ।"

ଜିଅସ୍‌ଙ୍କ କାନରେ ଏ କଥା ପଡ଼ିଲା । କ୍ରୋଧରେ ଆଙ୍କିସିଜ୍‌ଙ୍କୁ ଲକ୍ଷ୍ୟ କରି ସେ ବଜ୍ର ପେଷିଲେ । ଆଫ୍ରୋଡ଼ାଇଟ୍ ହସ୍ତକ୍ଷେପ କରି ନ ଥିଲେ ତାଙ୍କର ମୃତ୍ୟୁ ଘଟିଥାଆନ୍ତା । ଆଫ୍ରୋଡ଼ାଇଟ୍‌ଙ୍କ ହସ୍ତକ୍ଷେପ ଯୋଗୁଁ ବଜ୍ର ତାଙ୍କ ଦେହରେ ନ ବାଜି ପାଦ ପାଖ ଭୂମିକୁ ଆଘାତ କଲା । ସେହି କୋପରେ ଆଙ୍କିସିଜ୍ ସକଳ ଭାବେ ଛିଡ଼ା ହେବାର ଶକ୍ତି ହରାଇଲେ ।

ଆଡୋନିସ୍ ନାମକ ଆଉ ଜଣେ ମାନବ ସହିତ ଆଫ୍ରୋଡ଼ାଇଟ୍‌ଙ୍କ ପ୍ରେମ ବ୍ୟାପାର ଏକ ସୁପରିଚିତ କାହାଣୀ । ଘଟଣାକ୍ରମେ ଆଫ୍ରୋଡ଼ାଇଟ୍ ସଦ୍ୟଜାତ ଆଡୋନିସ୍‌ଙ୍କର ପ୍ରାଣରକ୍ଷା କରି ଗୋପନରେ ତାଙ୍କୁ ପାଳିବା ପାଇଁ ପର୍ସିଫୋନ୍‌ଙ୍କୁ ଦେଇଥିଲେ । ବଡ଼ ହୋଇ-ଯିବା ପରେ ଆଡୋନିସ୍‌ଙ୍କର ସୁନ୍ଦର ରୂପ ଦେଖି ପର୍ସିଫୋନ୍ ତାଙ୍କ ପ୍ରେମରେ ପଡ଼ିଲେ ।

ତେଣୁ ଆଫ୍ରୋଡ଼ାଇଟ୍ ଆଡୋନିସ୍‌ଙ୍କୁ ଫେରସ୍ତ ମାଗିବାରୁ ପର୍ସିଫୋନ୍ ତାଙ୍କ କଥା ଶୁଣିଲେ ନାହିଁ । ଆଫ୍ରୋଡ଼ାଇଟ୍ ଜିଉସ୍‌ଙ୍କ ପାଖରେ ନାଲିସ୍ କଲେ । ଜିଉସ୍ ଜାଣିପାରିଲେ, ଆଫ୍ରୋଡ଼ାଇଟ୍ ମଧ୍ୟ ଆଡୋନିସ୍‌ଙ୍କ ପ୍ରତି ଆକୃଷ୍ଟ । ସେ ଜଣେ ଦେବୀଙ୍କୁ ଏହି ମୋକଦ୍ଦମାର ବିଚାରର ଦାୟିତ୍ୱ ଅର୍ପଣ କଲେ । ବିଚାରକ ରାୟ ଦେଲେ ଯେ ବର୍ଷର ବାରମାସରୁ ଆଡୋନିସ୍ ଚାରିମାସ ଆଫ୍ରୋଡ଼ାଇଟ୍‌ଙ୍କ ପାଖରେ ଓ ଚାରିମାସ ପର୍ସିଫୋନ୍‌ଙ୍କ ପାଖରେ ରହିବେ । ବାକି ଚାରିମାସ ସେ ସ୍ୱାଧୀନ ।

ଆନିମୋନିଜ୍ ଫୁଲ ଫୁଟିବା ଓ କବିତାର ନଈ ସୃଷ୍ଟି ହେବାର କାହାଣୀ ।

ଆଫ୍ରୋଡ଼ାଇଟ୍ ଆଡୋନିସ୍‌ଙ୍କୁ ଚାରିମାସ ପାଖରେ ରଖିଲେ । ଏହାପରି ଚାରିମାସ ମଧ୍ୟ ଆଡୋନିସ୍ କୁହୁକ ବଳୟ ପ୍ରଭାବରେ ଆଫ୍ରୋଡ଼ାଇଟ୍‌ଙ୍କ ସଙ୍ଗ ଛାଡ଼ିପାରିଲେ ନାହିଁ । ଏ ଚାରିମାସ ଯେଉଁଠି ଇଚ୍ଛା, ସେଠାରେ ରହିବାର ସ୍ୱାଧୀନତା ଆଡୋନିସଙ୍କର ଥିଲା । ମାତ୍ର ପର୍ସିଫୋନ୍‌ଙ୍କ ଭାଗ ଚାରିମାସରୁ ମଧ୍ୟ କିଛିଦିନ ଆଫ୍ରୋଡ଼ାଇଟ୍ ଆଡୋନିସ୍‌ଙ୍କୁ ଅଟକାଇ ଦେଲେ ।

ପର୍ସିଫୋନ୍ ଦେଖିଲେ, ଏରିଜ୍‌ଙ୍କ ସାହାଯ୍ୟ ବଳରେ ଠିକ୍ ପ୍ରତିଶୋଧ ନେଇ ହେବ । ଏରିଜ୍ ଆଫ୍ରୋଡ଼ାଇଟ୍‌ଙ୍କର ପ୍ରେମିକ । ସବୁ କଥା ଶୁଣି ଆଫ୍ରୋଡ଼ାଇଟ ପରିବର୍ତ୍ତେ ଆଡୋନିସ୍‌ଙ୍କ ଉପରେ ତାଙ୍କର ପ୍ରଚଣ୍ଡ କ୍ରୋଧ ଜାତ ହେଲା । ଜଣେ ସାମାନ୍ୟ ମନୁଷ୍ୟ ସୌନ୍ଦର୍ଯ୍ୟର ଦେବୀଙ୍କୁ ବଶ କରି ରଖିଲାଣି ! ଆଡୋନିସ୍ ଶିକାର କରୁଥିବା ସମୟରେ ଏରିଜ୍ ହିଂସ୍ର ବରାହ ରୂପ ଧାରଣ କରି ତାଙ୍କୁ ବଧ କଲେ । ଆଡୋନିସ୍‌ଙ୍କ ରକ୍ତ ଭୂଇଁରେ ପଡ଼ି ସୁନ୍ଦର ଆନିମୋନିଜ୍ (Anemones) ଫୁଲ ଫୁଟିଲା । ଆଉ ଆଫ୍ରୋଡ଼ାଇଟ୍‌ଙ୍କ ଦୁଃଖରୁ କବିତାରେ ନଈ ବହିଗଲା ।

ଆଡୋନିସ୍ ଯମାଳୟକୁ ଯିବାରୁ ପର୍ସିଫୋନ୍ ଖୁସିହେବା ସ୍ୱାଭାବିକ୍ । ମାତ୍ର ଆଫ୍ରୋଡ଼ାଇଟ୍‌ଙ୍କ ଦୁଃଖ ଲାଘବ କରିବାକୁ ଜିଉସ୍ ଆଦେଶ ଦେଇଥିଲେ ଯେ ଖରାଦିନ ଆରମ୍ଭଠାରୁ ଛଅମାସ ପର୍ସିଫୋନ୍ ଆଡୋନିସ୍‌ଙ୍କୁ ପୃଥିବୀକୁ ଛାଡ଼ି ଦେବେ । ଆନିମୋନିଜ୍ ଫୁଲ ବର୍ଷସାରା ଫୁଟେ ନାହିଁ । ମିଥ୍ ମାନେ ବହୁ ଭାବ ଓ ବହୁ ଅର୍ଥ ବହନ କରନ୍ତି । କ୍ଷେତ ଛଅମାସ ପଡ଼ିଆ ପଡ଼ିବା ଓ ଛଅମାସ ଶସ୍ୟଶ୍ୟାମଳ ହେବା କଥାଟି ଏହି ମିଥ୍ ମଧ୍ୟରେ ରୂପ ପାଇଛି ।

ଆଦ୍ୟରୁ ଆଫ୍ରୋଡ଼ାଇଟ୍ ମାତୃଦେବୀ ରୂପେ ପୂଜା ପାଉଥିଲେ । ନାରୀକୁ ମାତୃତ୍ୱର ଗୌରବ ତାଙ୍କରି କୃପାରୁ ମିଳେ । ସେଇ ଆଫ୍ରୋଡ଼ାଇଟଙ୍କ ନାମରେ ଉଚ୍ଛୃଙ୍ଖଳ ପ୍ରେମ-କାହାଣୀ ସବୁ ସୃଷ୍ଟି ହେଲା କାହିଁକି ? ଏହାର କାରଣ, ସଭ୍ୟତାର ବିକାଶ ସହିତ ନାରୀର ମୂଲ୍ୟ କେବଳ ସନ୍ତାନ ଜନ୍ମ କରିବା ମଧ୍ୟରେ ସୀମାବଦ୍ଧ ରହିଲା ନାହିଁ । ନାରୀର ସୌନ୍ଦର୍ଯ୍ୟ, ପ୍ରେମ, ଆକର୍ଷଣ ଓ ନାରୀ ସମ୍ଭୋଗ ଜନିତ ଆନନ୍ଦକୁ ମୂଲ୍ୟ ଦିଆଗଲା । ସେତେବେଳେ ଆଫ୍ରୋଡ଼ାଇଟ୍ ହେଲେ କାମନା ଓ ସୌନ୍ଦର୍ଯ୍ୟର ଦେବୀ । ଏଥେନ୍ସ ଓ ଆଉ କେତେକ ନଗରରେ ଚୈତ୍ରମାସରେ ଆଫ୍ରୋଡ଼ାଇଟ୍‌ଙ୍କର ପୂଜା ମହାସମାରୋହରେ ପାଳିତ ହେଉଥିଲା । ପୂଜାଦିନ ପୁରୁଷ ଓ ନାରୀ ଭକ୍ତ ମଧ୍ୟରେ ଅବାଧ ଯୌନ ସମ୍ଭୋଗ ଚାଲୁଥିଲା ।

## ଡାଇଓନିସସ୍ (Dionysus) :

ଗ୍ରୀସ୍‌ରେ ବିଳମ୍ବରେ ପ୍ରବେଶ କରିଥିଲେ । ମାତ୍ର ଅଳ୍ପକାଳ ମଧ୍ୟରେ ତାଙ୍କର ପୂଜା ବ୍ୟାପିଗଲା ଓ ଅଲିମ୍ପସ୍‌ର ଦେବଗଣଙ୍କ ମଧ୍ୟରେ ସେ ଏକ ବିଶିଷ୍ଟ ଆସନର ଅଧିକାରୀ ହେଲେ ।

ଡାଇଓନିସସ୍ ଜିଅସ୍‌ଙ୍କ ପୁତ୍ର । ତାଙ୍କର ମାଆ କିଏ ସେ ବିଷୟରେ ନାନା ମତ ରହିଛି । କେତେକଙ୍କ ମତରେ ଡିମିଟର୍ ଓ ଆଉ କେତେକଙ୍କ ମତରେ ପର୍ସିଫୋନ୍ ତାଙ୍କର ମାଆ । ସାଧାରଣ ମତ ହେଉଛି, କାଡ଼ମସ୍‌ଙ୍କ କନ୍ୟା ସିମିଲିଙ୍କ ଗର୍ଭରୁ ସେ ଜାତ । ଜିଅସ୍ ଡାଇଓନିସସ୍ ଖୁବ୍ ଗେହ୍ଲା କରୁଥିବାରୁ ହେରା ଏହି ଶିଶୁପୁତ୍ରକୁ ମାରିଦେବାକୁ ଚକ୍ରାନ୍ତ କଲେ । ତାଙ୍କରି ପ୍ରରୋଚନାରେ ଟିଟାନ୍‌ମାନେ ଡାଇଓନିସସ୍‌ଙ୍କୁ ଛକିଲେ ।

କଥିତ ଅଛି, ଡାଇଓନିସସ୍‌ଙ୍କ ମସ୍ତକରେ ଦୁଇଟି ଶିଙ୍ଗ । ସେ ସର୍ପର ମୁକୁଟ ପିନ୍ଧି-ଥାଆନ୍ତି ପ୍ରାଚୀନ ଗ୍ରୀସ୍‌ରେ ବିଭିନ୍ନ ସ୍ଥାନରେ ତାଙ୍କୁ ବୃଷଭ, ଛାଗ, ମେଷ ଓ ମୃଗ (ଏମାନଙ୍କର ଶିଙ୍ଗ ଅଛି)—ରୂପରେ ପୂଜା କରାଯାଉଥିଲା । ସେ ସର୍ପ ରୂପରେ ମଧ୍ୟ ପୂଜା ପାଉଥିଲେ । ତାଙ୍କୁ ଏଇସବୁ ରୂପରେ ପୂଜା କରିବାର କାରଣ ରହିଛି । ଟିଟାନ୍‌ଙ୍କ କବଳରୁ ଡାଇଓନିସସ୍‌ଙ୍କୁ ରକ୍ଷା କରିବା ପାଇଁ ଜିଅସ୍ ତାଙ୍କୁ ଛାଗ କରିଦେଲେ । ସେମାନେ ଜାଣି ଦେବାରୁ ଛେଳି ରୂପାନ୍ତରିତ ହେଲା ବୃଷଭରେ । ଟିଟାନ୍‌ମାନେ ଏହି ବୃଷଭକୁ ବିଦାରି ଖାଇଗଲେ । ମାତ୍ର ତାଙ୍କର ହୃତ୍‌ପିଣ୍ଡକୁ ଏଥେନା ଉଦ୍ଧାର କରିଆଣିଲେ । ଏହା ଫଳରେ ଜିଅସ୍ ତାଙ୍କୁ ଜୀବନ୍ୟାସ ଦେବା ସମ୍ଭବ ହେଲା ।

ଦେବଙ୍କ ଦୃଷ୍ଟିର ଅନ୍ତରାଳରେ ଖୁବ୍ ଗୋପନରେ ଡାଇଓନିସସ୍ ବଢ଼ିଲେ । ବଡ଼ ହେବା ପରେ ତାଙ୍କୁ ଦେଖି ହେରି ତାଙ୍କୁ ପାଗଳ କରିଦେଲେ । ଉନ୍ମାଦ ଅବସ୍ଥାରେ ତାଙ୍କର ଶିକ୍ଷାଗୁରୁ ସିଲନସ୍ (Silenus)ଙ୍କ ସହିତ ବନ୍ଧୁ ସାଟୀର୍ଙ୍କ ଗହଣରେ ଡାଇଓନିସସ୍ ବିଭିନ୍ନ ଦେଶ ଭ୍ରମଣରେ ବାହାରିଲେ ।

ସିଲନସ୍ ହର୍ମିଜ୍ଙ୍କ ପୁତ୍ର । ସେ ଉର୍ବରତା ଓ ମଦ୍ୟର ଦେବତା । ଡାଇଓନିସସ୍ ଏହି ସ୍ୱଳ୍ପ ପରିଚିତ ଗୁରୁଙ୍କର ପ୍ରଖ୍ୟାତ ଶିଷ୍ୟ । ସେ ପ୍ରଥମେ ମିଶର ଯାତ୍ରା କଲେ ଓ ସେଠାରୁ ଦ୍ରାକ୍ଷାଲତା ଆଣିଲେ । ଡାଇଓନିସସ୍ ମଦ୍ୟର ଦେବତା । ଦ୍ରାକ୍ଷାରୁ ମଦ ତିଆରି କରାଯାଏ । ଗ୍ରୀସ୍ ଓ ଅନ୍ୟାନ୍ୟ ଦେଶରେ ମଣିଷଙ୍କୁ ସେ ଅଙ୍ଗୁର ଚାଷ ଶିଖାଇଥିଲେ । ଡାଇଓନିସସ୍ ମିଶରରୁ ବାହାରିଲେ ଭାରତ । ବାଟରେ ଇଉଫ୍ରେଟିସ୍ ନଦୀ କୂଳରେ ଡାମାସ୍କସ୍‌ର ରାଜା ତାଙ୍କର ଗତିରୋଧ କରିବାରୁ ତାଙ୍କୁ ସେ ବଧ କରିଥିଲେ । ଆଇଭି (ivy) ଲତା ଓ ଦ୍ରାକ୍ଷାଲତା ମଡ଼େଇ ନଦୀରେ ଗୋଟିଏ ବନ୍ଧ ବାନ୍ଧି ସେ ଇଉଫ୍ରେଟିସ୍ ନଦୀ ପାରି ହେଲେ । ଜିଅସ୍‌ଙ୍କ ପ୍ରେରିତ ବାଘ ସାହାଯ୍ୟରେ ସେ ଟାଇଗ୍ରୀସ୍ ('ଟାଇଗର୍'ରୁ ଏହି ନାମ) ନଦୀ ପାରି ହୋଇଗଲେ ।

ଭାରତବର୍ଷରେ ପହଞ୍ଚିବା ପାଇଁ ଡାଇଓନିସସ୍‌ଙ୍କୁ ବହୁ ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତାଙ୍କ ସହିତ ଭାରତକୁ ଅଙ୍ଗୁରଚାଷ ଆସିଲା । ଆହୁରି ମଧ୍ୟ ସେ ବଡ଼ ସହର ପ୍ରତିଷ୍ଠା କରିବାର କୌଶଳ ଭାରତବାସୀଙ୍କୁ ଶିଖାଇଥିଲେ ।

ଡାଇଓନିସସ୍‌ଙ୍କର ରୋମାଞ୍ଚକର ଓ ରହସ୍ୟମୟ ଭ୍ରମଣକାହାଣୀ ମଦ୍ୟର ପ୍ରସାର ଇତିହାସ ବ୍ୟତୀତ ଅନ୍ୟ କିଛି ନୁହେଁ । ଥ୍ରେସ୍‌ରେ ଡାଇଓନିସସ୍‌ଙ୍କର ପ୍ରବଳ ପ୍ରତିରୋଧ ହୋଇଥିଲା । ସବୁ ସୈନ୍ୟଙ୍କୁ ହରାଇ ସେ ଏକୁଟିଆ ହୋଇଗଲେ । ମାତ୍ର ପିତାମହୀ ରିହାଙ୍କ ସାହାଯ୍ୟରେ ଥ୍ରେସ୍‌କୁ ଜୟ କରିଥିଲେ । ବଓସିଆରେ ତାଙ୍କୁ ସାଦରେ ସ୍ୱାଗତ କରାଯାଇଥିଲା । ଥିବାଜ୍‌ରେ ନାରୀମାନେ ତାଙ୍କ ପୂଜାରେ ଯୋଗ ଦେବାରୁ ରାଜା ବିରକ୍ତ ହୋଇ ଡାଇଓନିସସ୍‌ଙ୍କୁ ବନ୍ଦୀ କରିଥିଲେ । ମାତ୍ର ନିଜେ ପାଗଳ ହୋଇ ଡାଇଓନିସସ୍‌ଙ୍କ ପରିବର୍ତ୍ତେ ଗୋଟିଏ ଷଣ୍ଢକୁ ମାରି ପକାଇଲେ । ଡାଇଓନିସସଙ୍କ ନାରୀଭକ୍ତମାନେ ଉନ୍ମାଦ ଅବସ୍ଥାରେ ନିଜର ଭାଇ ବା ସ୍ୱାମୀଙ୍କୁ ବିଦାରି ମାରି ପକାଇବାର ଅନେକ ଦୃଷ୍ଟାନ୍ତ ଅଛି ।

ଗ୍ରୀକ୍‌ମାନେ ମଦର ଉଦ୍ଭାବକ ନୁହନ୍ତି । ବିଦେଶରୁ ମଦ ଗ୍ରୀସ୍ ଆସୁଥିଲା । ବ୍ଲାକ୍ ସି'ର ଦକ୍ଷିଣ ଉପକୂଳରେ ମଣିଷ ପ୍ରଥମେ ଦ୍ରାକ୍ଷାଲତାର ବଣ ଠାବ କଲା । ସେଇଠାରୁ ପାଲେଷ୍ଟାଇନ୍ ବାଟଦେଇ ଦ୍ରାକ୍ଷାଗୃଷ ଗଲା ଲିବିଆକୁ । ଲିବିଆରୁ ଇଜିପ୍ଟ୍ । ପାରସ୍ୟ ବାଟ ଦେଇ ଶେଷରେ ଦ୍ରାକ୍ଷାଗୃଷ ଭାରତରେ ପହଞ୍ଚିଲା ।

ଡାଇଓନିସସ୍‌ଙ୍କ ପ୍ରତି ହେରାଙ୍କର ଘୃଣା ଓ ବିରୋଧ ରକ୍ଷଣଶୀଳଙ୍କର ମଦକୁ ବିରୋଧର ପ୍ରତୀକ । ଖ୍ରୀ. ପୂ ସପ୍ତମ ଶତାବ୍ଦୀରେ ଡାଇଓନିସସ୍‌ଙ୍କ ପୂଜା କରିନ୍ଥ ଓ ଏଥେନ୍‌ସ ପରି ସଭ୍ୟ ନଗରରେ ସ୍ୱୀକୃତି ପାଇବା ଏକ ବିଶେଷ ଘଟଣା । ଏହି ଘଟଣା ପରେ ଅଲିମ୍ପସ୍ ଦେବମଣ୍ଡଳୀ ଡାଇଓନିସସ୍‌ଙ୍କୁ ସସମ୍ମାନେ ଗ୍ରହଣ କରିଥିଲେ ।

ଡାଇଓନିସସ୍‌ଙ୍କ ବିଜୟଯାତ୍ରା ଚତୁର୍ଦ୍ଦିଗ ଉଡ଼ିବା ସହିତ ତାଙ୍କର ବିବର୍ତ୍ତନ ଅଲକ୍ଷ୍ୟରେ ଘଟିଯାଉଥିଲା । ମଦର ନିଶା ମଣିଷ ପାଇଁ ଏକ ଅସାଧାରଣ ଓ ଆହ୍ଲାଦଜନକ ଅନୁଭୂତି । ଆଦିମ ମଣିଷ ପ୍ରଥମେ ଏଇ ନିଶାଟି ଆବିଷ୍କାର କରିବା ସ୍ୱାଭାବିକ୍ । ବିନା ମାଦକ-ଦ୍ରବ୍ୟରେ ନିଶାଗ୍ରସ୍ତ ହେବା ପରବର୍ତ୍ତୀକାଳ ମଣିଷର ଅନୁଭୂତି ।

ଧୀରସ୍ଥିର ଓ ସ୍ୱାଭାବିକ ଅବସ୍ଥାରେ ଥାଇ ମଣିଷ କାଳେସୀ ହୋଇପାରେନା । କାଳେସୀ ନିଶାଗ୍ରସ୍ତ, ମତୁଆଲ୍ । ପ୍ରତ୍ୟେକ କବି ଦାର୍ଶନିକ ଓ କଳାକାର କାଳେସୀ ଲାଗିବା ଅବସ୍ଥାରେ ସୃଷ୍ଟିକ୍ଷମ ହୁଅନ୍ତି । ହୁଏତ ପୂର୍ବରୁ ଡାଇଓନିସସ୍ କେବଳ ମଦର ଦେବତା ଥିଲେ । ମାତ୍ର ଗ୍ରୀସ୍‌ରେ ସେ ହେଲେ ନୈସର୍ଗିକ ଉନ୍ମାଦନାର ଦେବତା । ସେତେବେଳକୁ ବିନା ମଦରେ ବି ଭାବପ୍ରବଣ ପ୍ରାଣପ୍ରଧାନ ମଣିଷମାନେ କେବଳ ଭାବକୁ ନେଇ ଉନ୍ମାଦିତ ହେଲେଣି ।

ଆପାତତଃ ପରସ୍ପର ବିରୋଧୀ ଆପୋଲୋ ଓ ଡାଇଓନିସସ୍ ଉଭୟଙ୍କୁ ଗ୍ରହଣ କରିବା ଗ୍ରୀକ୍ ଜାତିର ବଡ଼ପଣର ଏକ ଦୃଷ୍ଟାନ୍ତ । ଜ୍ଞାନ ଓ ବୀରତ୍ୱର ସୀମା ଜାଣିବା ଓ ସେ ସୀମା ଟପିପାରିବା ଖୁବ୍ ବଡ଼ କଥା ।

ଏଥେନ୍‌ସରେ ଡାଇଓନିସସ୍‌ଙ୍କର ପ୍ରତିରୋଧ ହେବା ସ୍ୱାଭାବିକ୍ । କାରଣ ଆପୋଲୋ ଏଥେନ୍‌ସର ଇଷ୍ଟଦେବ । ଆପୋଲୋ ସଂଯମ ଓ ମିତାଚାରର ଦେବତା । ଡାଇଓନିସସ୍ ସମସ୍ତ ମାତଲାମି ଓ ଉନ୍ମାଦନାର ଦେବତା । ଆପୋଲୋ ଜ୍ଞାନୀ ବିଚାରବାନ୍ । ଗ୍ରୀକ୍ ଜାତି ବିଚାରବୁଦ୍ଧିର ମୂଲ୍ୟ ଖୁବ୍ ଭଲଭାବେ ବୁଝିଥିଲା । କିନ୍ତୁ ଅଣବିଚାରର ଗୋଟାଏ ଇଲାକା ସମ୍ବନ୍ଧରେ ସେ ଅଜ୍ଞ ନ ଥିଲା । ବିଚାର ମାଧ୍ୟମରେ ସେ ଇଲାକାରେ ପହଞ୍ଚି ହୁଏନା । ବିଚାର ଓ

ଅଣବସ୍ତୁର ଉଭୟ ପଟେ ସତ୍ୟକୁ ଦେଖିବା ମଣିଷ ପକ୍ଷରେ କ୍ୱଚିତ ସମ୍ଭବ ହୋଇଛି । ଉଦାହରଣ ସ୍ୱରୂପ, ଆଧୁନିକ ବିଜ୍ଞାନର ଜୟଯାତ୍ରା ଆରମ୍ଭ ହୋଇଯିବା ପରେ ଅଷ୍ଟାଦଶ ଶତାବ୍ଦୀର ୟୁରୋପ କେବଳ ବସ୍ତୁର ବୁଦ୍ଧିକୁ ପୂଜାକରି ନ ଥିଲା, ତାର ଗଣ୍ଡି ଭିତରେ ସୀମାବଦ୍ଧ ହୋଇଗଲା । ପ୍ରାଚୀନ ଗ୍ରୀସ୍ କଥା କିନ୍ତୁ ଭିନ୍ନ । ଅଣ ବସ୍ତୁରର ଚଳନା ସମ୍ବନ୍ଧରେ ସଚେତନ ରହିଲା ପରି ଯଥେଷ୍ଟ ବସ୍ତୁରଶକ୍ତି ଗ୍ରୀକ୍ ଜାତିର ଥିଲା । 'ଅତି ସବୁଠି ବର୍ଜନୀୟ' ଓ 'ଆତ୍ମଜ୍ଞାନ ଲାଭ କର' ଏହି ଦୁଇଟି ମନ୍ତ୍ରବାକ୍ୟ ଗ୍ରୀକ୍‌ମାନେ ଆବିଷ୍କାର କରିଥିଲେ ମଧ୍ୟ ଅନେକ ବିଷୟରେ ସେମାନେ ଅତିରିକ୍ତର ସ୍ୱାଦ ଚାଖିଥିଲେ । ଆତ୍ମଜ୍ଞାନ ଲାଭ କରିବାକୁ ଯାଇ ଅହଂକେନ୍ଦ୍ରିକ ହୋଇ ନ ଥିଲେ । ଆପଣାକୁ ନିରୀକ୍ଷଣ କରିବାର ସାଧନା ଭିତରେ ବୁଡ଼ିଯାଇ ଗ୍ରୀକ୍ ଜାତି ଆପଣାକୁ ଭୁଲିଯିବାର ମହାର୍ଘ ଅନୁଭୂତିକୁ ଆସ୍ୱାଦନ କରି ପାରିଥିଲା ।

ଅମଣୁଆ, ହିଂସ୍ର ଜୀବନ ବଞ୍ଚୁଥିବା ମଣିଷର ବସ୍ତୁର କ୍ଷୀଣ ; ଅନ୍ତର୍ବୋଧ, ସ୍ୱପ୍ନ ଓ କଳ୍ପନା କିନ୍ତୁ ପ୍ରଖର । ହଠାତ୍ ସଭ୍ୟ ହୋଇ ପଡ଼ିଥିବା ଗ୍ରୀକ୍‌ଜାତି ଅତୀତ ଭିତରେ ଯାହା ଛାଡ଼ିଦେଇ ଆସିଲା (ଯାହାକିଛି ବନ୍ୟ, ଜାନ୍ତବ, ଉଗ୍ର) ତାକୁ ଝୁରି ହେବାର ପ୍ରତୀକ ହେଉଛନ୍ତି ଡାଇଓନିସସ୍ ।

ଆପୋଲୋନୀୟ ଓ ଡାଇଓନିସସୀୟ ଜୀବନାଦର୍ଶର ସମନ୍ୱୟ ଗ୍ରୀକ୍ ଜାତିର ବଡ଼ପଣ । ଆପୋଲୋ କଳାର ଦେବତା । ସହତି, ଔଚିତ୍ୟ ରକ୍ଷା କଳା ଓ ସଙ୍ଗୀତର ଧର୍ମ । ମାତ୍ର ମାତାଲ୍ ନ ହେଲେ କବି, କଳାକାର ସୃଷ୍ଟି କରିପାରନ୍ତି ନାହିଁ । କହିବା ବାହୁଲ୍ୟ, କବିର ସୃଷ୍ଟି ଆପୋଲୋନୀୟ କିନ୍ତୁ କବି ନିଜେ ଡାଇଓନିସସ୍‌ଙ୍କ ଅବତାର । ଗ୍ରୀସ୍‌ର ମହାନ୍ ଟ୍ରାଜେଡ଼ି-ଗୁଡ଼ିକ ଡାଇଓନିସସୀୟ ଉଦ୍ଦାମ ଓ ଉନ୍ମାଦନାର ଆପୋଲୋନୀୟ ପ୍ରକାଶ ।

ଅନ୍ୟାନ୍ୟ ଗୌଣ ଅଲିମ୍ପିଆନ୍ ଦେବଦେବୀଙ୍କ ପରିଚୟ ପ୍ରଦାନ କରିବା ଏଠାରେ ସମ୍ଭବ ନୁହେଁ । କାରଣ ସେମାନେ ସଂଖ୍ୟାରେ ଅନେକ ବେଶୀ । ଶୟନ, ସ୍ୱପ୍ନ ଠାରୁ ଆରମ୍ଭ କରି ବାର୍ଦ୍ଧକ୍ୟ ଓ ଯୌବନର ଦେବତାଙ୍କୁ ଗ୍ରୀକ୍‌ମାନେ କଳ୍ପନା କରିଥିଲେ । ପୁଣି ପ୍ରକୃତି ସମ୍ପର୍କିତ ଅଗଣିତ ଦେବତା । ଯେପରିକି ଇରିଜ୍ (Iris) । ସେ ଇନ୍ଦ୍ରଧନୁର ଦେବତା । ସମୟେ ସମୟେ ଇରିଜ୍ ଜିଅସ୍‌ଙ୍କ ଦୂତ ଭାବେ କାମ କରନ୍ତି । ଆରୋରା ଉଷାର ଦେବୀ ।

ତାଙ୍କର ଦ୍ରୁତଗାମୀ ରଥରେ ବସି ସେ ପ୍ରତିଦିନ ଭୋରୁ ସୂର୍ଯ୍ୟଙ୍କ ଫାଟକ ଖୋଲିଦିଅନ୍ତି । ଏହି ଆରୋରା ଦେବୀଙ୍କ ସହିତ ଆମର ବୈଦିକ ଊଷା ଦେବୀଙ୍କର ତୁଳନା କରାଯାଇପାରେ ।

ଊଷାକାଳରେ ନିଜର କର୍ତ୍ତବ୍ୟ ସମ୍ପାଦନ କରିବାକୁ ରଥରେ ଯାଉଥିବା ଆରୋରାଙ୍କର ବର୍ଣ୍ଣନା ମନମୁଗ୍ଧକର । ଗ୍ରୀକ୍ ଦେବଦେବୀଙ୍କ ରାଜ୍ୟରେ ଆମେ କିନ୍ତୁ ଆଉ ଅଧିକ କାଳ ଅଟକି ପାରିବୁ ନାହିଁ ।

## ଧର୍ମ ସମ୍ପ୍ରଦାୟ :

କହିବା ବାହୁଲ୍ୟ ଗ୍ରୀକ ଦେବତାମାନେ କୌଣସି ଗୋଟିଏ ନଗରରେ ନୁହେଁ, ସମଗ୍ର ଗ୍ରୀସ୍‌ରେ ପୂଜା ପାଉଥିଲେ । ଗୋଟିଏ ନଗରରେ କେଉଁ ଜଣେ ଦେବତା ପ୍ରାଧାନ୍ୟ ଲାଭ କରିଥିବା ଭିନ୍ନ କଥା । ଗ୍ରୀସ୍‌ରେ କେତେଗୁଡ଼ିଏ ରହସ୍ୟବାଦୀ ଧର୍ମ ସମ୍ପ୍ରଦାୟ ଥିଲା । ନଗର ଚତୁଃପାର୍ଶ୍ୱର ପାଚେରୀକୁ ଡେଇଁବା ଦିଗରେ ସେମାନଙ୍କର ମଧ୍ୟ ଭୂମିକା ରହିଛି । ପ୍ରଭାବ ଦୃଷ୍ଟିରୁ ଦୁଇଟି ସମ୍ପ୍ରଦାୟ ଗୁରୁତ୍ୱପୂର୍ଣ୍ଣ । ଗୋଟିଏ ହେଉଛି ଇଲୁସିସ୍ (Eleusis) ସମ୍ପ୍ରଦାୟ ଓ ଅନ୍ୟଟି ଅର୍ଫିକ୍ ସମ୍ପ୍ରଦାୟ ।

ଇଲୁସିସ୍ ସମ୍ପ୍ରଦାୟ ଡିମିଟର୍‌ଙ୍କର ଭକ୍ତ । କନ୍ୟାକୁ ଖୋଜି ଖୋଜି ଡିମିଟର୍ ଇଲୁସିସ୍‌ଠାରେ ଅଟକି ଥିଲେ । ସେଠାକାର ଲୋକଙ୍କ ଉପରେ ତାଙ୍କର ଶୁଭଦୃଷ୍ଟି ପଡ଼ିଥିଲା । ଇଲୁସିସ୍‌ଠାରେ ଡିମିଟର୍‌ଙ୍କର ବିରାଟ ମନ୍ଦିର ତୋଳାଗଲା । ଏହି ମନ୍ଦିର ବହୁବାର ଧ୍ୱଂସ ପାଇଛି ଓ ପୁଣି ଗଢ଼ାହୋଇଛି ।

ଶରତ ଋତୁରେ ଜମିରେ ବିହନ ବୁଣିବା ସମୟରେ ଡିମିଟର୍‌ଙ୍କ ପୂଜା ହୁଏ । କାଳକ୍ରମେ ଇଲୁସିସ୍‌ରୁ ଡିମିଟର୍‌ଙ୍କ ପୂଜା ଅନ୍ୟଆଡ଼େ ବ୍ୟାପିଥିଲା । ପୂଜାଦିନ ତାଙ୍କର ଭକ୍ତମାନେ ଇଲସସ ନଦୀରେ ଗାଧୋଇ ଚଉଦ ମାଇଲ ବାଟ ଚାଲି ଚାଲି ଡିମିଟର୍‌ଙ୍କ ମନ୍ଦିରକୁ ଯାଆନ୍ତି । ସେଠାରେ ପୂଜାର ବିଧିବିଧାନ ଶେଷ ହେବା ପରେ ଭକ୍ତମାନେ ଉପବାସ ଭଙ୍ଗ କରି ଦେବୀଙ୍କର ପ୍ରସାଦ ପାଆନ୍ତି । ତା ପରେ ସମସ୍ତେ ଗୋଟିଏ ଗୁପ୍ତ ପୂଜାରେ ମିଳିତ ହୁଅନ୍ତି । ଏହି ପୂଜାର ବିଧିବିଧାନ କ'ଣ କିମ୍ବା ଦେବୀଙ୍କ ପାଖରେ କ'ଣ ଭୋଗ ହୁଏ ସେ ସବୁ କଥା ଜାଣିବାର କୌଣସି ଉପାୟ ନାହିଁ । କାରଣ ସେ ପୂଜାର ସମସ୍ତ

ବ୍ୟାପାର ଏକାନ୍ତ ଗୋପନୀୟ । ସେହି ସମ୍ପ୍ରଦାୟର ଲୋକଙ୍କ ମଧ୍ୟରେ ତାହା ଆବଦ୍ଧ । ସେ ସମ୍ପର୍କରେ କୌଣସି କଥା ପ୍ରକାଶ କରିବାର ଦଣ୍ଡ ଥିଲା ମୃତ୍ୟୁ । ଇଲୁସିନୀୟ ସମ୍ପ୍ରଦାୟ ଏକ ରହସ୍ୟବାଦୀ (Mystic) ସମ୍ପ୍ରଦାୟ । 'ରହସ୍ୟବାଦୀ'—ଗ୍ରୀକ୍ ଅର୍ଥରେ । ଗ୍ରୀକ୍ ଭାଷାରେ 'Mystery' ପ୍ରଭୃତି ଶବ୍ଦର ଅର୍ଥ ଗୁପ୍ତ । ଆମେ କିନ୍ତୁ ଭାରତୀୟ ଅର୍ଥରେ ଏହି ମିଷ୍ଟ୍ରି ବା ରହସ୍ୟକୁ ବୁଝୁ, ଏକ ଅତୀନ୍ଦ୍ରିୟ ଅନୁଭୂତି ବା ଉପଲବ୍ଧି ରୂପେ । ଏହି ରହସ୍ୟାନୁଭୂତିକୁ ବାକ୍ୟରେ ସ୍ପଷ୍ଟ ଭାବେ ପ୍ରକାଶ କରିହୁଏନା—ଏବଂ ବୁଦ୍ଧିରେ ମଧ୍ୟ ଏହାକୁ ବିଚାର କରି ହୁଏନା ବୋଲି ଏହାକୁ ଗୁହ୍ୟ ବା ରହସ୍ୟ କୁହାଯାଇଛି ।

ଡିମିଟର୍‌ଙ୍କର ପୂଜା ଉତ୍ସବରେ ଜିଅସ୍‌ଙ୍କର ପ୍ରତିନିଧିତ୍ୱ କରୁଥିବା ପୂଜାରୀଙ୍କ ସହିତ ଡିମିଟର୍ ସାଜିଥିବା ପୂଜାରିଣୀଙ୍କର ବିବାହ ସମ୍ପନ୍ନ ହୁଏ । ଏହାପରେ ଜଣେ ଘୋଷଣା କରେ, 'ଆମ ଦେବୀଙ୍କର ପୁଅଟିଏ ହୋଇଛି ।' ଏହି ଘୋଷଣା ଶୁଣି ସମବେତ ଭକ୍ତମାନେ ଆନନ୍ଦ ଉଲ୍ଲାସରେ ମାତି ଉଠନ୍ତି । ନବଜାତ ସନ୍ତାନକୁ ଦେଖିବାକୁ ଯାଇ ସେମାନେ ଦେଖନ୍ତି ଗୋଟିଏ ଶସ୍ୟକେଣ୍ଡା । ଶସ୍ୟ ଧରଣୀ-ମାତାଙ୍କର ଗର୍ଭଯନ୍ତ୍ରଣାର ଫଳ । ଚାଷ ଜମିରେ ବିହନ ବୁଣିବାର ଫଳ । ଡିମିଟର୍‌ଙ୍କର ପୁଅକୁ ଦେଖିବା ପରେ ଭକ୍ତମାନଙ୍କୁ ଗୋଟିଏ ଅନ୍ଧାରିଆ ଗୁହା ଭିତରକୁ ନିଆଯାଏ । ସେହି ଅନ୍ଧକାର ଗୁହା ଯମପୁରର ପ୍ରତୀକ (ଡିମିଟର୍‌ଙ୍କ କନ୍ୟାକୁ ଯମ ହରି ନେଇଥିଲେ) । ସେଠାରୁ ସମସ୍ତେ ଗୁହା ଉପରେ ନିର୍ମିତ ଗୋଟିଏ ଆଲୋକିତ ଓ ସୁଶୋଭିତ ଘରକୁ ଯାଆନ୍ତି । ସେଇଟି ଦେବୀକୃପା ଲାଭ କରିଥିବା ପବିତ୍ର ଆତ୍ମାଙ୍କର ବାସସ୍ଥଳୀର ପ୍ରତୀକ । ସେଠାରେ ଭକ୍ତମାନଙ୍କୁ ଦେବୀଙ୍କର ପ୍ରତିମା ଓ ଅନେକ ପବିତ୍ର ବସ୍ତୁ ଦେଖାଇ ଦିଆଯାଏ । ସେ ସବୁ ଦେଖି ଭକ୍ତମାନେ ବିହ୍ୱଳିତ ହୁଅନ୍ତି ଓ ସେହି ଅବସ୍ଥାରେ ଈଶ୍ୱରଙ୍କ ସହିତ ଏକାତ୍ମ ଅନୁଭବ କରନ୍ତି ।

ଡିମିଟର୍‌ଙ୍କ ଭକ୍ତମାନଙ୍କ ସମ୍ପ୍ରଦାୟ ଇଲୁସିସ୍ ସମ୍ପ୍ରଦାୟ ନାମରେ ପରିଚିତ । ଡିମିଟର୍‌ଙ୍କର ଗୋପନୀୟ ପୂଜାବିଧି ଏହି ସମ୍ପ୍ରଦାୟର ଗୁରୁଭାଇଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ଅନ୍ଧାରରେ ପଡ଼ିଥିବା ମଣିଷ ପାଇଁ ଡିମିଟର୍ ଆଲୋକର ସନ୍ଧାନ ଦିଅନ୍ତି ।

ଏହି ପୂଜାବିଧିର ତାତ୍ପର୍ଯ୍ୟ ସ୍ପଷ୍ଟ । ଅନ୍ଧକାର ଅଛି, ଯମାଳୟ ଅଛି । ମାତ୍ର ସେଠାରେ ଆବଦ୍ଧ ହୋଇ ରହିବା ମନୁଷ୍ୟର ଭାଗ୍ୟଲିପି ନୁହେଁ । ଅନ୍ଧକାର ପରି ଆଲୋକ

ମଧ୍ୟ ଅଛୁ ଓ ତାହା ଲାଭ କରିବା ମନୁଷ୍ୟ ପକ୍ଷରେ ସମ୍ଭବ । ଡମିଟରଙ୍କ ପୂଜାର ଅନ୍ତର୍ନିହିତ ଭାବ ହେଉଛୁ, ଯେପରି ମଞ୍ଜିରୁ ପୁଣି ଗଛ ଉଠେ, ସେହିପରି ମୃତ ଆଉଥରେ ପୁନର୍ଜନ୍ମ ଲାଭ କରେ । ଅନ୍ଧକାରରେ ସଡ଼ିବା ମଣିଷର ଅନ୍ତିମ ଭାଗ୍ୟ ନୁହେଁ । ମଣିଷ ପାଇଁ ସୁଖ ଓ ଶାନ୍ତି ରହିଛୁ । ଗ୍ରୀକ୍ ଧର୍ମରେ ମଣିଷ ପ୍ରତି ଏପରି ଉତ୍ସାହପ୍ରଦ ବାର୍ତ୍ତାକୁ ପରବର୍ତ୍ତୀ କାଳରେ ଖ୍ରୀଷ୍ଟଧର୍ମ ଗ୍ରହଣ କରି ନେଇଥିଲା ।

ଇଲୁସିସୀୟ ସମ୍ପ୍ରଦାୟ ଅପେକ୍ଷା ଅର୍ଫିକ୍ ସମ୍ପ୍ରଦାୟର ଗୁରୁତ୍ୱ ଗ୍ରୀସ୍‌ରେ ଅଧିକ ଥିଲା । ଅର୍ଫିକ୍ ଭାବଧାରାର ପ୍ରଭାବ ମଧ୍ୟ ଆହୁରି ଗଭୀର ଓ ବ୍ୟାପକ । ଇଲୁସିସୀୟ ଓ ଅର୍ଫିକ୍ ଏହି ଦୁଇ ସମ୍ପ୍ରଦାୟର ତତ୍ତ୍ୱ ମଧ୍ୟରେ କିଛି ସାମଞ୍ଜସ୍ୟ ରହିଛୁ । ଅର୍ଫିଅସ୍ ଜଣେ ଐତିହାସିକ ବ୍ୟକ୍ତି ହୋଇପାରନ୍ତି । ମାତ୍ର କଳ୍ପନାର ରଙ୍ଗରେ ତାଙ୍କୁ ଏପରି ରଙ୍ଗେଇ ଦିଆଯାଇଛୁ ଯେ, ଐତିହାସିକ ବ୍ୟକ୍ତିଟିକୁ ଉଦ୍ଧାର କରିବା ଅସମ୍ଭବ । ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀରେ ଅର୍ଫିକ୍‌ବାଦ ଥ୍ରେସ୍‌ରୁ ଗ୍ରୀସ୍ ଆସିଥିଲା ।

ଅର୍ଫିଅସ୍ ଜଣେ ମହାନ୍ ସଙ୍ଗୀତଜ୍ଞ ଓ କବି । ସେ ଏଡ଼େ ସୁନ୍ଦର ବୀଣା ବଜାନ୍ତି ଯେ ଶ୍ରୋତାମାନେ ମନ୍ତ୍ରମୁଗ୍ଧ ହୋଇଯାଆନ୍ତି । ହିଂସ୍ର ଜନ୍ତୁମାନେ ତାଙ୍କର ବୀଣାବାଦନ ଶୁଣି ଶାନ୍ତ ରହନ୍ତି । ଅର୍ଫିଅସ୍‌ଙ୍କର ସୁନ୍ଦରୀ ସ୍ତ୍ରୀ ୟୁରିଡାଇସ୍ ଅକାଳରେ ପ୍ରାଣତ୍ୟାଗ କଲେ । ଏହି ଘଟଣାରେ ପାଗଳ ପ୍ରାୟ ହୋଇ ମୃତା ସ୍ତ୍ରୀଙ୍କୁ ଭେଟିବାକୁ ଅର୍ଫିଅସ୍ ପାତାଳପୁରରେ ପ୍ରବେଶ କଲେ । ଯମଙ୍କର ରାଣୀ ଅର୍ଫିଅସ୍‌ଙ୍କ ବୀଣା ବାଦନରେ ଖୁବ୍ ପ୍ରୀତ ହୋଇ ତାଙ୍କ ସ୍ତ୍ରୀକୁ ଫେରାଇ ଦେବାକୁ ରାଜି ହୋଇଗଲେ । ତେବେ ସର୍ତ୍ତ ରହିଲା, ପୃଥିବୀରେ ନ ପହଞ୍ଚିବା ପର୍ଯ୍ୟନ୍ତ ସ୍ତ୍ରୀକୁ ଦେଖିବାପାଇଁ ଅର୍ଫିଅସ୍ ପଛକୁ ବୁଲିବେ ନାହିଁ । ସ୍ତ୍ରୀ ସତରେ ଆସୁଛନ୍ତି କି ନାହିଁ ଜାଣିବାପାଇଁ ବାଟରେ ଅର୍ଫିଅସ୍ ପଛକୁ ବୁଲିଦେଲେ । ସେ ସ୍ତ୍ରୀଙ୍କୁ ଦେଖିଲେ—ମାତ୍ର ସ୍ତ୍ରୀ ଆଉ ଆଗକୁ ନ ବଢ଼ି ପଛକୁ ଫେରିଗଲେ । ଏତେବଡ଼ ଭୁଲ୍ କରିଦେବାରୁ ଅର୍ଫିଅସ୍‌ଙ୍କର ଦୁଃଖର ସୀମା ରହିଲା ନାହିଁ । ବିଳାପ କରି ସେ ଫେରୁଥାନ୍ତି । ଡାଇଓନିସସ୍‌ଙ୍କର ଦଳେ ନାରୀ-ଭକ୍ତଙ୍କର ହାବୁଡ଼ରେ ସେ ପଡ଼ିଗଲେ । ସେମାନେ ତାଙ୍କୁ ଦେବତାଙ୍କର ପୂଜାରେ ଯୋଗ ଦେବାକୁ ଡାକଲେ । ଅର୍ଫିଅସ୍ ନ ଯିବାରୁ ତାଙ୍କୁ ବିଦାରି ପକାଇଲେ । ତାଙ୍କର ଦେହରୁ ଛିଡ଼ିଯାଇଥିବା ମୁଣ୍ଡ ତଥାପି ଗୀତ ଗାଉଥାଏ । ଲେସ୍‌ବସ୍-ଠାରେ ଅର୍ଫିଅସ୍‌ଙ୍କୁ ସମାଧି ଦିଆଗଲା । ତାଙ୍କର ସମାଧି ପୀଠରେ ନାଇଟେଙ୍ଗଲ୍‌ମାନେ ଗୀତ

ଗାଆନ୍ତି । ଲୋକେ ଶୁଣି ଆଶ୍ଚର୍ଯ୍ୟ ହୁଅନ୍ତି, ସେ ସ୍ଥାନରେ ନାଇଟେଙ୍ଗେଲ୍‌ଙ୍କର କଣ୍ଠ ଆହୁରି ମିଠା, ଆହୁରି ନରମ । ଜିଅସ୍ ଅର୍ଫିଅସ୍‌ଙ୍କ ବୀଣାକୁ ନେଇ ଆକାଶରେ ଗୋଟିଏ ତାରାପୁଞ୍ଜ କରି ଖଞ୍ଜି ଦେଇଛନ୍ତି ।

ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀରେ ଜଣେ ଗ୍ରୀକ୍ ପଣ୍ଡିତ ଅର୍ଫିଅସ୍‌ଙ୍କର ପ୍ରାପ୍ତ ପାଞ୍ଚଶହ ସଙ୍ଗୀତ ସଂଗ୍ରହ କରିଥିଲେ । ଏହି ସଙ୍ଗୀତଗୁଡ଼ିକ ଯେପରି ମଧୁର, ସେହିପରି ଉଚ୍ଚ ନୈତିକ ଭାବ ସମ୍ବଳିତ । ଅର୍ଫିକ୍‌ମାନଙ୍କର ବିଶ୍ୱାସ, ସ୍ୱର୍ଗୀୟ ଅନୁପ୍ରେରଣା ବଳରେ ଅର୍ଫିଅସ୍ ଏଗୁଡ଼ିକ ରଚନା କରିଥିଲେ । ଏହି ସଙ୍ଗୀତଗୁଡ଼ିକର ଭାବଧାରା ଦ୍ୱାରା ଅନୁପ୍ରାଣିତ ହୋଇ ଅର୍ଫିକ ସମ୍ପ୍ରଦାୟ ଗଢି ଉଠିଲା ।

ଅର୍ଫିକମାନେ ଦୁଃଖକ୍ଲେଶ ଓ ମୃତ୍ୟୁକୁ ଅସ୍ୱୀକାର କରନ୍ତି ନାହିଁ କିନ୍ତୁ ସେମାନଙ୍କର ବିଶ୍ୱାସ, ଡାଇଓନିସସ୍‌ଙ୍କ ପରି ମନୁଷ୍ୟ ମଧ୍ୟ ପୁନର୍ଜୀବନ ଲାଭ କରେ । ମୃତ୍ୟୁ ଶେଷ ପରିଣତି ନୁହେଁ । ମୃତ୍ୟୁ ପରେ କର୍ମ ଅନୁସାରେ ପୁରସ୍କାର ବା ଦଣ୍ଡ ମଣିଷକୁ ଅପେକ୍ଷା କରିଥାଏ । ଡାଇଓନିସସ୍‌ଙ୍କୁ ମାରି ପକାଇଥିବା ଟିଟାନ୍‌ଙ୍କୁ ଜିଅସ୍ ଧ୍ୱଂସ କରିଥିଲେ । ଟିଟାନ୍‌ଙ୍କର ଭସ୍ମରୁ ମନୁଷ୍ୟର ଜନ୍ମ । ଟିଟାନ୍‌ଙ୍କର ଅଂଶଜ ଭାବେ ମନୁଷ୍ୟ ଆଦ୍ୟରୁ ଦୋଷୀ । ତେବେ ସାନ୍ତ୍ୱନାର ବିଷୟ ହେଉଛି, ଟିଟାନ୍‌ମାନେ ଡାଇଓନିସସ୍‌ଙ୍କୁ ଖାଇଥିଲେ । ସେହି ହିସାବରେ ମନୁଷ୍ୟଠାରେ ଡାଇଓନିସସୀୟ ଉପାଦାନ ରହିଛି । ତେଣୁ ତାର ଶରୀର ଧ୍ୱଂସ ପାଉଥିଲେ ମଧ୍ୟ ଆତ୍ମା ଅବିନାଶୀ ।

ସବୁ ବିଶିଷ୍ଟ ଧର୍ମବାଦରେ ଦେହ ଓ ଆତ୍ମାର ବିଭେଦକୁ ଗୁରୁତ୍ୱ ଦିଆଯାଏ । ଖ୍ରୀଷ୍ଟଧର୍ମ ଜରିଆରେ ପାଶ୍ଚାତ୍ୟରେ ଏହି ବିଭେଦ ଦୃଢ଼ ହୋଇଛି । ବହୁକାଳ ପୂର୍ବରୁ ଅର୍ଫିକ୍‌ମାନେ ଶରୀର ଓ ଆତ୍ମାର ବିଭେଦ କଥା ସ୍ପଷ୍ଟ ଭାବେ ପ୍ରକାଶ କରି ଯାଇଥିଲେ । ସେମାନଙ୍କ ମତାନୁସାରେ ମୃତ୍ୟୁ ପରେ ଯମାଳୟରେ ମଣିଷର ବିଚାର ହୁଏ । ତେଣୁ ସେହି ବିଚାରରେ ବିଚାରକମାନଙ୍କୁ ସନ୍ତୁଷ୍ଟ କରିବା ପରି ଜୀବନ ବଞ୍ଚିବା ଉଚିତ୍ । ଅର୍ଫିକ୍‌ବାଦର ଦୁଇଟି ଗୋଷ୍ଠୀ ରହିଛି । ଗୋଟିଏ ଗୋଷ୍ଠୀର ମତ ହେଉଛି, ମୃତ୍ୟୁପରେ ପାପୀ ଚିରକାଳ ପାଇଁ ଦଣ୍ଡ ପାଏ । ଏହି ମତ ଖ୍ରୀଷ୍ଟଧର୍ମର ସମର୍ଥନ ପାଏ । ଅନ୍ୟ ଗୋଷ୍ଠୀଟି କହେ, ମୃତ୍ୟୁ ପରେ ଉତ୍ତମ ବା ମନ୍ଦ କର୍ମ ଅନୁସାରେ ଉତ୍କୃଷ୍ଟ ବା ନିକୃଷ୍ଟ ଜୀବନ ପାଇଁ ମନୁଷ୍ୟକୁ ପୁନର୍ଜନ୍ମ ନେବାକୁ ହୁଏ । ଆତ୍ମା ସମ୍ପୂର୍ଣ୍ଣ ଶୁଦ୍ଧ ହେବା ପର୍ଯ୍ୟନ୍ତ ବାରମ୍ବାର ପୃଥିବୀରେ ଜନ୍ମଗ୍ରହଣ

କରୁଥାଏ । ପରିଶେଷରେ ଶୁଦ୍ଧାତ୍ମା ତାର ଆନନ୍ଦମୟ ରାଜ୍ୟରେ ପ୍ରବେଶ କରେ । ଆତ୍ମାର ବାରମ୍ବାର ଜନ୍ମ ଓ ପରିଶୁଦ୍ଧି ସିଦ୍ଧାନ୍ତ ସହିତ ଭାରତୀୟ ଦର୍ଶନର ଆତ୍ମା ସମ୍ପର୍କୀୟ ସିଦ୍ଧାନ୍ତ କେତେକାଂଶରେ ମିଳି ଯାଉଛି । କିନ୍ତୁ ଭାରତୀୟମାନେ ଆତ୍ମାକୁ ଅଧିକ ସ୍ପଷ୍ଟ ଓ ଗଭୀରଭାବେ ବୁଝିଥିଲେ ।

ଇହଜନ୍ମରେ ମାନବ ବ୍ୟକ୍ତିର ଜୀବନ ପରବର୍ତ୍ତୀ ଉନ୍ନତତର ଜୀବନର ସୋପାନ । ଶୁଦ୍ଧ ଆଚରଣ ଓ କଠୋର ନୈତିକ ଜୀବନ ଉପରେ ଅର୍ଫିକ୍‌ମାନେ ଯେଉଁ ଗୁରୁତ୍ୱ ଦେଲେ ଗ୍ରୀସ୍‌ରେ ତାହା ଏକ ନୂଆ କଥା । ଦେବରାଜ ଜିଅସ୍ ଓ ଦେବତା ପରିବାରର ଅନ୍ୟମାନେ ଶୁଦ୍ଧ, ପବିତ୍ର ଜୀବନ ଯାପନର ଆଦର୍ଶ ଠାରୁ ବହୁ ଦୂରରେ । ଶାଶ୍ୱତ ଆତ୍ମା, ପାପ, ବିବେକ ପରି ଅର୍ଫିକ୍ ଧାରଣା ଗୁଡ଼ିକ ଖ୍ରୀଷ୍ଟଧର୍ମକୁ କେତେଦୂର ପ୍ରଭାବିତ କରିଛି ତାହା କଳନା କରିବା କଷ୍ଟକର ସତ, କିନ୍ତୁ ଏହି ପ୍ରଭାବ ନିଶ୍ଚିତ ଭାବେ ରହିଛି । ଖ୍ରୀଷ୍ଟଧର୍ମର ସ୍ୱର୍ଗ, ନର୍କ, ପାପ ପୁଣ୍ୟର ବିଚାର, ଈଶ୍ୱରଙ୍କ ପୁତ୍ରଙ୍କର ହତ୍ୟା ଓ ତାଙ୍କର ପୁନରାଗମନରେ ବିଶ୍ୱାସ ସହିତ ଅର୍ଫିକ ଧର୍ମର ସାମଞ୍ଜସ୍ୟ ନିବିଡ଼ ।

ଅର୍ଫିକ୍‌ମାନେ ଧଳାପୋଷାକ ପିନ୍ଧୁଥିଲେ, ନିରାମିଷ ଖାଦ୍ୟ ଖାଉଥିଲେ । ଭୋଗ ବିଳାସ ପ୍ରତି ଅନାସକ୍ତ ରହିବା ସେମାନଙ୍କର ଆଦର୍ଶ । ନିର୍ଦ୍ଦିଷ୍ଟ ପୋଷାକ ଓ ଆଚରଣ ବିଧି ପ୍ରଚଳନ କରି ଗୋଟିଏ ଗୁରୁତ୍ୱର ସମ୍ପ୍ରଦାୟର ପ୍ରତିଷ୍ଠା ଗ୍ରୀସ୍‌ରେ ଆନ୍ଦୋଳନ ସୃଷ୍ଟି କରିଥିଲା । ବିଖ୍ୟାତ ଗ୍ରୀକ୍ ଦାର୍ଶନିକ ପିଥାଗୋରସ୍ ଅର୍ଫିକ୍ ମତବାଦ ପ୍ରଭାବିତ ହୋଇଥିଲେ ଓ ନିଜେ ଅର୍ଫିକ୍ ଧାରାରେ ଗୋଟିଏ ସମ୍ପ୍ରଦାୟ ଗଢ଼ିଥିଲେ । ପ୍ଲେଟୋ ଅର୍ଫିକ୍ ଧର୍ମର ଅନେକ ମତକୁ ଅସ୍ୱୀକାର କରୁଥିଲେ ମଧ୍ୟ ଅର୍ଫିକ୍‌ଙ୍କର ଦେହ ଓ ଆତ୍ମାର ବୈଷମ୍ୟକୁ ମାନି ନେଉଥିଲେ ।

ବହିର୍ଜଗତରେ ବହୁ ବିଭେଦ ଓ ବିବାଦ ସତ୍ତ୍ୱେ ଗୋଟିଏ ଭାଷା ଓ ସେହି ଭାଷାରେ ରଚିତ ଏକ ମହାନ୍ ସାହିତ୍ୟ କିପରି ଗ୍ରୀକ୍‌ମାନଙ୍କୁ ସମଭାବାପନ୍ନ କଲା ଏବଂ ସମାନ ଦେବ-ଦେବୀଙ୍କୁ ପୂଜା କରିବା ଫଳରେ ସେମାନଙ୍କ ମଧ୍ୟରେ କିପରି ଭାବଗତ ଐକ୍ୟ ପ୍ରତିଷ୍ଠିତ ହେଲା ସେ ବିଷୟରେ ଆମେ ଆଲୋଚନା କଲୁ । ବର୍ତ୍ତମାନ ଅଲମ୍ପିକ୍‌ସ ଓ ଅନ୍ୟାନ୍ୟ ଜାତୀୟ କ୍ରୀଡ଼ା ପ୍ରତିଯୋଗିତା କିପରି ଗ୍ରୀକ୍‌ମାନଙ୍କୁ ଏକତାବଦ୍ଧ କରିବାରେ ସାହାଯ୍ୟ କରିଛି, ସେ ବିଷୟ ଜାଣିବାପାଇଁ ଆମ୍ଭେମାନେ ପରବର୍ତ୍ତୀ ଅଧ୍ୟାୟକୁ ଯିବା ।



# ଅଲମ୍ପିକ୍ସ ଓ ଅନ୍ୟାନ୍ୟ କ୍ରୀଡ଼ା ପ୍ରତିଯୋଗିତା

* ଖେଳ କସରତ୍‌କୁ ଗ୍ରୀକ୍‌ମାନେ ପବିତ୍ର ମଣୁଥିଲେ ।
* ଅଲମ୍ପିକ୍‌ସ ପରି ଜାତୀୟ ପ୍ରତିଯୋଗିତାରେ ସାରା ଗ୍ରୀସ୍‌ର ଖେଳାଳୀ ଯୋଗ ଦେଉଥିଲେ ।

କ୍ରୀଡ଼ା ଗ୍ରୀକ୍ ଜୀବନର ଏକ ବିଶିଷ୍ଟ ଅଙ୍ଗ । କେବଳ ଦେବତାମାନଙ୍କର ବାସସ୍ଥଳୀ ହୋଇଥିବା ଯୋଗୁ ନୁହେଁ, ସେଠାରେ ଅଲମ୍ପିକ୍ସ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହେଉଥିବାରୁ ଅଲମ୍ପିଆ ବିଖ୍ୟାତ । ଅଲମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତା କଥା ସମସ୍ତେ ଜାଣନ୍ତି । ଗ୍ରୀସ୍‌ରେ ଏହା ଥିଲା ସର୍ବପ୍ରଧାନ ପ୍ରତିଯୋଗିତା । ମାତ୍ର ଅଲମ୍ପିଆ ବ୍ୟତୀତ ଡେଲ୍‌ଫାଇ, କରିନ୍ଥ ଓ ନମିଆ (Nemea) ଧର୍ମପୀଠମାନଙ୍କରେ ନିୟମିତ ଭାବେ ଗୋଟିଏ ଗୋଟିଏ ଜାତୀୟ କ୍ରୀଡ଼ା ପ୍ରତିଯୋଗିତା ଅନୁଷ୍ଠିତ ହେଉଥିଲା । ଧର୍ମ ଓ ଖେଳ କସରତ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିବାକୁ ଗ୍ରୀକ୍‌ମାନେ ସଚେତନ ଭାବେ ଉଦ୍ୟମ କରିଥିଲେ । ସେମାନେ ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ ଓ ଶକ୍ତିର ପୂଜାରୀ । ଉତ୍ତମ ଆତ୍ମାର ବାସସ୍ଥଳୀ ହେବାପାଇଁ ଏକ ସୁସ୍ଥ ଶରୀର ଆବଶ୍ୟକ । ଗ୍ରୀକ୍‌ଙ୍କର ଏହି ବିଶ୍ୱାସ କବି ସାଇମୋଡ଼ିଜ(Simonides)ଙ୍କର ପଦେ କବିତାରେ ପ୍ରତିଫଳିତ । କବିତା ପଦକର ଭାବ ହେଉଛି "ସ୍ୱାସ୍ଥ୍ୟ ମଣିଷର ସବୁଠାରୁ ବଡ଼ ସମ୍ପଦ ।

ଗ୍ରୀସ୍‌ରେ ଖେଳ କସରତ୍ ଓ ଧର୍ମ ମଧ୍ୟରେ ଘନିଷ୍ଠ ସମ୍ପର୍କ ଥିଲା ।

ତା ତଳକୁ ସୌନ୍ଦର୍ଯ୍ୟ—ଉଭୟ ସୁନ୍ଦର ଦେହ ଆଉ ସୁନ୍ଦର ପ୍ରକୃତି । ସତ୍ ଉପାୟରେ ଅର୍ଜିତ ଅର୍ଥ ଉପଭୋଗ କରିବାର ଆସନ ତୃତୀୟରେ ।"

ଗ୍ରୀସ୍‌ରେ ଦାସମାନେ ସବୁ ଦୈହିକ ଶ୍ରମ କରୁଥିଲେ । ନାଗରିକଙ୍କ ଅପେକ୍ଷା ଦାସଙ୍କର ସଂଖ୍ୟା ଥିଲା ଅନେକ ବେଶୀ । କିନ୍ତୁ ପରିଶ୍ରମ କରିବାକୁ ପଡ଼ୁ ନ ଥିବାରୁ ନାଗରିକମାନେ ଖେଳ କସରତ୍ ଓ ବ୍ୟାୟାମ ପ୍ରତି ବିଶେଷ ଧ୍ୟାନ ଦେଉଥିଲେ । ପ୍ରାଚୀନ ଗ୍ରୀସ୍‌ରେ ନଗର ନଗର ମଧ୍ୟରେ ସବୁବେଳେ ଯୁଦ୍ଧ ଲାଗୁଥିଲା । ସେ କାଳରେ ଯୁଦ୍ଧକ୍ଷେତ୍ରରେ କୃତିତ୍ୱ ମୁଖ୍ୟତଃ ଯୋଦ୍ଧାର ଶୌର୍ଯ୍ୟବୀର୍ଯ୍ୟ ଉପରେ ନିର୍ଭର କରୁଥିଲା । ତେଣୁ କୌଣସି ଦୈହିକ ପରିଶ୍ରମ କରିବାକୁ ପଡ଼ୁ ନ ଥିବା ଯୁବକମାନଙ୍କୁ ବ୍ୟାୟାମ ଓ କସରତ୍ ପ୍ରତି ଆକୃଷ୍ଟ କରାଇବା ସ୍ୱାଭାବିକ ।

ଅଲିମ୍ପିକସ୍ ଭଳି ବଡ଼ ପ୍ରତିଯୋଗିତାକୁ ବାଦ୍‌ଦେଲେ ଗ୍ରୀସ୍ ସାରା ଅନେକ ସ୍ଥାନୀୟ ପ୍ରତିଯୋଗିତା ଚାଲୁଥିଲା । ଗୋଟିଏ ନଗରର ପ୍ରତି ପାଇଁରେ, ଏପରିକି ପ୍ରତି ଘରେ ବ୍ୟାୟାମ, କସରତର ବ୍ୟବସ୍ଥା ଥିଲା । ଆଞ୍ଚଳିକ ପ୍ରତିଯୋଗିତାରେ ଦକ୍ଷତାର ପରିଚୟ ଦେଇଥିବା ଯୁବକମାନେ ଅଲିମ୍ପିକ୍ ପ୍ରତିଯୋଗିତା ପାଇଁ ବଛା ଯାଉଥିଲେ । ନଗରରେ ଅନେକ ସ୍ଥାନୀୟ ପ୍ରତିଯୋଗିତା ବ୍ୟତୀତ ଗୋଟିଏ ରାଷ୍ଟ୍ରୀୟ ପ୍ରତିଯୋଗିତା ହେଉଥିଲା । ଆଟିକ୍ ଅଞ୍ଚଳର ଏକାଧିକ ନଗରର ଖେଳାଳୀ ଅଂଶଗ୍ରହଣ କରୁଥିବା ପାନାଥେନେଇକ୍ ଗେମ୍‌ସ୍ (Panathenaic games) ଗ୍ରୀସ୍‌ର ଅନ୍ୟତମ ଗୁରୁତ୍ୱପୂର୍ଣ୍ଣ ପ୍ରତିଯୋଗିତା । ଏହାର ଆରମ୍ଭ ଖ୍ରୀ. ପୂ ୫୬୬ରୁ । ସାଧାରଣ ଖେଳ କସରତ୍ ବ୍ୟତୀତ ସଙ୍ଗୀତ, ନୃତ୍ୟ, ବାଦ୍ୟବାଦନ ଓ କବିତା ଆବୃତ୍ତି ପାନାଥେନେଇକ୍ ଗେମ୍‌ସ୍‌ର ଅନ୍ତର୍ଗତ ଥିଲା । କ୍ରୀଡ଼ା ଗ୍ରୀକ୍ ସଂସ୍କୃତିର ଏକ ଅଙ୍ଗ । ଖେଳ କସରତ୍‌କୁ ଗ୍ରୀକ୍‌ମାନେ ଯେପରି ଗ୍ରହଣ କରିଥିଲେ ଏବଂ କ୍ରୀଡ଼ା ପ୍ରତିଯୋଗିତାଗୁଡ଼ିକ ଯେପରି ଅନୁଷ୍ଠିତ ହେଉଥିଲା ସେଥିପ୍ରତି ଦୃଷ୍ଟି ଦେଲେ ଏ କଥା ସ୍ପଷ୍ଟ ପ୍ରତୀୟମାନ ହୁଏ ।

ଆଞ୍ଚଳିକ ପ୍ରତିଯୋଗିତା ସବୁ ବ୍ୟତୀତ ଗ୍ରୀସ୍‌ରେ କେତୋଟି ଆନ୍ତର୍ରାଷ୍ଟ୍ରୀୟ କ୍ରିଡ଼ାପ୍ରତିଯୋଗିତା ହେଉଥିଲା ।

ଆଧୁନିକ କାଳରେ ଖେଳ କସରତ୍ ପ୍ରତି ଲୋକମାନେ ଖୁବ୍ ଆଗ୍ରହ ଦେଖାନ୍ତି । ବଡ଼ ଖେଳାଳୀମାନଙ୍କୁ ବିପୁଳ ଅର୍ଥ ଓ ସମ୍ମାନ ମିଳେ । ସେମାନଙ୍କର ଖେଳ ଦେଖିବାକୁ ଲୋକେ

ଅସମ୍ଭବ ଭଙ୍ଗ କରନ୍ତି । ତଥାପି କ୍ରୀଡ଼ା ଏବେ ସଂସ୍କୃତିର ଏକ ଅଙ୍ଗ ହୋଇପାରିଛି ବୋଲି ଜୋର୍‌ଦେଇ କହିହେବ ନାହିଁ । ଗ୍ରୀସ୍‌ରେ ଖେଳ କସରତ୍ ସଂସ୍କୃତିର ଅଙ୍ଗ ଥିଲା । ଦେବ ଦେବୀଙ୍କର ପୂଜାର ଅଙ୍ଗ ରୂପେ କ୍ରୀଡ଼ା ପ୍ରତିଯୋଗିତା ହେଉଥିଲା । ତେଣୁ ଖେଳାଳୀ ଓ ଦର୍ଶକ ଉଭୟେ ଖେଳ, ବ୍ୟାୟାମ ଇତ୍ୟାଦିକୁ ପବିତ୍ର ମଣୁଥିଲେ । ବଡ଼ କବିମାନେ କୃତିତ୍ୱ ଅର୍ଜନ କରୁଥିବା ଖେଳାଳୀ ବୀରଙ୍କ ପାଇଁ ଅଭିନନ୍ଦନ ଗୀତ ରଚନା କରୁଥିଲେ । ଖେଳ ଦେଖିବାକୁ ରୁଣ୍ଡ ହୋଇଥିବା ଲୋକଙ୍କୁ ମହାନ୍ ଦାର୍ଶନିକ ଓ ଜନନେତାମାନେ ଉଦ୍‌ବୋଧନ ଦେଉଥିଲେ । ଅଲିମ୍ପିକ୍ ଖେଳ ଦେଖିବାକୁ ଗ୍ରୀସ୍‌ର କବି, ଆର୍ଟିଷ୍ଟ ଓ ଜନନେତାମାନେ ଆସୁଥିଲେ । ଗ୍ରୀକ୍ କଳାର ବିକାଶ ଦିଗରେ ଅଲିମ୍ପିକ୍ ଖେଳର ଉଲ୍ଲେଖଯୋଗ୍ୟ ଭୂମିକା ରହିଛି । ପ୍ରତିଯୋଗିତା ଆରମ୍ଭ ଦିନ ସବୁ ପ୍ରତିଯୋଗୀ ଉଲଗ୍ନ ଭାବେ ପଡ଼ିଆରେ ପ୍ରବେଶ କରିବାର ନିୟମ ଥିଲା । ଆର୍ଟିଷ୍ଟମାନେ ମାଗଣାରେ ସ୍ୱାସ୍ଥ୍ୟବାନ୍ ବ୍ୟାୟାମବୀରଙ୍କର ଉଲଗ୍ନ ଶରୀର ପର୍ଯ୍ୟବେକ୍ଷଣ କରିବାର ସୁଯୋଗ ପାଉଥିଲେ । ପୁଣି ଖେଳ ସମୟରେ ସେମାନେ ବ୍ୟାୟାମପୁଷ୍ଟ କମନୀୟ ଶରୀରକୁ ବିଭିନ୍ନ ଭଙ୍ଗୀରେ ଦେଖୁଥିଲେ । ଗ୍ରୀକ୍ ମନୋବୃତ୍ତି ଓ ଆଦର୍ଶ ଗ୍ରୀକ୍ ଜାତିର ସ୍ୱାତନ୍ତ୍ର୍ୟକୁ ଦର୍ଶାଇ ଦିଏ । ଗ୍ରୀକ୍‌ମାନେ ଯେ ଅନ୍ୟମାନଙ୍କଠାରୁ ପୃଥକ୍ ଏ କଥା ଅନ୍ୟମାନେ ସେ କାଳରେ ମଧ୍ୟ ବୁଝିପାରିଥିଲେ । ଥର୍ମୋପିଲି ନାମକ ଗିରିପଥ ନିକଟରେ ପାରସ୍ୟ ସମ୍ରାଟ ଜରକସଜ୍‌ଙ୍କର ବିଶାଳ ସେନାବାହିନୀ ସହିତ ମୁଷ୍ଟିମେୟ ଗ୍ରୀକ୍ ସୈନ୍ୟ ଲଢ଼ୁଥିବା ଦିନ ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତା ଚାଲିଥାଏ । କେତେଜଣ ପାରସ୍ୟ ସୈନିକ ସେମାନଙ୍କର ସେନାପତିଙ୍କୁ ଜଣାଇଲେ, "ଆଚମ୍ବିତ କଥା ମହାଭାଗ ! ଆମେ କି ଅଜବ୍ ଲୋକଙ୍କ ସହିତ ଲଢ଼ିବାକୁ ଆସିଛୁ । ଏମାନେ ପରସ୍ପର ସହିତ ସମ୍ମାନ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରନ୍ତି—ଧନ ପାଇଁ ନୁହେଁ ।" ଅନ୍ୟ ଦେଶର ଲୋକେ ଧନ ଓ ପାର୍ଥିବ ସମ୍ପଦ-ପାଇଁ ପରସ୍ପର ସହିତ ଲଢ଼ୁଥିବା ବେଳେ ସମ୍ମାନ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ଗ୍ରୀକ୍‌ମାନେ ସେମାନଙ୍କଠାରୁ ବାରି ହୋଇ ଯାଉଥିଲେ ।

ଅଲିମ୍ପିକ୍ ଖେଳର ଆଦର୍ଶ କଥାକୁ ବାସ୍ତବ କ୍ଷେତ୍ରରେ ଯାହା ଘଟୁଥିଲା ସେଥିପ୍ରତି ଆମେ ଆଖିବୁଜି ଦେଉନୁ । ଅଲିମ୍ପିକ୍ ବିଜୟୀମାନେ ନିଜ ନଗରର ବିପୁଳ ଯଶ ସମ୍ମାନ ଲାଭ କରିବା ସହିତ ଉଚ୍ଚପଦରେ ଅଧିଷ୍ଠିତ ହେଉଥିଲେ । ସୈନ୍ୟ ବିଭାଗର ମୁଖ୍ୟ ପଦ-ଗୁଡ଼ିକ ସେଇମାନେ ପାଉଥିଲେ । ନଗରର ବଡ଼ କବିମାନେ ସ୍ୱତଃପ୍ରବୃତ୍ତ ଭାବେ ଅଲିମ୍ପିକ୍

ବିଜୟୀଙ୍କର ଅଭିନନ୍ଦନ ଗୀତି ରଚନା କରୁଥିଲେ । ଏହି ଗୀତ ଗାନ କରି ନଗରବାସୀଗଣ ବିରାଟ ପଟୁଆରରେ ତାଙ୍କୁ ଅଭିବାଦନ କରୁଥିଲେ । ତେବେ କବିଙ୍କୁ ଲାଞ୍ଚଦେଇ ଅଲିମ୍ପିକ୍ ବିଜୟୀ'ନାମରେ ବନ୍ଦନାଗୀତି ଲେଖାଇବାର ଦୃଷ୍ଟାନ୍ତର ଅଭାବ ନାହିଁ । ପ୍ରତ୍ୟେକ ମୂଲ୍ୟବୋଧ ଓ ଆଦର୍ଶର ନାନା ବିକୃତି ଥାଏ । କିନ୍ତୁ ବିକୃତିମାନଙ୍କୁ ଦେଖି ଆଦର୍ଶର ମୂଲ୍ୟାୟନ କରିବା ଭୁଲ୍ କଥା ।

ଖ୍ରୀ:ପୂ ୭୭୬ ରେ ଅଲିମ୍ପିକ୍ କ୍ରୀଡ଼ାର ଆରମ୍ଭ ବୋଲି ଅନୁମାନ କରାଯାଏ । ଏହି ପ୍ରତିଯୋଗିତା ଆହୁରି ପୂର୍ବରୁ (ଘରୋଇ ଆକାରରେ ଓ ଅନିୟମିତ ଭାବେ) ଚାଲୁଥିଲା ବୋଲି କେତେକଙ୍କର ମତ । ପ୍ରତିଯୋଗିତା ଆରମ୍ଭ ହେବାର ଗୋଟିଏ ଶତାବ୍ଦୀ ମଧ୍ୟରେ ଅଲିମ୍ପିକ୍ ଖେଳ ବିଖ୍ୟାତ ହୋଇ ପଡ଼ିଲା । ସାରା ଗ୍ରୀସ୍‌ର ପ୍ରତିଯୋଗୀମାନେ ଏହି ଖେଳରେ ଭାଗ ନେବାକୁ ଚୁଣ୍ଡ ହେଲେ । ଅଲିମ୍ପିକ୍ ପ୍ରତିଯୋଗିତା ଚାରିବର୍ଷରେ ଥରେ ହୁଏ । ଯେଉଁ ମାସରେ ପ୍ରତିଯୋଗିତା ହେବାର ଥାଏ, ସେ ମାସରେ ସାରା ଗ୍ରୀସ୍‌ରେ ଯୁଦ୍ଧ ବନ୍ଦ ରହୁଥିଲା । ଯୁଦ୍ଧ ବନ୍ଦ ରଖି ସବୁ ନଗରର ବୀର ଯୁବକମାନେ କ୍ରୀଡା ପ୍ରତିଯୋଗିତାରେ ଅଂଶଗ୍ରହଣ କରିବାକୁ ଅଲିମ୍ପିଆ ଆସୁଥିଲେ । ଏହା ବାସ୍ତବିକ୍ ଆଶ୍ଚର୍ଯ୍ୟର ବିଷୟ ଓ ଅଲିମ୍ପିକ୍ କ୍ରୀଡ଼ାର ଗୁରୁତ୍ୱ ଏଇ ଘଟଣାରୁ ବୁଝିହୁଏ । ଖେଳାଳୀ ତ ଦୂରର କଥା, ଅଲିମ୍ପିଆରେ ଖେଳ ଦେଖିବାକୁ ଆସୁଥିବା କୌଣସି ଦର୍ଶକ ପ୍ରତି ଯଦି କେଉଁ ନଗରରେ କୌଣସି ପ୍ରକାର ଜୁଲମ୍ ବା ଅତ୍ୟାଚାର ହେଉଥିଲା, ତେବେ ସେହି ନଗରକୁ ଜୋରିମାନା ଦେବାକୁ ପଡୁଥିଲା । ଏଥେନ୍‌ସକୁ ଆକ୍ରମଣ କରିବାକୁ ଆସିଥିବା ମାସେଡ଼ନିଆର ରାଜା ଫିଲିପ୍‌ଙ୍କର କେତେଜଣ ସୈନ୍ୟ ଜଣେ ଅଲିମ୍ପିକ୍ ଯାତ୍ରୀକୁ ହରକତ୍ କରିଥିବାରୁ ଫିଲିପ୍ ବିନା ପ୍ରତିବାଦରେ ଜୋରିମାନା ଦେଇଥିଲେ । ପାରସ୍ୟର ବିଶାଳ ସେନାବାହିନୀ ଗ୍ରୀସ୍ ଅଧିକାର କରିବାକୁ ମାଡ଼ି ଆସୁଥିବା ବେଳେ ମଧ୍ୟ ଅଲିମ୍ପିକ୍ ଖେଳ ବନ୍ଦ ହୋଇ ନ ଥିଲା । ଗ୍ରୀକ୍‌ମାନଙ୍କୁ ଏକତାବଦ୍ଧ କରିବାରେ ଅଲିମ୍ପିକ୍ ଖେଳର ମହତ୍ତ୍ୱ ଏଇଥିରୁ ଜଣାଯାଏ ।

ଖେଳ କସରତକୁ ଗ୍ରୀକ୍ ସଂସ୍କୃତିର ଏକ ଅଙ୍ଗ କହିବାର କାରଣ ବ୍ୟାୟାମ କରିବା ମଣିଷର ଏକ ପବିତ୍ର କର୍ତ୍ତବ୍ୟ ବୋଲି ସେମାନେ ମନେ କରୁଥିଲେ । ଅଲିମ୍ପିକ୍ ଖେଳ ଜିଅସ୍‌ଙ୍କ ପୂଜାର ଏକ ଅଂଶବିଶେଷ । ଅଲିମ୍ପିଆ ଠାରେ ଜିଅସ୍‌ଙ୍କର ମନ୍ଦିରକୁ ଲାଗି ଅଲିମ୍ପିକ୍ ଷ୍ଟେଡ଼ିୟମ୍ । ପୂଜାର ଉତ୍ସବ ଓ କ୍ରୀଡ଼ା ପ୍ରତିଯୋଗିତା ସମୟରେ ଅଲିମ୍ପିଆ

ଠାରେ ଗୋଟିଏ ବଡ଼ ମେଳା ବସୁଥିଲା । କୁସ୍ତି କସରତ୍ ଓ ମେଳା ଦେଖିବା ତଥା ଦେବ ଦର୍ଶନ କରିବାକୁ ଦୂରଦୂରାନ୍ତର ବହୁ ଲୋକ ରୁଣ୍ଡ ହେଉଥିଲେ । ଦି ପଇସା ରୋଜଗାର କରିବାକୁ ଅନେକ ବେପାରୀ ଓ ମ୍ୟାଜିକ୍‌ବାଲା ମଧ୍ୟ ଆସୁଥିଲେ । ପାଞ୍ଚଦିନର କ୍ରୀଡ଼ା ପ୍ରତିଯୋଗିତା ଭିତରେ ଆଜ ଅନେକ ପ୍ରକାରର କାର୍ଯ୍ୟକ୍ରମ ମଧ୍ୟ ଅନ୍ତର୍ଗତ ଥିଲା । ଗର୍ଜିଆସ୍ (Gorgias) ଙ୍କ ପରି ବିଖ୍ୟାତ ବାଗ୍ମୀ, ହିପିଆସ୍‌ଙ୍କ ପରି ବିଖ୍ୟାତ ସଫିଷ୍ଟ ଓ ହିରୋଡ଼ୋଟସଙ୍କ ପରି ପଣ୍ଡିତ ଐତିହାସିକମାନେ ଜିଅସ୍‌ଙ୍କ ମନ୍ଦିରର ପୋର୍ଟିକୋ ଉପରୁ ସମବେତ ଦର୍ଶକଙ୍କୁ ଉଦ୍‌ବୋଧନ ଦେଉଥିଲେ ।

କେବଳ ଗ୍ରୀକ୍ ନାଗରିକଙ୍କ ବ୍ୟତୀତ ଅନ୍ୟ କେହି ଅଲିମ୍ପିକ୍ ପ୍ରତିଯୋଗିତାରେ ଭାଗ ନେବାକୁ ଅଯୋଗ୍ୟ ଥିଲା । ଅଲିମ୍ପିକ୍ ଷ୍ଟେଡ଼ିୟମ୍ ପଇଁତିରିଶ ହଜାର ଦର୍ଶକଙ୍କୁ ସ୍ଥାନ ଦେଲା ପରି ବିରାଟ ଥିଲା । ସେ କାଳ ଓ ଗ୍ରୀସର ଜନସଂଖ୍ୟାକୁ ଚାହିଁ ଏ ସଂଖ୍ୟା ବିସ୍ମୟଜନକ । ଷ୍ଟେଡ଼ିୟମ୍‌ରେ କୌଣସି ପ୍ରକାର ଟୋପି ପିନ୍ଧି ବସିବା ମନା ଥିଲା । ଖରାତାତି, ମଶାମାଛିଙ୍କ ଦୌରାତ୍ମ୍ୟ, ଖାଦ୍ୟପେୟର ଅସୁବିଧାକୁ ଭ୍ରୂକ୍ଷେପ ନ କରି ଲୋକମାନେ ପାଞ୍ଚଦିନ କାଳ ଖେଳ ଦେଖୁଥିଲେ । ମଶାମାଛିଙ୍କୁ ନିପାତ୍ କରିବାପାଇଁ ଅବଶ୍ୟ ଜିଅସ୍‌ଙ୍କ ପାଖରେ ପ୍ରଚୁର ଭୋଗ ଲାଗୁଥିଲା ।

ଗ୍ରୀକ୍‌ମାନେ ଅନେକ ଖେଳ କସରତ୍‌ର ଆବିଷ୍କର୍ତ୍ତା । ଅଲିମ୍ପିକ୍‌ସରେ ନାନାପ୍ରକାର ଖେଳର ପ୍ରତିଯୋଗିତା ହେଉଥିଲା । ସେମାନଙ୍କ ମଧ୍ୟରୁ ପାଞ୍ଚୋଟି ବିଶିଷ୍ଟ ପ୍ରତିଯୋଗିତାର ଆସନ ଥିଲା ସ୍ୱତନ୍ତ୍ର । ସେଗୁଡ଼ିକ ହେଉଛନ୍ତି, ଲଙ୍ଗ୍ ଜମ୍ପ, ଡିସ୍‌କସ୍ ଥ୍ରୋ, ଜାଭ୍‌ଲିନ୍ ଥ୍ରୋ, ଦୁଇଶହ ଗଜ ଦୌଡ଼ ଓ ମଲ୍ଲଯୁଦ୍ଧ । ଗ୍ରୀସ୍‌ରେ ଜଣେ ଅଲିମ୍ପିକ୍ ପ୍ରତିଯୋଗୀ ଏହି ପାଞ୍ଚୋଟି-ଯାକ ପ୍ରତିଯୋଗିତାରେ ଭାଗ ନେବାକୁ ବାଧ୍ୟ ଥିଲା । ପାଞ୍ଚୋଟିଯାକରେ ଭାଗନେଇ ତିନୋଟିରେ ଜିତିଲେ ଯାଇଁ ଜଣେ ଅଲିମ୍ପିକ୍ ବିଜୟୀର ଗୌରବ ଲାଭ କରୁଥିଲା । ଉତ୍ତମ ସ୍ୱାସ୍ଥ୍ୟପାଇଁ ବିଭିନ୍ନ ପ୍ରକାରର ବ୍ୟାୟାମ ଆବଶ୍ୟକ । ଏ ବିଷୟରେ ସଚେତନ ଥିବାରୁ ଗ୍ରୀକ୍‌ମାନେ ପ୍ରତ୍ୟେକ ପ୍ରତିଯୋଗୀକୁ ପାଞ୍ଚୋଟି ଖେଳରେ ଭାଗନେବାର ନିୟମ ରଖିଥିଲେ । କୁସ୍ତି ଓ ଓ ମଲ୍ଲଯୁଦ୍ଧ ଥିଲା ସବୁଠାରୁ ଲୋକପ୍ରିୟ । ପରବର୍ତ୍ତୀ କାଳରେ ଶକ୍ତି ଓ କୌଶଳ ବଳରେ ପ୍ରତିଦ୍ୱନ୍ଦ୍ୱୀକୁ ପରାସ୍ତ କରିବା ପରିବର୍ତ୍ତେ ନିର୍ଦ୍ଦୟ ଖଳବୁଦ୍ଧି ପ୍ରୟୋଗ କରିବାର ଦୃଷ୍ଟାନ୍ତର ଅଭାବ ରହିଲା ନାହିଁ । ତେବେ ଗ୍ରୀକ୍ ମଲ୍ଲବୀରଙ୍କର ଶକ୍ତି, ବୀରତ୍ୱ ଓ ସାଧନାର ଗାଥା

କମ୍ବଦନ୍ତୀ ହୋଇ ରହିଯାଇଛି । କ୍ରୋଟୋନାରେ ମିଲୋ ନାମକ ଜଣେ ମଲ୍ଲବୀର ଥିଲେ । କଥିତ ଅଛି, ଗୋଟିଏ କଅଁଳା ବାଛୁରୀକୁ ସେ ପ୍ରତିଦିନ ଟେକୁଥିଲେ । ନିୟମିତ ଅଭ୍ୟାସ ଯୋଗୁ ବାଛୁରୀ ବଡ଼ି ବଡ଼ି ଷଣ୍ଢ ହେଲାପରେ ମଧ୍ୟ ମିଲୋ ତାକୁ ଟେକିପାରୁଥିଲେ । ମିଲୋ ତାଙ୍କର କୌଶଳ ପାଇଁ ବିଖ୍ୟାତ । ମିଲୋଙ୍କର ହାତମୁଠା ଖୋଲି ତା ଭିତରୁ ଅକ୍ଷତ ଅବସ୍ଥାରେ ଥିବା କୋଳିଟିଏ ଉଦ୍ଧାର କରିବା କାହାରି ପକ୍ଷରେ ସମ୍ଭବ ହେଉ ନ ଥିଲା । ନିଃଶ୍ୱାସ ରୋଧି ମୁଣ୍ଡରେ ବନ୍ଧା ହୋଇଥିବା ଡୋରକୁ ସେ ଛିଣ୍ଡାଇ ଦେଉଥିଲେ । ନିଃଶ୍ୱାସ ରୋକିବା ଫଳରେ ମସ୍ତକ ଭିତରକୁ ରକ୍ତର ପ୍ରବାହ ବଢ଼ିଯାଏ ।

ସମୟକୁ ନିଖୁଣ ଭାବେ ମାପିବାର ଘଣ୍ଟା ସେ କାଳରେ ନ ଥିଲା । ତେଣୁ ଗ୍ରୀକ୍ ଦୌଡ଼ାଳୀମାନଙ୍କ ମଧ୍ୟରେ କିଏ କେତେ କ୍ଷିପ୍ର ଥିଲା ତାହା ଜାଣିବାର ଉପାୟ କ'ଣ ? ତେବେ କ୍ଷିପ୍ରତାରେ ଶ୍ରେଷ୍ଠ ଗ୍ରୀକ୍ ଦୌଡ଼ାଳୀମାନେ ଠେକୁଆକୁ ଟପିଯାଉଥିଲେ । ଲମ୍ବା ଦୌଡ଼ରେ ଅଶ୍ୱ ମଧ୍ୟ ଏମାନଙ୍କର ସମକକ୍ଷ ନ ଥିଲା ।

ଘୋଡ଼ା ଦୌଡ଼ ଓ ରଥ ଦୌଡ଼ ପ୍ରତିଯୋଗିତା ଥିଲା ଅଲମ୍ପିକ୍‌ସର ବିଶେଷ ଆକର୍ଷଣ । ଘୋଡ଼ା ଦୌଡ଼ରେ ଜିତୁଥିବା ଘୋଡ଼ାର ମାଲିକ ପୁରସ୍କୃତ ହେଉଥିଲେ । ରଥ ଦୌଡ଼ ପ୍ରତିଯୋଗିତାରେ ସାଙ୍ଘାତିକ ଦୁର୍ଘଟଣାମାନ ଘଟୁଥିଲା ।

ପାଞ୍ଚଦିନର ପ୍ରତିଯୋଗିତା ଉତ୍ସବ ସରିବା ପରେ ବିଜୟୀମାନଙ୍କୁ ଅଲିଭ୍ ପତ୍ରର ମୁକୁଟ ପିନ୍ଧାଇ ଦିଆଯାଏ । ପତ୍ରର ମୁକୁଟଟିଏ ବ୍ୟତୀତ ବିଜୟୀପାଇଁ ଅନ୍ୟ କୌଣସି ପୁରସ୍କାର ନ ଥିଲା । ଅଥଚ ଗ୍ରୀସ୍‌ର ଶକ୍ତିଶାଳୀ, ସାହସୀ ଓ ନିଷ୍ଠାପର ଯୁବକମାନେ ଅଲମ୍ପିକ୍‌ସର ଅଲିଭ୍ ପତ୍ର ମୁକୁଟଟିକୁ ସୁବର୍ଣ୍ଣର ମୁକୁଟଠାରୁ ଅଧିକ ମୂଲ୍ୟବାନ ମଣୁଥିଲେ । ସେଇଟି ପାଇବାପାଇଁ ସେମାନଙ୍କର କି ଜୀବନମୂର୍ଚ୍ଛା ସାଧନା !

ଗ୍ରୀସ୍‌ରେ କ୍ରୀଡ଼ାର ଆଦର ଓ ଲୋକପ୍ରିୟତା ଖ୍ରୀ. ପୂ ଷଷ୍ଠ ଶତାବ୍ଦୀରେ ଚରମ ବିକାଶ ଲାଭ କରିଥିଲା । ଅଲମ୍ପିକ୍ ବ୍ୟତୀତ ତିନୋଟି ଜାତୀୟ କ୍ରୀଡ଼ା ପ୍ରତିଯୋଗିତା ଏଇ ଶତାବ୍ଦୀରେ ଆରମ୍ଭ ହୋଇଥିଲା । ଖ୍ରୀ. ପୂ ୫୮୨ରେ ଆପୋଲୋଙ୍କର ସମ୍ମାନାର୍ଥେ ପିଥିଆନ୍

ଖେଳ (Pythian games), ସେହିବର୍ଷ ପୋସିଡନ୍‌ଙ୍କ ସମ୍ମାନାର୍ଥେ କରନ୍ଥ ଠାରେ ଇସ୍ଥ୍‌ମିଆନ୍ ଖେଳ (Isthmian games) ଓ ଛଅ ବର୍ଷ ପରେ ନମିଆନ୍ ଖେଳ ପ୍ରତିଯୋଗିତାର ଆରମ୍ଭ । ଅଲମ୍ପିକ୍‌ସ ସମେତ ସ୍ୱେଟି ଜାଗାଯୁ ପ୍ରତିଯୋଗିତାରେ ବିଜୟୀ ହେବା ଥିଲା ଜଣେ ଖେଳାଳୀର ଚରମ ଅଭିଳାଷ ।



# ଗ୍ରୀକ୍ ନଗର-ରାଷ୍ଟ୍ର

※ ଗଣତନ୍ତ୍ରର ବିକାଶ ପାଇଁ ନଗରରାଷ୍ଟ୍ର ଅନୁକୂଳ ଥିଲା ।

※ ଗ୍ରୀସ୍‌ର ଦୁଇଟି ବିଶିଷ୍ଟ ନଗର-ରାଷ୍ଟ୍ର—

(କ) ସ୍ପାର୍ଟା ।

(ଖ) ଏଥେନ୍ସ ।

ଗ୍ରୀସ୍ ଥିଲା ଶତାଧିକ ଛୋଟ ବଡ଼ ନଗର-ରାଷ୍ଟ୍ରର ସମାହାର । ଦୁଇଟି ପ୍ରାଚୀନ ସଭ୍ୟ ଦେଶ ମିଶର ଓ ବେବିଲୋନ୍ ସହିତ ତୁଳନା କଲେ ଗ୍ରୀସ୍‌ର ସ୍ୱାତନ୍ତ୍ର୍ୟ ତଥା ଶକ୍ତି ଏହି କଥାଟିରେ ନିହିତ ବୋଲି ବୁଝିହୁଏ । ମିଶର ଓ ବେବିଲୋନ୍‌ରେ ରାଜା ଥିଲେ । ସେ ସର୍ବଶକ୍ତିବାନ୍ । ଅନ୍ୟ ସମସ୍ତେ ପ୍ରଜା । ପ୍ରଜାଙ୍କର କୌଣସି ନାଗରିକ ଅଧିକାର ନ ଥିଲା । ପ୍ରଜା ଓ ରାଜାଙ୍କ ମଧ୍ୟରେ ଯୋଜନ ଯୋଜନର ବ୍ୟବଧାନ । ଦେବଭୋଗ୍ୟ ଉଆସରେ ବିଳାସବ୍ୟସନରେ ବୁଡ଼ି ରହିଥିବା ରାଜାଙ୍କୁ ସାଧାରଣ ଲୋକେ ଦେଖିବା ମଧ୍ୟ ଥିଲା ସ୍ୱପ୍ନ । ଗ୍ରୀକ୍ ଇତିହାସରେ ରାଜାମାନେ ଆସିଛନ୍ତି । ସେମାନେ କିନ୍ତୁ ପ୍ରଜାହୀନ ରାଜା । ରାଜାରାଜୁଡ଼ାଙ୍କ ଅତ୍ୟାଚାର ଭୋଗିବାକୁ ଗ୍ରୀସ୍‌କୁ ପଡ଼ି ନ ଥିଲା । ଲୋକମାନେ ପ୍ରଜା ନ ଥିଲେ,

ମିଶର ଓ ବେବିଲୋନ୍‌ରେ ରାଜା ଥିଲେ । ଗ୍ରୀସ୍‌ରେ ମଧ୍ୟ ରାଜା ଥିଲେ । କିନ୍ତୁ ଅନ୍ୟମାନେ ପ୍ରଜା ନୁହନ୍ତି, ନାଗରିକ । ପ୍ରତ୍ୟେକ ନାଗରିକର କିଛି ଅଧିକାର ଓ ଦାୟିତ୍ୱ ଥିଲା ।

ଥିଲେ ନାଗରିକ । ନଗର ପରିଚାଳନାରେ ପ୍ରତ୍ୟେକ ନାଗରିକ ସକ୍ରିୟ ଅଂଶଗ୍ରହଣ କରୁଥିଲା । ଅନେକ କ୍ଷେତ୍ରରେ ନାଗରିକମାନେ ରାଜାଙ୍କୁ ବାଛୁଥିଲେ । ରାଜତନ୍ତ୍ର କାଳକ୍ରମେ ଗଣତନ୍ତ୍ରରେ ପରିଣତ ହୋଇଥିଲା ।

ଆୟତନରେ ଶ୍ରେଷ୍ଠ ଗ୍ରୀକ୍ ନଗର-ରାଷ୍ଟ୍ରଟିଏ ଆମର ବଡ଼ ଗ୍ରାମ ସହିତ ସମାନ କହିଲେ ଚଳେ । ଲୋକସଂଖ୍ୟା ଦୃଷ୍ଟିରୁ ଏହା କମ୍ ଜନବହୁଳ । ଗୋଟିଏ ଗ୍ରୀକ୍ ନଗରର ନାଗରିକମାନେ ପରସ୍ପରକୁ ବ୍ୟକ୍ତିଗତଭାବେ ଚିହ୍ନିଥିଲେ । ରାଜା ବା ଶାସକ ସେମାନଙ୍କ ମଧ୍ୟରୁ ଜଣେ । ଅନ୍ୟ ପକ୍ଷରେ, ଜଣେ ବେବିଲୋନୀୟ ବା ମିଶରୀୟ ଅଗଣିତ ଜନସମୁଦ୍ରର ଗୋଟିଏ ସାମାନ୍ୟ ବିନ୍ଦୁ । ଶହ ଶହ ଯୋଜନ ଦୂରରେ ଥିବା ସର୍ବଶକ୍ତିବାନ୍ ସମ୍ରାଟଙ୍କର ନିର୍ଦ୍ଦେଶରେ ସେ ପରିଚାଳିତ ହୁଏ । ଦେଶଟା ତାର ଓ ଦେଶ ତାକୁ ଲୋଡ଼େ ବୋଲି ଜଣେ ମିଶରୀୟ ବା ବେବିଲୋନୀୟ ଅନୁଭବ କରି ନ ପାରିବାର ଯଥେଷ୍ଟ କାରଣ ଅଛି । ଜଣେ ଗ୍ରୀକ୍‌ର କଥା କିନ୍ତୁ ସମ୍ପୂର୍ଣ୍ଣ ଭିନ୍ନ । ସମୁଦାୟ ନଗରଟି ତାର ଅତି ପ୍ରିୟ ଓ ପରିଚିତ । ପିଲାଦିନୁ ସେ ତା ନଗରରେ ଖେଳିବୁଲି ବଢ଼ିଥାଏ । ବଡ଼ ହେଲେ ନଗରର ଭଲମନ୍ଦରେ ତାକୁ ସକ୍ରିୟ ଭାଗ ନେବାକୁ ହୁଏ । ତା ନଗରରେ ବା ସମାଜରେ ଜଣେ ଗ୍ରୀକ୍ ଅଲୋଡ଼ା ଜୀବଟିଏ ନ ଥିଲା । ଅଳ୍ପ ଲୋକସଂଖ୍ୟା ବିଶିଷ୍ଟ ରାଷ୍ଟ୍ରରେ ଜଣେ ନାଗରିକର କୃତିତ୍ୱ ଚାପି ହୋଇ ଯାଏନା । ଯୁଦ୍ଧ, କ୍ରୀଡ଼ା, ଅଭିନୟ, କବିତା ରଚନା ବା ମୂର୍ତ୍ତି ଗଢ଼ିବାରେ ପାରଦର୍ଶିତା ଦେଖାଇ ପରିଚିତ ନଗରବାସୀଙ୍କଠାରୁ ପ୍ରଶଂସା ପାଇବା ଫଳରେ ଜଣକର ଅନ୍ତର୍ନିହିତ ଶକ୍ତି ବିକଶିତ ହେବା ସ୍ୱାଭାବିକ୍ । ମୁକ୍ତ ବାତାବରଣ ଭିତରେ ବଞ୍ଚିଥିବା ଜଣେ ଗ୍ରୀକ୍‌ର ଅନ୍ତର୍ନିହିତ ଗୁଣଗୁଡ଼ିକ ବିକଶିତ ହେବାର ପ୍ରଚୁର ସୁଯୋଗ ଥିଲା । ଗ୍ରୀସ୍ ଅଳ୍ପକାଳ ମଧ୍ୟରେ ଏକ ମହାନ୍ ସଂସ୍କୃତିର ଅଧିକାରୀ ହେବାର ଏହା ଏକ ବଳିଷ୍ଠ କାରଣ ।

ଗ୍ରୀକ୍ ନଗର-ରାଷ୍ଟ୍ରଙ୍କର ଅଭ୍ୟୁଦୟ ସମ୍ବନ୍ଧରେ ଠିକଣା ଆଲୋଚନା କରିବା ଏଠାରେ ସମ୍ଭବ ନୁହେଁ । ଜଣେ ଦଳପତିଙ୍କ ନେତୃତ୍ୱରେ ଗୋଟିଏ ଇଣ୍ଡୋ-ୟୁରୋପୀୟ ଯାଯାବର ଦଳ ଗ୍ରୀସ୍‌ରେ ପହଞ୍ଚି ଉପଯୁକ୍ତ ସ୍ଥାନ ବାଛି ବସତି ସ୍ଥାପନ କରୁଥିଲେ । ଏହି ମେଷପାଳକ ଯାଯାବରମାନେ କାଳକ୍ରମେ ଗୃହବାସ ଶିଖି ଗୋଟିଏ ସ୍ଥାନରେ ସ୍ଥାୟୀଭାବେ ବାସ କରିବାରୁ ଛୋଟ ଛୋଟ ଗ୍ରାମମାନ ଗଢ଼ି ଉଠିଲା । ପରେ କେତେଗୁଡ଼ିଏ ଗ୍ରାମ ମିଶି

ଗୋଟିଏ ନଗର-ରାଷ୍ଟ୍ର ହେଲା । ଗ୍ରୀସ୍ ପର୍ବତ ବହୁଳ ଓ ସମୁଦ୍ର ପରିବେଷ୍ଟିତ ହୋଇଥିବାରୁ ପର୍ବତଶ୍ରେଣୀ, ଭିତରକୁ ପଶି ଆସିଥିବା ସମୁଦ୍ର ଓ ନଈ ମିଶି ଗୋଟିଏ ଗ୍ରୀକ୍ ନଗର-ରାଷ୍ଟ୍ରର ପ୍ରାକୃତିକ ପ୍ରାଚୀର ସ୍ୱରୂପ ହେଉଥିଲେ । କେତୋଟି ନଗର-ରାଷ୍ଟ୍ର ମିଶିଯାଇ




[ ଗ୍ରୀସ୍‌ର ମାନଚିତ୍ର ]

ଅପେକ୍ଷାକୃତ ବଡ଼ ରାଷ୍ଟ୍ରଟିଏ ଜନ୍ମଦେବା ଗ୍ରୀସ୍‌ରେ ସମ୍ଭବ ହୋଇ ନ ଥିଲା । ଗୋଟିଏ ନଗର-ରାଷ୍ଟ୍ର ସହିତ ମିଶିବା ଆପଣାର ସ୍ୱାଧୀନତାକୁ ଜଳାଞ୍ଜଳି ଦେବା ସଙ୍ଗେ ସମାନ ବୋଲି ପ୍ରତ୍ୟେକ ନଗରର ଅଧିବାସୀମାନେ ବିଚାର କରୁଥିଲେ ।

ନଗରରାଷ୍ଟ୍ର ଗୋଟିଏ ସ୍ୱତନ୍ତ୍ର ରାଷ୍ଟ୍ର । ତାର ରାଜା, ସମ୍ବିଧାନ, ସେନାବାହିନୀ ଓ ଐତିହ୍ୟ ସ୍ୱତନ୍ତ୍ର । ଗୋଟିଏ ପାହାଡ଼ ଉପରେ ନଗରର ଦୁର୍ଗ ଅବସ୍ଥିତ ଥିଲା । ଗ୍ରୀକ୍‌ମାନେ ତାକୁ କହୁଥିଲେ ଆକ୍ରୋପଲିସ୍ (Acropolis) । ଆକ୍ରୋପଲିସ୍‌ରେ ରାଜାଙ୍କର ବାସଗୃହ । ରାଜା ଗୋଟିଏ ସାଧାରଣ ଘରେ ରହୁଥିବାରୁ ନଅର ବା ଉଆସ ଶବ୍ଦ ତା ପାଇଁ ପ୍ରଯୋଜ୍ୟ ହେବନାହିଁ । ଆକ୍ରୋପଲିସ୍‌ରେ ଆଉ କେତେକ ଲୋକ ମଧ୍ୟ ଘର କରିଥିଲେ । ତା ଛଡ଼ା ବଜାର ହାଟ ମଧ୍ୟ ଥିଲା । ଯୁଦ୍ଧବେଳେ ଶତ୍ରୁଙ୍କ ଆକ୍ରମଣରୁ ରକ୍ଷା ପାଇବାକୁ ଆକ୍ରୋପଲିସ ଚାରିପଟେ ପାଚେରୀ ଉଠିଥିଲା । ଗ୍ରୀକ୍‌ଜାତି ବଡ଼ ଗପୁଡ଼ି । ବଜାର ହାଟରେ କାଣାଖୁସା ସହିତ ନଗରର ଭଲମନ୍ଦ କଥା ଅନବରତ ଆଲୋଚିତ ହେଉଥିଲା । କୌଣସି ସମସ୍ୟା ଉପୁଜିଲେ ନାଗରିକମାନେ ବିସ୍ତୃତ ଆଲୋଚନା ଦ୍ୱାରା କର୍ତ୍ତବ୍ୟ ସ୍ଥିର କରୁଥିଲେ । ଯୁଦ୍ଧ ଲାଗିଲେ ଭୋଟ ଦେଇ ସେନାପତିଙ୍କୁ ବାଛୁଥିଲେ । ଗ୍ରୀକ୍‌ମାନଙ୍କର ଜୀବନଯାପନ ଖୁବ୍ ସରଳ । ବଞ୍ଚିବାର ଆବଶ୍ୟକତା ମେଣ୍ଟାଇବାକୁ ସେମାନଙ୍କୁ ବେଶୀ ସମୟ ବ୍ୟୟ କରିବାକୁ ପଡ଼ୁ ନ ଥିଲା । ନାଗରିକ ଦାୟିତ୍ୱ ତୁଲାଇବା ପରେ ଯେତେ ସମୟ ବଳୁଥିଲା ସେତକ ଗ୍ରୀକ୍‌ମାନେ ଜ୍ଞାନ ବିଜ୍ଞାନ ଓ କଳାଚର୍ଚ୍ଚାରେ ଖର୍ଚ୍ଚ କରୁଥିଲେ । ସଂସ୍କୃତିର ବିକାଶ ପାଇଁ ଅବସର ଅତ୍ୟାବଶ୍ୟକ ବୋଲି କୁହାଯାଏ । ମାତ୍ର ଗ୍ରୀକ୍‌ମାନେ ଏ କଥାଟି ଯେପରି ହୃଦୟଙ୍ଗମ କରିଥିଲେ ଏବଂ କଳା, ସାହିତ୍ୟ ଓ ଜ୍ଞାନ ବିଜ୍ଞାନର ଚର୍ଚ୍ଚା ପାଇଁ ଯେତେ ସମୟ ଦେଉଥିଲେ ପରବର୍ତ୍ତୀ କାଳରେ ଅନ୍ୟ କେଉଁ ଜାତି ସେପରି କରିପାରିଛି ବୋଲି ମନେ-ହୁଏନା ।

ନାଗରିକ ଦାୟିତ୍ୱ ତୁଲାଇବା ଏବଂ କଳା, ନାଟକ ଓ ଦର୍ଶନ ଚର୍ଚ୍ଚାରେ ସମୟ ବ୍ୟୟ କରୁଥିବାରୁ ଗ୍ରୀକ୍‌ଙ୍କର ଦୈନନ୍ଦିନ କାମ କିପରି ଚାଲୁଥିଲା ? ଗ୍ରୀସ୍‌ରେ ଗୃହବାସଠାରୁ ଆରମ୍ଭ କରି ସବୁ ଘରକାମ ଦାସମାନେ କରୁଥିଲେ । ନଗର-ରାଷ୍ଟ୍ରରେ ତିନି ଜାତିର ଲୋକ ବାସ କରୁଥିଲେ । ନାଗରିକ, ଦାସ ଓ ବିଦେଶୀ । ନାଗରିକ ଓ ବିଦେଶୀ ଉଭୟେ ସ୍ୱାଧୀନ । ମାତ୍ର କେବଳ ନାଗରିକଙ୍କର ରାଜନୈତିକ ଅଧିକାର ଥିଲା । ଜଣେ ନାଗରିକର ବ୍ୟକ୍ତିଗତ ଦାସ ବ୍ୟତୀତ କମାର, ବଢ଼େଇ, କ୍ଷେତର ମୂଲିଆ, ଖଣିରେ କାମ କରୁଥିବା ଶ୍ରମିକ ଓ ଅନ୍ୟାନ୍ୟ ଶ୍ରମଜୀବୀଗଣ ଅଧିକାଂଶ ଦାସ ଥିଲେ । କେତେକ ଗରିବ ନାଗରିକ ନିଜ କ୍ଷେତରେ

ଚାଷ କରୁଥିଲେ ବା ମଜୁରି ଲାଗୁଥିଲେ ସତ; ତେବେ ମୁଖ୍ୟତଃ ଏ କାମ ସବୁ ଦାସଙ୍କର । ଏପରିକି ପିଲାମାନଙ୍କୁ ପଢ଼ାଇବା ଓ ମୁନିବର ବ୍ୟବସାୟ ବୁଝିବା କାମ ଦାସମାନଙ୍କ ଉପରେ ନ୍ୟସ୍ତ ଥିଲା । ଦାସମାନେ କଠୋର ପରିଶ୍ରମ କରୁଥିଲେ । ମାତ୍ର ନାଗରିକମାନେ ଯେ ବିଳାସରେ ଦିନ କାଟୁଥିଲେ ତା ନୁହେଁ । ସରଳ ଜୀବନ ବଞ୍ଚୁଥିବା ଗ୍ରୀକ୍‌ଙ୍କର ବିଳାସବ୍ୟସନ ଆଡ଼କୁ ମନ ନ ଥିଲା । ପୁଣି, ପରବର୍ତ୍ତୀ କାଳରେ ରୋମାନ୍‌ମାନେ ଯେପରି ଦାସଙ୍କୁ ପୋକମାଛି ପରି ଦେଖୁଥିଲେ ବା ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀରେ ଆମେରିକାରେ କ୍ରୀତଦାସଙ୍କ ଉପରେ ଯେପରି ଅତ୍ୟାଚାର ହେଉଥିଲା, ସେହି ସବୁ କଥା ମନରେ ରଖି ଗ୍ରୀସ୍‌ର ଦାସଙ୍କ ଅବସ୍ଥା ଅନୁମାନ କଲେ ଆମେ ସତ୍ୟଠାରୁ ଦୂରେଇ ଯିବା ।

ଗ୍ରୀସ୍‌ରେ ସବୁ ପ୍ରକାର ଦୈହିକ ଶ୍ରମ ଦାସମାନେ କରୁଥିଲେ । ଉନ୍ନତ ସଂସ୍କୃତି ଗଢ଼ିବା ପାଇଁ ଆବଶ୍ୟକୀୟ ଅବସର ପାଇବାକୁ ଗ୍ରୀସ୍ ଦାସତ୍ୱ ପ୍ରଥା ଉପରେ ନିର୍ଭର କରିଥିଲା ।

ଏଥେନ୍ସ ପରି ସଂସ୍କୃତି ସମ୍ପନ୍ନ ନଗରରେ ଅନେକ ଦାସଙ୍କର ଅବସ୍ଥା ଗରିବ ନାଗରିକଙ୍କର ଅବସ୍ଥାଠାରୁ ଭଲ ଥିଲା । ଗ୍ରୀସ୍‌ର ବିଶିଷ୍ଟ ଐତିହାସିକ ହିରୋଡ଼ୋଟସ୍ କହନ୍ତି ଯେ, ପୋଷାକପତ୍ରରୁ କିଏ ଦାସ ଓ କିଏ ନାଗରିକ ଏଥେନ୍ସରେ ତାହା ଠଉରେଇବା ମୁସ୍କିଲ୍ । ଦାସଙ୍କର ନାଗରିକ ଅଧିକାର ନ ଥିଲେ ମଧ୍ୟ କିଛି ସାମାଜିକ ମର୍ଯ୍ୟାଦା ଥିଲା । ବାସ୍ତବତା ଦୃଷ୍ଟିରୁ ବିଚାର କଲେ ଗ୍ରୀକ୍‌ମାନେ ଦାସତ୍ୱ ପ୍ରଥା ବନ୍ଦ କରିପାରି ନ ଥାନ୍ତେ । ଦାସଙ୍କ ସମ୍ପର୍କରେ ଅନ୍ତତଃ ପକ୍ଷେ ମାର୍ଜିତ ଓ ରୁଚି ସମ୍ପନ୍ନ ଗ୍ରୀକ୍‌ଙ୍କର ଦୃଷ୍ଟିକୋଣ କିପରି ଥିଲା ତାହା ପ୍ଲେଟୋଙ୍କର ଗୋଟିଏ ଉକ୍ତିରେ ପ୍ରତିଫଳିତ । ସେ କହନ୍ତି, ଦାସର ଅଧିକାରୀ ହେବା ବଡ଼ ବିବ୍ରତକର । ଏହାର ମର୍ମ, ଦାସତ୍ୱ ପ୍ରଥା ମନ୍ଦ ହେଲେ ମଧ୍ୟ ଦାସଙ୍କୁ ଛାଡ଼ି ଚଳିବା କଷ୍ଟକର । ତାଙ୍କର କଳ୍ପିତ ଆଦର୍ଶ ରାଷ୍ଟ୍ର (ରିପବ୍ଲିକ୍)ରେ ସମ୍ପତ୍ତିର ମାଲିକାନା ସମ୍ପର୍କରେ ପ୍ଲେଟୋ ଏପରି ଗୋଟିଏ କଥା କହିଛନ୍ତି ଯାହା ଆମକୁ ଆଶ୍ଚର୍ଯ୍ୟ କରେ । ତାଙ୍କ ମତରେ, ଆଦର୍ଶ ରାଷ୍ଟ୍ରରେ ନାଗରିକଙ୍କର ବ୍ୟକ୍ତିଗତ ସମ୍ପତ୍ତି ରହିବ ନାହିଁ । କାରଣ ଅର୍ଥ ସବୁ ଅନର୍ଥର ମୂଳ ହୋଇଥିବାରୁ ନାଗରିକମାନେ ଅର୍ଥ ପଛରେ ଧାଇଁ ସମୂହ ସ୍ୱାର୍ଥର ବିରୁଦ୍ଧାଚରଣ କରିବେ । କିନ୍ତୁ ଆଦର୍ଶ ରାଷ୍ଟ୍ରରେ ଦାସମାନେ ବ୍ୟକ୍ତିଗତ ସମ୍ପତ୍ତିର ଅଧିକାରୀ ହେବାକୁ ହକ୍‌ଦାର୍ । ଏହି ଆଦର୍ଶ ଭିତରେ ବାସ୍ତବତା ସମ୍ପର୍କରେ ଅନେକ ଅନୁଚ୍ଚାରିତ ସତ୍ୟ ରହିଛି ।

ଗ୍ରୀସ୍‌ର ଅନେକ ନଗର ରାଷ୍ଟ୍ରରେ ରାଜତନ୍ତ୍ର ପରେ ଅଭିଜାତତନ୍ତ୍ର ଆସିଥିଲା । କାଳକ୍ରମେ ଜନସାଧାରଣ ମୁଷ୍ଟିମେୟ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କଠାରୁ କ୍ଷମତା କାଢ଼ିନେବା ଫଳରେ ଅଭିଜାତତନ୍ତ୍ରର କବର ଉପରେ ଗଣତନ୍ତ୍ର ପ୍ରତିଷ୍ଠିତ ହେଲା । ଅବଶ୍ୟ ସବୁ ନଗରରାଷ୍ଟ୍ରରେ ଏପରି ଘଟିଥିଲା ଧରିନେବା ଠିକ୍ ନୁହେଁ । ଉଦାହରଣ ସ୍ୱରୂପ, ସ୍ପାର୍ଟାରେ କେବେହେଲେ ଗଣତନ୍ତ୍ର ଆସିପାରିଲା ନାହିଁ । ଅଧିକାଂଶ ନଗରରାଷ୍ଟ୍ର ସାମୟିକ ଭାବେ ନିରଙ୍କୁଶ ଶାସକ (Tyrant)ର କରଗତ ହୋଇଥିଲା । କ୍ଷମତାହୀନ ଓ ବିତ୍ତଶାଳୀ ଜମିଦାରଙ୍କ ମଧ୍ୟରେ କଳି ଲଗିବା ଫଳରେ କ୍ଷମତା ଜଣେ ନିରଙ୍କୁଶ ଶାସକ ହାତକୁ ଯାଉଥିଲା । ତେବେ 'ଟାଇରାଣ୍ଟ' କହିଲେ ସାଧାରଣତଃ ଯାହା ବୁଝାଏ, ଗ୍ରୀସ୍‌ରେ ଟାଇରାଣ୍ଟର ଅର୍ଥ ତା ନ ଥିଲା । ଅନ୍ୟାୟୀ, ଅତ୍ୟାଚାରୀ ଓ ମନମୁଖୀ ଶାସକକୁ ଆମେ ଟାଇରାଣ୍ଟ କହୁ । ଯେ ବଳପୂର୍ବକ ଶାସନ କ୍ଷମତା ନିଜ ହାତକୁ ନେଉଥିଲା, ଗ୍ରୀକ୍‌ମାନେ ତାଙ୍କୁ ଟାଇରାଣ୍ଟ କହୁଥିଲେ । ଗ୍ରୀସ୍‌ର ଅନେକ ନିରଙ୍କୁଶ ଶାସକ ଖୁବ୍ ଯୋଗ୍ୟ ବ୍ୟକ୍ତି ଥିଲେ ଓ ଦକ୍ଷତାର ସହିତ ଶାସନ ଦାୟିତ୍ୱ ତୁଲାଇଥିଲେ । ତେବେ ନିରଙ୍କୁଶ ଶାସନ ଗ୍ରୀସ୍‌ରେ ସ୍ଥାୟୀ ହୋଇ ପାରିଲା ନାହିଁ ।

ଅନେକ ଗ୍ରୀକ୍ ନଗରରେ ଅଭିଜାତ ତନ୍ତ୍ର ଓ ରାଜତନ୍ତ୍ର ମଧ୍ୟରେ ବିବାଦ ଲାଗୁଥିଲା । ଖ୍ରୀ.ପୂ. ୬ଷ୍ଠ ଶତାବ୍ଦୀରେ ଜଣେ ଟାଇରାଣ୍ଟ ହାତକୁ କ୍ଷମତା ଚାଲିଯାଇଥିଲା ।

ସବୁ ଗ୍ରୀକ୍ ନଗର, ଏପରିକି ସବୁ ବିଶିଷ୍ଟ ନଗରର ରାଜନୈତିକ ବିବର୍ତ୍ତନର ଇତିହାସ ଆଲୋଚନା କରିବା ଏଠାରେ ସମ୍ଭବ ନୁହେଁ । ଏଥେନ୍‌ସ ଓ ସ୍ପାର୍ଟା ଗ୍ରୀସ୍‌ର ଦୁଇଟି ପ୍ରଧାନ ନଗର । ଗ୍ରୀକ୍ ସଂସ୍କୃତିକୁ ସ୍ପାର୍ଟାର ଉଲ୍ଲେଖଯୋଗ୍ୟ ଅବଦାନ ନାହିଁ । ମାତ୍ର ଗ୍ରୀକ୍ ଇତିହାସକୁ ଗଢ଼ିବାରେ ସ୍ପାର୍ଟା ଓ ଏଥେନ୍‌ସ ଉଭୟେ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ତେଣୁ ଏ ଦୁଇ ନଗରର ସମ୍ବିଧାନ, ସମାଜ ଓ ଲୋକଙ୍କର ମତିଗତି ସମ୍ପର୍କରେ ସ୍ୱତନ୍ତ୍ର ଭାବେ ଆଲୋଚନା କରିବାର ଆବଶ୍ୟକତା ରହିଛି ।

## ସ୍ପାର୍ଟା :

ସ୍ପାର୍ଟା ଲାକୋନିଆ (Laconia) ନଗରରାଷ୍ଟ୍ରର ରାଜଧାନୀ । ତେବେ ସ୍ପାର୍ଟା ନାମଟି ଏପରି ସୁପରିଚିତ ଯେ ସମୁଦାୟ ନଗରଟିକୁ ଏହି ନାମରେ ଡକାଯାଇ ଦିଆଯାଏ ।

ଏଥେନ୍‌ସ କ୍ଷେତ୍ରରେ ମଧ୍ୟ ଏହି କଥା ସତ୍ୟ । ନଗର-ରାଷ୍ଟ୍ରର ନାମ ଆଟିକା (Attica), ଏଥେନ୍‌ସ ତାର ରାଜଧାନୀ । ମାତ୍ର ଆଟିକା ନାମଟି ବିଶେଷ ଚଳେ ନାହିଁ ।

ରାଜଧାନୀ ସ୍ପାର୍‌ଟା ପର୍ବତଶ୍ରେଣୀ ଦ୍ୱାରା ପରିବେଷ୍ଟିତ । ଏହା ପାଞ୍ଚୋଟି ଗ୍ରାମକୁ ନେଇ ଗଠିତ । ପିଲୋପୋନେସିଅସ୍‌ରେ ପ୍ରବେଶ କରିଥିବା ଦୁର୍ଦ୍ଧର୍ଷ ଡୋରିଆନ୍‌ମାନେ ଏହି ପ୍ରାକୃତିକ ଦୁର୍ଗରେ ଅସ୍ଥାନ ଜମେଇ ଥିଲେ ଓ ଆଖପାଖ ଅଞ୍ଚଳ ଉପରେ ଆକ୍ରମଣ କରି ପ୍ରାଚୀନ ବାସିନ୍ଦାମାନଙ୍କୁ ପଦାନତ କରିଥିଲେ । ଏହିପରି ଭାବେ ସ୍ପାର୍‌ଟାକୁ କେନ୍ଦ୍ର କରି ଲକୋନିଆ ନଗରରାଷ୍ଟ୍ର ଗଢ଼ି ଉଠିଲା । ସ୍ପାର୍‌ଟାର ଲୋକସଂଖ୍ୟା ପ୍ରାୟ ସତୁରି ହଜାର । ସମୁଦାୟ ଲକୋନିଆର ଲୋକସଂଖ୍ୟା ପ୍ରାୟ ତିନିଲକ୍ଷ ଚଉସ୍ତରି ହଜାର ।

ଡୋରିଆନ୍‌ମାନେ ଲକୋନିଆର ଶାସକଶ୍ରେଣୀ ହୋଇ ରହିଥିଲେ । ସେମାନେ ଅଧିକାଂଶ ସ୍ପାର୍‌ଟା ନଗରରେ ବାସ କରୁଥିଲେ । କେବଳ ସେହିମାନଙ୍କର ନାଗରିକ ଅଧିକାର ଥିଲା । ସ୍ପାର୍‌ଟାରେ ଦାସଙ୍କୁ Helots କୁହାଯାଉଥିଲା । ଏହାର କାରଣ ଡୋରିଆନ୍‌ମାନେ ପ୍ରଥମେ ହେଲସ୍ ନାମକ ସହରର ଲୋକଙ୍କୁ ପଦାନତ କରି ଦାସ କରି-ନେଇଥିଲେ । ଦାସ ଓ ନାଗରିକଙ୍କ ବ୍ୟତୀତ ସ୍ପାର୍‌ଟାରେ ଆଉ ଗୋଟିଏ ଶ୍ରେଣୀର ବାସିନ୍ଦା ଥିଲେ । ସେମାନେ ପେରିସି (Perioeci) ନାମରେ ପରିଚିତ । ପେରିସିମାନେ ବ୍ୟବସାୟ ବାଣିଜ୍ୟ ଓ ଶିଳ୍ପରେ ନିଯୁକ୍ତ ଥିଲେ । ସେମାନେ କର ଦେଉଥିଲେ, ଯୁଦ୍ଧରେ ନାଗରିକଙ୍କ ସହିତ ମିଶି ଲଢ଼ୁଥିଲେ କିନ୍ତୁ ସେମାନଙ୍କର ନାଗରିକ ଅଧିକାର ନ ଥିଲା । ନଗରର ଶାସନ କଥାବୁଝିବାକୁ ନାଗରିକମାନେ ଆସେମ୍ବ୍ଲିରେ ଏକତ୍ରିତ ହେଉଥିଲେ । ସ୍ପାର୍‌ଟାରେ ରଜା ଥିଲେ ସତ, ମାତ୍ର ଅସଲ କ୍ଷମତା ନାଗରିକମାନଙ୍କ ଦ୍ୱାରା ନିର୍ବାଚିତ ପାଞ୍ଚଜଣ ଶାସକଙ୍କ ହାତରେ ଥିଲା ।

ସ୍ପାର୍‌ଟାରେ ଦାସମାନେ ଥିଲେ ସଂଖ୍ୟାଧିକ ।ସେମାନଙ୍କର ସଂଖ୍ୟା ପ୍ରାୟ ୨୨୪,୦୦୦ । ପେରିସିଙ୍କର ସଂଖ୍ୟା ୧୨୦,୦୦୦ । ନାଗରିକଙ୍କର ସଂଖ୍ୟା ସବୁଠାରୁ କମ୍, ମାତ୍ର ୩୨,୦୦୦ । ନାଗରିକ ଓ ଦାସଙ୍କର ଅନୁପାତ ଏଥେନ୍‌ସଠାରୁ ସ୍ପାର୍‌ଟାରେ ଅନେକ ବେଶୀ । ସ୍ପାର୍‌ଟା ପୂ-

ମାନେ ଗୃଷ, ବାଣିଜ୍ୟ ବେପାର ଓ ଅନ୍ୟାନ୍ୟ ଘରକାମ ସମ୍ପୂର୍ଣ୍ଣ ଭାବେ ଦାସମାନଙ୍କ ଉପରେ ଛାଡ଼ି ଦେଇଥିଲେ । ଅନ୍ୟ ପକ୍ଷରେ, ଅନେକ ଗରିବ ଏଥେନ୍ସୀୟ ନିଜ କ୍ଷେତରେ ଖଟୁଥିଲେ ଓ ଅନ୍ୟାନ୍ୟ କାର୍ଯ୍ୟ କରୁଥିଲେ । ସ୍ପାର୍ଟାବାସୀଙ୍କଠାରୁ ଏଥେନ୍ସୀୟମାନେ କମ୍ ଅବସର ପାଉଥିଲେ ମଧ୍ୟ ସଂସ୍କୃତି କ୍ଷେତ୍ରକୁ ଏଥେନ୍ସର ଅବଦାନ ସହିତ ସ୍ପାର୍ଟାର ଅବଦାନ ତୁଳନୀୟ ନୁହେଁ । ଦାସମାନଙ୍କ ହାତରେ ସେମାନେ ସମସ୍ତ କାର୍ଯ୍ୟ କରାଉଥିବାରୁ ସ୍ପାର୍ଟାର ନାଗରିକମାନେ କ'ଣ କରୁଥିଲେ ?

ଜଣେ ସାହସୀ, ସୁସ୍ଥ, ବୀରସୈନିକ ହେବା ଥିଲା ସ୍ପାର୍ଟୀୟର ଏକମାତ୍ର ଲକ୍ଷ୍ୟ । ସ୍ପାର୍ଟା ନଗର ଏହିପରି ସୈନିକମାନଙ୍କୁ ପ୍ରସ୍ତୁତ କରିବାର ଏକ ବିରାଟ ମେସିନ୍ କହିଲେ ଅତ୍ୟୁକ୍ତି ହେବନାହିଁ । ଶିଶୁଟିଏ ଭୂମିଷ୍ଠ ହେବା ଦିନରୁ ତାକୁ ଯୋଦ୍ଧା ରୂପେ ଗଢିବାର ଯୋଜନା ଆରମ୍ଭ ହୋଇ ଯାଉଥିଲା । ଦୁର୍ବଳ ଶିଶୁମାନଙ୍କୁ (କେବଳ ନାଗରିକ ଶ୍ରେଣୀର) ସ୍ପାର୍ଟାରେ ବଞ୍ଚିବାକୁ ଦିଆ ଯାଉ ନ ଥିଲା । ଦୁର୍ବଳ ପିଲାକୁ ମାରି ଦେବାର ଅଧିକାର ପିତାର ଥିଲା । ଏହା ବ୍ୟତୀତ ନବଜାତ ଶିଶୁଙ୍କୁ ପରୀକ୍ଷା କରିବା ପାଇଁ ରାଷ୍ଟ୍ର ତରଫରୁ କେତେଜଣ ମୁରବି ନିଯୁକ୍ତ ଥିଲେ । ସେମାନେ ଦୁର୍ବଳିଆ ପିଲାଙ୍କୁ ନେଇ ପାହାଡ଼ ଉପରେ ଛାଡ଼ି ଆସୁଥିଲେ । ଯେଉଁ ଶିଶୁ ବଡ଼ହେଲେ ଉତ୍ତମ ସୈନିକ ହୋଇ ନ ପାରିବାର ସମ୍ଭାବନା ରହିଛି, ତା ଜୀବନର ମୂଲ୍ୟ କ'ଣ ? ସ୍ପାର୍ଟୀୟମାନଙ୍କର ଏହି ଦୃଷ୍ଟିକୋଣ ସେମାନଙ୍କର ବୈଶିଷ୍ଟ୍ୟ । ଯାହା ଫଳରେ ବଳିଷ୍ଠ ସନ୍ତାନ ଉତ୍ପାଦନ କରିବାପାଇଁ ଜଣେ ସ୍ୱାମୀ ତାର ସ୍ତ୍ରୀକୁ କୌଣସି ବୀରପୁରୁଷଙ୍କୁ ଅର୍ପଣ କରି ପାରୁଥିଲା । ଯଦି ଜାତିଆ ଗାଈ ବା କୁକୁର ଉତାରିବାକୁ ଆମେ ଜାତିଆ ପଶୁଙ୍କର ଯୌନମିଳନ ପ୍ରତି ଏତେ ଧ୍ୟାନ ଦେଉ, ତେବେ ବଳିଷ୍ଠ ଓ ଗୁଣବାନ୍ ମଣିଷ ପିଲା ଉତାରିବା ପାଇଁ ଅଧିକ ଯତ୍ନବାନ୍ ହେବା ସ୍ୱାଭାବିକ ହେବନାହିଁ କି ? ସ୍ପାର୍ଟୀୟମାନଙ୍କର ଏହିପରି ଚିନ୍ତାକୁ ପ୍ଲେଟୋ ପସନ୍ଦ କରିଥିଲେ ।

ଏଇଠି କହି ରଖିବା ଆବଶ୍ୟକ ଯେ ନବଜାତ ଶିଶୁକୁ ମାରିଦେବାର ଅଧିକାର ଏଥେନ୍ସୀୟ ପିତାର ମଧ୍ୟ ଥିଲା । ଦୁର୍ବଳ ଶିଶୁଙ୍କୁ ଲୋପ କରିବା ଓ ଜନସଂଖ୍ୟା ବୃଦ୍ଧି ରୋକିବା ଥିଲା ଏହାର ଉଦ୍ଦେଶ୍ୟ । ଦୁର୍ବଳ ବୋଲି ସନ୍ଦେହ କରୁଥିବା ଶିଶୁକୁ ଏଥେନ୍ସୀୟ ପିତାମାତା ଅଯତ୍ନରେ ରଖନ୍ତି । ବଞ୍ଚିରହି ସେ ତାର ସବଳତାର ପ୍ରମାଣ ଦେଲେ ସେମାନେ

ତାକୁ ଆଦରରେ ପାଳନ୍ତୁ । ଏପରି ମତକୁ ପ୍ଲେଟୋ ସମର୍ଥନ କରୁଥିଲେ । ଗ୍ରୀକ୍‌ମାନଙ୍କୁ ଜନ୍ମ ନିରୋଧର କୌଣସି ପନ୍ଥା ଜଣାଥିବାର ପ୍ରମାଣ ନାହିଁ । ଆରିଷ୍ଟୋଟଲ୍‌ଙ୍କ ମତରେ ଅବାଞ୍ଛିତ ଶିଶୁକୁ ମାରିଦେବା ଅପେକ୍ଷା ଗର୍ଭପାତ ଭଲ । ଏ କାର୍ଯ୍ୟ କରିବା ପାଇଁ ଅଭିଜ୍ଞ ଧାଈମାନେ ଥିଲେ । ଆଇନ୍ ଦୃଷ୍ଟିରୁ ଗର୍ଭପାତ ଅପରାଧ ନ ଥିଲା ।

ଦୁର୍ବଳ ଶିଶୁକୁ ବଞ୍ଚାଇ ନ ରଖିବା ପାଇଁ ଏଥେନ୍‌ସୀୟମାନେ ମଧ୍ୟ ଇଚ୍ଛା କରୁ ନ ଥିଲେ ।

ମୂଳରୁ ସ୍ପାର୍ଟୀୟ ସଞ୍ଜ୍ଞ ଯୋଦ୍ଧା ଗଢ଼ିବାର ମେସିନ୍ ନ ଥିଲା । ଏହି ବ୍ୟଷ୍ଟୀୟ ଆଦର୍ଶର ଭିତ୍ତି ସ୍ଥାପନ କରିଥିଲେ ଆଇନ୍‌ପ୍ରଣେତା ଲିକର୍‌ଗସ୍ (Lycurgus) । ତାଙ୍କ ପୂର୍ବରୁ ସ୍ପାର୍ଟାରେ ଅନ୍ୟାନ୍ୟ ଗ୍ରୀକ୍ ନଗର ପରି କଳା ଓ କବିତାର ଆଦର ଥିଲା । ପ୍ରାକ୍-ଲିକର୍‌ଗସୀୟ ସ୍ପାର୍ଟାର ସମବେତ ଗାନ (Choral Song)ର ସ୍ୱର ଓ ଭାଷା ଏପରି ବିଖ୍ୟାତ ଯେ ପରବର୍ତ୍ତୀ କାଳର ଏଥେନ୍‌ସୀୟ ନାଟ୍ୟକାରମାନେ ନାଟକର ସଂଳାପକୁ ସାଧୁ ଗ୍ରୀକ୍ ଭାଷାରେ ଲେଖୁଥିଲେ ମଧ୍ୟ ନାଟକର କୋରାଲ୍ ସଙ୍ଗୀତ-ଗୁଡ଼ିକୁ ଡୋରିକ୍ ଉପଭାଷାରେ ରଚନା କରୁଥିଲେ ।

ଲିକରଗସ୍‌ଙ୍କ ସମୟରୁ ସ୍ପାର୍ଟା ଯୋଦ୍ଧା ଗଢ଼ିବାର ଆଦର୍ଶକୁ ଦୃଢ଼ଭାବେ ଗ୍ରହଣ କରିଥିଲା ।

ଲିକର୍‌କର୍‌ଙ୍କର ଜନ୍ମ ତାରିଖ ଠିକ୍ ରୂପେ ଜଣାନାହିଁ । ଖ୍ରୀଷ୍ଟପୂର୍ବ ୯୦୦ରୁ ୬୦୦ ମଧ୍ୟରେ ସେ ବଞ୍ଚିଥିଲେ ବୋଲି ଅନୁମାନ କରାଯାଏ । ଏପରିକି ତାଙ୍କର ଅସ୍ତିତ୍ୱରେ ମଧ୍ୟ କେତେକ ସନ୍ଦେହ କରନ୍ତି । ସେ ଏପରି ଅଭୁତକର୍ମା ଯେ ଜଣେ ଲୋକ ଦ୍ୱାରା ଏତେ କାମ ହୋଇ ପାରିବ ବୋଲି ବିଶ୍ୱାସ କରି ନ ପାରି ତାଙ୍କ ଅସ୍ତିତ୍ୱ ବିଷୟରେ ସଂଶୟ ପ୍ରକାଶ କରାଯାଏ । ଲିକର୍‌କର୍ ଏକାକୀ ଏକ ଶୃଙ୍ଖଳିତ ଓ ସ୍ୱୟଂସମ୍ପୂର୍ଣ୍ଣ ସମ୍ବିଧାନ ପ୍ରସ୍ତୁତ କରି ତାହାକୁ ନିଜ ଜୀବନ କାଳ ମଧ୍ୟରେ ସ୍ପାର୍ଟାରେ ଜାରି କରିଥିଲେ । ଆଇନ୍ ପ୍ରଣୟନର ଇତିହାସରେ ଏପରି ଘଟଣା ଅଦ୍ୱିତୀୟ । ସେ କାଳର ଅନ୍ୟାନ୍ୟ ମହାନ୍ ଆଇନ୍ ପ୍ରଣେତାଙ୍କ ପରି ପରମ୍ପରାଗତ ବିଧିବିଧାନଗୁଡ଼ିକୁ ଶୃଙ୍ଖଳିତ ରୂପ ଦେଇ ଲିପିବଦ୍ଧ କରିବା ଲିକର୍‌କର୍‌ଙ୍କର କାର୍ଯ୍ୟର ମୁଖ୍ୟ ଅଂଶ ଥିଲା ।

କିମ୍ବଦନ୍ତୀ କହେ, ନଗରବାସୀ ଲାଇକର୍‌ଗସ୍‌ଙ୍କର ନିୟମାବଳୀ ଗ୍ରହଣ କରିବା ପରେ ସେ ତୀର୍ଥ କରିବାକୁ ଡେଲ୍‌ଫାଇ ବାହାରିଗଲେ। ଯିବା ପୂର୍ବରୁ କୌଣସି ଆଇନର ସାମାନ୍ୟ ପରିବର୍ତ୍ତନ ନ କରିବାକୁ ସେ ନଗରବାସୀଙ୍କୁ ସାବଧାନ କରି ଦେଇ ଯାଇଥିଲେ। ଡେଲ୍‌ଫାଇରେ ଲାଇକର୍‌ଗସ୍ ଆହାର ତ୍ୟାଗ କରି ଉପବାସରେ ପ୍ରାଣତ୍ୟାଗ କରିଥିଲେ। ଯଦି ସମ୍ଭବ ହୁଏ ତେବେ ଜଣେ ରାଷ୍ଟ୍ରନେତା ତାର ମୃତ୍ୟୁକୁ ମଧ୍ୟ ରାଷ୍ଟ୍ରର ସେବାରେ ଲଗାଇବା ଉଚିତ୍ ବୋଲି ମନେ କରୁଥିବାରୁ ସେ ଏପରି ପଦକ୍ଷେପ ନେଇଥିଲେ।

ଆଇନ୍‌କୁ ସ୍ୱତଃପ୍ରବୃତ୍ତ ଭାବେ ଅକ୍ଷରେ ଅକ୍ଷରେ ପାଳନ କରିବାରେ ସ୍ପାର୍ଟୀୟମାନେ ଏକ ଆଦର୍ଶ। ଏହାର କାରଣ, ବାଲ୍ୟକାଳରୁ ସେମାନେ କଡ଼ା ସାମରିକ ତାଲିମ୍ ପାଇ ବଢ଼ିଥିଲେ। ପୁଣି ବୟସ୍କ ବ୍ୟକ୍ତିମାନେ ବାଳକ ଓ ଯୁବକମାନଙ୍କୁ ଆଇନ୍ ଶୃଙ୍ଖଳା ପାଳନର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେଖାଉଥିଲେ। ନଗରର ଆଇନ୍ ଅନୁସାରେ ସାତବର୍ଷ ବୟସରେ ସବୁ ପୁଅ ପିଲାଙ୍କୁ ବାପ ମା'ଙ୍କଠାରୁ ଅଲଗା କରିନେଇ ସାମରିକ ତାଲିମ୍ କେନ୍ଦ୍ରମାନଙ୍କୁ ପଠାଯାଉଥିଲା। ସାତବର୍ଷ ବୟସରୁ ବାଳକମାନେ ସୈନ୍ୟ ଶ୍ରେଣୀରେ ବଢ଼ୁଥିଲେ। ସେମାନେ ଏକାଠି ରହୁଥିଲେ ଓ ପଙ୍କ୍ତିରେ ବସି ଏକାଠି ଖାଉଥିଲେ। ଯୁଦ୍ଧବେଳେ ଯେ କୌଣସି କଷ୍ଟକର ପରିସ୍ଥିତି ଭିତରେ ବଞ୍ଚିବାର ଅଭ୍ୟାସ ପାଇଁ ସେମାନଙ୍କୁ କଠିନ ଚଟାଣ ଉପରେ ଶୋଇବାକୁ ବାଧ୍ୟ କରାଯାଉଥିଲା। ଘୋର ଶୀତ ଦିନେ ଘୋଡ଼େଇ ହେବାପାଇଁ ଚାଦରଟିଏ ମିଳୁ ନ ଥିଲା। ସେମାନଙ୍କର ଖାଦ୍ୟ ଓ ପରିଧେୟ ଖୁବ୍ ସରଳ। ଖାଦ୍ୟ ପୁଣି ପେଟପୂରା ନୁହେଁ। ଏହାର କାରଣ ଶିକ୍ଷାର୍ଥୀମାନଙ୍କୁ ବିପଜ୍ଜନକ ଉପାୟରେ ଖାଦ୍ୟ ସଂଗ୍ରହ କରିବାକୁ ଉତ୍ସାହିତ କରାଯାଉଥିଲା। ସେମାନେ କାହା ବଗିଚାରୁ ଫଳ ବା ଘରୁ ଛେଳି କୁକୁଡ଼ା ଚୋରି କରି ଖାଇ ପାରନ୍ତି। କୃତକାର୍ଯ୍ୟ ହେଲେ ଅତି ଉତ୍ତମ ମାତ୍ର ଧରା ପଡ଼ିଲେ କଠୋର ଦଣ୍ଡର ବ୍ୟବସ୍ଥା ଥିଲା।

ସ୍ପାର୍ଟାରେ ଗୋଟିଏ ପୁରୁଷଶିଶୁ ଉପରେ ପିତାମାତାଙ୍କ ଅପେକ୍ଷା ରାଷ୍ଟ୍ରର ଅଧିକ ଅଧିକାର ଥିଲା। ଉତ୍ତମ ସୈନିକ ହେବାପାଇଁ ସାତ-ବର୍ଷ ବୟସରୁ ସେ ସୈନ୍ୟ-ଶ୍ରେଣୀରେ କଠୋର ତାଲିମ ପାଉଥିଲା।

ତାଲିମ୍ କେନ୍ଦ୍ରରେ ବାଳକମାନଙ୍କୁ ପ୍ରତିଦିନ ନାନା ପ୍ରକାର ବ୍ୟାୟାମ ଓ କୁସ୍ତି କସରତ୍ ଅଭ୍ୟାସ କରିବାକୁ ହୁଏ। ସେମାନଙ୍କୁ ଖଣ୍ଡା ଖେଳ ଓ ବର୍ଚ୍ଛା, ଅସ୍ତ୍ର ଚାଳନା

ଶିଖାଯାଏ । ଦୁଇ ଦଳରେ ବିଭକ୍ତ ହୋଇ ସେମାନେ ଯୁଦ୍ଧ କରନ୍ତି । ଅଳ୍ପ କିଛି ପାଠ ପଢ଼ିବା ଓ ଦେଶାତ୍ମବୋଧକ ସଙ୍ଗୀତ ଶିଖିବା ଥିଲା ସେମାନଙ୍କ ଶିକ୍ଷାର ଗୌଣ ଅଙ୍ଗ ।

ବାଳକମାନଙ୍କର ସହିଷ୍ଣୁତା ପରୀକ୍ଷା କରିବା ପାଇଁ ସେମାନଙ୍କୁ ଜୋର୍ ଚାବୁକ ମାଡ଼ ହୁଏ ।

ବିଶେଷ ଉତ୍ସବ ଦିନେ ଶିକ୍ଷାର୍ଥୀମାନେ ସେମାନଙ୍କର ସହିଷ୍ଣୁତା ଓ ମନୋବଳର ପରୀକ୍ଷା ଦେବାକୁ ଆଗଭର ହୁଅନ୍ତି । ସେମାନଙ୍କଠାରୁ ବିଭିନ୍ନ ଧରଣର ପରୀକ୍ଷା ନିଆଯାଏ । ପରୀକ୍ଷାର୍ଥୀ ବାଳକକୁ ସମ୍ପୂର୍ଣ୍ଣ ଉଲଗ୍ନ କରି ତାକୁ ଚାବୁକ୍‌ରେ ମାଡ଼ ହୁଏ । ଯେତେ ଜୋର୍‌ରେ ମାଡ଼ ହେଲେ ମଧ୍ୟ ଚିତ୍କାର ନ କରି ସେ ତାହା ସହିଯାଏ । କାନ୍ଦିବା ବା ପାଟିକରିବା ଅପେକ୍ଷା ଅନେକ ପିଲା ମାଡ଼ ଖାଇ ମରିଯିବାକୁ ପସନ୍ଦ କରୁଥିଲେ । ଯେଉଁ ପିଲା ଚାବୁକ୍ ପ୍ରହାର ସହିପାରୁ ନ ଥିଲା ତାକୁ ଦେଖଣାହାରୀ ସ୍ତ୍ରୀ ଲୋକମାନେ ଛିଗୁଲେଉ ଥିଲେ ।

ଅଠର ବର୍ଷ ବୟସରେ ଯୌବନରେ ପଦାର୍ପଣ କଲାପରେ ଶିକ୍ଷାର୍ଥୀମାନଙ୍କୁ ଦାସମାନଙ୍କର ଗତିବିଧି ଲକ୍ଷ୍ୟ କରିବାର ଦାୟିତ୍ୱ ଦିଆଯାଉଥିଲା । ସ୍ପାର୍ଟାରେ ଦାସଙ୍କ ସଂଖ୍ୟା ନାଗରିକଙ୍କ ଠାରୁ ଆଠ ଦଶଗୁଣ ବେଶୀ । ସଂଖ୍ୟାଗରିଷ୍ଠ ଦାସମାନେ ମେଳ ବାନ୍ଧି ବିଦ୍ରୋହ କରିପାରନ୍ତି ବୋଲି ନାଗରିକଙ୍କର ଆଶଙ୍କା ଥାଏ । ତେଣୁ ସେମାନଙ୍କ ମଧ୍ୟରେ ସାମାନ୍ୟ ବିଶୃଙ୍ଖଳାକୁ ଦୃଢ଼ ହସ୍ତରେ ଦମନ କରାଯାଉଥିଲା । ଜଣେ ଦାସକୁ ହତ୍ୟା କରିବା ସ୍ପାର୍ଟୀୟ ଆଇନରେ ଦୋଷାବହ ନୁହେଁ । ଦାସଙ୍କୁ ଯାବାଡ଼ କରିବାର ପ୍ରାଥମିକ ନାଗରିକ ଦାୟିତ୍ୱ ବହନ କରିବାରେ ଅଭିଜ୍ଞ ହେବା ପାଇଁ ଅଠର ବର୍ଷର ନାଗରିକ ଯୁବକଙ୍କୁ ଏପରି କାର୍ଯ୍ୟଭାର ଦିଆଯାଉଥିଲା ।

କୋଡ଼ିଏ ବର୍ଷ ବୟସରେ ସ୍ପାର୍ଟୀୟ ଯୁବକ ସୈନ୍ୟବାହିନୀରେ ଯୋଗ ଦେଇ ସୈନିକଙ୍କ ପାଇଁ ଥିବା ସ୍ୱତନ୍ତ୍ର ସେନାଗୁଳଣୀକୁ ଯାଉଥିଲା । ସେଠାକାର ନିୟମ ଶୃଙ୍ଖଳା ମଧ୍ୟ ବଡ଼ କଠୋର । ସେନାଗୁଳଣୀର ଖାଦ୍ୟପେୟ ଓ ଦିନଚର୍ଯ୍ୟା ଯୁଦ୍ଧବିଦ୍ୟା ଅଭ୍ୟାସଠାରୁ ପ୍ରକୃତ ଯୁଦ୍ଧକ୍ଷେତ୍ରରେ ଲଢ଼ିବା ଥିଲା ତେର୍ ଭଲ । ତେଣୁ ଯୁଦ୍ଧ ଲାଗିଲେ ଯୁବକ ସୈନିକମାନେ ଆଶ୍ୱସ୍ତ ହେଉଥିଲେ । ସୁନ୍ଦର ଯୁଦ୍ଧପୋଷାକ ପିନ୍ଧି ଓ ଫୁଲମାଳ ପକାଇ କୌଣସି ଉତ୍ସବକୁ ଗଲାପରି ସେମାନେ ଯୁଦ୍ଧକ୍ଷେତ୍ରକୁ ଯାଉଥିଲେ ।

ତିରିଶ ବର୍ଷ ବୟସରେ ଜଣେ ସ୍ପାର୍ଟୀୟକୁ ପୂର୍ଣ୍ଣ ନାଗରିକ ଅଧିକାର ମିଳୁଥିଲା । ସ୍ପାର୍ଟାରେ ପୁରୁଷର ବିବାହ ବୟସ ତିରିଶ ଓ ନାରୀର ବିବାହ ବୟସ କୋଡ଼ିଏ । ସ୍ପାର୍ଟୀୟଙ୍କ ପାଇଁ ବିବାହ ଏକ ବ୍ୟକ୍ତିଗତ ବ୍ୟାପାର ନୁହେଁ । ଏହା ଏକ ନାଗରିକ କର୍ତ୍ତବ୍ୟ । ଭବିଷ୍ୟତର ଯୋଦ୍ଧାଙ୍କୁ ଜନ୍ମ ଦେବା ଥିଲା ବିବାହର ଲକ୍ଷ୍ୟ । ସ୍ପାର୍ଟାରେ ପ୍ରେମ ବିବାହ ଚଳୁ ନ ଥିଲା । ପିତାମାତାମାନେ ପୁଅଝିଅଙ୍କ ବିବାହ ସ୍ଥିର କରୁଥିଲେ । ବିବାହ ପରେ ପୁରୁଷମାନେ ସେନାଛାଉଣୀରେ ରହିବାରୁ ଗୁଡ଼ ଯାଉଥିଲେ । କିନ୍ତୁ ସେନାଛାଉଣୀର ପଙ୍ଗତରେ ବସି ସେମାନଙ୍କୁ ଖାଇବାକୁ ହେଉଥିଲା ।

ବିବାହ ଉପରେ ମଧ୍ୟ ରାଷ୍ଟ୍ରର ଅଙ୍କୁଶ ଥିଲା ।

ବାଲ୍ୟକାଳରୁ ବ୍ୟାୟାମ, କୁସ୍ତି କସରତ୍ ଓ ଯୁଦ୍ଧବିଦ୍ୟା ଅଭ୍ୟାସ କରୁଥିବା ସ୍ପାର୍ଟୀୟଙ୍କର ସ୍ୱାସ୍ଥ୍ୟ ସୁନ୍ଦର ଓ ବଳିଷ୍ଠ ହେବା ସ୍ୱାଭାବିକ୍ । ତିରିଶ ବର୍ଷ ବୟସ ପରେ ମଧ୍ୟ ନାଗରିକମାନେ ନିୟମିତ ଯୁଦ୍ଧରେ ଲଢ଼ି ଓ କୁସ୍ତି କସରତ୍ କରି ସ୍ୱାସ୍ଥ୍ୟ ଅତୁଟ ରଖୁଥିଲେ । ସ୍ପାର୍ଟାରେ ମୋଟା ଲୋକଟିଏ ପାଇବା ଥିଲା କଷ୍ଟକର । ଚର୍ବି ଲାଗି ଆଖିଦୃଶିଆ ପୃଥୁଳ ହୋଇଥିବା ବ୍ୟକ୍ତିକୁ ସରକାର ନିନ୍ଦା କରୁଥିଲେ ଓ ସ୍ଥଳ ବିଶେଷରେ ସେ ନଗରରୁ ନିର୍ବାସିତ ହେଉଥିଲା ।

ଝିଅମାନେ ଘରେ ରହୁଥିଲେ ମଧ୍ୟ ସୁସ୍ଥସବଳ ରହିବାପାଇଁ ସେମାନଙ୍କୁ ତାଲିମ ଦିଆଯାଉଥିଲା । କାରଣ ସେମାନେ ଭବିଷ୍ୟତ ବଂଶଧରଙ୍କର ମାଆ । ସବଳ ଓ ହୃଷ୍ଟପୁଷ୍ଟ ନାରୀ ସ୍ୱାସ୍ଥ୍ୟବାନ୍ ଶିଶୁର ଜନନୀ ହୋଇପାରେ । ବୀର ପ୍ରସବିନୀ ହେବାପାଇଁ ଝିଅମାନଙ୍କୁ ପିଲାଦିନୁ ପ୍ରେରଣା ଦିଆଯାଉଥିଲା । ସ୍ପାର୍ଟୀୟ ମାଆ ଯୁଦ୍ଧକୁ ଯାଉଥିବା ପୁଅକୁ ଆଶୀର୍ବାଦ କରି କହୁଥିଲା, "ଜୟକରି ଫେରିଆ, ନଚେତ୍ ମରିକରି ଫେରିଆ ।"

ସବୁ କ୍ଷେତ୍ରରେ ଦୈହିକ ଶକ୍ତିକୁ କପରି ଗୁରୁତ୍ୱ ଦିଆଯାଉଥିଲା ସ୍ପାର୍ଟୀୟଙ୍କର ବିବାହ ରୀତି ତାର ଏକ ଦୃଷ୍ଟାନ୍ତ । ପିତାମାତା ବିବାହ ସ୍ଥିର କରୁଥିଲେ ସତ କିନ୍ତୁ ବର କନ୍ୟାକୁ ଜୋର୍ କରି ଟେକିନେଇ ପାରିଲେ ଯାଇ ବିବାହ ସମ୍ପନ୍ନ ହେଉଥିଲା । ବୀରପୁରୁଷର ହାତ ଧରିବାକୁ ଇଚ୍ଛା କରୁଥିବା ଯୁବତୀମାନେ ବରର ଶକ୍ତି କଳିବାକୁ ତାକୁ ପ୍ରତିରୋଧ

କରୁଥିଲେ । କେତେକ କ୍ଷେତ୍ରରେ ବର ହାରି ଯାଉଥିଲା । ଏପରି ଶିଶୁପାଳ ବଳୁଥିବା ସାରଙ୍କର ଅବସ୍ଥା, ସହଜେ ଅନୁମେୟ ।

ତିରିଶ ବର୍ଷ ବୟସରୁ ଅଧିକ ସବୁ ପୁରୁଷ ନାଗରିକ ସ୍ପାର୍ଟୀୟ ଆସେମ୍ବ୍ଲିର ସଭ୍ୟ । ପ୍ରତି ପୂର୍ଣ୍ଣିମା ଦିନ ଆସେମ୍ବ୍ଲିର ବୈଠକ ବସେ । ତେବେ ଆସେମ୍ବ୍ଲିରେ ବିଷୟର ଆଲୋଚନା କମ୍ ହେଉଥିଲା । ଅଧିକାଂଶ ସଭ୍ୟ ଥିଲେ ନୀରବ ଶ୍ରୋତା । ସେମାନେ ସୈନ୍ୟବିଭାଗର ମୁଖ୍ୟ ରାଜା ଓ ବରିଷ୍ଠ ଶାସକଙ୍କର ନିର୍ଦ୍ଦେଶ, ଉପଦେଶ ଶୁଣୁଥିଲେ । ସ୍ପାର୍ଟାରେ ଗଣତନ୍ତ୍ର ଉଠିଇ ପାରୁ ନ ଥିଲା । ସାମରିକ

ସ୍ପାର୍ଟାର ନାଗରିକ, ଆସେମ୍ବ୍ଲି ଓ ସିନେଟ୍ ।

ରାଷ୍ଟ୍ର ଗଢ଼ିବା ପ୍ରତି ଧ୍ୟାନ ଥିବାରୁ ଲୋକଙ୍କ ଭିତରେ ଗଣତାନ୍ତ୍ରିକ ଭାବଧାରା ବିକଶିତ ହୋଇପାରିଲା ନାହିଁ । ସ୍ପାର୍ଟାରେ ଆସେମ୍ବ୍ଲିର ନିଷ୍ପତ୍ତିକୁ ବଦଳାଇ ପାରିବାର ଅଧିକାର ସିନେଟ୍‌ର ଥିଲା । ଆଦେଶ ପାଳନ କରିବାରେ ତାଲିମ୍ ପ୍ରାପ୍ତ ଲୋକମାନେ ଏହା ବିରୁଦ୍ଧରେ ବିଦ୍ରୋହ କରୁ ନ ଥିଲେ ।

ସ୍ପାର୍ଟାର ସମ୍ବିଧାନ ଦୁଇଜଣ ରାଜାଙ୍କୁ ସ୍ୱୀକାର କରେ । ସମ୍ଭବତଃ ସିଂହାସନ ପାଇଁ କଳି କରୁଥିବା ଦୁଇଟି ବଂଶର ହାତରୁ ନଗରକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଏପରି ବ୍ୟବସ୍ଥା କରାଯାଇଥିଲା । ତେବେ ରାଜାଙ୍କର କ୍ଷମତା ଥିଲା ସୀମିତ । ସ୍ପାର୍ଟୀୟ ରାଜା ମଧ୍ୟ ସିନେଟ୍‌ର ଅଧୀନ । ସିନେଟ୍‌ର ସଭ୍ୟସଂଖ୍ୟା ଅଠେଇଶ । ସେମାନେ ସ୍ପାର୍ଟାର ଆସେମ୍ବ୍ଲି ସଭ୍ୟଙ୍କ ଦ୍ୱାରା ନିର୍ବାଚିତ ହେଉଥିଲେ । ସିନେଟ୍ ସଭ୍ୟଙ୍କ ବ୍ୟତୀତ ଆସେମ୍ବ୍ଲି ପାଞ୍ଚଜଣ ଏଫର୍‌ସ (ephors)ଙ୍କୁ ନିର୍ବାଚିତ କରୁଥିଲେ । ସେମାନେ ରାଜାଙ୍କଠାରୁ ମଧ୍ୟ ଅଧିକ କ୍ଷମତାଶାଳୀ । ଶାସନଗତ ସମସ୍ତ କ୍ଷମତା ଥିଲା ଏଫର୍‌ସଙ୍କ ହାତରେ । କେବଳ ସିନେଟ୍ ପ୍ରତିବାଦ କଲେ ଏଫର୍‌ସଙ୍କ ସିଦ୍ଧାନ୍ତ ବଦଳୁଥିଲା ।

## ଏଥେନ୍‌ସ :

ସେ କାଳର ଦୁଇ ପ୍ରଭାବଶାଳୀ ନଗର ଏଥେନ୍‌ସ ଓ ସ୍ପାର୍ଟା ଗ୍ରୀକ୍ ଇତିହାସକୁ ଗଢ଼ିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ତେବେ ଏ ଦୁଇ ନଗର ମଧ୍ୟରେ

ପ୍ରଭେଦ ହେଉଛି, କାଳ ମୂର୍ତ୍ତିରୁ ବର୍ତ୍ତିରହି ଏଥେନ୍ସ ଏବେ ମଧ ମଁହାକୁଛି । ବହୁ ପୂର୍ବରୁ ସ୍ପାର୍ଟା କିନ୍ତୁ କାଳ ଗର୍ଭରେ ହଜି ଗଲଣି ।

ଏଥେନ୍ସ ଓ ସ୍ପାର୍ଟା ମଧ୍ୟରେ ବୈଷମ୍ୟ ଅଧିକ, ସାମଞ୍ଜସ୍ୟ କମ୍ । ସ୍ପାର୍ଟା ଗ୍ରାମ-ବହୁଳ, ଏଥେନ୍ସ ସହର ବହୁଳ । ସ୍ପାର୍ଟା ପର୍ବତ ପରିବେଷ୍ଟିତ, ଏଥେନ୍ସ ସମୁଦ୍ର ଉପକୂଳରେ ଅବସ୍ଥିତ । ଏହା ବ୍ୟତୀତ ଦୁଇ ନଗରର ଲୋକଙ୍କର ମତଗତ, ମୂଲ୍ୟବୋଧ ଓ ଜୀବନାଦର୍ଶ ମଧ୍ୟରେ ଅନେକ ତାରତମ୍ୟ । ସ୍ପାର୍ଟାବାସୀ ନଗର ବାହାରକୁ କ୍ୱଚିତ ଯାଉଥିଲେ । ବିଦେଶ ଯିବାକୁ ନାଗରିକମାନଙ୍କୁ ନିରୁତ୍ସାହିତ କରିଯାଉଥିଲା । ନଗରର ସୀମା ଟପିବାପାଇଁ ସରକାରଙ୍କର ଅନୁମତି ଆବଶ୍ୟକ । ସ୍ପାର୍ଟାବାସୀଙ୍କର ଏପରି ମନୋ-ଭାବର କାରଣ, ସେମାନେ ଆନ୍ତରିକ ଭାବେ ବିଶ୍ୱାସ କରୁଥିଲେ ଯେ, ସବୁ ଗୁଣରେ ସ୍ପାର୍ଟା ଅନ୍ୟାନ୍ୟ ନଗରଙ୍କ ଠାରୁ ଶ୍ରେଷ୍ଠ । ଅନ୍ୟ ନଗରରୁ ଜଣେ ସ୍ପାର୍ଟୀୟର କିଛି ଶିଖିବାର ନାହିଁ । ପୁଣି ନଗର ବାହାରକୁ ଗଲେ ବିଦେଶୀଙ୍କର ଢଙ୍ଗରଙ୍ଗର ପ୍ରଭାବ ଲୋକଙ୍କ ଉପରେ ପଡ଼ିଯିବ ବୋଲି ନଗରପତିମାନେ ଆଶଙ୍କା କରୁଥିଲେ । ଏଥେନ୍ସୀୟଙ୍କୁ କିନ୍ତୁ ବାଣିଜ୍ୟ ଉପରେ ନିର୍ଭର କରିବାକୁ ପଡୁଥିଲା । ବାଣିଜ୍ୟ ସନ୍ଧାନରେ ଦୂରଦୂରାନ୍ତକୁ ଜାହାଜରେ ଯାଇ ସେମାନେ ନାନା ପ୍ରକାର ଲୋକଙ୍କ ସହିତ ମିଶୁଥିଲେ । ଏଥେନ୍ସର ଜମି ଅନୁର୍ବର । ତେଣୁ ବର୍ଷକପାଇଁ ଚଳିବାର ଶସ୍ୟ ନଗରରେ ଉତ୍ପନ୍ନ ହେଉନଥିଲା । ବସ୍ତୁତଃ ଅଲିଭ୍ ଓ ଅଙ୍ଗୁର ବ୍ୟତୀତ ଏଥେନ୍ସରେ ଆଉ ବିଶେଷ କିଛି ଚାଷ ହେଉ ନ ଥିଲା । ତେଣୁ ବାଣିଜ୍ୟ ଉପରେ ନିର୍ଭର କରିବାକୁ ଲୋକମାନେ ବାଧ୍ୟ ଥିଲେ ବୋଲି କୁହାଯାଇ ପାରେ ।

ସ୍ପାର୍ଟା ଓ ଏଥେନ୍ସ ମଧ୍ୟରେ ବୈଷମ୍ୟ ।

କିମ୍ବଦନ୍ତୀ ଅନୁସାରେ ଥିସିଅସ୍ ଆଟିକାର ସହରମାନଙ୍କୁ ନେଇ ଗୋଟିଏ ରାଷ୍ଟ୍ର ପ୍ରତିଷ୍ଠା କରିଥିଲେ । ଆଟିକା (Attica) ର ଅର୍ଥ ଉପକୂଳର ଭୂଖଣ୍ଡ । ସମୁଦାୟ ଆଟିକାକୁ ଗୋଟିଏ ନଗର ରାଷ୍ଟ୍ରରେ ପରିଣତ କରି ଏଥେନ୍ସକୁ ତାହାର ରାଜଧାନୀ ରଖିବା ଥିସିଅସ୍ଙ୍କର କୀର୍ତ୍ତି ।

ଡୋରିଆନ୍ଙ୍କର ଏଥେନ୍ସ ଆକ୍ରମଣ ପର୍ଯ୍ୟନ୍ତ ଏଥେନ୍ସରେ ରାଜତନ୍ତ୍ର ପ୍ରତିଷ୍ଠିତ ଥିଲା । ରାଜତନ୍ତ୍ର ପ୍ରତିଷ୍ଠିତ ଥିବା କାଳରେ ମଧ୍ୟ ସମ୍ଭ୍ରାନ୍ତ ବଂଶଜ ଜମିଦାରମାନେ

ଶକ୍ତିଶାଳୀ ଥିଲେ । ଡୋରିଆନ୍‌ଙ୍କ ବିରୁଦ୍ଧରେ ପ୍ରବଳ ସଂଗ୍ରାମ ସମୟରେ ଏଥେନ୍‌ସର ରାଜା ଯୁଦ୍ଧକ୍ଷେତ୍ରରେ ପ୍ରାଣ ହରାଇଥିଲେ । ଏ ଘଟଣା ପରେ ଆଉ ନୂଆ ରାଜା ନ ବାଛିବାକୁ ପ୍ରଭାବଶାଳୀ ଜମିଦାରମାନେ ସ୍ଥିର କରି ରାଷ୍ଟ୍ର ଚଳାଇବା ପାଇଁ ସେମାନେ ଜଣେ ଆର୍କନଙ୍କୁ ନିର୍ବାଚିତ କଲେ । ପ୍ରଥମରୁ ଜଣେ ସାରା ଜୀବନପାଇଁ ଆର୍କନ ରୂପେ ନିର୍ବାଚିତ ହେଉଥିଲା । ଖ୍ରୀ ପୂ: ୭୫୨ଠାରୁ ଆର୍କନଙ୍କୁ ଦଶବର୍ଷ ପାଇଁ ବାଛାଗଲା । ପରେ ସେମାନଙ୍କର ଶାସନକାଳ ହେଲା ମାତ୍ର ଏକବର୍ଷ ।

ରାଜତନ୍ତ୍ରର ଅବସାନ ପରେ ମୁଷ୍ଟିମେୟ ସଂଭ୍ରାନ୍ତ ବଂଶଜ ଧନୀ ଜମିଦାରଙ୍କ ହାତକୁ କ୍ଷମତା ହସ୍ତାନ୍ତରିତ ହେଲା । ସେମାନେ ପ୍ରାୟ ପାଞ୍ଚ ଶତାବ୍ଦୀ କାଳ ଏଥେନ୍‌ସକୁ ଶାସନ କଲେ । ଏହି କାଳ ମଧ୍ୟରେ ଏଥେନ୍‌ସର ନାଗରିକମାନେ ତିନୋଟି ରାଜନୈତିକ ଶ୍ରେଣୀରେ ବିଭକ୍ତ ହୋଇଥିଲେ । ସର୍ବଶ୍ରେଷ୍ଠ ଶ୍ରେଣୀକୁ ଆମେ ସାମନ୍ତ ଶ୍ରେଣୀ କହିପାରୁ । ଏଥେନ୍‌ସରେ ଏମାନଙ୍କୁ କୁହାଯାଉଥିଲା ହିପିଜ୍ (hippes)। ଏମାନେ କ୍ଷତ୍ରିୟ । କେବଳ ସାମନ୍ତଙ୍କର ଘୋଡ଼ା ରଖିବାର ଅଧିକାର ଥିଲା । ଗ୍ରୀସ୍ ତଥା ରୋମ୍‌ରେ ଘୋଡ଼ାର ମାଲିକ ହେବା ଥିଲା ଆଭିଜାତ୍ୟର ନିଶାଣ । ଯୁଦ୍ଧବେଳେ ସାମନ୍ତ ଶ୍ରେଣୀ ନଗରର ଅଶ୍ୱାରୋହୀ ସେନା-ରୂପେ ଲଢ଼ୁଥିଲା । ହିପିଜ୍‌ର ତଳଶ୍ରେଣୀର ନାମ ଜଉଗିଟେଇ (Zeugitai) । ଏହି ଶ୍ରେଣୀର ଜଣେ ବ୍ୟକ୍ତି ହଳେ ବଳଦ ରଖିବା ପାଇଁ ହକ୍‌ଦାର ଥିଲା । ଯୁଦ୍ଧବେଳେ ଏମାନେ ଉନ୍ନତ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ପଦାତିକ ବାହିନୀ ରୂପେ ଲଢୁଥିଲେ । ତୃତୀୟ ଶ୍ରେଣୀଟି ହେଉଛି ଥେଟିଜ୍ (thetes) । ଏମାନେ ମୂଲିଆ । ଏମାନେ ମଧ୍ୟ ଯୁଦ୍ଧ ସମୟରେ ଲଘୁ ଅସ୍ତ୍ର ଧରି ଶତ୍ରୁ ସହିତ ଲଢ଼ୁଥିଲେ ।

ନାଗରିକ ଅଧିକାର ପ୍ରଥମ ଦୁଇଟି ଶ୍ରେଣୀର ଲୋକଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ଆର୍କନ୍, ସମରପତି ଓ ଧର୍ମଯାଜକ ପରି ଉଚ୍ଚପଦରେ କେବଳ ସାମନ୍ତ ଶ୍ରେଣୀର ବ୍ୟକ୍ତିମାନେ ନିଯୁକ୍ତ ହେଉଥିଲେ । ଅପସାରିତ ଓ ଦୁର୍ନୀତିଗ୍ରସ୍ତ ଆର୍କନ୍‌ଙ୍କ ବ୍ୟତୀତ ଅନ୍ୟ ଆର୍କନମାନେ କାର୍ଯ୍ୟକାଳ ପୂରିବା ପରେ ଆଜୀବନ ସିନେଟ୍ ସଭ୍ୟଭାବେ ପରିଗଣିତ ହେଉଥିଲେ । ଏଥେନ୍‌ସ୍‌ରେ ସିନେଟ୍ ଥିଲା ସର୍ବେସର୍ବା । ସନ୍ଧ୍ୟାବେଳେ ଏରିଜ୍ ଦେବଙ୍କ ପାହାଡ଼ ଆରିଓ ପାଗାସ୍‌ରେ ସିନେଟ୍‌ର ବୈଠକ ବସୁଥିଲା ।

ରାଜନୈତିକ ଅଧିକାର ଭେଦରେ ଯେପରି ତିନୋଟି ଶ୍ରେଣୀ ଥିଲ, ଅର୍ଥନୈତିକ ତାରତମ୍ୟ ଦୃଷ୍ଟିରୁ ସେହିପରି ଏଥେନ୍ସୀୟମାନଙ୍କୁ ତିନିଶ୍ରେଣୀରେ ବିଭକ୍ତ କରାଯାଏ । ସବୁଠାରୁ ଧନୀ ଶ୍ରେଣୀର ନାମ ଇଉପାଟ୍ରିଡ୍ସ୍ (Eupatrids) । ଏମାନେ ଯେ ବଡ଼ ଧନୀ ତା ନୁହେଁ । ତେବେ ଏମାନଙ୍କର ଅବସ୍ଥା ଅନ୍ୟମାନଙ୍କ ତୁଳନାରେ ସ୍ୱଚ୍ଛଳ । ଇଉପାଟ୍ରିଡ-ମାନେ ସେମାନଙ୍କର ସମସ୍ତ କାର୍ଯ୍ୟ ଦାସ ଓ ମୂଲିଆମାନଙ୍କ ଦ୍ୱାରା କରଉଥିଲେ । ଏପରିକି ଜଣେ ଇଉପାଟ୍ରିଡର ବ୍ୟବସାୟ ବୁଝିବା ପାଇଁ ଅନ୍ୟ ଲୋକସବୁ ନିଯୁକ୍ତ ଥିଲେ । ଦ୍ୱିତୀୟ ଶ୍ରେଣୀଟି ହେଉଛି Demiurgoi ବା ଶ୍ରମଜୀବୀ । ପେଷାଦାର କାରିଗର, ବିଭିନ୍ନ ପେଷାକୁ ବୃତ୍ତିଭାବେ ଗ୍ରହଣ କରିଥିବା ଲୋକ ଓ ସ୍ୱାଧୀନ ଶ୍ରମିକ ଏହି ଶ୍ରେଣୀର ଅନ୍ତର୍ଗତ । ଗ୍ରୀକ୍‌ଙ୍କର ଉପନିବେଶ ବିସ୍ତାର ହେବାଦ୍ୱାରା ନୂଆ ବଜାର ସୃଷ୍ଟି ହୋଇଥିଲ । ଫଳରେ ମଧ୍ୟବିତ୍ତ ଶ୍ରେଣୀର ଶ୍ରମଜୀବୀଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ଘଟିଲ ଓ ସେମାନଙ୍କର ଶକ୍ତି ବଢ଼ିଲ । ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ମଧ୍ୟରେ ଶ୍ରେଣୀ-ସଂଘର୍ଷ ଏହାର ସ୍ୱାଭାବିକ ପରିଣତି । ଶ୍ରମଜୀବୀମାନେ ଧନୀଙ୍କଙ୍କର ପ୍ରତିଦ୍ୱନ୍ଦୀ ହୋଇ ଉଠିଲେ ଓ ଅଧିକ ରାଜନୈତିକ କ୍ଷମତା ଦାବୀ କଲେ । ସୋଲନ୍‌ଙ୍କ ସମୟରୁ ମଧ୍ୟବିତ୍ତ ଶ୍ରେଣୀର କ୍ଷମତା ହାସଲ ଆରମ୍ଭ ହେଲ ଓ ପେରିକ୍ଲିଜ୍‌ଙ୍କ ଅମଳରେ ସେମାନଙ୍କର ଅବସ୍ଥାର ବିଶେଷ ଉନ୍ନତି ଘଟିଲ ।

ଅର୍ଥନୈତିକ ସିଡ଼ିର ସର୍ବ ତଳେ ଥିବା ଲୋକମାନେ georgoi ନାମରେ ପରିଚିତ । ଏମାନେ ଅତି ଦରିଦ୍ର । ଅଧିକାଂଶ କ୍ଷେତ୍ରରେ ମୂଲ ଲାଗି ବଞ୍ଚୁଥିଲେ । ଜମି-ମାଲିକ ଓ ମହାଜନଙ୍କର ଶୋଷଣ ଫଳରେ ଏମାନଙ୍କର ଜୀବନ ଦୁର୍ବିସହ ହୋଇ ପଡ଼ିଥିଲ । ସାମାନ୍ୟ ଚାଷଜମିର ଅଧିକାରୀ ହୋଇଥିବାରୁ ସେମାନେ ଯାହା ଟିକିଏ ମାନସିକ ଶାନ୍ତି ପାଉଥିଲେ ; କିନ୍ତୁ ସେଥିରେ ତାଙ୍କର ପେଟ ପୂରୁ ନଥିଲ ।

ଉଚ୍ଚବଂଶଜ ଜମି-ମାଲିକଙ୍କ ଜମି ଯେଉଁ ଗରିବ ଚଷୁଥିଲ, ତାକୁ ନିର୍ଦ୍ଧାର୍ଯ୍ୟ ଉତ୍ପାଦନର ମୋଟା ଅଂଶ ମାଲିକକୁ ଦେବାକୁ ପଡ଼ୁଥିଲ । ଉତ୍ପାଦନର ଏକ ଷଷ୍ଠାଂଶ ଥିଲ ତାର ପ୍ରାପ୍ୟ । ଯେଉଁ ଗରିବ ଚାଷୀ ମାଲିକର ଅଂଶ ଦେବାକୁ ଅକ୍ଷମ ହେଉଥିଲ, ତାକୁ ଦାସ-ରୂପେ ବିକି ଦେବାର ଅଧିକାର ମାଲିକର ଥିଲ । ମଳମୁଣ୍ଡିଆମାନେ ହାଡ଼ଭଙ୍ଗା ପରିଶ୍ରମ କରୁଥିଲେ ମଧ୍ୟ ପେଟଭରି ମୁଠାଏ ଖାଇବାକୁ ପାଉ ନ ଥିଲେ ଓ ଉଚ୍ଚ ଶ୍ରେଣୀର ଲୋକଙ୍କ ଦ୍ୱାରା ହୀନମାନ ହୋଇ ବଞ୍ଚୁଥିଲେ । ତେଣୁ ସଂଖ୍ୟାଗରିଷ୍ଠ ସାଧାରଣ ଲୋକଙ୍କ ମଧ୍ୟରେ

ଅସନ୍ତୋଷ କୁହୁଳୁ ଥିଲା । ଉପନିବେଶ ବିସ୍ତାର ପରେ ସେମାନଙ୍କ ଅବସ୍ଥାର ସାମାନ୍ୟ ଉନ୍ନତି ହେବାରୁ କିଛି ଅଧିକାର ଓ ନ୍ୟାଯ୍ୟ ବିଗ୍ଗର ପାଇବା ଆଶାରେ ସାଧାରଣ ଜନତା ନଗରପାଇଁ ଗୋଟିଏ ଲିଖିତ ସମ୍ବିଧାନ ପ୍ରଣୟନ କରିବାକୁ ଚାପ ପକାଇଲେ । ଲିଖିତ ଆଇନ କାନୁନ୍ ରହିଲେ ସେମାନଙ୍କ ଉପରେ କେହି ମନମୁଖୀ ଶାସନ ଚଳାଇ ପାରିବେ ନାହିଁ ବୋଲି ସମସ୍ତେ ଆଶା କରିବା ସ୍ୱାଭାବିକ୍ ।

ଜନତାର ଚାପ ଫଳରେ ଧନ ଓ କ୍ଷମତା ଉପଭୋଗ କରୁଥିବା ଅଭିଜାତ ଶ୍ରେଣୀ ଗୋଟିଏ ସମ୍ବିଧାନ ପ୍ରସ୍ତୁତ କରିବାର ଦାୟିତ୍ୱ ଡ୍ରାକୋ (Draco)ଙ୍କୁ ଦେଲେ । ଡ୍ରାକୋ (ଖ୍ରୀ. ପୂ. ୬୨୦) ଜଣେ ପୋଷାଦାର ଆଇନ୍‌ଜୀବୀ । ସାଧାରଣ ଲୋକଙ୍କର ଜୀବନ ସହିତ ତାଙ୍କର କୌଣସି ପରିଚୟ ନ ଥିଲା । ଆର୍କନ ନିର୍ବାଚନ ପ୍ରତିଯୋଗିତା ପାଇଁ କେଉଁମାନେ ଯୋଗ୍ୟ ଡ୍ରାକୋ ସେ ନିୟମ କୋଡ଼ିଫାଇ କରିଥିଲେ । ହତ୍ୟା ଅପରାଧର ବିଚାର କେବଳ ସିନେଟ୍ କରିବ ବୋଲି ସେ ବ୍ୟବସ୍ଥା କରିଥିଲେ । ଏହା ଏକ ଉତ୍ତମ ନିୟମ । ମାତ୍ର ଲିଖିତ ଆଇନ୍ କାନୁନ୍ ପ୍ରଣୟନ ହେଲେ ଗରିବ ମଜଦୂରିଆଙ୍କ ଉପରେ ଅତ୍ୟାଚାର କମିବ ବୋଲି ଯେଉଁ ଆଶା କରାଯାଉଥିଲା, ତାହା ମିଥ୍ୟା ପ୍ରମାଣିତ ହେଲା । ଜନ ଜୀବନ ସହିତ ସମ୍ପର୍କ ନ ଥିବା ଜଣେ ଆଇନ୍‌ଜୀବୀ ଭାବେ ଡ୍ରାକୋ ଆଇନ୍ କଡ଼ାକଡ଼ି ପାଳନ କରିବା ଉପରେ ବିଶେଷ ଗୁରୁତ୍ୱ ଦେଇଥିଲେ । ଆଇନ୍ ଲଙ୍ଘନର ଦଣ୍ଡକୁ ସେ ଏପରି କଠୋର କରିଥିଲେ ଯେ ଆଇନ୍‌ପ୍ରଣେତା ପରିବର୍ତ୍ତେ ତାଙ୍କର ନିର୍ମମତା ପାଇଁ ଡ୍ରାକୋ ସୁପରିଚିତ । ଗରିବ ଚାଷୀ କୌଣସି କାରଣରୁ ମାଲିକର ପ୍ରାପ୍ୟ ଦେଇ ନ ପାରିଲେ ଆଇନ୍‌ରେ ତାପାଇଁ କଠୋର ଦଣ୍ଡର ବ୍ୟବସ୍ଥା ହୋଇଥିଲା । ଡ୍ରାକୋଙ୍କ ଆଇନ୍ ଫଳରେ ଗରିବଗୁରୁବାଙ୍କର ଦୁଃଖ ଲାଘବ ହେବା ପରିବର୍ତ୍ତେ ବଢ଼ିଲା । ସାମାନ୍ୟ ଦୋଷରୁ, ଉଦାହରଣ ସ୍ୱରୂପ ଅଳସୁଆମି ଦୋଷରୁ ଜଣେ ନାଗରିକ ତାର ନାଗରିକତ୍ୱ ହରାଇବା ଓ ଅନାଗରିକ ମୃତ୍ୟୁଦଣ୍ଡ ପର୍ଯ୍ୟନ୍ତ ଦଣ୍ଡ ପାଇବାର ବ୍ୟବସ୍ଥା ଡ୍ରାକୋଙ୍କ ଆଇନ୍‌ରେ ଥିଲା ।

## ସୋଲନ୍ :

ଅଳ୍ପକାଳ ମଧ୍ୟରେ ଡ୍ରାକୋଙ୍କ ପ୍ରଣୀତ ନିୟମାବଳୀକୁ ବାତିଲ୍ କରିଦେବାକୁ ଜନ-ଆନ୍ଦୋଳନ ତେଜିଲା । ଅନ୍ତେବର୍ତ୍ତୀକ ଜନିତ ବିଷମ ସମସ୍ୟାରୁ ଏଥେନ୍ସକୁ ଯେଉଁ ବ୍ୟକ୍ତି

ରକ୍ଷା କରିଥିଲେ ତାଙ୍କର ନାମ ହେଉଛି ସୋଲନ୍ । ଡ୍ରାକୋଙ୍କ ବିରୁଦ୍ଧରେ ଆନ୍ଦୋଳନ କରିବା ବ୍ୟଗ୍ରିତ ଅନେକ ଗରିବ ଲୋକ ଏଥେନ୍ସରୁ ପଳାଇଯାଇ ନୂଆ ବସତି ସ୍ଥାପନ କଲେ । ଏଥେନ୍ସ ଓ ଅନ୍ୟ ନଗରରୁ ଯେଉଁମାନେ ଜନ୍ମମାଟିର ମୋହକାଟି ପଳାଉଥିଲେ, ସେମାନେ ସିସିଲିର ସିରାକ୍ୟୁଜ୍, ଦକ୍ଷିଣ ଇଟାଲୀର ଟାରେଣ୍ଟମ୍, ଉତ୍ତର ଆଫ୍ରିକା ଓ ଓ ଭୂମଧ୍ୟ ସାଗର ଉପକୂଳରେ ନୂଆ ନଗରମାନ ଗଢ଼ିଥିଲେ । ପଚାଶ ବର୍ଷ ଧରି କ୍ରମାଗତ ଜନ ଆନ୍ଦୋଳନ ଫଳରେ ଏଥେନ୍ସର ନଗରପତିମାନେ ଏକ ନୂତନ ନିୟମାବଳୀ ପ୍ରଣୟନ କରିବାର ଦାୟିତ୍ୱ ସୋଲନ୍ଙ୍କୁ ଅର୍ପଣ କରିଥିଲେ । ସୋଲନ୍ ଜଣେ ବିଜ୍ଞ ବିଚକ୍ଷଣଶୀଳ ବ୍ୟକ୍ତି । ସେ ଏଥେନ୍ସର ଆର୍କନ ରୂପେ କାମକରି ଅନେକ ଅଭିଜ୍ଞତା ଅର୍ଜନ କରିଥାନ୍ତି । ଖ୍ରୀ: ପୂ: ୫୯୪ରେ ସୋଲନ୍ ତାଙ୍କର ନୂତନ ନିୟମାବଳୀ ଶେଷ କଲେ । ଏହି ସମ୍ବାଦ ପ୍ରଚାରିତ ହୋଇଯିବା ପରେ ଲୋକମାନେ ନଗରସାରା ଉତ୍ସବ ପାଳନ କରିଥିଲେ । ସେହି ନିର୍ଦ୍ଦିଷ୍ଟ ଦିନଟିରେ ପ୍ରତିବର୍ଷ ଏଥେନ୍ସରେ ଉତ୍ସବ ପାଳିତ ହେଉଥିଲା ।

ବାସ୍ତବତା ପ୍ରତି ଧ୍ୟାନରଖି ପରିବର୍ତ୍ତନକୁ ଗ୍ରହଣ କରିବାକୁ ସମାଜର ସବୁ ଶ୍ରେଣୀର ଲୋକଙ୍କୁ ପ୍ରବର୍ତ୍ତାଇ ପାରିବା ସୋଲନ୍ଙ୍କର ମହାନ୍ ସାଫଲ୍ୟ । ବିନା ରକ୍ତପାତରେ ସୋଲନ୍ ଏଥେନ୍ସରେ ଯେଉଁ ସାମାଜିକ ଅର୍ଥନୈତିକ ଓ ରାଜନୈତିକ ବିପ୍ଳବ ଆଣିଲେ ତାହା ଇତିହାସର ଏକ ବିସ୍ମୟ ଭାବେ ପରିଗଣିତ । ଅନେକ ସ୍ୱତନ୍ତ୍ର ସୁବିଧା ଅଧିକାର ଉପଭୋଗ କରୁଥିବା ଉଚ୍ଚ ଶ୍ରେଣୀର ଲୋକମାନେ ହୃଦୟଙ୍ଗମ କରୁଥିଲେ ଯେ ସୋଲନ୍ଙ୍କୁ ନ ମାନିଲେ ନଗର ଖଣ୍ଡ ବିଖଣ୍ଡିତ ହୋଇ ଧ୍ୱଂସ ପାଇବ ।

ଏଥେନ୍ସର ଏକ ଅତି ସମ୍ଭ୍ରାନ୍ତ ପରିବାରରେ ସୋଲନ୍ଙ୍କର ଜନ୍ମ । ଯୌବନରେ ସେ କବିତା ଲେଖୁଥିଲେ । ପରିଣତ ବୟସରେ ନୈତିକ ଜୀବନ ଯାପନର ଆଦର୍ଶ ଆଡ଼କୁ ତାଙ୍କର ମନ ଢଳିଲା । ଅନୈତିକ ଉପାୟରେ ଧନ ଅର୍ଜନକୁ ସେ ତାଙ୍କର କବିତା ମାଧ୍ୟମରେ ନିନ୍ଦା କଲେ । କଥିତ ଅଛି, ଅନ୍ୟମାନଙ୍କୁ ସାହାଯ୍ୟ କରି ସୋଲନ୍ଙ୍କ ପିତାଙ୍କର ଜମିଦାରୀ ବୁଡ଼ି ଯାଇଥିଲା । ସୋଲନ୍ ଗରିବ ଲୋକଙ୍କୁ ପ୍ରଚୁର ଅର୍ଥ ଧାର ଦେଇଥିଲେ । ବ୍ୟକ୍ତିଗତ ଭାବେ ତାଙ୍କୁ ଅନେକ କ୍ଷତି ସହିବାକୁ ପଡ଼ିଥିଲେ ମଧ୍ୟ ସବୁ ପ୍ରକାର କରଜ ଓ ବନ୍ଧକରୁ ଲୋକଙ୍କୁ ମୁକ୍ତ ଦେବାର ଆଇନ୍ ପ୍ରଣୟନ କରିବାକୁ ସେ କୁଣ୍ଠିତ ହୋଇ ନ ଥିଲେ ।

ମାଲିକର ଋଣ ପରିଶୋଧ କରି ନ ପାରି ଦାସ ହୋଇଥିବା ଓ ବନ୍ଦୀ ହୋଇଥିବା ଲୋକମାନେ ସ୍ୱାଧୀନ ବୋଲି ସୋଲନ୍ ଘୋଷଣା କଲେ । ସେମାନଙ୍କୁ ସେମାନଙ୍କର ଦେଶକୁ ମୁକ୍ତ କରାଗଲା । କେବଳ ନୁହେଁ, ରାଜନୈତିକ ଅପରାଧ ଅଭିଯୋଗରେ ଯେଉଁମାନଙ୍କୁ ବନ୍ଦୀ ବା ନିର୍ବାସିତ କରାଯାଇଥିଲା ସେମାନେ ମଧ୍ୟ ମୁକ୍ତି ପାଇଲେ । ଉଚ୍ଚ ନୀଚ, ଧନୀ ଦରିଦ୍ର ନିର୍ବିଶେଷରେ ସମାନ ଦୋଷପାଇଁ ସମାନ ଦଣ୍ଡର ଯେଉଁ ବ୍ୟବସ୍ଥା ସୋଲନ୍ କଲେ, ତାହା ଏକ ଯୁଗାନ୍ତକାରୀ ବୈପ୍ଲବିକ ପରିବର୍ତ୍ତନ ।

ଶ୍ରମିକ ଓ ବଣିକମାନଙ୍କ ସମର୍ଥନ ବଳରେ ତାଙ୍କର ସଂସ୍କାର ସମ୍ଭବ ବୋଲି ଉପଲବ୍ଧି କରି ସୋଲନ୍ ସେମାନଙ୍କୁ ଶାସନ କ୍ଷେତ୍ରରେ ସେମାନଙ୍କର ନ୍ୟାଯ୍ୟ ଭାଗ ଦେଇଥିଲେ । ସମ୍ପତ୍ତିର ପରିମାଣ ଅନୁସାରେ ଏଥେନ୍ସୀୟ ନାଗରିକଙ୍କୁ ସେ ଚାରି ଶ୍ରେଣୀରେ ବିଭକ୍ତ କରିଥିଲେ । ଉପାର୍ଜନ ଅନୁପାତରେ ଲୋକଙ୍କୁ କର ଦେବାକୁ ପଡ଼ୁଥିଲା । ସର୍ବନିମ୍ନ ଚତୁର୍ଥ ଶ୍ରେଣୀଟି ଥିଲା ପ୍ରତ୍ୟକ୍ଷ କରରୁ ମୁକ୍ତ । ଉଚ୍ଚ ଶ୍ରେଣୀକୁ କେବଳ ଅଧିକ ସମ୍ମାନ ନୁହେଁ, ଅଧିକ କର ଦେବାର ବ୍ୟବସ୍ଥା କରିବା ନ୍ୟାୟୋଚିତ । କେବଳ ପ୍ରଥମ ଶ୍ରେଣୀର ବ୍ୟକ୍ତି-ମାନେ ଆର୍କନ ଓ ସୈନ୍ୟବିଭାଗର ସେନାପତି ହେବାକୁ ଯୋଗ୍ୟ ଥିଲେ । ଦ୍ୱିତୀୟ ଶ୍ରେଣୀର ନାଗରିକମାନଙ୍କ ମଧ୍ୟରୁ ବାଛି ସୈନ୍ୟ ବିଭାଗର ତଳିଆ ପଦରେ ନିଯୁକ୍ତ କରିବାର ବ୍ୟବସ୍ଥା ଥିଲା । ପଦାତିକ ବାହିନୀରେ ଯୋଗ ଦେବା ଥିଲା ତୃତୀୟ ଶ୍ରେଣୀର ଅଧିକାର ଭୁକ୍ତ । ଏମାନେ ଉନ୍ନତ ଅସ୍ତ୍ରଶସ୍ତ୍ର ବ୍ୟବହାର କରୁଥିଲେ । ଚତୁର୍ଥ ଶ୍ରେଣୀର ଲୋକମାନେ ସାଧାରଣ ସୈନିକ ରୂପେ ଲଢ଼ୁଥିଲେ ।

ସିନେଟ ନିର୍ବାଚନରେ ଲଢ଼ିବା ଥିଲା କେବଳ ପ୍ରଥମ ଶ୍ରେଣୀର ନାଗରିକଙ୍କର ଅଧିକାର ଭୁକ୍ତ । ସିନେଟ୍‌ର କାର୍ଯ୍ୟ ପରିସର ଓ କ୍ଷମତାରେ ସୋଲନ୍ କିଛି ପରିବର୍ତ୍ତନ କରିଥିଲେ ମଧ୍ୟ ସିନେଟ୍ ଲୋକଙ୍କର ଆଚରଣ ଓ ସରକାରୀ କର୍ମଚାରୀଙ୍କୁ ନିୟନ୍ତ୍ରଣ କରିବାର ସର୍ବୋଚ୍ଚ ଅଦାଲତ ହୋଇ ରହିଥିଲା । ସିନେଟ୍ ତଳକୁ ସୋଲନ୍ ଗୋଟିଏ ଚାରିଶହ ସଭ୍ୟ ବିଶିଷ୍ଟ କାଉନ୍‌ସିଲ୍ ଗଠନ ବ୍ୟବସ୍ଥା କରିଥିଲେ । ଏହା ଏକ ନୂତନ ବ୍ୟବସ୍ଥା । ପ୍ରତି ଶ୍ରେଣୀରୁ ଶହେ ଜଣ ସଭ୍ୟ କାଉନ୍‌ସିଲ୍‌କୁ ନିର୍ବାଚନ ହୋଇ ଆସୁଥିଲେ । ଆସେମ୍ବ୍ଲି ଆଗରେ କ'ଣ ସବୁ ପେଶ୍ କରାଯିବ ତାହା କାଉନ୍‌ସିଲ୍ ସ୍ଥିର କରୁଥିଲା । ସୋଲନ୍ ଏଥେନ୍ସର ଆସେମ୍ବ୍ଲିକୁ ଯେପରି ଗଢ଼ିଲେ, ତାହା ନଗରର ଗଣତାନ୍ତ୍ରିକ ଭିତ୍ତିକୁ ଦୃଢ଼

କଲା । ଆସେମ୍ବ୍ଲି ଥିଲା ସବୁ ନାଗରିକଙ୍କ ପାଇଁ ଉନ୍ମୁକ୍ତ । ନିମ୍ନ ଶ୍ରେଣୀର ଗରିବ ଲୋକେ ପୂର୍ବରୁ କୌଣସି ଅଧିକାର ଉପଭୋଗ କରୁ ନ ଥିଲେ । ଅବଶ୍ୟ ବିଭିନ୍ନ ଶାସନ ପଦପାଇଁ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବାର ଅଧିକାର କେବଳ ପ୍ରଥମ ତିନି ଶ୍ରେଣୀର ଥିଲା । ନିର୍ବାଚନରେ ଲଢ଼ି ନ ପାରିଲେ ମଧ୍ୟ ଭୋଟ ଦେଇ ନିର୍ବାଚନର ଫଳାଫଳକୁ ନିୟନ୍ତ୍ରଣ କରିବା ଗରିବ ଲୋକଙ୍କ ପକ୍ଷରେ କମ୍ ଆଶାପ୍ରଦ ଓ ଗୌରବଜନକ କଥା ନ ଥିଲା । ଆସେମ୍ବ୍ଲିରେ ଉଠିଥିବା ପ୍ରସ୍ତାବ ସମ୍ବନ୍ଧରେ ଆଲୋଚନାରେ ଭାଗ ନେଉ ନ ଥିଲେ ମଧ୍ୟ ତା ଉପରେ ସେମାନେ ଭୋଟ ଦେଉଥିଲେ । ମଜମୁଣ୍ଡିଆଙ୍କ ପାଇଁ ଏହା ଯେ ଏକ ଗୁରୁତ୍ୱପୂର୍ଣ୍ଣ ଅଧିକାର ସେଥିରେ ସନ୍ଦେହ ନାହିଁ । ଏହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ସୋଲନ୍‌ଙ୍କର ନୂତନ ଜୁରି ନିର୍ବାଚନ ପଦ୍ଧତି ଫଳରେ ତଳ ଶ୍ରେଣୀର ଅନେକ ବ୍ୟକ୍ତି ଜୁରି ସଦସ୍ୟ ଭାବେ ନିର୍ବାଚିତ ହେଉଥିଲେ । ଏଥେନ୍‌ସର ବିଭିନ୍ନ ବିଚାରାଳୟପାଇଁ ଛଅ ହଜାର ଜୁରି ସଦସ୍ୟ ଆବଶ୍ୟକ ହେଉଥିଲେ । ସେମାନଙ୍କୁ ଲଟେରି ଦ୍ୱାରା ବାଛିବାର ପଦ୍ଧତି ଗ୍ରହଣ କରିବା ଦ୍ୱାରା ଅନେକ ତଳିଆ ଲୋକଙ୍କୁ ଏହି ସମ୍ମାନଜନକ ପଦ ମିଳିବା ସ୍ୱାଭାବିକ । ଏହା ଫଳରେ ସମାଜର ନିମ୍ନ ଶ୍ରେଣୀର ଲୋକଙ୍କର ସମ୍ମାନ ବଢ଼ିଲା । ସେତିକି ନୁହେଁ, ଗଣତନ୍ତ୍ରର ଭିତ୍ତି ମଧ୍ୟ ଦୃଢ଼ ହେଲା । ପୋଖତ ଆଇନ୍ ବିଶେଷଜ୍ଞ ଜଜ୍‌ମାନେ ସାଧାରଣ ଜୁରିର ମତ ଶୁଣିବାର ଗଣତାନ୍ତ୍ରିକ ମୂଲ୍ୟଟି ସ୍ପଷ୍ଟ । ଗଣତନ୍ତ୍ରରେ ସାଧାରଣ ଲୋକଙ୍କର ମତ ଶୁଣାଯାଏ ଓ ତାକୁ ଗୁରୁତ୍ୱ ଦିଆଯାଏ ।

ମୌଳିକ ସାମ୍ବିଧାନିକ ପରିବର୍ତ୍ତନ ବ୍ୟତୀତ ଶ୍ରେଣୀଗତ ସମସ୍ତ ସମସ୍ୟାକୁ ସୋଲନ୍‌ଙ୍କ କୋଡ୍ ସ୍ପର୍ଶ କରିଥିଲା । ସମ୍ପତ୍ତିର ବ୍ୟକ୍ତିଗତ ମାଲିକାନାର ଯେଉଁ ପରମ୍ପରା ଗଢ଼ି ଆସୁଥିଲା, ସୋଲନ୍ ତାକୁ ନିୟମବଦ୍ଧ କରିଥିଲେ । ଏଥେନ୍‌ସରେ ସ୍ଥାୟୀଭାବେ ବାସ କରୁଥିବା ବିଦେଶୀ କାରିଗରମାନେ ନାଗରିକ ଭାବେ ଗଣା ହେଲେ । ବାଣିଜ୍ୟ ଓ ଶିଳ୍ପକୁ ଉତ୍ସାହିତ କରିବା ଏହି ପଦକ୍ଷେପର ଉଦ୍ଦେଶ୍ୟ । ନଗରରେ ଉତ୍ପାଦିତ ଶସ୍ୟ ବାହାରକୁ ରପ୍ତାନି ହୋଇ ପାରିବ ନାହିଁ ବୋଲି ନିୟମ କରାଯାଇଥିଲା । ସୋଲନ୍ ଆଶା କରୁଥିଲେ ଯେ ଏହା ଫଳରେ ଆବଶ୍ୟକ ଠାରୁ ଅଧିକ ଶସ୍ୟ ଉତ୍ପାଦନରେ ନ ମାତି ଲୋକେ ଶିଳ୍ପ ଆଡ଼କୁ ଆକୃଷ୍ଟ ହେବେ ।

ନୈତିକତା ଓ ଭଦ୍ର ଆଚରଣର ପରିସର ଭିତରକୁ ମଧ୍ୟ ସୋଲନ୍ ଆଇନ ପ୍ରବେଶ କରିଥିଲା । ବେଶ୍ୟାବୃତ୍ତି ଆଇନ୍‌ସମ୍ମତ ହେଲା ଓ ଏହି ବୃତ୍ତି ଉପରେ କରଧାର୍ଯ୍ୟ କରାଗଲା । ଯୌତୁକ ପ୍ରଥାକୁ ନିରୁତ୍ସାହିତ କରିବାକୁ ଯୌତୁକର ସର୍ବୋଚ୍ଚ ସୀମା ନିର୍ଦ୍ଦିଷ୍ଟ ହେଲା । ଅଭଦ୍ର ଓ ଅସୁନ୍ଦର ଆଚରଣକୁ ରୋକିବା ପାଇଁ ଆଇନ୍ କି ବ୍ୟବସ୍ଥା କରିଥିଲା ତାର କେତୋଟି ଉଦାହରଣ ଦିଆଯାଇପାରେ । ମୃତ ବ୍ୟକ୍ତିକୁ ନିନ୍ଦା କରିବା ଆଇନ୍ ଦୃଷ୍ଟିରୁ ଦଣ୍ଡନୀୟ ଥିଲା । ମନ୍ଦିର, ବିଚାରାଳୟ ଓ ଖେଳ ପଡ଼ିଆରେ କାହାକୁ ନିନ୍ଦା କରିବା ମଧ୍ୟ ଥିଲା ଅପରାଧ । ଏପରି ଆଇନ୍ ସତ୍ତ୍ୱେ ଲୋକଙ୍କର ଚୁଗୁଲି ଶୁଣିବା ଓ କରିବା ଅଭ୍ୟାସ କମିଲା ନାହିଁ । ଆମ ଅନୁଭୂତିରୁ କହିପାରୁ, ବୋଧେ କୁତ୍ସାରଟନା ଗଣତନ୍ତ୍ରର ଅଙ୍ଗ । ଆଡ଼ମ୍ବର-ପୂର୍ଣ୍ଣ ଉତ୍ସବ, ବ୍ୟୟବହୁଳ ପୂଜା ଓ ଶବ ଶୋଭାଯାତ୍ରାରେ ଅତ୍ୟଧିକ ବିଳାପ ବିରୁଦ୍ଧରେ ଆଇନ୍ ହୋଇଥିଲା ।

ଡେଲ୍‌ଫାଇ ଠାରେ ଆପୋଲୋଙ୍କ ମନ୍ଦିରରେ ଖୋଦିତ ହୋଇଥିବା 'Nothing in excess' ମାତ୍ର ବାକ୍ୟଟି ସୋଲ୍‌ନଙ୍କର ବୋଲି ପରମ୍ପରା କହେ । ଏହି ବାଣୀଟି ପ୍ରତି ଗ୍ରୀକ୍ ଜାତି ସର୍ବଦା ଧ୍ୟାନ ଦେଇ ଆସିଛି । ସବୁ ଶ୍ରେଣୀର ଲୋକଙ୍କୁ ଏକାଠି ରଖିବା, ସବୁ ପ୍ରକାର ମତକୁ ଗୁରୁତ୍ୱ ଦେଇ ଲୋକଙ୍କୁ ଗୋଟାଏ ମଝି ମଝିକା ବାଟ ଦେଖାଇବା ସୋଲନ୍‌ଙ୍କ କୋଡ଼୍‌ର ବିଶେଷତ୍ୱ । ତାଙ୍କର ଆଇନଗୁଡ଼ିକ କ'ଣ ସର୍ବୋତ୍କୃଷ୍ଟ ? ଥରେ ଏହି ପ୍ରଶ୍ନର ଉତ୍ତରରେ ସୋଲନ୍ କହିଥିଲେ, "ନା, ସେଗୁଡ଼ିକ ସର୍ବୋତ୍କୃଷ୍ଟ ନୁହନ୍ତି । ତେବେ ଏଥେନ୍‌ସବାସୀଙ୍କର ଗ୍ରହଣ କ୍ଷମତାର ସୀମା ଭିତରେ ସେଗୁଡ଼ିକ ସର୍ବୋତ୍କୃଷ୍ଟ ।"

ଇତିହାସ ସୋଲନ୍‌ଙ୍କୁ ଗ୍ରୀସ୍‌ର ସାତଜଣ ବିଜ୍ଞ ବ୍ୟକ୍ତିଙ୍କ ମଧ୍ୟରେ ସ୍ଥାନ ଦେଇଛି । ଭବିଷ୍ୟତରେ ନାନା ଉତ୍‌ଥାନ ପତନ ଓ ଝଡ଼ଝଞ୍ଜା ଭିତରେ ଗତି କରିଥିବା ଏଥେନ୍‌ସକୁ ସୋଲନ୍‌ଙ୍କ ନିୟମାବଳୀ ରକ୍ଷା କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

## ପିସିଷ୍ଟ୍ରାଟସ୍ :

ସୋଲନ୍‌ଙ୍କର ସୁଚିନ୍ତିତ ସମ୍ବିଧାନ ଏଥେନ୍‌ସର ଗୋଷ୍ଠୀ ସଂଘର୍ଷକୁ ହଟେଇ ପାରି ନ ଥିଲା । ଆଇନ୍‌କାନୁନ୍ ଜାରି ରଖିବାର ଯେଉଁ ପ୍ରକାର ବାତାବରଣ ଆବଶ୍ୟକ ସୌଭାଗ୍ୟର ବିଷୟ ସୋଲନ୍‌ଙ୍କ ପରେ ତାହା ଆସିଲା । ଅବଶ୍ୟ ଯେଉଁ ବ୍ୟକ୍ତିଙ୍କ ମାଧ୍ୟମରେ

ଏହା ଆସିଲା ତାଙ୍କୁ ସୋଲନ୍ ଗଣତନ୍ତ୍ରର ଶତ୍ରୁ ବୋଲି ମଣିଥିଲେ । ତାଙ୍କର ନାମ ପିସିଷ୍ଟ୍ରାଟସ୍ । ସେ ସୋଲନ୍‌ଙ୍କର ଜଣେ ଆତ୍ମୀୟ । ପିସିଷ୍ଟ୍ରାଟସ୍ ଏଥେନ୍‌ସର ନିରଙ୍କୁଶ ଶାସକ ହୋଇଥିଲେ । ଇତିହାସର ଗତି ଏପରି ବିଚିତ୍ର ଯେ ଦୁହେଁ ପରସ୍ପରକୁ ଶତ୍ରୁ ମଣୁଥିଲେ ମଧ୍ୟ ସୋଲନ୍ ଯେଉଁ ବାଟରେ ଏଥେନ୍‌ସକୁ ମୁହାଁଇ ଦେଇଥିଲେ, ପିସିଷ୍ଟ୍ରାଟସ୍ ସେହି ବାଟରେ ନଗରକୁ ଆଗେଇ ନେଲେ ।

ଗଣତାନ୍ତ୍ରିକ ଗୁଞ୍ଜରେ ଗଢ଼ା ହେବାର ପ୍ରକ୍ରିୟାରେ ନଗରର ବିଭିନ୍ନ ଗୋଷ୍ଠୀ ମଧ୍ୟରେ ପରସ୍ପର ପ୍ରତି ସନ୍ଦେହ ଓ ଗୋଷ୍ଠୀ ବିବାଦ ଦେଖାଦେଲା । କିଛି ପ୍ରତିପତ୍ତି ହରାଇଥିବା ସମ୍ଭ୍ରାନ୍ତ ଗୋଷ୍ଠୀ ସୋଲନ୍‌ଙ୍କ ବିରୁଦ୍ଧରେ ଯିବା ସ୍ୱାଭାବିକ୍ । ଉପକୂଳ ଅଞ୍ଚଳର ବଣିକ ଗୋଷ୍ଠୀ ସୋଲନ୍‌ଙ୍କୁ ସମର୍ଥନ କରୁଥିଲେ । ପାର୍ବତ୍ୟ ଅଞ୍ଚଳର ମେଷ ପାଳକ, ଖଣି ଶ୍ରମିକ ଓ ଗ୍ରୋଟ କୃଷୀମାନେ ସୋଲନ୍‌ଙ୍କ ଠାରୁ ପୂର୍ବ ନ୍ୟାୟ ପାଇଲେ ନାହିଁ କହି ପାଟି ଭୁଣ୍ଡ କଲେ । ସେମାନେ ଦାବୀ କରୁଥିଲେ ଯେ ଧନୀ ଲୋକଙ୍କ ଠାରୁ ଜମି ଛଡ଼େଇ ନେଇ ଗରିବଙ୍କୁ ବାଣ୍ଟି ଦିଆଯାଉ ।

ସମତଳ, ଉପକୂଳ ଓ ପାର୍ବତ୍ୟ ଅଞ୍ଚଳର ତିନି ଗୋଷ୍ଠୀର ଲୋକେ ଯେଉଁ କନ୍ଦଳ ସୃଷ୍ଟି କଲେ ତାର ଫାଇଦା ଉଠାଇଲେ ପିସିଷ୍ଟ୍ରାଟସ୍ । ପାର୍ବତ୍ୟ ଅଞ୍ଚଳର ଲୋକଙ୍କ ପ୍ରତି ସହାନୁଭୂତି ପ୍ରକାଶ କରି ସେ ସେମାନଙ୍କର ନେତା ବନିଗଲେ । ସରଳ, ଗରିବ ଲୋକଙ୍କର ହୃଦୟ ଜୟ କରିବା ପରେ ପିସିଷ୍ଟ୍ରାଟସ୍‌ଙ୍କର ଖେଳ ଆରମ୍ଭ ହେଲା । ଦିନେ ଶୋଚନୀୟ ଭାବେ ଖଣ୍ଡିଆ ଖାବରା ହୋଇ ପିସିଷ୍ଟ୍ରାଟସ୍ ବଜାର ଭିତରେ ପଶିଯାଇ ଉଚ୍ଚ ସ୍ୱରରେ ବିଳାପ କଲେ । ଗୁରିପଟେ ଲୋକ ଜମି ଗଲାରୁ କହିଲେ, ଜମିଦାରଙ୍କ ଭଡ଼ାଟିଆ ଗୁଣ୍ଡାମାନେ ତାଙ୍କର ଏପରି ଅବସ୍ଥା କରିଛନ୍ତି । ତାଙ୍କର ନାଟକ ସଫଳ ହେଲା । ଲୋକେ ବୁଝିଗଲେ ଯେ ଗରିବଙ୍କ ପଟେ ଥିବାରୁ ଜମିଦାରମାନେ ତାଙ୍କୁ ଖତମ କରି ଦେବାକୁ ବସିଥିଲେ । ଜନତା ଉତ୍ତେଜିତ ହେଲା । ସମୁଦାୟ ଘଟଣାଟି ପିସିଷ୍ଟ୍ରାଟସ୍‌ଙ୍କର ଛଳ ବୋଲି ସୋଲନ୍ ବୁଝାଇଲେ ମଧ୍ୟ କେହି ତାଙ୍କ କଥା ଶୁଣିଲେ ନାହିଁ । ସୋଲନ୍ ବିରକ୍ତ ହୋଇ ରାଜନୀତି ଛାଡ଼ିଦେଲେ । ପିସିଷ୍ଟ୍ରାଟସ୍‌ଙ୍କୁ ପଚାଶ ଜଣ ସଶସ୍ତ୍ର ଦେହରକ୍ଷୀ ଯୋଗାଇ ଦେବାକୁ ଆସେମ୍ବ୍ଲିରେ ପ୍ରସ୍ତାବ ଗୃହୀତ ହୋଇଗଲା । ପଚାଶ ପରିବର୍ତ୍ତେ ସେ ଗୁରିଶହ ସଶସ୍ତ୍ର ସୈନ୍ୟ ଯୋଗାଡ଼ କରିନେଲେ ଓ ପାହାଡ଼ିଆ ଲୋକଙ୍କ ସମର୍ଥନରେ ଆକ୍ରୋପଲିସ୍‌କୁ ଅଧିକାର କରି ନିଜକୁ ନିରଙ୍କୁଶ ଶାସକ ବୋଲି ଘୋଷଣା କଲେ ।

ପିସିଷ୍ଟ୍ରାଟସ୍ ଜଣେ ବୁଦ୍ଧିମାନ୍ ଓ ସଂସ୍କୃତିସମ୍ପନ୍ନ ବ୍ୟକ୍ତି । ତାଙ୍କର ବ୍ୟକ୍ତିତ୍ୱ ଆକର୍ଷଣୀୟ । ଜଣେ ଉତ୍ତମ ଶାସକର ତେଜ ଓ ଦକ୍ଷତା ତାଙ୍କଠାରେ ଥିଲା । ଅନେକ କ୍ଷେତ୍ରରେ ବଡ଼ ବ୍ୟକ୍ତିମାନେ ସହଜରେ ସିଦ୍ଧାନ୍ତ ନେଇ ପାରନ୍ତି ନାହିଁ ଓ ସିଦ୍ଧାନ୍ତ ନେଇ ସାରିବା ପରେ ମଧ୍ୟ ଏପଟ ସେପଟ ହୁଅନ୍ତି । ପିସିଷ୍ଟ୍ରାଟସ୍ ଥିଲେ ଏ ଦୋଷରୁ ମୁକ୍ତ । ସେ ସବୁ ସମସ୍ୟାର ସମ୍ମୁଖୀନ ହୋଇ ଠିକ୍ ସମୟରେ ନିଷ୍ପତ୍ତି ନେଉଥିଲେ ଏବଂ ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବାର ମନୋବଳ ଓ ଶକ୍ତି ତାଙ୍କର ଥିଲା । ସେ ଯେପରି ଦୃଢ଼ ଚରିତ୍ର, ସେହିପରି ଦୟାଳୁ ଓ କ୍ଷମାଶୀଳ । କହିବା ବାହୁଲ୍ୟ ଯେ ଗୋଷ୍ଠୀବିବାଦକୁ ଦବେଇ ନଗରରେ ଶାନ୍ତି ଶୃଙ୍ଖଳା ପ୍ରତିଷ୍ଠା କରିବା ପରେ ଜଣେ ନିରଙ୍କୁଶ ଶାସକ ପାଇବା ଏଥେନ୍ସ ପକ୍ଷରେ ସୌଭାଗ୍ୟର ବିଷୟ ।

ସମୁଦାୟ ପ୍ରାୟ ଦଶ ବର୍ଷ ପାଇଁ ଧନୀକ ଗୋଷ୍ଠୀ ଦୁଇଥର ପିସିଷ୍ଟ୍ରାଟସ୍‌ଙ୍କୁ ନଗରରୁ ବିତାଡ଼ିତ କରିବାରେ ସଫଳ ହୋଇଥିଲେ । ମାତ୍ର ଦୁଇଥର ଯାକ ପିସିଷ୍ଟ୍ରାଟସ୍ ତାଙ୍କର ହୃତ ରାଜ୍ୟ ଫେରି ପାଇଥିଲେ । ପ୍ରଥମ ଥର ଉପକୂଳବାସୀଙ୍କ ସହିତ ଗୁପ୍ତ ସନ୍ଧି କରି ସେମାନଙ୍କ ସହାୟତାରେ ସେ ଏଥେନ୍ସରେ ପ୍ରବେଶ କଲେ । ଏଥେନ୍ସରେ ପହଞ୍ଚି ଆଉ ଥରେ ସେ ନଗରବାସୀଙ୍କୁ ଗୋଟିଏ ଚମତ୍କାର ନାଟକ ଦେଖାଇଲେ । ଗୋଟିଏ ସୁସଜ୍ଜିତ ରଥ ଉପରେ ଦେବୀ ଏଥେନାଙ୍କ ପରି ବେଶଭୂଷା ହୋଇ ଜଣେ ସୁନ୍ଦରୀ ରମଣୀ ବସିଥାଆନ୍ତି । ନଗରର ରାଜପଥରେ ଏହି ରଥ ଯାଉଥାଏ ଓ ପଛେ ପଛେ ପିସିଷ୍ଟ୍ରାଟସ୍‌ଙ୍କ ସେନାବାହିନୀ । ଭଡ଼ାଟିଆ ପୁରୋହିତମାନେ ଲୋକଙ୍କୁ ବୁଝାଉଥାନ୍ତି ଯେ, ସ୍ୱୟଂ ଏଥେନା ଦେବୀ ପିସିଷ୍ଟ୍ରାଟସ୍‌ଙ୍କୁ ପାଛୋଟି ନେଉଛନ୍ତି । ଲୋକମାନେ ଲମ୍ବ ହୋଇ ଦେବୀଙ୍କୁ ପ୍ରଣାମ କଲେ । ନଗରର ଅଧିଷ୍ଠାତ୍ରୀ ଦେବୀ ସ୍ୱୟଂ ଯାହାକୁ ସହାୟ, ତାଙ୍କର ବିରୋଧ କରିବ କିଏ ? ଦ୍ୱିତୀୟ ଥର ବିତାଡ଼ିତ ହେବା ପରେ ମଧ୍ୟ ପିସିଷ୍ଟ୍ରାଟସ୍ ପୁଣି ନିଜର ବୁଦ୍ଧି ବଳରେ ଲେଉଟିଲେ । ସେ ଶାସନ କରନ୍ତୁ ବୋଲି ହୁଏତ ସତରେ ଏଥେନା ଦେବୀଙ୍କର ଇଚ୍ଛା ଥିଲା !

ପ୍ରାୟ ସାର୍ଦ୍ଧ ପଚିଶ ବର୍ଷ କାଳ ଏଥେନ୍ସକୁ ଶାସନ କଲା ପରେ ପିସିଷ୍ଟ୍ରାଟସ୍‌ଙ୍କର ମୃତ୍ୟୁ ହେଲା । ଆଶ୍ଚର୍ଯ୍ୟର ବିଷୟ, ସେ ସୋଲନ୍‌ଙ୍କର ଗଣତାନ୍ତ୍ରିକ ବ୍ୟବସ୍ଥାରେ କୌଣସି ପରିବର୍ତ୍ତନ କରି ନ ଥିଲେ । ନଗରର ସିନେଟ୍, ଚାରିଶହ ସଭ୍ୟ ବିଶିଷ୍ଟ କାଉନ୍‌ସିଲ୍, ସାଧାରଣ ଆସେମ୍ବ୍ଲି ଓ ବିଚାରାଳୟମାନ ପୂର୍ବ ପରି କାମ କରୁଥିଲା । ତଥାପି, ସମସ୍ତେ

ପିସିଷ୍ଟ୍ରାଟସ୍‌ଙ୍କ ଇଚ୍ଛାକୁ ଯଥେଷ୍ଟ ଗୁରୁତ୍ୱ ଦେଉଥିଲେ । ସେ ଜଣେ ଲୋକକୁ ମାରି ଦେଇଛନ୍ତି ବୋଲି ଥରେ ଗୋଟିଏ ଅଭିଯୋଗ ଶୁଣାଗଲା । ଜଣେ ନିରଙ୍କୁଶ ଶାସକ ପକ୍ଷରେ ଏହା କିବା କଥା । ଗୋଟିଏ କାହିଁକି କେତେ ଲୋକଙ୍କୁ ସେ ମାରିଥିବେ । ମାତ୍ର ଅଭିଯୋଗଟି ତାଙ୍କ କାନରେ ପଡ଼ିବାରୁ ସିନେଟ ତାଙ୍କର ବିଚାର କରୁ ବୋଲି ପିସିଷ୍ଟ୍ରାଟସ୍ ଅନୁରୋଧ କଲେ । ସେ କେଡ଼େ ଚତୁର ଏହି ଘଟଣାଟି ତାହା ସୂଚାଇ ଦିଏ । ଗୋଟାଏ ଉଡ଼ା ଖବରକୁ ଗୁରୁତ୍ୱ ନ ଦେବାପାଇଁ ସିନେଟ୍ ନିଷ୍ପତ୍ତି କଲା ।

ବୁଦ୍ଧି ଓ ଚତୁରତା ବଳରେ ପିସିଷ୍ଟ୍ରାଟସ୍ କ୍ରମଶଃ ସବୁ ଶ୍ରେଣୀର ଲୋକଙ୍କର ବିଶ୍ୱାସ ଭାଜନ ହେଲେ । ଏପରିକି ସମସ୍ତେ ତାଙ୍କୁ ଭଲ ପାଇବାକୁ ଆରମ୍ଭ କଲେ । ଫଳରେ ଲୋକେ ତାଙ୍କର ନିର୍ଦ୍ଦେଶ ପାଳନ କରି ଶୃଙ୍ଖଳିତ ହେଲେ । ଗରିବଙ୍କର ଦୁଃଖ ଘୁଞ୍ଚାଇବାକୁ ପିସିଷ୍ଟ୍ରାଟସ୍ କେତେକ ନିର୍ଦ୍ଦିଷ୍ଟ ପଦକ୍ଷେପ ନେଇଥିଲେ । କରଭାର କମାଇ ଦେବା ଓ ନଗର ଛାଡ଼ି ପଳାଇଥିବା ଧନୀ ବ୍ୟକ୍ତିଙ୍କ ଜମି ଗରିବଙ୍କୁ ବାଣ୍ଟିଦେବା ପରି କାମ ତାଙ୍କର ସୁନାମ ବଢ଼ାଇଲା । ପିସିଷ୍ଟ୍ରାଟସ୍ ଥିଲେ ଖୁବ୍ ଉତ୍ସବ ପ୍ରିୟ । ତାଙ୍କ ଅମଳରେ ଏଥେନ୍ସର ପୁରପଲ୍ଲୀରେ ନାନା ପର୍ବପର୍ବାଣୀ ଆରମ୍ଭ ହେଲା । ପାନାଥିନେଇକ୍ ଉତ୍ସବ ଅଧିକ ଜାକଜମକରେ ଚାଲିଲା । ଏହା ଫଳରେ ସେ କେବଳ ଏଥେନ୍ସର ସମ୍ମାନ ବଢ଼ିଲା ସେତିକି ନୁହେଁ, ବିଦେଶୀ ପ୍ରତିଦ୍ୱନ୍ଦୀଙ୍କ ସମ୍ପର୍କରେ ଆସି ଏଥେନ୍ସୀୟ ଯୁବକଙ୍କ ମନରେ ନୂତନ ଉନ୍ମାଦନା



[ ଏଥେନ୍ସର ଗୋଟିଏ ଯୁଦ୍ଧ ଜାହାଜ । ଆଙ୍କିଛନ୍ତି ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀର ମହାନ୍ ଚିତ୍ରକାର ଏକ୍ସିକିଆନ୍ । ତାଙ୍କ ସମୟରୁ ଏଥେନ୍ସର ନୌଶକ୍ତି ଦୃଢ଼ ହୋଇ ପାରିଥିଲା । ]

ଖେଳଗଲା । ରାସ୍ତାଘାଟ, କୋଠାବାଡ଼ି ଓ ଅନେକ ଜନହିତକର କାର୍ଯ୍ୟ ଆରମ୍ଭ ହେଲା । ପିସିଷ୍ଟ୍ରାଟସ ଗରିବ, ବେକାରମାନଙ୍କୁ କାମ ଯୋଗାଇ ଦେଲେ । ତାଙ୍କ ଅମଳରେ ଅନ୍ୟ ନଗରମାନଙ୍କ ସହିତ ବୃଝାମଣା ବଢ଼ିଲା । ବାଣିଜ୍ୟର ଉନ୍ନତି ହେଲା । ନଗରକୁ ଯେତେ ଅଧିକ ଧନ ଆସିଲା ତାହା ମୁଷ୍ଟିମେୟ ଧନୀ ଲୋକଙ୍କ ହାତକୁ ଗୁଳିଗଲା ନାହିଁ । ପିସିଷ୍ଟ୍ରାଟସ୍‌ଙ୍କର ବ୍ୟକ୍ତିଗତ ଆଗ୍ରହ ଯୋଗୁ ତାଙ୍କ ଦରବାରରେ ବହୁ କବି, କଳାକାର ଜ୍ଞାନୀ ବ୍ୟକ୍ତି ଏକାଠି ହୋଇଥିଲେ । ତାଙ୍କଠାରୁ ଉତ୍ସାହ ପାଇବା ଦ୍ୱାରା ଗ୍ରୀକ୍ ନାଟକର ବିଶେଷ ଉନ୍ନତି ସାଧିତ ହୋଇଥିଲା । ହୋମର୍‌ଙ୍କର ମହାକାବ୍ୟ ଇଲିଆଡ୍ ଓ ଓଡ଼ିସିକୁ ଶୁଦ୍ଧ ଭାବେ ଲିପିବଦ୍ଧ କରିବାକୁ ସେ କବିମାନଙ୍କୁ ନେଇ ଗୋଟିଏ କମିଟି ଗଢ଼ିଥିଲେ । ଏହି କାବ୍ୟଦ୍ୱୟକୁ ସଂରକ୍ଷିତ କରି ଭବିଷ୍ୟତର ପୃଥିବୀକୁ ସେ ଉପହାର ଦେଇଛନ୍ତି ।

ମୋଟ ଉପରେ ଗୋଟିଏ ଦ୍ୱିତୀୟ ଶ୍ରେଣୀ ନଗରରୁ ଉନ୍ନୀତ ହୋଇ ସମୁଦାୟ ଗ୍ରୀସ୍‌ରେ ଏଥେନ୍‌ସ ତାଙ୍କର ଅମଳରେ ଗୋଟିଏ ପ୍ରଥମ ଶ୍ରେଣୀର ନଗର ଭାବେ ପରିଗଣିତ ହେଲା ।

ପିସିଷ୍ଟ୍ରାଟସ୍‌ଙ୍କର ଦୁଇ ପୁଅ । ତାଙ୍କ ଅନ୍ତେ କ୍ଷମତା ବଡ଼ ପୁଅ ହିପିଆସ୍‌ଙ୍କ ହାତକୁ ଆସିଲା । କଥାଟାକୁ ଅବଶ୍ୟ ଅନେକ ସ୍ୱାଧୀନଚେତା ନାଗରିକ ପସନ୍ଦ କଲେ ନାହିଁ । ତେବେ ପିତାଙ୍କ ପରି ହିପିଆସ୍ ଭଲ ଶାସନ କରିବାରୁ ତାଙ୍କ ବିରୁଦ୍ଧରେ କୌଣସି ବିଦ୍ରୋହ ହେଲା ନାହିଁ । ଗୋଟିଏ ଦୁର୍ଘଟଣା ଘଟି ନ ଥିଲେ ହିପିଆସ୍ ବହୁକାଳ ଶାସନ କରିଥାଆନ୍ତେ । କଥା ହେଉଛି ହିପିଆସ୍‌ଙ୍କ ସାନଭାଇ ହିପାର୍କସ ଗୋଟିଏ ପ୍ରେମ ବ୍ୟାପାରରେ ଜଡ଼ିତ ହୋଇ ପ୍ରାଣ ହରାଇଲେ । ଏହି ଘଟଣାକୁ କେନ୍ଦ୍ରକରି ଗଣ୍ଡଗୋଳ ଲାଗିବାରୁ ହିପିଆସ୍ ବିଚଳିତ ହୋଇ ନିର୍ମମ ଭାବେ ବିଦ୍ରୋହ ଦମନ କଲେ । ଉତ୍କଟ ଦାରିଦ୍ର୍ୟରୁ ମୁକ୍ତ ହୋଇ ଅବଚେତନରେ ସ୍ୱାଧୀନତାର ସ୍ୱାଦ ଖୋଜୁଥିବା ନଗରବାସୀ ସ୍ୱେଚ୍ଛାଚାରୀ ଶାସନ ବନ୍ଦ କରିବାକୁ ମେଣ୍ଟ ବାନ୍ଧିଲେ । ଏଇ ସୁଯୋଗରେ ଏଥେନ୍‌ସରୁ ନିର୍ବାସିତ ହୋଇଥିବା ଓ ପିସିଷ୍ଟ୍ରାଟସ୍‌ଙ୍କର ପୁରାତନ ଶତ୍ରୁ କ୍ଲିସ୍ଥିନିଜ୍ ସଦଳବଳେ ଏଥେନ୍‌ସରେ ପ୍ରବେଶ କଲେ ।

ଏଥେନ୍‌ସର ଗଣତନ୍ତ୍ର ସୁଦୃଢ଼ ହେବାପାଇଁ କ୍ଲିସ୍ଥିନିଜ୍‌ଙ୍କୁ ଅପେକ୍ଷା କରୁଥିଲା । ନିରଙ୍କୁଶ ଶାସନର ଉଗ୍ର ବିରୋଧୀ ଭାବେ ସେ କେତେକ ନୂତନ ନିୟମ ପ୍ରବର୍ତ୍ତନ କରିଥିଲେ ।

ସିନେଟ୍‌ର ସବୁ ଗୁରୁତ୍ୱପୂର୍ଣ୍ଣ ନଷ୍ଟତି ଆସେମ୍ବ୍ଲିରେ ପାଶ୍ ହେବାର ବ୍ୟବସ୍ଥା ରହିଲା । ଆସେମ୍ବ୍ଲିର ଶକ୍ତି ସାଧାରଣ ନାଗରିକଙ୍କର ଶକ୍ତି । ପୁଣି ଦରିଦ୍ରତମ ବ୍ୟକ୍ତିଟି ମଧ୍ୟ ଆସେମ୍ବ୍ଲିର ଆଲୋଚନାରେ ଭାଗ ନେବାର ଅଧିକାର ପାଇଲା । ସୋଲନ୍‌ଙ୍କ ସମୟରୁ ଆରମ୍ଭ ହୋଇଥିବା ଗଣତନ୍ତ୍ର ଅଳ୍ପକାଳ ମଧ୍ୟରେ ବେଶ୍ ଅଗ୍ରଗତି କରିଥିଲା ସେଥିରେ ସନ୍ଦେହ ନାହିଁ ।

ଅନତି ବିଳମ୍ବରେ ଏକ ମହାନ୍ ସଂସ୍କୃତିର ଜନନୀ ହେବାପାଇଁ କାଳ ଏଥେନ୍‌ସକୁ ପ୍ରସ୍ତୁତ କରାଇ ନେଉଥିଲା ।



# ଗ୍ରୀକ୍ ଉପନିବେଶଙ୍କର ଅବଦାନ

* ଉପନିବେଶଗୁଡ଼ିକରୁ ସଭ୍ୟତାର ଅଗ୍ନି ଓ ଆଲୋକ ମୂଳ ଭୂଖଣ୍ଡକୁ ଆସିଥିଲା ।
* ଆୟୋନିଆରେ ଗ୍ରୀକ୍ ଜ୍ଞାନ ବିଜ୍ଞାନର ଆଦ୍ୟ ଉନ୍ମେଷ ।
* ପ୍ରଥମ କବି ଆୟୋନିଆରୁ ଲିରିକ୍ କବିତାର ସ୍ୱର ଶୁଭିଲା ।
* ଲେସ୍‌ବୋସ୍‌ର ଅସାଧାରଣ ନାରୀକବି ସାଫୋ ଓ ପ୍ରତିଭାବାନ୍ କବି ଆଲ୍‌ସିଅସ୍‌ଙ୍କ କବିତା ସାରା ଗ୍ରୀସ୍‌ରେ କମ୍ପନ ସୃଷ୍ଟି କଲା ।

ଗ୍ରୀକ୍ ସଭ୍ୟତାର ବିକାଶ ଦିଗରେ ତାର ଉପନିବେଶଗୁଡ଼ିକର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ଥରକୁ ଥର ଯାଯାବର ଆକ୍ରମଣକାରୀଙ୍କ ଉପଦ୍ରବରେ ଗ୍ରୀସ୍‌ରେ ଯେଉଁ ବାସିନ୍ଦାମାନେ (ସେମାନଙ୍କ ପୂର୍ବପୁରୁଷମାନେ ଦିନେ ଆକ୍ରମଣକାରୀ ଭାବେ ଗ୍ରୀସ୍‌ରେ ପ୍ରବେଶ କରିଥିଲେ) ଜନ୍ମଭୂମିର ମାୟା କାଟି ବିଦେଶ ଭୂଇଁରେ ନୂଆ ବସତିମାନ ସ୍ଥାପନ କରିଥିଲେ, ସେଇସବୁ ନଗରରେ ଗ୍ରୀକ୍ ସଂସ୍କୃତିର ବୀଜ ଅଙ୍କୁରିତ ହେଲା । ଗ୍ରୀସ୍‌ର ପ୍ରଧାନ ଭୂଖଣ୍ଡର ନଗରଗୁଡ଼ିକ, ଏପରିକି ଏଥେନ୍‌ସ, ଗ୍ରୀକ୍ ସଂସ୍କୃତିର ଆଦି ସ୍ରଷ୍ଟା ନୁହନ୍ତି । ସୋଲନ୍‌ଙ୍କ ପରବର୍ତ୍ତୀ ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀର ଏଥେନ୍‌ସ ଅବଶ୍ୟ ଏକ ମହାନ୍ ସଂସ୍କୃତି-ସୌଧର ଭିତ୍ତିଭୂମି ହେବାପାଇଁ

ନୁସ୍ତ ହୋଇ ଯାଇଥିଲା । ଇତିହାସର ଏହିସବୁ ଗତିରେ ମୂଳ ଭୂଖଣ୍ଡ ସହିତ ଦୂର ଦୂରାନ୍ତର ଉପନିବେଶମାନଙ୍କର ସ୍ବଦେଶର ବନ୍ଧନ ଖ୍ରୀ.ପୂ. ୭ମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଦୃଢ଼ ହୋଇଥିଲା ଏବଂ ଭୂମଧ୍ୟ ସାଗରୀୟ ଅଞ୍ଚଳରେ ବିସ୍ତୃତ ହୋଇ ରହିଥିବା ଗ୍ରୀକ୍‌ମାନେ ଏକ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହେଲେ । ତା ପୂର୍ବରୁ ଅବଶ୍ୟ ଉପନିବେଶଗୁଡ଼ିକ ସଂସ୍କୃତି କ୍ଷେତ୍ରକୁ ସେମାନଙ୍କର ଦାନ ଦେଇ ସାରିଥିଲେ ।

ଖ୍ରୀ.ପୂ. ଦ୍ୱାଦଶ ଓ ଏକାଦଶ ଶତାବ୍ଦୀରେ ବିଦେଶୀ ଆକ୍ରମଣକାରୀମାନେ ଗ୍ରୀସ୍‌ରେ ପ୍ରବେଶ କରିବା ଆରମ୍ଭ କଲେ । ସେମାନେ ପ୍ରଥମେ ଗ୍ରୀସ୍‌ର ଉତ୍ତରାଞ୍ଚଳରେ ପ୍ରବେଶ କରିଥିବାରୁ ସେହି ଅଞ୍ଚଳ (ଥେସାଲି, ବିଓସିଆ ଓ ଇଟୋଲିଆ ପ୍ରଭୃତି ନଗର)ର ବାସିନ୍ଦା-ମାନେ ପ୍ରାଣ ବିକଳରେ ଇଜିଆନ୍ ସମୁଦ୍ର ଲଙ୍ଘନକରି ଟ୍ରୟ ପର୍ଯ୍ୟନ୍ତ ପଳାଇଥିଲେ । ଟ୍ରୟର ଆଖପାଖ ଅଞ୍ଚଳରେ ସେମାନେ ବାରୋଟି ନଗର ସ୍ଥାପନ କରିଥିଲେ । ଏହି ବାରୋଟି ନଗର ଇଓଲିଆନ୍ ଲିଗ୍ ନାମରେ ପରିଚିତ । ଦ୍ୱିତୀୟ ଛେକରେ ଡୋରିଆନ୍‌ଙ୍କ ଆକ୍ରମଣ ସମୟରେ ପିଲୋପୋନେସିଅସ୍‌ରୁ ହଜାର ହଜାର ମାଇସିନିଆନ୍ ଓ ଆକିଆନ୍ ପଳାଇ କେତେକ ଆଟିକାରେ ରହିଗଲେ ଓ ଅନେକ ଇଜିଆନ୍ ସାଗରରେ ପ୍ରବେଶକରି ସାଇକ୍ଲାଡ଼ିଜ୍ ଦ୍ୱୀପଗୁଡ଼ିକରେ ଘର ବାନ୍ଧିଲେ । କେତେକ ଆହୁରି ଦୂରକୁ ବଢ଼ି ଏସିଆ ମାଇନର୍ (ବର୍ତ୍ତମାନର ତୁର୍କୀ ଉପକୂଳ)ରେ ନଗରମାନ ପ୍ରତିଷ୍ଠା କଲେ । ଏସିଆ ମାଇନର୍‌ର ବାରୋଟି ବଶିଷ୍ଟ ଆୟୋନୀୟ ନଗରକୁ ନେଇ ଗୋଟିଏ ଲିଗ୍ ଗଢ଼ା ଯାଇଥିଲା । ପିଲୋପୋନେସିଅସ୍‌ରେ ଲୋକସଂଖ୍ୟା ମାତ୍ରାଧିକ ଭାବେ ବଢ଼ିଯିବାରୁ ତୃତୀୟ ଛେକରେ ଅନେକ ଡୋରିଆନ୍ କ୍ରିଟ୍ ଓ ସିରନ୍‌କୁ ଉଠି ଯାଇଥିଲେ । ବାଟରେ କେତେକ ଡୋରିଆନ୍ ଗୋଟିଏ ଗୋଟିଏ ସାଇକ୍ଲାଇଡ ଦ୍ୱୀପରେ ମଧ୍ୟ ରହିଗଲେ । ଚତୁର୍ଥ ଛେକରେ ଗ୍ରୀସ୍‌ର ସବୁ ଅଞ୍ଚଳରୁ ବହୁଲୋକ ହେଲେସ୍‌ପଣ୍ଟ ପର୍ଯ୍ୟନ୍ତ ଉଠିଯାଇ ସେ ଅଞ୍ଚଳରେ ଶତାଧିକ ନଗର ସ୍ଥାପନ କଲେ । ପଞ୍ଚମଥର ସେମାନେ ପଶ୍ଚିମମୁହାଁ ହୋଇ ଇଟାଲି ଓ ସିସିଲିରେ ପହଞ୍ଚିଥିଲେ ।

ପ୍ରଧାନତଃ ଏସିଆ ମାଇନର୍‌ର ସଂସ୍କୃତି ସମୃଦ୍ଧ ଆୟୋନୀୟ ନଗରମାନଙ୍କରୁ ସଂସ୍କୃତିର ଧାରା ଏଥେନ୍ସ ଆଡ଼କୁ ବହିଥିଲା । ତେବେ ସିଓସ୍ (Ceos) ପରି କ୍ଷୁଦ୍ର ସାଇକ୍ଲାଇଡ଼ ଦ୍ୱୀପର ମଧ୍ୟ ଅବଦାନ ରହିଛି । ପିସିଷ୍ଟ୍ରାଟସ୍‌ଙ୍କ ପୁତ୍ର ହିପାର୍‌ଚସ୍ ସିଓସ୍‌ର

ବିଖ୍ୟାତ କବି ସାଇମୋନିଡ଼ିଜ୍ (Simonides)ଙ୍କୁ ଏଥେନ୍‌ସର ରାଜ ଦରବାରକୁ ନିମନ୍ତ୍ରଣ କରି ନେଇଥିଲେ । ତାଙ୍କ ସମସାମୟିକ କାଳର ସର୍ବଶ୍ରେଷ୍ଠ କବି ଭାବେ ସାଇମୋନିଡ଼ିଜ୍ ସାରା ଗ୍ରୀସ୍‌ରେ ଖ୍ୟାତି ଲାଭ କରିଥିଲେ । ଏତେ ବଡ଼ କବିଙ୍କୁ ଜନ୍ମ ଦେଇଥିବା ସିଓସ୍ ସମ୍ବନ୍ଧରେ ପ୍ରଥମ ଶତାବ୍ଦୀର ଦୁଇଜଣ ଖ୍ୟାତନାମା ଐତିହାସିକ ପ୍ଲୁଟାର୍କ (Plutarch) ଏହି ନଗରର ଗୋଟିଏ ବିଚିତ୍ର ନିୟମ କଥା କହିଛନ୍ତି । ଖାଦ୍ୟାଭାବ ସମସ୍ୟାର ସମାଧାନ ଉଦ୍ଦେଶ୍ୟରେ ଷାଠିଏ ବର୍ଷ ବୟସରେ ପହଞ୍ଚିଥିବା ଲୋକଙ୍କୁ ହେମ୍‌ଲକ୍ ବିଷ ପାନ କରି ମରିବାକୁ ହେଉଥିଲା । ଉଭୟେ ପୁଣି କହନ୍ତି ଯେ ସାତଶହ ବର୍ଷ ଭିତରେ ସିଓସ୍‌ରେ ଗୋଟିଏ ହେଲେ ବି ବ୍ୟଭିଚାରର ବା ପ୍ରେମଜନିତ ଘଟଣା ଘଟି ନ ଥିଲା । କବିଏ ବରଂ ଷାଠିଏ ବର୍ଷରେ ବିଷ ଖାଇବା କଥାଟି ଗ୍ରହଣ କରିପିବେ କିନ୍ତୁ ସାତଶହ ବର୍ଷ ଧରି ପରକୀୟା ପ୍ରବେଶ କରି ନ ଥିବା ନଗରର ରୁଦ୍ଧ ବାତାବରଣ ସେମାନଙ୍କର ଅସହ୍ୟ ହେବା ସ୍ୱାଭାବିକ୍ । ଛତିଶ ବର୍ଷ ବୟସ ବେଳକୁ ସାଇମୋନିଡ଼ିଜ୍ ସାରା ଗ୍ରୀସ୍‌ରେ ପ୍ରସିଦ୍ଧି ଲାଭ କରିଥିଲେ ଓ ହୁଏତ ଉପରୋକ୍ତ ଦୁଇଟି କାରଣରୁ ସିଓସ୍ ପରିତ୍ୟାଗ କରିବାକୁ ସେ ସ୍ଥିର କରିଥିଲେ ।

ସାଇମୋନିଡ଼ିଜ୍ ଯେପରି ବଡ଼ କବି, ତାଙ୍କର ବ୍ୟକ୍ତିତ୍ୱ ସେହିପରି ଚିତ୍ତାକର୍ଷକ ଏବଂ ଜୀବନ ଘଟଣା ବହୁଳ । ସେ ଗ୍ରୀସ୍‌ର ପ୍ରଥମ ବିଶିଷ୍ଟ କବି ଯିଏ କବିତାପାଇଁ ଅର୍ଥ ଦାବୀ କଲେ । ଏଥିପାଇଁ ଯେ ଯେଉଁ କାରଣ ବାଢ଼ିଲେ ତାହା ବଡ଼ ଯୁକ୍ତିଯୁକ୍ତ । କାରଣଟି ହେଉଛି, କବିଙ୍କୁ ମଧ୍ୟ ଭୋକ ହୁଏ । ତେବେ ସାଇମୋନିଡ଼ିଜ୍ ଅର୍ଥଲୋଭୀ ଥିଲେ । ସାମନାରେ କିଛି ଟଙ୍କା ସୁନା ନ ଦେଖିଲେ ତାଙ୍କର ପ୍ରେରଣା ଆସୁ ନ ଥିଲା । ପାରସ୍ୟ ଯୁଦ୍ଧରେ ପ୍ରାଣ ଦେଇଥିବା ଅନେକ ବୀରଙ୍କର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ

ଗ୍ରୀସ୍‌ର ମହାନ କବି ସାଇମୋନିଡ଼ିଜ୍ ଗୋଟିଏ ଛୋଟ ଗ୍ରୀକ୍ ଉପନିବେଶରେ ଜନ୍ମ ହୋଇଥିଲେ ।

ସେ ବହୁ କବିତା (ନିଶ୍ଚିତ ଭାବେ ଯେଉଁ ନଗରର ବୀର ସେହି ନଗରରୁ ଅର୍ଥ ପାଇ) ଲେଖିଛନ୍ତି । ସାଇମୋନିଡ଼ିଜ୍ ଆପାତତଃ ଏହିପରି ଏକ ବ୍ୟକ୍ତିତ୍ୱ ହେଲେ ମଧ୍ୟ ତାଙ୍କ କବିତାରେ ଜୀବନର ଗଭୀର ଦୁଃଖ କ୍ଲେଶ ରୂପ ପାଇଛି । ବୃଦ୍ଧ କାଳରେ ସାଇମୋନିଡ଼ିଜ୍ ସିରାକ୍ୟୁଜ୍‌ର ନିରଙ୍କୁଶ ଶାସକ ହିରନ୍‌ଙ୍କ ଦରବାରରେ ଥିଲେ । ଈଶ୍ୱରଙ୍କ ଗୁଣ ନିର୍ଦ୍ଦିଷ୍ଟ ଭାବେ ବର୍ଣ୍ଣନା କରିବାକୁ ଥରେ ହିରନ୍ ତାଙ୍କୁ କହିଥିଲେ । ଏଥିପାଇଁ ସାଇମୋନିଡ଼ିଜ୍

ପ୍ରଥମେ ଗୋଟିଏ ଦିନ, ତା ପରେ ଦୁଇ ଦିନ, ପୁଣି ଚାରିଦିନ ସମୟ ନେଲେ । କିନ୍ତୁ ଧରାଛୁଆଁ ନ ଦେବାରୁ ହିରନ୍ ଦିନେ ତାଙ୍କ ପ୍ରଶ୍ନର ଉତ୍ତର ଦାବୀ କଲେ । ସାଇମୋନିଡ଼ିଜ୍ ତାଙ୍କର ଅସହାୟତା ପ୍ରକାଶ କରି କହିଥିଲେ, ଈଶ୍ୱରଙ୍କ ସମ୍ବନ୍ଧରେ ସେ ଯେତେ ଅଧିକ ଭାବୁଛନ୍ତି, ଈଶ୍ୱର ସେତେ ଅସ୍ପଷ୍ଟ ହୋଇଯାଉଛନ୍ତି ।

ଆଉ ଏକ ସାଇକ୍ଲାଇଡ଼ ଦ୍ୱୀପ ସାଇରୋସ୍ ଦାର୍ଶନିକ ଫିରସାଇଡ୍‌ସଙ୍କ ଜନ୍ମସ୍ଥାନ । ପିଥାଗୋରସ୍‌ଙ୍କ ଶିକ୍ଷାଗୁରୁ ଭାବେ ସେ ପ୍ରସିଦ୍ଧ । ଦର୍ଶନଗ୍ରନ୍ଥ ଗଦ୍ୟରେ ଲେଖିବାରେ ଫିରସାଇଡ଼୍‌ସ ପ୍ରଥମ । ଡେଲୋସ୍ ଦ୍ୱୀପଟି ଆପୋଲୋ ଦେବଙ୍କର ଜନ୍ମସ୍ଥାନ ରୂପେ ପ୍ରସିଦ୍ଧ । ଏଥେନ୍‌ସର ଜଣେ ରାଷ୍ଟ୍ରଦୂତ ଆପୋଲୋ ଦେବଙ୍କର ଜନ୍ମୋତ୍ସବରେ ଯୋଗ ଦେବାପାଇଁ ପ୍ରତିବର୍ଷ ଡେଲୋସ୍ ଯାଉଥିଲେ । ତାଙ୍କର ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ଏଥେନ୍‌ସରେ କୌଣସି ମୃତ୍ୟୁଦଣ୍ଡ କାର୍ଯ୍ୟକାରୀ ହେଉ ନ ଥିଲା । ସକ୍ରେଟିସ୍ ମୃତ୍ୟୁଦଣ୍ଡ ପାଇଲା ବେଳକୁ ଏଥେନ୍‌ସର ରାଷ୍ଟ୍ରଦୂତ ଡେଲୋସ ଯାତ୍ରା କରିଥାନ୍ତି । ଏହି କାରଣରୁ ଦଣ୍ଡିତ ହେଲାପରେ ସକ୍ରେଟିସ୍ କିଛିକାଳ ଜେଲ୍‌ରେ ରହିଲେ । ପାରସ୍ୟକୁ ପରାଜିତ କଲା ପରେ ଏଥେନ୍‌ସ ଓ ତାର ଆୟୋନୀୟ ମିତ୍ର ରାଷ୍ଟ୍ରଙ୍କର ସମ୍ପତ୍ତି ଡେଲୋସ୍‌ର ଆପୋଲୋଙ୍କ ମନ୍ଦିରରେ ଜମା ରହୁଥିଲା ।

ଡେଲୋସ୍ ଆକାରରେ କ୍ଷୁଦ୍ରତମ ସାଇକ୍ଲାଇଡ ଦ୍ୱୀପ । ପଶ୍ଚିମରେ ଅବସ୍ଥିତ ପାରୋସ୍ ଦ୍ୱୀପଟି ମାର୍ବଲ୍‌ରେ ଗଢ଼ା କହିଲେ ଅତ୍ୟୁକ୍ତି ହେବନାହିଁ । ଲୋକେ ମାର୍ବଲ ପଥରରେ ଘର ତିଆରି କରୁଥିଲେ । ଗ୍ରୀସ୍‌ର ବିଖ୍ୟାତ କଳାକାର ପ୍ରାକ୍‌ସିଟିଲିଜ୍ (ତାଙ୍କ ବିଷୟରେ ପରେ ଆଲୋଚନା ହେବ) ପାରୋସ୍‌ରେ ମାର୍ବଲ ଦେଖି ଖୋଦେଇ ମୂର୍ତ୍ତି ଗଢ଼ିବା ପାଇଁ ମାର୍ବଲ ବ୍ୟବହାର କରିଥିଲେ । ଗ୍ରୀସ୍‌ର ଜଣେ ମହାନ୍ ଗୀତିକବି ଆର୍କିଲୋକସ୍‌ଙ୍କ ଜନ୍ମ ପାରୋସ୍‌ରେ । ଖ୍ରୀ.ପୂ. ଅଷ୍ଟମ ଶତାବ୍ଦୀର ଏହି କବି ଜଣେ ଦାସୀର ସନ୍ତାନ । ସେ ଜଣେ ଭଲ ସୈନିକ ଥିଲେ ଓ ଯୁଦ୍ଧରେ ଲଢ଼ି କିଛି ଆୟ କରିଥିଲେ । ଆର୍କିଲୋକସ୍ ନିଓବୁଲ୍ ନାମକ ଗୋଟିଏ ଝିଅର ପ୍ରେମରେ ପଡ଼ିଲେ । ଏହି ଝିଅର ବାପା ବଡ଼ ଧନୀ । ସେ କବିତାକୁ ଭଲ ପାଉଥିଲେ କିନ୍ତୁ ଦରିଦ୍ର କବିକୁ ନୁହେଁ । ପ୍ରେମିକାର ବାପା ପ୍ରତିବନ୍ଧକ ହେବାରୁ

ପାରୋସ୍‌ର କବି ଆର୍କିଲୋକସ୍‌ଙ୍କ ଖ୍ୟାତି କେବଳ ହୋମର୍‌ଙ୍କ ତଳକୁ । ସେ ଜଣେ ଦାସୀପୁତ୍ର ଥିଲେ ।

ଆର୍କଲୋକସ୍ଙ୍କ ପ୍ରେମ ସଫଳ ହୋଇ ପାରିଲା ନାହିଁ । ସେ ତାଙ୍କର ପ୍ରେମିକା, ପ୍ରେମିକାର ବାପା ଓ ଭଉଣୀଙ୍କୁ ଲକ୍ଷ୍ୟକରି ବ୍ୟଙ୍ଗ କବିତା ଲେଖିଲେ । ସେ କବିତା ଗୁଡ଼ିକ ଏପରି ତୀବ୍ର ଯେ ଶରବ୍ୟ ପ୍ରାଣୀ ତିନୋଟି ଆତ୍ମହତ୍ୟା କରିଥିଲେ ।

କବିତାରେ ବିଭିନ୍ନ ଛନ୍ଦର ଆବିଷ୍କାର ଆର୍କିଲୋକସ୍ଙ୍କର ଅଦ୍ଭୁତ ପ୍ରତିଭାର ପରିଚୟ ଦିଏ । ତାଙ୍କର ଷଟ୍‌ପଦୀ କବିତା ଗୁଡ଼ିକ ପରେ ଗ୍ରୀକ୍ ଟ୍ରାଜେଡ଼ିର ଗ୍ରନ୍ଥ ହୋଇଥିଲା । ଏହି ମହାନ କବିଙ୍କର ଅଧିକାଂଶ କବିତା ହଜିଯାଇଛି । ତଥାପି ଗ୍ରୀକ୍ ଭାଷା ମାଧ୍ୟମରେ ପାଶ୍ଚାତ୍ୟ କବିତାର ଛନ୍ଦ ସ୍ରଷ୍ଟା ଭାବେ ସମ୍ମାନିତ ।

ଅନ୍ୟ ନଗରମାନଙ୍କର ଅବଦାନ ଥିଲେ ମଧ୍ୟ ଗ୍ରୀକ୍ ସଂସ୍କୃତିର ଅଭିବୃଦ୍ଧି ଦିଗରେ ଆୟୋନୀୟ ନଗରଗୁଡ଼ିକର ଅବଦାନ ଅତୁଳନୀୟ ।

## ପ୍ରଧାନ ଆୟୋନୀୟ ନଗର ମିଲିଟସ୍ (Miletus) :

ଆୟୋନିଆ ସମୁଦ୍ର ଉପକୂଳରେ ପ୍ରାୟ ନବେ ମାଇଲ ଲମ୍ବ ଓ କୋଡ଼ିଏ ତିରିଶ ମାଇଲ ଓସାରର ଭୂଖଣ୍ଡଟିଏ ପ୍ରାଚୀନ କାଳରୁ ଆୟୋନିଆ ନାମରେ ପରିଚିତ । ଆୟୋନିଆ ସମ୍ପର୍କରେ ହିରୋଡୋଟସ୍ କହନ୍ତି, "ଏଭଳି ସୁନ୍ଦର ଜଳବାୟୁ ସାରା ପୃଥିବୀରେ କେଉଁଠି ନାହିଁ ।" ଅଧିକାଂଶ ଆୟୋନୀୟ ନଗର ନଦୀ ମୁହାଣରେ ଅବସ୍ଥିତ । ବାରୋଟି ଆୟୋନୀୟ ନଗର ମଧ୍ୟରେ ମିଲିଟସ୍ ପ୍ରଧାନ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର ମିଲିଟସ୍ ଗ୍ରୀସ୍‌ର ସବୁଠାରୁ ବିଭବଶାଳୀ ନଗର ଥିଲା ।

ଖ୍ରୀ: ପୂ: ୧୦୦୦ ବେଳକୁ ଗ୍ରୀକ୍‌ମାନେ ଆଟିକାରୁ ମିଲିଟସ୍ ଉଠି ଆସିଥିଲେ । ସେତେବେଳେ ଆୟୋନିଆରେ ପ୍ରାଚୀନ ଇଜିଆନ୍ ସଭ୍ୟତାର କାଳ ସରି ଆସୁଥାଏ । ତଥାପି ଏଇ ଅସ୍ତମିତ ସଭ୍ୟତାରୁ ଗ୍ରୀକ୍‌ମାନେ କିଛି ମୂଲ୍ୟବାନ ଉପାଦାନ ସଂଗ୍ରହ କରି-ନେଲେ । ଏକ ନୂତନ ସଭ୍ୟତା ସୃଷ୍ଟି କରିବାରେ ଏହା ସମ୍ବଳ ହୋଇଥିଲା । ଆଟିକା ଛାଡ଼ିବା ବେଳେ ଗ୍ରୀକ୍‌ଙ୍କ ସାଙ୍ଗରେ କେହି ନାରୀ ନ ଥିଲେ । ମିଲିଟସ୍‌ର ପୁରୁଷମାନଙ୍କୁ ହତ୍ୟାକରି ସେମାନେ ବିଧବା ଓ ମିଲିଟସ୍‌ର ଯୁବତୀମାନଙ୍କୁ ବିବାହ କଲେ । ରକ୍ତର ମିଳନରୁ ଦୁଇ ସଂସ୍କୃତିର ମିଳନ ଘଟିଲା ।

ଛଅ ଖ୍ଟର ଶତାବ୍ଦୀ ମଧ୍ୟରେ ମିଲେଟସ୍ ଏକ ସମୃଦ୍ଧ ନଗରରେ ପରିଣତ ହେଲା । ବାଣିଜ୍ୟରେ ମନଦେଇ ମିଲେଟସୀୟ ମାନେ ଫିନିସୀୟଙ୍କ ଠାରୁ ବାଣିଜ୍ୟ ବୃଦ୍ଧି ଶିଖିଲେ । ଅଳ୍ପ କାଳରେ ଇଜିପ୍ଟାନ୍‌ରୁ ଫିନିସୀୟ ବଣିକମାନଙ୍କୁ ସେମାନେ ତଡ଼ି ଦେଇଥିଲେ । ମିଶର, ଇଟାଲୀ ପରି ଦୂର ଦୂରାନ୍ତର ସ୍ଥାନରେ ସେମାନଙ୍କର ବାଣିଜ୍ୟ ଉପନିବେଶମାନ ସ୍ଥାପିତ ହେଲା । କେବଳ ମିଲେଟସ୍‌ର ଅଶୀଟି ଏଭଳି ଉପନିବେଶ ଥିଲା । ଧନଧାନ୍ୟରେ ଭରା ମିଲେଟସ୍ ନଗରୀରେ ଶଙ୍ଖ ମଲ୍ ମଲ୍ ପଥରର ଅତି ସୁନ୍ଦର ଅଟ୍ଟାଳିକାମାନ ମୁଣ୍ଡ ଟେକିଲା ।



[ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀର ଆୟୋନୀୟ ଚିତ୍ର । ଏହି ଚିତ୍ରରେ ସେନ୍‌ଟରମାନେ କୁକୁରଙ୍କ ସାହାଯ୍ୟରେ ଶିକାର କରୁଛନ୍ତି । ସେନ୍‌ଟର ଅର୍ଦ୍ଧେକ ମନୁଷ୍ୟ ଓ ଅର୍ଦ୍ଧେକ ଅଶ୍ୱ ବିଶିଷ୍ଟ କାଳ୍ପନିକ ପ୍ରାଣୀ । ଚିତ୍ରଟିରେ ସେନ୍‌ଟରର ଲଳିତ ସୁନ୍ଦର ଜୀବନ୍ତ ରୂପ ଫୁଟିଛି ]

ମିଲେଟସ୍‌ର ଉଦ୍ଦୀପନାମୟ ପରିବେଶରୁ ପାଶ୍ଚାତ୍ୟ ଜଗତର ପ୍ରଥମ ଦର୍ଶନ ଓ ବିଜ୍ଞାନ ଜନ୍ମନେଲା । ବାଣିଜ୍ୟ ସଂକ୍ରାନ୍ତରେ ଏହି ସ୍ଥାନକୁ ନାନା ଜାତିର, ନାନା ଦେଶର ଲୋକ ଆସୁଥିଲେ । ବିଭିନ୍ନ ଚିନ୍ତା, ବିଭିନ୍ନ ଚଳଣିର ସଂଘର୍ଷ, ବହୁ ମତାମତ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତାରୁ ବିଚାରର ଉଦୟ ଘଟିଲା । ମିଲେଟସୀୟ ବଣିକମାନେ ଲିଡ଼ିଆ, ବେବିଲୋନ୍, ଫିନିସ ଓ ମିଶରରୁ କେବଳ ପଣ୍ୟଦ୍ରବ୍ୟ ନୁହେଁ, ସଂସ୍କୃତିର ବିହନ ଧରି ଫେରୁଥିଲେ । ମିଶରର ଜ୍ୟାମିତି ଓ ବେବିଲୋନ୍‌ର ଜ୍ୟୋତିର୍ବିଜ୍ଞାନକୁ ମିଲେଟସ୍ ମାଧ୍ୟମରେ ଗ୍ରୀକ୍ ମାନସ

ଆହରଣ କଲ୍‌ । ବକାକ୍ଷଣା ସମ୍ବନ୍ଧ ଗଣିତ, ବଦେଶରେ ବାଣିଜ୍ୟ ସମ୍ବନ୍ଧ ଭୂଗୋଳ ଓ ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧରେ ଅଗ୍ରଗତି କଲ୍‌ ।

ପାଶ୍ଚାତ୍ୟ ଜଗତର ପ୍ରଥମ ଦାର୍ଶନିକ ଭାବେ ସୁପରିଚିତ ଥେଲିଜ୍‌ (ଖ୍ରୀ. ପୂ ୬୪୦— ଖ୍ରୀ. ପୂ ୫୪୬)ଙ୍କର ଜନ୍ମ ମିଲିଟସ୍‌ରେ । ସେ ମିଶର ଓ ଆଖପାଖ ପ୍ରାଚ୍ୟ ଅଞ୍ଚଳରେ ଦୀର୍ଘକାଳ କଟାଇଥିଲେ । ପ୍ରାଚ୍ୟରୁ ପାଶ୍ଚାତ୍ୟକୁ ସଭ୍ୟତାର ମଶାଲ ବହନ କରି ନେବାରେ ସେ ଅଗ୍ରଣୀ । କଥିତ ଅଛି, ଯେଉଁକବେଳେ ମଣିଷର ଉଚ୍ଚତା ସମ୍ବନ୍ଧ ତା ଛାଇର ଦୈର୍ଘ୍ୟ ସମାନ ହୋଇଯାଏ, ଠିକ୍‌ ସେତିକବେଳେ ପିରାମିଡ୍‌ର ଛାଇକୁ ମାପି ଥେଲିଜ୍‌ ପିରାମିଡ୍‌ର ଉଚ୍ଚତା ନିର୍ଣ୍ଣୟ କରିଥିଲେ । ତାଙ୍କ ସମୟରୁ ଜ୍ୟାମିତି ବ୍ୟାବହାରିକ ମାପଚୁପ୍‌ ଜ୍ଞାନ ଭିତରେ ସୀମାବଦ୍ଧ ନ ରହି ଏକ ତାତ୍ତ୍ୱିକ ବିଜ୍ଞାନରେ ପରିଣତ ହେଲା । ପରବର୍ତ୍ତୀ କାଳରେ ଇଉକ୍ଲିଡ୍‌ ସଂଗ୍ରହ କରିଥିବା ଜ୍ୟାମିତିର ଅନେକ ଉପପାଦ୍ୟର ସ୍ରଷ୍ଟା ହେଉଛନ୍ତି ଥେଲିଜ୍‌ । ଥେଲିଜ୍‌ ହିଁ ଜ୍ୟୋତିର୍ବିଜ୍ଞାନକୁ ଜ୍ୟୋତିଷଠାରୁ ଛିନ୍ନ କରି ତାକୁ ଏକ ସ୍ୱତନ୍ତ୍ର ବିଜ୍ଞାନର ମର୍ଯ୍ୟାଦା ଦେଲେ । ଆଗରୁ ସୂର୍ଯ୍ୟଗ୍ରହଣର ଦିନ ଘୋଷଣା କରି ସେ ନଗରବାସୀଙ୍କୁ ଚମତ୍କୃତ କରି ଦେଇଥିଲେ ।

ପାଶ୍ଚାତ୍ୟର ପ୍ରଥମ ଦାର୍ଶନିକ ଭାବେ ପ୍ରସିଦ୍ଧ ଥେଲିଜ୍‌ଙ୍କ ଜନ୍ମଭୂମି ମିଲିଟସ୍‌ ।

ଥେଲିଜ୍‌ କହନ୍ତି, ସକଳ ବସ୍ତୁ ଜଳରୁ ଜାତ । ଜଳ ହେଉଛି ମୂଳବସ୍ତୁ । ଅନ୍ୟ ସବୁ ଜଳରୁ ସୃଷ୍ଟି । ଏ ସିଦ୍ଧାନ୍ତର ଭୁଲ୍‌ ଠିକ୍‌ ବିଚାର କରିବା ଅବାନ୍ତର । ଅସଲ କଥା ହେଉଛି, ଥେଲିଜ୍‌ ଯେଉଁ ପ୍ରଶ୍ନ ଉତ୍‌ଥାପନ କଲେ ତାହା ଯୁଗ ଯୁଗ ଧରି ଦାର୍ଶନିକ ଓ ବୈଜ୍ଞାନିକଙ୍କୁ ଧାଇଁ ଆସୁଛି । ଅସଂଖ୍ୟ ପ୍ରକାର ବସ୍ତୁଙ୍କ ମଧ୍ୟରେ କିଛି ସାଧାରଣ ଉପାଦାନ ଅଛି କି ? ଥେଲିଜ୍‌ ଏହି ପ୍ରଶ୍ନ ଉଠାଇଲେ । କହିବା ବାହୁଲ୍ୟ, ଏ ପ୍ରଶ୍ନର ଉତ୍ତର ଏ ଯାବତ୍‌ ମିଳିନାହିଁ । ଉଦ୍‌ଜାନକୁ ବିଶ୍ୱର ମୂଳବସ୍ତୁ ଧରିବା ବିଜ୍ଞାନ ସମ୍ମତ । ଜଳର ଦୁଇ ଉପାଦାନ ମଧ୍ୟରୁ ଉଦ୍‌ଜାନ ଗୋଟିଏ । ସେ ଦୃଷ୍ଟିରୁ ଭାବିଲେ ଥେଲିଜ୍‌ଙ୍କ ଅନୁମାନଟି ସତ୍ୟଠାରୁ ଖୁବ୍‌ ଦୂରରେ ନୁହେଁ । ଜଗତର ଏକ ମୌଳିକ ଉପାଦାନ ଖୋଜି ଥେଲିଜ୍‌ ଆଗାମୀ ଯୁଗର ଦାର୍ଶନିକ ବିଜ୍ଞାନୀଙ୍କର ଚିନ୍ତାର ଦିଗ ସ୍ଥିର କରିଦେଇଥିଲେ ।

ପାର୍ଥିବ ଜଗତ ଥେଲିଜ୍‌ଙ୍କର ଚିନ୍ତାକୁ ଅଧିକାର କରିଥିଲେ ମଧ୍ୟ ଆଧୁନିକ ଅର୍ଥରେ ସେ ବସ୍ତୁବାଦୀ ନୁହନ୍ତି । ସେ କହିଥିଲେ, କେବଳ ମନୁଷ୍ୟର ନୁହେଁ, ଜୀବଜନ୍ତୁ, ବୃକ୍ଷ ଓ

ଧାତୁର ଅବିନାଶୀ 'ଆତ୍ମା' ରହିଛି । ବୃକ୍ଷ ଓ ଧାତୁରେ ଆତ୍ମା ଦେଖିବା କଥାଟି ଜଗଦୀଶ ଚନ୍ଦ୍ର ବୋଷଙ୍କୁ ସ୍ମରଣ କରାଇ ଦିଏ । ଏପରି ଦୃଷ୍ଟିକୋଣ ଅତ୍ୟାଧୁନିକ ।

ବିଜ୍ଞାନର ଗବେଷଣାରେ ମଗ୍ନ ରହି ନିବେଳା ଜୀବନ ଯାପନ କରୁଥିଲେ ମଧ୍ୟ ନଗରର ଶାସନ ଓ ସମସ୍ୟା ପ୍ରତି ଥେଲିଜ୍ ଉଦାସୀନ ନ ଥିଲେ । ମିଲିଟସ୍‌ର ନିରଙ୍କୁଶ ଶାସକ ଥ୍ରାସିବୁଲସଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ଲିଡ଼ିଆ ଓ ପାରସ୍ୟକୁ ମିଳିତ ଭାବେ ପ୍ରତିରୋଧ କରିବାପାଇଁ ସେ ସବୁ ଆୟୋନିଅ ନଗରମାନଙ୍କୁ ଆହ୍ୱାନ ଦେଇଥିଲେ । ଗ୍ରୀକ୍‌ମାନେ ଗ୍ରୀସ୍‌ର ସାତଜଣ ବିଜ୍ଞ ବ୍ୟକ୍ତିଙ୍କ ମଧ୍ୟରେ ଥେଲିଜ୍‌ଙ୍କୁ ପ୍ରଥମ ସ୍ଥାନ ଦେଉଥିଲେ । କେଉଁ କଥାଟି ସବୁଠାରୁ କଷ୍ଟ ? —ପ୍ରଶ୍ନର ଉତ୍ତରରେ ସେ କହିଥିଲେ, "ଆପଣାକୁ ଚିହ୍ନିବା ।" ଉପଦେଶ ଦେବା ସବୁଠାରୁ ସହଜ ।

ବୃଦ୍ଧ କାଳରେ ଗୋଟିଏ କୁସ୍ତି ପ୍ରତିଯୋଗିତା ଦେଖିବାକୁ ଯାଇ କ୍ଳାନ୍ତିକର ଯାତ୍ରା, ଦୁର୍ବଳତା ଓ ଅତ୍ୟଧିକ ଉତ୍ତାପ ଯୋଗୁଁ ତାଙ୍କର ମୃତ୍ୟୁ ଘଟିଥିଲା ।

Physiologia ଅର୍ଥାତ୍ ପ୍ରକୃତି ସମ୍ବନ୍ଧୀୟ ବିଜ୍ଞାନ (Physics) ବିଷୟରେ ଗ୍ରନ୍ଥ ରଚନା କରିବାରେ ଥେଲିଜ୍ ପ୍ରଥମ ବ୍ୟକ୍ତି । ତାଙ୍କର ଶିଷ୍ୟ ଆନାକ୍‌ସିମାଣ୍ଡର (ଖ୍ରୀ.ପୂ ୬୧୧-୫୪୭) ଥେଲିଜ୍‌ଙ୍କ ଚିନ୍ତାକୁ ଆଗେଇ ନେଇଥିଲେ । ତାଙ୍କ ମତରେ ବିଶ୍ୱର ମୂଳବସ୍ତୁ ଜଳ, ବାୟୁ, ଅଗ୍ନି ବା କୌଣସି ନିର୍ଦ୍ଦିଷ୍ଟ ବସ୍ତୁ ନୁହେଁ । ବିଶ୍ୱର ଏକ ମୂଳବସ୍ତୁ ଅଛି; କିନ୍ତୁ ତାହା ଅନିର୍ଦ୍ଦିଷ୍ଟ ଓ ଅନାମ । ଆନାକ୍‌ସିମାଣ୍ଡରଙ୍କର ଯୁକ୍ତି ହେଉଛି ବିଶ୍ୱରେ ଅନେକ ବିପରୀତ ଧର୍ମୀ ବସ୍ତୁ ଅଛନ୍ତି । ଗୋଟିଏ ନିର୍ଦ୍ଦିଷ୍ଟ ବସ୍ତୁରୁ ତାର ବିପରୀତଧର୍ମୀ ବସ୍ତୁମାନ ସୃଷ୍ଟି ହୋଇ ପାରିବେ ନାହିଁ । ଉଦାହରଣସ୍ୱରୂପ, ଜଳରୁ ଅଗ୍ନି, ଉତ୍ତାପ ସୃଷ୍ଟି ହେବା ସମ୍ଭବ ନୁହେଁ ।

ଦ୍ୱିତୀୟ ଦାର୍ଶନିକ ଆନାକ୍‌ସିମାଣ୍ଡର ମଧ୍ୟ ବିଶ୍ୱର ମୂଳବସ୍ତୁ ସନ୍ଧାନ କରିଥିଲେ । ତାଙ୍କ ମତରେ ବିଶ୍ୱର ମୂଳବସ୍ତୁ ଅନିର୍ଦ୍ଦିଷ୍ଟ ଓ ନିର୍ଗୁଣ ।

ବିଶ୍ୱ ଜଳ ପରିବର୍ତ୍ତେ ଏକ ଅଜ୍ଞାତ, ଅନାମିତ ଓ ଅକ୍ଷୟ ପଦାର୍ଥରୁ ସୃଷ୍ଟି ବୋଲି ଧାରଣା କରିବା ଥେଲିଜ୍‌ଙ୍କ ଚିନ୍ତାଠାରୁ ଉନ୍ନତତର । ଏକ ନିର୍ଗୁଣ, ଅନନ୍ତ ଓ ଅକ୍ଷୟ ବସ୍ତୁରୁ କେବଳ ବିଭିନ୍ନ ବସ୍ତୁମାନେ ସୃଷ୍ଟି ହେଉନାହାନ୍ତି, ନିରବଚ୍ଛିନ୍ନଭାବେ ଗୋଟିକ ପରେ ଗୋଟିଏ ବ୍ରହ୍ମାଣ୍ଡ ସୃଷ୍ଟି ହେଉଛି । ଗୋଟିଏ ବ୍ରହ୍ମାଣ୍ଡର ମୃତ୍ୟୁ ପରେ ନୂଆ ବ୍ରହ୍ମାଣ୍ଡର ଜନ୍ମ ହୁଏ ।

ପୃଥିବୀର ଆକାର ନଳପର ବୋଲି ଆନାକ୍ସିମାଣ୍ଡର ଭାବୁଥିଲେ । ବିଶ୍ୱଜଗତର କେନ୍ଦ୍ରରେ ପୃଥିବୀ ଝୁଲି ରହିଛି । ସମ ଦୂରରେ ଅବସ୍ଥିତ ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ରଗଣ ପୃଥିବୀକୁ ବୃତ୍ତାକାରରେ ପରିଭ୍ରମଣ କରୁଛନ୍ତି ।

ଆନାକ୍ସିମାଣ୍ଡର ଜୀବଜଗତର ଏକ ବିବର୍ତ୍ତନ ତତ୍ତ୍ୱରେ ବିଶ୍ୱାସ କରୁଥିଲେ । ପୃଥିବୀ ପ୍ରଥମରୁ ଜଳମଗ୍ନ ଥିଲା ଓ ସୂର୍ଯ୍ୟତାପରେ ଶୁଖିବା ଫଳରେ ସ୍ଥଳଭାଗ ସୃଷ୍ଟି ହେଲା । ଆଦ୍ୟରୁ କେବଳ ମାଛ ଓ ଜଳଜନ୍ତୁମାନେ ଥିଲେ । ପାଣି ଶୁଖି ଯିବାରୁ କେତେକ ଜଳଜନ୍ତୁ ସ୍ଥଳଚର ଜୀବ ରୂପ ଧାରଣ କଲେ । ପ୍ରଥମରୁ ମଣିଷ ମଧ୍ୟ ମାଛ ଥିଲା ।

ଆନକ୍ସିମିନାଜ୍ (Anaximenes) ମିଲେଟସ୍‌ର ତୃତୀୟ ବିଶିଷ୍ଟ ଦାର୍ଶନିକ । ସେ ଆନାକ୍ସିମାଣ୍ଡରଙ୍କର ଶିଷ୍ୟ । ତାଙ୍କ ମତରେ ବିଶ୍ୱର ମୂଳ ଉପାଦାନ ହେଉଛି ବାୟୁ । ବାୟୁ ଘନୀଭୂତ ଓ ପାତଳା ହେବା ଫଳରେ ବିଭିନ୍ନ ବସ୍ତୁ ସୃଷ୍ଟି ହୋଇଛନ୍ତି । ବାୟୁ ପାତଳା ହୋଇ ଅଗ୍ନି ଏବଂ ଅଧିକରୁ ଅଧିକ ଘନୀଭୂତ ହୋଇ ମେଘ, ଜଳ, କ୍ଷିତି ଓ ଶିଳା ସୃଷ୍ଟି କରିଛି ।

ମିଲେଟସ୍‌ରେ କେବଳ ଆଦ୍ୟ ଦର୍ଶନ ନୁହେଁ, ସର୍ବପ୍ରାଚୀନ ଗଦ୍ୟର ଉନ୍ମେଷ ଘଟିଥିଲା । ସବୁ ଭାଷାରେ ପ୍ରଥମେ କବିତା ଓ ତା ପରେ ଗଦ୍ୟର ସୃଷ୍ଟି । ପଦ୍ୟ ପ୍ରଧାନତଃ ଭାବ, ଉପଲବ୍ଧି ଓ ବିଶ୍ୱାସର ବାହକ । ଗଦ୍ୟ ବିଶ୍ୱାସମୁକ୍ତ ଜ୍ଞାନ, ମନନ ଓ ଚିନ୍ତନର ସ୍ୱର । ଗୋଟିଏ ଜାତିର ଚିନ୍ତା ପାକଳ ନ ହେବା ପର୍ଯ୍ୟନ୍ତ ଗଦ୍ୟର ଉନ୍ମେଷ ବା ବିକାଶ ସମ୍ଭବ ହୁଏ ନାହିଁ । ଜିନୋଫେନ୍‌ସ, ପାର୍ମେନାଇଡ୍‌ଜ୍ ଓ ଏମ୍ପିଡୋକ୍‌ଲ୍‌ସଙ୍କ ପରି ଗ୍ରୀକ୍-ଦର୍ଶନର ଆଦ୍ୟ ଯୁଗର ଦାର୍ଶନିକମାନେ କବିତା ଆକାରରେ ସେମାନଙ୍କର ଚିନ୍ତାକୁ ଲିପିବଦ୍ଧ କରିଥିଲେ । ତେଣୁ ମିଲେଟସ୍‌ରେ ଗଦ୍ୟ ରଚନାର ଆରମ୍ଭ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଇତିହାସକୁ ପ୍ରଥମକରି ଲିପିବଦ୍ଧ କରିବାର ଗୌରବ ମିଲେଟସର୍ ନଗରର ଇତିବୃତ୍ତି (chronicle) ଲେଖିବାର ଧାରା ଏହିଠାରୁ ଆରମ୍ଭ ହେଲା । ଗ୍ରୀକ୍‌ମାନେ ଇତିହାସ ଲେଖକମାନଙ୍କୁ (logographai) (ଅର୍ଥାତ୍ ବିଚାର ଭିତ୍ତିକ ରଚନା, logos-logic) କହୁଥିଲେ । କହିବା ବାହୁଲ୍ୟ, ସେମାନେ ଗଦ୍ୟ ଲେଖକ ।

ମିଲେଟସ୍‌ରେ ଉନ୍ନତ ଗଦ୍ୟ ରଚନାର ଧାରା ବିକାଶିତ ହେବାର ସମସ୍ତ ସମ୍ଭାବନା ଥିଲା । କିନ୍ତୁ ଅତି ସମ୍ପଦର ଯେଉଁ ବିପଦ ଅଛି ମିଲେଟସ୍ ସେଥିରେ ପଡ଼ିଗଲା । ଲୋକମାନେ

ବିଳାସୀ ହୋଇ ପଡ଼ିଲେ । ପରେ କ'ଣ ଘଟିଥାନ୍ତା କିଏ ଜାଣେ ? ମାତ୍ର ଅଳ୍ପକାଳ ମଧ୍ୟରେ ଖ୍ରୀ ପୂ ୫୪୦ ବେଳକୁ ମିଲ୍‌ଟସ୍ ପାରସ୍ୟ କବଳରେ ପଡ଼ିଲା । ସେହିଦିନୁ ମିଲଟସ୍‌ର ଭାଗ୍ୟ-ରବି ଚିରକାଳ ପାଇଁ ଅସ୍ତ ଗଲେ ।

## ସାମୋସ୍ :

ସାମୋସ୍ ହେଉଛି ଦ୍ୱିତୀୟ ବୃହତ୍ତମ ଆୟୋନୀୟ ଦ୍ୱୀପ । ଖ୍ରୀ:ପୂ ଷଷ୍ଠ ଶତାବ୍ଦୀର ତୃତୀୟ ଭାଗରେ ସୁଯୋଗ୍ୟ ଶାସକ ପଲିକ୍ରେଟସ୍‌ଙ୍କ ଅମଳରେ ସାମୋସ୍ ଉନ୍ନତିର ଶିଖରରେ ପହଞ୍ଚିଥିଲା ।

ଈଶପ୍‌ସ ଫେବଲ୍‌ସ ନାମରେ ଖ୍ୟାତ କାହାଣୀଗୁଡ଼ିକର କଥାକାର ଈଶପ୍ ସାମୋସ୍‌ରେ ବାସ କରୁଥିଲେ । ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀର ଆରମ୍ଭରେ ତାଙ୍କ କାହାଣୀଗୁଡ଼ିକର ସୃଷ୍ଟି । ଈଶପ ଫ୍ରିଂଜିଆର ଜଣେ ଦାସ । କିମ୍ବଦନ୍ତୀ କହେ, ମୁନିବ ଠାରୁ ମୁକ୍ତିପାଇ ଈଶପ୍ ବିଭିନ୍ନ ସ୍ଥାନ ଭ୍ରମଣ କରିଥିଲେ ଓ ସୋଲନ୍‌ଙ୍କୁ ଭେଟିଥିଲେ । ତାଙ୍କର କାହାଣୀଗୁଡ଼ିକ ଗ୍ରୀକ୍ ଜଗତରେ ସୁପରିଚିତ ଥିଲା । ଈଶପ୍‌ଙ୍କର ଅନେକ କାହାଣୀ ସକ୍ରେଟିସ୍ କବିତା ଆକାରରେ ଲେଖିଥିଲେ ବୋଲି ପ୍ଲୋଟାର୍କ କହନ୍ତି ।



[ପଶୁପକ୍ଷୀଙ୍କ ସମ୍ପର୍କରେ ପ୍ରଚଳିତ କାହାଣୀ-ଗୁଡ଼ିକର ସଂଗ୍ରାହକ ଓ ବିଶିଷ୍ଟ କଥକ ଈଶପ୍‌ଙ୍କର ଏକ ପାତ୍ରାଙ୍କିତ ଚିତ୍ର । ଚିତ୍ରଟି ଖ୍ରୀ. ପୂ. ପଞ୍ଚମ ଶତାବ୍ଦୀର । ]

ସାମୋସ୍ ଗ୍ରୀସ୍‌ର ଅନ୍ୟତମ ବିଖ୍ୟାତ ଗଣିତଜ୍ଞ ଓ ଦାର୍ଶନିକ ପିଥାଗୋରସ୍‌ଙ୍କ ଜନ୍ମଭୂମି ।

## ଏଫିସସ୍ :

ଆୟୋନିଆର ପ୍ରସିଦ୍ଧ ନଗର । ଏହି ନଗର ଉପରେ ପ୍ରାଚ୍ୟଜଗତର ସୁସ୍ପଷ୍ଟ ପ୍ରଭାବ ଥିଲା । ପ୍ରାଚ୍ୟର ମାତୃଈଶ୍ୱର ଦେବୀ ଭାବେ ଆର୍ଟିମିସ୍ ଏ ନଗରରେ ପୂଜା ପାଉଥିଲେ । ଆର୍ଟିମିସ୍‌ଙ୍କ ମନ୍ଦିର ଏକାଧିକବାର ଧ୍ୱଂସ ହୋଇ ପୁନର୍ନିର୍ମିତ ହୋଇଥିଲା । ଖ୍ରୀ. ପୂ. ୫୫୦ ବେଳକୁ ପୁନର୍ନିର୍ମିତ ମନ୍ଦିର ବିଶ୍ୱର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଅନ୍ୟତମ ।

ଏଫିସସ୍‌ରେ ଆର୍ଟିମିସ୍‌ଙ୍କ ମନ୍ଦିର ବିଶ୍ୱର ସପ୍ତାଶ୍ଚର୍ଯ୍ୟ ମଧ୍ୟରେ ଗଣାଯାଏ ।

କେବଳ ତାର ମନ୍ଦିରପାଇଁ ନୁହେଁ, ସୁନାମଧନ୍ୟ କବି ଓ ଦାର୍ଶନିକଙ୍କ ଜନ୍ମଭୂମି ଭାବେ ଏଫିସସ୍ ପ୍ରସିଦ୍ଧ । ଖ୍ରୀ. ପୂ. ସପ୍ତମ ଶତାବ୍ଦୀର ଆଦ୍ୟ ଭାଗର କବି କାଲିନସ୍ ଗ୍ରୀସ୍‌ରେ ସର୍ବତ୍ର ପରିଚିତ ଥିଲେ । ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀ ମଧ୍ୟ ଭାଗର କବି ହିପୋନାକ୍‌ସ ତାଙ୍କଠାରୁ ଆହୁରି ପ୍ରତିଭାବାନ୍ ଓ ଖ୍ୟାତିସମ୍ପନ୍ନ କବି । ସେ ଜଣେ ଉଚ୍ଚକୋଟୀର ବ୍ୟଙ୍ଗକାର । ସ୍ତ୍ରୀ ଜାତି ସମ୍ବନ୍ଧରେ ସେ ମନ୍ତବ୍ୟ କରିଥିଲେ, ସର୍ବମୋଟ ଦୁଇଟି ଦିନ ସ୍ତ୍ରୀ ପୁରୁଷର ଆହ୍ଲାଦଦାୟିନୀ ହୁଏ । "ଗୋଟିଏ ହେଲା, ଯେଉଁଦିନ ପୁରୁଷ ତାକୁ ବିବାହ କରେ ଓ ଅନ୍ୟଟି, ଯେଉଁଦିନ ସେ ତାକୁ ମଶାଣିକୁ ନିଏ ।"

ମହାନ୍ ଗ୍ରୀକ୍ ଦାର୍ଶନିକ ହେରାକ୍ଲିଟସ୍ (ଖ୍ରୀ. ପୂ. ୫୩୫-୪୭୫) ଏଫିସସ୍‌ର ସୁଯୋଗ୍ୟ ସନ୍ତାନ । ତାଙ୍କର ଚିନ୍ତାଧାରା ଆଧୁନିକ କାଳ ପର୍ଯ୍ୟନ୍ତ ଭାବୁକମାନଙ୍କୁ ଉଦ୍‌ବୁଦ୍ଧ କରିଆସିଛି । ହେରାକ୍ଲିଟସ୍ ସମାଜଠାରୁ ଦୂରେଇ ଯାଇ ନିର୍ଜନ ପର୍ବତରେ ଚିନ୍ତାମଗ୍ନ ରହୁଥିଲେ । ଲୋକେ ତାଙ୍କର କଥା ବୁଝିବାକୁ ଅକ୍ଷମ ବୋଲି ମନେ କରୁଥିବାରୁ ହେରାକ୍ଲିଟସ୍ ସେମାନଙ୍କପାଇଁ କିଛି ଲେଖି ନ ଥିଲେ । ତଥାପି ଭବିଷ୍ୟତପାଇଁ ସାଇତି ରଖିବାକୁ ପ୍ରହେଳିକାପୂର୍ଣ୍ଣ, ଦୁର୍ବୋଧ ଭାଷାରେ ହେରାକ୍ଲିଟସ୍ ତାଙ୍କର ଚିନ୍ତାକୁ ଲିପିବଦ୍ଧ କରି ଆର୍ଟିମିସ୍‌ଙ୍କ ମନ୍ଦିରରେ ରଖି ଯାଇଥିଲେ । ତାଙ୍କ ଲେଖାର ଅନେକ ଅଂଶ ନଷ୍ଟ ହୋଇଯାଇଛି ।

ଏଫିସସ୍ ମହାନ୍ ଦାର୍ଶନିକ ହେରାକ୍ଲିଟସ୍‌ଙ୍କ ଜନ୍ମସ୍ଥାନ । ତାଙ୍କ ମତରେ ଜଗତ ଚିର ପରିବର୍ତ୍ତନଶୀଳ । ଜଣେ ମଣିଷ ଗୋଟିଏ ନଈରେ ଦୁଇଥର ପ୍ରବେଶ କରିପାରେ ନାହିଁ ।

ବିଶ୍ୱର ଏକମାତ୍ର ମୌଳବସ୍ତୁ ଅଗ୍ନି ବୋଲି ଘୋଷଣା କରିଥିବା ହେରାକ୍ଲିଟସ୍‌ଙ୍କ ଅନ୍ତରାତ୍ମା ସତେକି ଅଗ୍ନିରେ

ଅହରହ ପ୍ରଜ୍ୱଳିତ ହେଉଥିଲା । ସେ ଅଗ୍ନି ହେଉଛି ତାଙ୍କର ଅସାଧାରଣ ସୃଜନ ପ୍ରତିଭା । ଅଢ଼େଇ ହଜାର ବର୍ଷ ପରେ ମଧ ତାଙ୍କର ସ୍ୱଳ୍ପ ରଚନା ମଧ୍ୟରୁ ହେରାକ୍ଲିଟସ୍‌ଙ୍କ ପ୍ରତିଭା ଝଟକି ଉଠେ । ଗୋଟିଏ ପଟେ ସୃଷ୍ଟି ରହସ୍ୟ ଉଦ୍‌ଘାଟନ କରିବାର ଆବେଗାଗ୍ନିରେ ସେ ଜଳୁଥିଲେ ଏବଂ ଅନ୍ୟ ପଟେ ମଣିଷଙ୍କର ଜଡ଼ତା, ଅବୋଧତା ଓ ମଣିଷକୁ ଖର୍ବ କରୁଥିବା ଗଣତନ୍ତ୍ରର ଅତ୍ୟାଗ୍ରହ ଧାସ ତାଙ୍କୁ ଉତକ୍ଷିପ୍ତ କରୁଥିଲା । ମଣିଷର ଉଚ୍ଚତା ଦେଖିବାକୁ ବ୍ୟାକୁଳ ହେରାକ୍ଲିଟସ ସଂଖ୍ୟାର ବନ୍ଦନା କରୁଥିବା ଗଣତାନ୍ତ୍ରିକ ସ୍ଲୋଗାନ୍‌କୁ ଓଲଟାଇ ଦେଇ କହୁଥିଲେ, "ଗୋଟାଏ ମଣିଷ ପରି ମଣିଷ ମୋ ପାଇଁ ଦଶହଜାର ଜଣଙ୍କଠାରୁ ଅଧିକ ମୂଲ୍ୟବାନ୍ ।" ଜନତାର ଗତିବିଧିର ସେ ଜଣେ ଉଗ୍ର ସମାଲୋଚକ । ହେରାକ୍ଲିଟସ୍ ଚିନ୍ତାକ୍ଷମ ଓ ସୃଜନଶୀଳ ମାନସର ପୂଜାରୀ । ମାତ୍ର ଗୁଡ଼ାଏ ଅଧ୍ୟୟନ କରି କେହି ଏହିପରି ମାନସର ଅଧିକାରୀ ହୋଇପାରେ ନାହିଁ । ତା ହୋଇଥିଲେ, ହେରାକ୍ଲିଟସ୍ କହନ୍ତି, ହେସିଓଡ୍, ପିଥାଗୋରସ୍ ଓ ଜେନୋଫେନ୍‌ସଙ୍କର ଜ୍ଞାନୋଦୟ ହୋଇ ନ ଥାନ୍ତା !

ଆୟୋନୀୟ ଦାର୍ଶନିକମାନେ ବହୁତ୍ୱ ମଧ୍ୟରେ ଏକତ୍ୱର ସନ୍ଧାନ କରିଥିଲେ । ବହୁତ୍ୱ-ଏକତ୍ୱ ପ୍ରଶ୍ନ ହେରାକ୍ଲିଟସ୍‌ଙ୍କ ଚିନ୍ତାକୁ ମଧ ଅଧିକାର କରିଥିଲା । ସକଳ ବସ୍ତୁର ମୂଳ ଏକ—ଅଗ୍ନି । ଜଗତର ଅସଂଖ୍ୟ ବସ୍ତୁମାନ ଅଗ୍ନିଙ୍କର ବିଭିନ୍ନ ପ୍ରକାଶ ମାତ୍ର । କେବଳ ପାର୍ଥିବ ବସ୍ତୁ ନୁହନ୍ତି; ଆତ୍ମା ଅଗ୍ନି, ଈଶ୍ୱର ମଧ ଅଗ୍ନି । ଏ ଜଗତକୁ ମଣିଷ ବା ଦେବତା ଗଢ଼ି ନାହାନ୍ତି । ଜଗତ ହେଉଛି ଶାଶ୍ୱତ ଅଗ୍ନିଙ୍କର ଖେଳାଲୀଳା !

ପରବର୍ତ୍ତୀ ପୃଥିବୀର ଅନେକ ଦାର୍ଶନିକଙ୍କ ପରି ଆୟୋନୀୟ ଦାର୍ଶନିକମାନେ ଜଗତର ପରିବର୍ତ୍ତନ ଲକ୍ଷ୍ୟ କରି ବିବ୍ରତ ହୋଇଥିଲେ । ପରିବର୍ତ୍ତନର ଆଦିଅନ୍ତ ଖୋଜିବା ସେମାନଙ୍କ ପାଇଁ ବିଷମ ସମସ୍ୟା ହେଲା । ହେରାକ୍ଲିଟସ୍ କିନ୍ତୁ ପରିବର୍ତ୍ତନକୁ ମାୟା ବା ବ୍ୟାଖ୍ୟାର ବିଷୟ ବୋଲି ମନେକରି ନାହାନ୍ତି । ଜଗତ ଚିରପରିବର୍ତ୍ତନଶୀଳ । ପରିବର୍ତ୍ତନ (ମାୟା ନୁହେଁ) ସତ୍ । ଏହି କାରଣରୁ ହୁଏତ ଚିରଚଞ୍ଚଳ ଅଗ୍ନିଙ୍କୁ ସେ ଜଗତର ମୂଳବସ୍ତୁ ଭାବେ ଗ୍ରହଣ କରିଥିଲେ ।

କେବଳ ବସ୍ତୁ ନୁହନ୍ତି, ମାନସ ଓ ଆତ୍ମା ସବୁକିଛି ଅଗ୍ନିଶିଖା ପରି ଅବିରାମ ଅସ୍ଥିର । ଜଗତ ଏକ ବିରାଟ ଅଗ୍ନିକୁଣ୍ଡ— ଯେଉଁଠି ବସ୍ତୁମାନେ ଅହରହ ଆଉଟି ହେଉଛନ୍ତି ।

ଏହି ଅହରହ ପରିବର୍ତ୍ତନ ପ୍ରକ୍ରିୟା ଭିତରେ ଗୋଟିଏ ବସ୍ତୁ ଆପେକ୍ଷିକ ଭାବେ କିଛିକାଳ ସ୍ଥିର ରହେ । ବସ୍ତୁଙ୍କର ଆପାତତଃ ସ୍ଥିରତା ଦୁଇ ବିପରୀତ ଦିଗରେ ଠେଲା ଖାଇ ସ୍ଥିର ଥିବା ପଥର ଖଣ୍ଡିକର ସ୍ଥିରତା ପରି । ଏହି କଥାଟିକୁ ହେରାକ୍ଲିଟସ୍ ଏକ ଚମତ୍କାର ଦୃଷ୍ଟାନ୍ତ ସାହାଯ୍ୟରେ ବୁଝାଇଛନ୍ତି । ଗୋଟିଏ ନଦୀ ଆପାତତଃ ସ୍ଥିରଥାଏ । ମାତ୍ର ତାହା ସଦା ପରିବର୍ତ୍ତନଶୀଳ ନୁହେଁ କି ? ପ୍ରତି ମୁହୂର୍ତ୍ତରେ ନଦୀ ବଦଳି ଚାଲିଛି । ଜଣେ ଲୋକ ସମାନ ନଦୀରେ ଦୁଇଥର ପ୍ରବେଶ କରିପାରେ ନାହିଁ । ମାତ୍ର ଗୋଟିଏ ସ୍ଥାନରୁ ଯେତିକି ପାଣି ବହିଯାଏ, ସେତିକି ପାଣି ଆସି ପୂରଣ ହେଉଥିବାରୁ ନଦୀଟି ସ୍ଥିରଥାଏ ।

ଜଗତ ଏକ ବିରାଟ ଅଗ୍ନିକୁଣ୍ଡ ଅଥବା ଏକ ବହମାନ ନଦୀ । ଏଠି ଅନେକ, ଭିନ୍ନତା ଓ ପରିବର୍ତ୍ତନ ଯେଉଁଳି ସତ୍ୟ; ଏକ, ଅଭିନ୍ନତା ଓ ସ୍ଥିରତା ସେହିଭଳି ସତ୍ୟ । ଗୁଣ୍ଡିଆ ଧନୁରେ ଯେପରି- ଧନୁ ଓ ତାର ମଧ୍ୟରେ ଦ୍ୱନ୍ଦ୍ୱ ଭିତରେ ଏକ ସମନ୍ୱୟ ପ୍ରତିଷ୍ଠା ହୋଇଥାଏ, ସେହିପରି ଜଗତରେ ବହୁ ବିପରୀତ ସମନ୍ୱିତ । ଚିର ଚଞ୍ଚଳ ଜଗତରେ ବିପରୀତମାନେ ପରସ୍ପର ନିର୍ଭରଶୀଳ । ସେମାନଙ୍କ ମଧ୍ୟରେ ସଂଘର୍ଷ ଯୋଗୁ ଐକ୍ୟ ଓ ସ୍ଥିରତା ପ୍ରତିଷ୍ଠିତ ହୁଏ । "ଈଶ୍ୱର ଏକାଧାରରେ ଦିନ ଓ ରାତି, ଗ୍ରୀଷ୍ମ ଓ ଶୀତ, ଯୁଦ୍ଧ ଓ ଶାନ୍ତି" । "ଜୀବନ ଓ ମୃତ୍ୟୁ ସମାନ, ଚେଇଁବା ଓ ଶୋଇବା ସମାନ, ପୁଣି ବାର୍ଦ୍ଧକ୍ୟ ଓ ଯୌବନ" । ମଣିଷ ମଣିଷ ମଧ୍ୟରେ ସଂଘର୍ଷ, ନରନାରୀ ମଧ୍ୟରେ ସଂଘର୍ଷ, ଶ୍ରେଣୀ ଶ୍ରେଣୀ ମଧ୍ୟରେ ସଂଘର୍ଷ, ଜାତି ଜାତି ମଧ୍ୟରେ ସଂଘର୍ଷ, ଯୁଗ ଯୁଗ ମଧ୍ୟରେ ସଂଘର୍ଷ, ମତ ମତ ମଧ୍ୟରେ ସଂଘର୍ଷ ଫଳରେ ଜୀବନ ବଢ଼େ ଓ ବିକଶିତ ହୁଏ ।

ମଣିଷ ଠାରେ ସକଳ ବସ୍ତୁରେ ନିହିତ ଅନନ୍ତ ଅଗ୍ନିର ଅଂଶ ଆତ୍ମା ରୂପରେ ବିଦ୍ୟମାନ । ମଣିଷର ବିଭେଦକାରୀ ଦୃଷ୍ଟିରେ ଜନ୍ମ ଓ ମୃତ୍ୟୁ ବିପରୀତ କିନ୍ତୁ ଅଖଣ୍ଡ ଦୃଷ୍ଟିରୁ ଜନ୍ମ ଓ ମୃତ୍ୟୁ ମଧ୍ୟରେ ଭେଦ ଆକାରଗତ ମାତ୍ର । ପ୍ରତି ମୁହୂର୍ତ୍ତରେ ମଣିଷର କିଛିଅଂଶ ମରୁଛି ଅଥଚ ସମୁଦାୟ ମଣିଷ ବଞ୍ଚୁଛି । ସେହିପରି ପ୍ରତି ମୁହୂର୍ତ୍ତରେ ଜଣେ ମଣିଷ ମରୁଛି, ଜୀବନ ଚିର ଜୀବନ୍ତ ।

ହେରାକ୍ଲିଟସ୍‌ଙ୍କ ସାଙ୍କେତିକ ଧର୍ମୀ ଓ ଅତି ସଂକ୍ଷିପ୍ତ ଲେଖା (ତାହା ପୁଣି ଅସଂପୂର୍ଣ୍ଣ)ରୁ ତାଙ୍କ ଦର୍ଶନକୁ ପ୍ରାଞ୍ଜଳ କରିବା ଏକ ଅପଚେଷ୍ଟା ମାତ୍ର । ଈଶ୍ୱର ତଥା ଆତ୍ମାକୁ ସେ ଅନନ୍ତ

ଓ ଅକ୍ଷୟ ଅଗ୍ନିରୂପେ ଯେପରି କଳ୍ପନା କରିଥିଲେ ତାହା ପରବର୍ତ୍ତୀ କାଳରେ ଷ୍ଟୋଇକ୍‌ମାନଙ୍କୁ ପ୍ରଭାବିତ କରିଥିଲା । ବିପରୀତଙ୍କ ସଂଘର୍ଷରେ ଏକତ୍ୱ ପ୍ରତିଷ୍ଠା ଚିନ୍ତା ହ୍ୱିଗେଲ୍‌ଙ୍କ ସମୟରେ ପୁନର୍ଜୀବିତ ହେଲା । ହେରାକ୍ଲିଟସୀୟ ପରିବର୍ତ୍ତନକୁ ଊନବିଂଶ ଶତାବ୍ଦୀର ଆଉ ଜଣେ ବିଖ୍ୟାତ ଦାର୍ଶନିକ ବର୍ଗସ ଜୀବନ୍ୟାସ ଦେଲେ । ଡାରଉଇନ୍, ସ୍ପେନ୍‌ସର ଓ ନିତ୍‌ସେଙ୍କର ଦ୍ୱନ୍ଦ୍ୱ ଓ ସଂଘର୍ଷ ସମ୍ପର୍କୀୟ ଭାବନାର ଅନ୍ତରାଳରେ ହେରାକ୍ଲିଟସ୍‌ଙ୍କ ସ୍ୱର ଶୁଭେ । ହେରାକ୍ଲିଟସ୍‌ଙ୍କ ପ୍ରତି ନିତ୍‌ସେଙ୍କର ଗଭୀର ସମ୍ମାନ ଥିଲା ।

## ଗୀତି କବିତାର ଜନ୍ମ :

ଆୟୋନିଆରେ ପାଶ୍ଚାତ୍ୟର ଆଦ୍ୟ ଦାର୍ଶନିକଗଣ ଜନ୍ମ ହୋଇଥିଲେ ସେତିକି ନୁହେଁ, ପାଶ୍ଚାତ୍ୟର ଆଦିକବି ହୋମର୍‌ଙ୍କୁ ମଧ୍ୟ ଆୟୋନିଆ ଜନ୍ମ ଦେଇଥିଲା । ଗଦ୍ୟ ରଚନାର ଶୁଭ ମଧ୍ୟ ସେଇ ଆୟୋନିଆରେ ହିଆଯାଇଥିଲା । ହୋମର୍ ଜଣେ ବା ଏକାଧିକ ବ୍ୟକ୍ତି ସେ ବିଷୟରେ ମତ ପାର୍ଥକ୍ୟ ରହିଛି । ତେବେ ତାଙ୍କର କାବ୍ୟଦ୍ୱୟ ପରବର୍ତ୍ତୀ କାଳରେ ବାରମ୍ବାର ଘଷାମଜା ହୋଇଥିଲା ବୋଲି କୁହାଯାଇପାରେ । ହୁଏତ ଏହାର ଫଳରେ ଦେବତାମାନଙ୍କର ମାତ୍ରାଧିକ ଆମୋଦ ପ୍ରମୋଦର ବର୍ଣ୍ଣନା ହୋମର୍‌ଙ୍କ କାବ୍ୟରେ ପଶିଯାଇଛି ।

ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀର ଆୟୋନୀୟ କବିତା ହୋମର୍‌ଙ୍କ କାବ୍ୟାଦର୍ଶକୁ ଛାଡ଼ି ଏକ ଭିନ୍ନ ମାର୍ଗରେ ଗତି କରିଥିଲା । ବୀରଙ୍କର ଶୌର୍ଯ୍ୟବୀର୍ଯ୍ୟକୁ କବିତାର ବିଷୟବସ୍ତୁ ରୂପେ ନ ବାଛି କବିମାନେ ପ୍ରେମ କବିତା ଆଡ଼କୁ ଢଳିଲେ । ଆୟୋନିଆର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତୁଳନୀୟ । ଧନଧାନ୍ୟ ଭରା ନଗରୀରେ ଜୀବନର ସ୍ୱାଦ ଓ ଆନନ୍ଦ କବିତାକୁ ପ୍ରଭାବିତ କଲା । ସୁରମ୍ୟ ମାର୍ବଲ୍ ଅଟ୍ଟାଳିକାର କୁଞ୍ଜବନରେ ନାଇଟେଙ୍ଗିଲ୍‌ଙ୍କର ମଧୁର କାକଳି ସହିତ କବିଙ୍କର ପ୍ରେମ-ସଙ୍ଗୀତ ମିଶି ଅପୂର୍ବ ରସମୟ ପରିବେଶ ସୃଷ୍ଟି କରୁଥିଲା । ହୋମର୍‌ଙ୍କର ଏପିକ୍ କବିତା ପରି ମଣିଷର ପୁରୁଷାକାର ଓ ବୀରତ୍ୱର ବନ୍ଦନା କରିବା ପରିବର୍ତ୍ତେ ଲିରିକ୍ କବିମାନେ ହୃଦୟର ଭାବୋଚ୍ଛ୍ୱାସକୁ କବିତା ମାଧ୍ୟମରେ ପ୍ରକାଶ କଲେ । ଖ୍ରୀ ପୂ. ୬୫୦ରୁ ୫୦୦ ପର୍ଯ୍ୟନ୍ତ ଗ୍ରୀସ୍‌ରେ ଲିରିକ୍ କବିତାର ଯୁଗ । Lyre ବା ବୀଣାରେ

ସୁର ଦେଇ ଗାନ କରାଯାଉଥିବା କବିତାକୁ ଗ୍ରୀକ୍‌ମାନେ ଲିରିକ୍ ନାମ ଦେଇଥିଲେ । ପୃଥିବୀର ପ୍ରଥମ ଲିରିକ୍ ବା ଗୀତି କବିତାର ଝଙ୍କାର ଆୟୋନିଆରେ ସୃଷ୍ଟି ହେଲା ।

କୋଲୋଫନ୍ ନଗରର କବି ଆନାକ୍ରିଅନ୍ ଓ ଲେସ୍‌ବସ୍‌ର ନାୟିକବି ସାଫୋଙ୍କର ସୁନାମ ସାରା ଗ୍ରୀସ୍‌ରେ ବ୍ୟାପି ଯାଇଥିଲା । ଏଫିସସ୍‌ର ଦକ୍ଷିଣକୁ ଅଳ୍ପ କେତେ ମାଇଲ ଦୂରରେ କୋଲୋଫନ୍ ଅବସ୍ଥିତ । ସୁପରିଚିତ ଦାର୍ଶନିକ ଜେନୋଫେନ୍‌ସ ଏହି ନଗରରେ ଜନ୍ମ ହୋଇଥିଲେ । କୋଲୋଫନ୍‌ର ଟିଓସ୍ ସହରରେ ଆନାକ୍ରିଅନ୍ (ଖ୍ରୀ. ପୂ. ୫୬୩-୪୭୮) ବାସ କରୁଥିଲେ । ଗ୍ରୀସ୍‌ର ଅନେକ ନଗରରୁ ଆନାକ୍ରିଅନ୍‌ଙ୍କୁ ନିମନ୍ତ୍ରଣ ଆସୁଥିଲା । ରାଜାମାନେ ତାଙ୍କୁ ରାଜକବିର ପଦ ଯାଚି ଡାକୁଥିଲେ । ପଲିକ୍ରେଟିସ୍‌ଙ୍କ ନିମନ୍ତ୍ରଣ ରକ୍ଷା କରି ସେ ସାମୋସ୍‌ରେ କିଛି ବର୍ଷ ଏବଂ ପରେ ଏଥେନ୍‌ସରେ ହିପାର୍କସଙ୍କ ରାଜଦରବାରରେ କିଛି ବର୍ଷ କଟାଇଥିଲେ । ଆନାକ୍ରିଅନ୍ ତଥା ସାଫୋ ଉଭୟଙ୍କର ଅଧିକାଂଶ କବିତା କାଳ ଗର୍ଭରେ ହଜିଯାଇଛି । ଯେତିକି ବଞ୍ଚି ରହିଛି ସେତିକିରୁ ଦୁହିଁଙ୍କର ଅଦ୍ଭୁତ ପ୍ରତିଭାର ପରିଚୟ ମିଳେ ।

ଆୟୋନୀୟ ନଗର କୋଲୋଫନ୍‌ରେ କବି ଆନାକ୍ରିଅନ୍‌ଙ୍କ ଜନ୍ମ । ଗ୍ରୀସ୍‌ର ସମସାମୟିକ କବିଙ୍କ ମଧ୍ୟରୁ କେବଳ ସାଇମୋନିଡ଼ିସ୍ ତାଙ୍କର ସମକକ୍ଷ ।

ଆନାକ୍ରିଅନ୍‌ଙ୍କ କବର ପାଖରେ ଲେଖାଥିବା ତାଙ୍କର ସ୍ମୃତି-ଲିପିର ଗୋଟିଏ ଧାଡ଼ି ଏହିପରି— "ମଦିରାର ଜନନୀ ହେ ଦ୍ରାକ୍ଷାଲତେ ! ଆନାକ୍ରିଅନ୍‌ଙ୍କ କବର ଉପରେ ତମେ ଘଞ୍ଚଭାବେ ଲଟେଇ ଯାଅ । ସୁରାର ଏହି ପରମ କବି ବନ୍ଧୁ ତାଙ୍କର ତରୁଣ ପ୍ରେମିକାଙ୍କର ମେଳରେ ରାତିକୁ କବିତାସିକ୍ତ କରି ଦିଅନ୍ତୁ ।" ସୁରା, ନାରୀ ତଥା ତଥା ତରୁଣ ବାଳକ, ପ୍ରେମ ଓ ପ୍ରକୃତିର ସୌନ୍ଦର୍ଯ୍ୟ "ତାଙ୍କ କବିତାର ବିଷୟବସ୍ତୁ । ବସନ୍ତର ବର୍ଣ୍ଣନା ହୋଇଥିବା ଆନାକ୍ରିଅନ୍‌ଙ୍କର ଗୋଟିଏ କବିତାର କେତୋଟି ଧାଡ଼ି ନିମ୍ନରେ ଉଦ୍ଧାର କରାଯାଉଛି ।

See the Spring herself discloses
And the Graces gather roses
See how breathless now the seas
All their swelling waves appease

How the duck swims, how the Crane
Comes from winters home again.

ଆନାକ୍ରିଅନ୍ ସଚେତନ ଥିଲେ ଯେ ସେ କବିତାରେ ଗୋଟିଏ ନୂତନ ଧାରାର ପ୍ରବର୍ତ୍ତକ । ଯୁଦ୍ଧ ଓ ବୀରତ୍ୱ ପରି ହୋମରୀୟ ବିଷୟବସ୍ତୁ ଠାରୁ ଗୀତିକବି ଅନେକ ଦୂରରେ । ଆଗାମେମନନ୍ ବା ଅନ୍ୟ କୌଣସି ବୀରର ଯୁଦ୍ଧଗାଥା ଭଲ କିନ୍ତୁ ତାହା ତାଙ୍କ ବୀଣାରେ ବାଜି ପାରେନା । ଆନାକ୍ରିଅନ୍ଙ୍କ ବୀଣାରେ କେବଳ ପ୍ରେମ କବିତା ଝଙ୍କୃତ ହୋଇପାରେ । ଏହି କଥା ସେ ସ୍ପଷ୍ଟ ଭାବେ ଗୋଟିଏ କବିତାରେ ଘୋଷଣା କରିଛନ୍ତି ।



[ ଜଣେ ବୀଣାବାଦକ ଓ ଶ୍ରୋତାଙ୍କର ଖ୍ରୀଷ୍ଟପୂର୍ବ ୫୦୦ର ଏହି ଚିତ୍ରାଙ୍କିତ ଚିତ୍ରଟି ଏଥେନ୍ସରୁ ମିଳିଛି । ଚିତ୍ରରେ ବାଦକ ଯେଉଁ ବୀଣା ଧରିଛି ଆନାକ୍ରିଆନ୍ ସେହିପରି ବୀଣା ବଜାଉଥିଲେ । ]

Agamenon I would sing
or the wandering Thepan king

But when I my lute did Prove
Nothing it would sing but love

× × × ×

Heroes then farewell ! My lute
To all strains but love is mute !

ଆଫ୍ରୋନଥାର ଅନତିଦୂରରେ ଇଟାଲୀୟ ନଗର କେତୋଟି ଅବସ୍ଥିତ । ଟ୍ରୟର ପତନ ପରେ ପରେ ଉତ୍ତର ଗ୍ରୀସ୍‌ର ଇଓଲୀୟାନ୍ ଓ ଆକୟାନ୍ ଅଧିବାସୀଗଣ ଏହି ଅଞ୍ଚଳକୁ ଉଠି ଆସିଥିଲେ । ଇଓଲସ୍‌ର ନଗରଗୁଡ଼ିକ ଧନସମ୍ପଦ ତଥା ସଂସ୍କୃତି ଦୃଷ୍ଟିରୁ ଆଫ୍ରୋମୀୟ ନଗରଙ୍କ ସହିତ ତୁଳନୀୟ ନୁହନ୍ତି । ମାତ୍ର ଇଓଲୀୟ ଦ୍ୱୀପ ଲେସ୍‌ବୋସ୍ ସବୁ ଦୃଷ୍ଟିରୁ ଯେକୌଣସି ଆଫ୍ରୋମୀୟ ନଗର ସହିତ ସମକକ୍ଷ ଥିଲା । ସାଫୋ (Sappho) ଲେସ୍‌ବୋସ୍‌ର କବି । ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀର ଏହି ନାରୀ କବି (ଜନ୍ମ ଖ୍ରୀ. ପୂ. ୬୧୨) ବିରଳ କବି ପ୍ରତିଭାର ଅଧିକାରିଣୀ । ଥରେ ଏକ ବନ୍ଧୁ ମିଳନରେ ସୋଲନ୍‌ଙ୍କର ଜଣେ ପୁତୁରା ସାଫୋଙ୍କ ରଚିତ ଗୀତଟିଏ ଗାଇ ଶୁଣାଇ ଥିଲେ । ତାହା ଶୁଣି ସୋଲନ୍ ମୁଗ୍‌ଧ ହୋଇଥିଲେ ଓ ଗୀତଟିକୁ ଶିଖିବାକୁ ଆଗ୍ରହ ପ୍ରକାଶ କଲେ । ଜଣେ ଏହାର କାରଣ ପଚାରିବାରୁ ସୋଲନ୍ କହିଥିଲେ, "ମୁଁ ଏହି ଗୀତଟି ଶିଖି ମରିବାକୁ ଚାହେଁ । ସାଫୋଙ୍କ କବିତାର ଆବେଦନ ଏହି ଘଟଣାରୁ ଅନୁମେୟ । ଦୁଇଟି ଚମତ୍କାର କବିତ୍ୱପୂର୍ଣ୍ଣ ଧାଡ଼ିରେ ପ୍ଳେଟୋ ସାଫୋଙ୍କ ପ୍ରତି ଗଭୀର ସମ୍ମାନ ଜ୍ଞାପନ କରିଛନ୍ତି :

ଇଓଲୀୟ ନଗର ଲେସ୍‌ବୋସ୍‌ରେ ସାଫୋଙ୍କର ଜନ୍ମ । ସେ ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀ ଗ୍ରୀସ୍‌ର ସବୁଠାରୁ ବିଖ୍ୟାତ ନାରୀ ।

Some say there are Nine Muses
How Careless they are !
Behold, Sappho of Lespas is the Tenth !

ସାଫୋଙ୍କ କବିତା ଆବେଗ ଧର୍ମୀ । ତାଙ୍କ ହୃଦୟର ଆବେଗପୂର୍ଣ୍ଣ ଭାଷା ଓ ସ୍ୱଷ୍ଟାନୁଭୂତିର ପରିପ୍ରକାଶ ସମସ୍ତଙ୍କୁ ମୁଗ୍‌ଧ କରୁଥିଲା । ସେ କେବଳ ବଡ଼ କବି ନୁହନ୍ତି, ରାଜନୀତି ସହିତ ସାଫୋ ସକ୍ରିୟ ଭାବେ ଜଡ଼ିତ ଥିଲେ । ସାଫୋଙ୍କ ପରିବାର ଲେସ୍‌ବୋସ୍‌ରୁ ମିଟିଲିନ୍ ଉଠି ଆସିଥିଲେ । ମିଟିଲିନ୍‌ର ନିରଙ୍କୁଶ ଶାସକ ପିଟାକସ୍‌ଙ୍କ ବିରୁଦ୍ଧରେ ଲେଖନୀ

ତୁଳନା କରିବାରୁ ପିଟାକସ୍ ତାଙ୍କୁ ପିତୃ ସହରକୁ ନିର୍ବାସିତ କରିଥିଲେ । ସେତେବେଳକୁ ସାଫୋଙ୍କ ବୟସ ଊଣେଇଶ । ଦୁଇବର୍ଷ ପରେ ତାଙ୍କର ଶାଣିତ ଲେଖନୀ ଓ ଲୋକପ୍ରିୟତା ଯୋଗୁ ଅଥୟ ହୋଇ ପିଟାକସ୍ ତାଙ୍କୁ ସିସିଲି ଉଠିଯିବାକୁ ଆଦେଶ ଦେଇଥିଲେ । ସିସିଲିର ଜଣେ ଧନୀ ବଣିକଙ୍କ ସହିତ ତାଙ୍କର ବିବାହ ହେଲା । ମାତ୍ର ପାଞ୍ଚ ବର୍ଷ ପରେ ସାଫୋ ହେଲେ ବିଧବା । ସ୍ୱାମୀଙ୍କର ବିପୁଳ ସମ୍ପତ୍ତିର ଅଧିକାରିଣୀ ହୋଇ ସେ ଲେସ୍‌ବୋସ୍ ଫେରି ଆସିଲେ ଏବଂ ସେଠାକାର କବି ଓ ବୁଦ୍ଧିଜୀବୀଙ୍କର ନେତୃତ୍ୱ ନେଇଥିଲେ ।

ଲେସ୍‌ବୋସ୍‌ରେ ସାଫୋଙ୍କ ଜୀବନର ଏକ ନୂଆ ପର୍ଯ୍ୟାୟ ଆରମ୍ଭ ହେଲା । ଯୁବତୀମାନଙ୍କୁ କବିତା, ସଙ୍ଗୀତ ଓ ନୃତ୍ୟ ଶିକ୍ଷା ଦେବା ଉଦ୍ଦେଶ୍ୟରେ ସାଫୋ ଗୋଟିଏ ସ୍କୁଲ ଖୋଲିଲେ । ଏହାକୁ ପୃଥିବୀର ପ୍ରଥମ ଲଳିତ କଳା ବିଦ୍ୟାଳୟ କୁହାଯାଇପାରେ । ଏହି ବିଦ୍ୟାଳୟରେ ଯେଉଁମାନେ ଯୋଗ ଦେଉଥିଲେ ସେମାନେ ଉଭୟ ସାଫୋଙ୍କର ଛାତ୍ରୀ ଓ ସଖୀ । ଏମାନଙ୍କ ମଧ୍ୟରୁ କେତେକଙ୍କ ସହିତ ସାଫୋଙ୍କର ପ୍ରେମ ହୋଇଥିଲା । ସାଫୋଙ୍କର ଅମର ପ୍ରେମ କବିତାଗୁଡ଼ିକ ତାଙ୍କର ପ୍ରେମିକାଙ୍କୁ କେନ୍ଦ୍ର କରି ରଚିତ । ପ୍ରେମିକା ସଖୀଙ୍କ ପ୍ରତି ତାଙ୍କର ଅନୁରାଗ ଅତି ଗଭୀର । ଏହିପରି ଜଣେ ସଖୀ କୌଣସି ଯୁବକ ସହିତ ଘର ବାନ୍ଧିଲେ ସାଫୋ ଦୁଃଖରେ ଭାଙ୍ଗି ପଡ଼ୁଥିଲେ । ତାଙ୍କର କ୍ଷତ ବିକ୍ଷତ ହୃଦୟରେ ଲବ୍ଧ ଓ ଅନ୍ତରର କୋହ ମିଶି ମର୍ମସ୍ପର୍ଶୀ କବିତାର ରୂପ ନେଇଥିଲା । ନିମ୍ନରେ ଏହିପରି ଏକ କବିତାର କେତୋଟି ଧାଡ଼ି ଉଦ୍ଧୃତ ହେଉଛି—

ସାଫୋ ନାରୀମାନଙ୍କ ଶିକ୍ଷା ଉଦ୍ଦେଶ୍ୟରେ ଗୋଟିଏ ଲଳିତ କଳା ବିଦ୍ୟାଳୟ ସ୍ଥାପନ କଲେ । ନାରୀମାନଙ୍କୁ ଘର ମଧ୍ୟରେ ଆବଦ୍ଧ ରଖିଥିବା ଗ୍ରୀକ୍ ଜାତି ପକ୍ଷରେ ଏହା ଏକ ନୂଆ କଥା ।

Yea, my tongue is broken, and
through and through me,
Neath the flesh, impalpable fire
runs tingling
Nothing see my eyes, and a voice of roaring
wanes in my ear sound;

Sweet run down in rivers, a tremor seizes
all my limbś, and paler than grass—in autumn
Caught by pains of menacing death, I flater
lost in the love-trance.

ପ୍ରେମ ବ୍ୟତୀତ ଅନ୍ୟାନ୍ୟ ବିଷୟବସ୍ତୁକୁ ନେଇ ସାଫୋ କବିତା ରଚନା କରିଥିଲେ । ସେ ନିଜେ ତାଙ୍କର କବିତାକୁ ସୁର୍ ଦେଉଥିଲେ । ତାଙ୍କର କବିତାଗୁଡ଼ିକ ନଅଖଣ୍ଡ



[ ଅସ୍ତ୍ର ବ୍ୟତୀତ କେବେ ବଂଶୀ ବା ବୀଣା ଧରି ନ ଥିବା ଦୁର୍ଦ୍ଦାନ୍ତ ଥ୍ରେସୀୟ କେଇଜଣ ଗ୍ରୀକ୍ ବୀଣାବାଦକଙ୍କୁ ଶୁଣୁଛନ୍ତି । ଗ୍ରୀକ୍ ପ୍ରଧାନ ଭୂଖଣ୍ଡର ଦକ୍ଷିଣକୁ ଅବସ୍ଥିତ ଥ୍ରେସ୍ ଉପରେ ଗ୍ରୀକ୍ ସଭ୍ୟତାର ପ୍ରଭାବ ପଡ଼ି ନ ଥିଲା । ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀର ଏକ ପାତ୍ରାଙ୍କିତ ଚିତ୍ର । ]

ବଣ୍ଡରେ ସଂଗୃହୀତ ହୋଇଥିଲା । ୧୦୭୩ ଖ୍ରୀଷ୍ଟାବ୍ଦରେ ଚର୍ଚ୍ଚ କର୍ତ୍ତୃପକ୍ଷ କନ୍‌ଷ୍ଟାଣ୍ଟିନୋପଲ୍-ଠାରେ ସାଫୋ ଓ ଲେସ୍‌ବୋସ୍‌ର ଅନ୍ୟତମ ବିଶିଷ୍ଟ କବି ଆଲ୍‌ସିଅସ୍‌ଙ୍କର ସମସ୍ତ କବିତା

ସର୍ବସାଧାରଣଙ୍କ ସମ୍ମୁଖରେ ଯୋଡ଼ ଦେଇଥିଲେ । ଏପରି ବକ୍ର ପଦକ୍ଷେପର କାରଣ ସ୍ପଷ୍ଟ ଭାବେ ବୁଝିବାର ଚେଷ୍ଟା ଆମ ପକ୍ଷରେ ନିର୍ବୋଧତା ହେବ । ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ସାଫୋଙ୍କ କବିତାର ଅଳ୍ପ ଅଂଶ ଉଦ୍ଧାର କରାଯାଇଥିଲା ।

ପ୍ରତିଭା ଓ ପ୍ରତିଷ୍ଠା ଉଭୟ ଦୃଷ୍ଟିରୁ ଆଲ୍‌ସିଅସ୍ ସାଫୋଙ୍କର ସମକକ୍ଷ । ଆଲ୍‌ସିଅସ୍ ବିଦ୍ରୋହୀ କବି । ସାଫୋଙ୍କ ପରି ପିଟାକସ୍ ଆଲ୍‌ସିଅସ୍‌ଙ୍କୁ ମଧ୍ୟ ନିର୍ବାସିତ କରିଥିଲେ । ଆଲ୍‌ସିଅସ୍ ସାଫୋଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ ମାତ୍ର ସାଫୋଙ୍କ ଉଦାସୀନତା ଯୋଗୁ ଦୁହିଁଙ୍କର ସମ୍ପର୍କ ଗଭୀର ହୋଇ ପାରିଲା ନାହିଁ ।

ଦର୍ଶନ, ବିଜ୍ଞାନ ଓ କବିତା କ୍ଷେତ୍ରରେ ଅଭିନବ ମୌଳିକ ସୃଷ୍ଟିର ସ୍ୱାକ୍ଷର ରଖିଥିବା ଆୟୋନିଆ ଲିଡ଼ିୟା କବଳରେ ପଡ଼ିଲା । ଲିଡ଼ିୟାର ରାଜା କ୍ରୋଇସସ୍ ଯେପରି ପରାକ୍ରମୀ ସେହିପରି ବିପୁଳ ସମ୍ପଦର ଅଧିକାରୀ । କ୍ରୋଇସସ୍ ଆୟୋନିଆକୁ ଅଧିକାର କରିଥିଲେ ସତ, ମାତ୍ର ଗ୍ରୀକ୍‌ଙ୍କର ବିଦ୍ୟାବୁଦ୍ଧି ଓ ସଂସ୍କୃତି ପ୍ରତି ତାଙ୍କର ସମ୍ମାନ ଥିଲା । ସେ ଏସୀୟ ହୋଇଥିଲେ ମଧ୍ୟ ଉନ୍ନତ ଗ୍ରୀକ୍ ସଂସ୍କୃତିକୁ ଗ୍ରହଣ କରିବାକୁ ପ୍ରସ୍ତୁତ ଥିଲେ । ଏପରି ଜଣେ ଶାସକଙ୍କ ଅମଳରେ ଆୟୋନିଆ ନିର୍ଯ୍ୟାତିତ ନ ହେବା ସ୍ୱାଭାବିକ୍ । ଅମିତ ପରାକ୍ରମୀ ପାରସ୍ୟ ରାଜା ଲିଡ଼ିୟା ଅଧିକାର କରି ନେଲା ପରେ ଆୟୋନିଆରେ ଗୌରବ-ରବି ଅସ୍ତ ଗଲେ ।

ଆୟୋନିଆ ସ୍ୱାଧୀନତା ହରାଇବା ଫଳରେ ତାର ଅଧୋଗତି ଆରମ୍ଭ ହେଲା । ପରବର୍ତ୍ତୀ କାଳରେ ଆୟୋନୀୟ ନଗର-ଗୁଡ଼ିକ ସେମାନଙ୍କ ପୂର୍ବ ଗୌରବ ଆଉ ଫେରି ପାଇଲେ ନାହିଁ ।

ଆୟୋନିଆ ଅଧିକାର କରି ପାରସ୍ୟ ସନ୍ତୁଷ୍ଟ ରହିଲା ନାହିଁ । ସମୁଦାୟ ଗ୍ରୀସ୍‌କୁ ଅଧିକାର କରିବାକୁ ପାରସ୍ୟ ସଜ ହେଉଛି ଖବର ପାଇ ଗ୍ରୀକ୍‌ମାନଙ୍କର ବୁଦ୍ଧି ହଜିଗଲା । ସେମାନଙ୍କପାଇଁ ସ୍ୱାଧୀନତା ହରାଇବା ମୃତ୍ୟୁ ସହିତ ସମାନ । ତେଣୁ ଜୀବନକୁ ବାଜି ମାରି ସବୁ ଗ୍ରୀକ୍ ଏକଜୁଟ ହୋଇ ପାରସ୍ୟର ପ୍ରତିରୋଧ କରିଥିଲେ । ବିଶାଳ ପାରସ୍ୟ ସାମ୍ରାଜ୍ୟକୁ ପରାସ୍ତ କରି ଗ୍ରୀକ୍ ଜାତି ଆପଣାର ଅନ୍ତର୍ନିହିତ ଶକ୍ତିର ପରିଚୟ ପାଇଲା । ଏହା ପରଠାରୁ ଆରମ୍ଭ ହେଲା ଗ୍ରୀସ୍‌ର ସ୍ୱର୍ଣ୍ଣଯୁଗ ।



# ପାରସ୍ୟ ଯୁଦ୍ଧ

※ ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀରେ ପାରସ୍ୟ ଏକ ବୃହତ୍ ଶକ୍ତିରେ ପରିଣତ ହୋଇଥିଲା ।

※ ଖ୍ରୀ: ପୂ: ୪୯୦ରେ ଏଥେନ୍ସ ଏକାକୀ ପାରସ୍ୟ ସମ୍ରାଟ ଡେରିଅସ୍‌ଙ୍କୁ ମାରାଥନ୍ ଠାରେ ପରାସ୍ତ କଲେ ।

※ ପାରସ୍ୟର ଅନ୍ତିମ ପରାଜୟ ଘଟିଲା ଖ୍ରୀ:ପୂ ୪୮୦ରେ ।

ଆୟୋନିଆକୁ ଗ୍ରାସ କରି ପାରସ୍ୟ ସନ୍ତୁଷ୍ଟ ରହିଲାନାହିଁ । ଅଳ୍ପକାଳ ମଧ୍ୟରେ ତାର ଲୋଲୁପ ଦୃଷ୍ଟି ଗ୍ରୀସ୍ ଉପରେ ପଡ଼ିଲା । ଗୋଟାଏ ଧୂମକେତୁପରି ଆବିର୍ଭାବ ହୋଇଥିବା ସାମ୍ରାଜ୍ୟବାଦୀ ପାରସ୍ୟ ଉପରେ ପୃଥିବୀର ଅର୍ଦ୍ଧାଂଶ ଥରହର ହେଉଥିଲା । ଖ୍ରୀ: ପୂ ୫୫୦ ପୂର୍ବରୁ ପାରସ୍ୟର ସତ୍ତା ସମ୍ପର୍କରେ କେହି ସଚେତନ ନ ଥିଲେ ।

ମୂଳରୁ ପର୍ବତସଙ୍କୁଳ ଇରାନ୍ ଥିଲା ପାର୍ଶୀଙ୍କର ବାସସ୍ଥଳୀ । ଏହି ପାର୍ବତ୍ୟ ରାଜ୍ୟରେ ପାର୍ଶୀମାନେ ବିଶୃଙ୍ଖଳ ହୋଇ ରହିଥିଲେ । ସ୍ୱଭାବତଃ ସରଳ ଓ ବଳିଷ୍ଠ ଇରାଣୀମାନେ ବଣ ପାହାଡ଼ରେ ପଶୁପାଳନ କରି ବଞ୍ଚୁଥିଲେ । ସେମାନେ ଜୋରାଷ୍ଟ୍ରର ଧର୍ମାବଲମ୍ବୀ । ଜୋରାଷ୍ଟ୍ରର ବା ଜାରାଥୁଷ୍ଟ୍ରା ଖ୍ରୀ:ପୂ ୭ମ-୬ଷ୍ଠ ଶତାବ୍ଦୀର ଜଣେ ଧର୍ମ ସଂସ୍ଥାପକ । ତାଙ୍କର ଧର୍ମମତଗୁଡ଼ିକ ଯେପରି ଶୁଦ୍ଧ, ସେହିପରି ସରଳ ଓ ସ୍ପଷ୍ଟ । ଜାରାଥୁଷ୍ଟ୍ରୀୟ ଧର୍ମମତ ଅନୁସାରେ ସୃଷ୍ଟିକର୍ତ୍ତା ମଙ୍ଗଳମୟ । ସେ ସତ୍ୟ ଓ ଆଲୋକର ଆଧାର । ତେବେ ଜଗତରେ କେବଳ ଈଶ୍ୱର

ନୁହନ୍ତି, ସଇତାନ ମଧ୍ୟ ଅଛି । ସଇତାନ ଗୃତହିଁ, ମନ୍ଦ ଓ ଅନ୍ଧକାରର ରାଜତ୍ୱ । ପ୍ରତ୍ୟେକ ମଣିଷ ଈଶ୍ୱର ଓ ସଇତାନର ଯୁଦ୍ଧକ୍ଷେତ୍ର । କାୟମନୋବାକ୍ୟରେ ଶୁଭର ଆବାହନ କରି ସଇତାନକୁ ପରାଜିତ କରିବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ । "ଭଲ କାମ କର, ଶୁଭ ଚିନ୍ତା କର ଓ ମଧୁର ବଚନ କହ"—ଜାରଥୁ ଷ୍ଟ୍ରୀୟ ଧର୍ମର ସାରକଥା ଏତିକି ।

ପାର୍ଶୀମାନଙ୍କର ଜୀବନ ନିର୍ବାହ ଥିଲା ଖୁବ୍ ସରଳ । ସେମାନଙ୍କ ସମ୍ପର୍କରେ ହିରୋଡୋଟସ୍ ଲେଖିଛନ୍ତି, ସେମାନେ ପିଲାଙ୍କୁ ତିନୋଟି କଥା ଶିକ୍ଷା ଦେଉଥିଲେ । ଘୋଡ଼ା ଚଢ଼ିବା, ଲକ୍ଷ୍ୟ ବିନ୍ଧିବା ଓ ସତ କହିବା ।

ଖ୍ରୀଷ୍ଟପୂର୍ବ ୫୫୦ ବେଳକୁ ପାରସ୍ୟର ଯୁବକରାଜା ସାଇରସ୍ ଅସଂଗଠିତ, ପାହାଡ଼ିଆ ଯାଯାବର ଜାତିଙ୍କୁ ଏକାଠି କରି ପଡ଼ୋଶୀ ମିଡ଼ିଆରାଜ୍ୟ ଆକ୍ରମଣ କଲେ । ସେତେବେଳେ ମିଡ଼ିଆ ଏକ ଶକ୍ତିଶାଳୀ ରାଜ୍ୟ । ଏସିଆର ପତନ ପରଠାରୁ ପ୍ରାଚ୍ୟ ଭୂଖଣ୍ଡରେ ମିଡ଼ିଆର ଆସନ ମିଶର ଓ ବେବିଲୋନ୍ ସହିତ ସମକକ୍ଷ ହୋଇଥାଏ । ତେଣୁ ଯୁଦ୍ଧରେ ପାରସ୍ୟ ମିଡ଼ିଆକୁ ଜିଣିଯିବା ଥିଲା ଏକ ବିସ୍ମୟ । ଅପ୍ରତ୍ୟାଶିତ ବିଜୟ ଫଳରେ ଦୁନିଆ ଆଖିରେ ପାରସ୍ୟର ସମ୍ମାନ ବଢ଼ିଯିବା ସ୍ୱାଭାବିକ୍ । ଏସିଆର ଏହି ନୂତନ ଶକ୍ତିକୁ ମୂଳରୁ ଦମନ କରିବାକୁ ବେବିଲୋନ୍ ଓ ମିଶର ମିଶି ମନ୍ତ୍ରଣା କଲେ । ଧନଧାନ୍ୟ ଭରା ପରାକ୍ରମୀ ଲିଡ଼ିଆର ରାଜା କ୍ରୋଇସସ୍ କର୍ତ୍ତବ୍ୟ ସ୍ଥିର କରି ନ ପାରି ଦେବ ନିର୍ଦ୍ଦେଶ ପାଇବାକୁ ଡେଲ୍‌ଫାଇକୁ ଦୂତ ପଠାଇଲେ । ଦୂତ ଖବର ନେଇ ଆସିଲା, "ପାରସ୍ୟ ଆକ୍ରମଣ କଲେ କ୍ରୋଇସସ୍ ଗୋଟିଏ ସାମ୍ରାଜ୍ୟ ଧ୍ୱଂସ କରିବେ ।" ଡେଲ୍‌ଫାଇର ଏପରି ବାର୍ତ୍ତାରେ ଉତ୍ସାହିତ କ୍ରୋଇସସ୍ ପାରସ୍ୟ ଆକ୍ରମଣ କଲେ ।

ଯୁଦ୍ଧକ୍ଷେତ୍ରରେ କିନ୍ତୁ ଘଟଣା ଅନ୍ୟପ୍ରକାର ଗଡ଼ିଗଲା । ଲିଡ଼ିଆର ସୈନ୍ୟମାନେ ପାର୍ଶୀଙ୍କର ଅଦ୍ଭୁତ ରଣକୌଶଳର ସମ୍ମୁଖୀନ ହୋଇପାରିଲେ ନାହିଁ । ଏ ଆଚମ୍ବିତ ଘଟଣା ଦେଖି କ୍ରୋଇସସ ମୁଣ୍ଡରେ ହାତ ଦେଲେ । ପାର୍ଶୀମାନେ ଲିଡ଼ିଆର ସୈନ୍ୟଙ୍କୁ ଗୋଡ଼େଇ ଗୋଡ଼େଇ ସାର୍ଡ଼ିସ୍‌ରେ ପ୍ରବେଶ କଲେ । ବିଭବଶାଳୀ, ଶୋଭାମୟୀ ସାର୍ଡ଼ିସ୍ ଶତ୍ରୁଙ୍କ ହାତରେ ପଡ଼ିଲା । ସତକୁ ସତ କ୍ରୋଇସସ୍ ଗୋଟିଏ ଶକ୍ତିଶାଳୀ ସାମ୍ରାଜ୍ୟ ଧ୍ୱଂସ କଲେ । ମାତ୍ର ସେଇଟି ତାଙ୍କର ନିଜ ସାମ୍ରାଜ୍ୟ । ଦେବକୃତ ଭେଦିବ କିଏ ?

ପାରସ୍ୟ ଦ୍ୱାରା ଲିଡ଼ିୟାର ପରାଜୟ ଥିଲା ଏକ ଅବିଶ୍ୱାସ୍ୟ ଓ ଅଲୌକିକ ଘଟଣା । ଏହାର ପ୍ରଭାବ ଏସିଁୟ ଗ୍ରୀକ୍ ନଗରଗୁଡ଼ିକ ଉପରେ ପଡ଼ିବା ସ୍ୱାଭାବିକ । ଲିଡ଼ିୟା କବଳରୁ ମୁକ୍ତହୋଇ ସେମାନେ ସ୍ୱାଧୀନତାର ସ୍ୱପ୍ନ ଦେଖିଲେ । ଶକ୍ତିଶାଳୀ ସ୍ପାର୍ଟା ସେମାନଙ୍କୁ ସାହାଯ୍ୟ କରିବ ବୋଲି ଆଶା ରଖି ସେମାନେ ସ୍ପାର୍ଟାକୁ ନିବେଦନ କଲେ; କିନ୍ତୁ ଏସୀୟ ଗ୍ରୀକ୍ ନଗର ଗୁଡ଼ିକ ଲିଡ଼ିୟା, ପାରସ୍ୟ ବା ଆଉ ଯାହାର ଅଧୀନ ହୁଅନ୍ତୁ ସେ ବିଷୟରେ ସ୍ପାର୍ଟା ଥିଲା ଉଦାସୀନ । ସବୁ ଏସୀୟ ନଗରଙ୍କୁ ମିଶେଇ ଗୋଟିଏ ସାମ୍ମୁଖ୍ୟ ଗଢ଼ିବାକୁ ଥେଲିଜ୍ ପରାମର୍ଶ ଦେଇଥିଲେ । ମାତ୍ର ତାଙ୍କର ପରାମର୍ଶ ଶୁଣିବାପରି ଦୂରଦୃଷ୍ଟି ଏସୀୟ ଗ୍ରୀକ ନଗରମାନଙ୍କର ନ ଥିଲା । ପାରସ୍ୟ ଅନାୟାସରେ ଗୋଟି ଗୋଟି କରି ଗ୍ରୀକ୍ ନଗରଗୁଡ଼ିକୁ ଅଧିକାର କରିନେଲା ।

ଏହାପରେ ଉଚ୍ଚାଭିଳାଷୀ ସାଇରସ୍‌ଙ୍କ ଦୃଷ୍ଟି ପଡ଼ିଲା ବେବିଲୋନ୍ ଉପରେ । ଉଚ୍ଚାଭିଳାଷୀ ଓ ବୁଦ୍ଧିମାନ୍ ସାଇରସ୍‌ଙ୍କ ପ୍ରତି, ଭାଗ୍ୟଦେବୀ ଥିଲେ ପ୍ରସନ୍ନ । ସେ ବେବିଲୋନ୍ ଜୟ କରିନେଲେ ।

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ପାରସ୍ୟ ଏକ ବୃହତ୍ ଶକ୍ତି ଭାବେ ମୁଣ୍ଡ ଟେକିବା ଫଳରେ ଇତିହାସ ଏକ ନୂଆ ମୋଡ଼ ନେଲା । ଦୁର୍ଦ୍ଧାନ୍ତ ଓ ସାମ୍ରାଜ୍ୟବାଦୀ ସାଇରସ୍‌ଙ୍କଠାରେ କିଛି ଉତ୍ତମ ଗୁଣ ଥିଲା । ପାର୍ସୀମାନେ ତାଙ୍କୁ ଖୁବ୍ ଶ୍ରଦ୍ଧା ଓ ଭକ୍ତି କରୁଥିଲେ । ଜଣେ ପ୍ରଜାବତ୍ସଳ, ସୁଶାସକ ଭାବେ ବେବିଲୋନୀୟମାନେ ମଧ୍ୟ ତାଙ୍କୁ ଆଦର କଲେ । ଏପରିକି ପାରସ୍ୟ ଅଧୀନସ୍ଥ ଆୟୋନୀୟ ଗ୍ରୀକ୍ ନଗରମାନଙ୍କରେ ସାଇରସ୍‌ଙ୍କ ପ୍ରଶଂସା ଶୁଣାଗଲା । ଏହାର ଅର୍ଥ ନୁହେଁ ଯେ ଗ୍ରୀକ୍‌ମାନେ ତାଙ୍କୁ ଗ୍ରହଣ କରିନେଲେ । ଏ କଥା ବା କିପରି ସମ୍ଭବ ହୁଅନ୍ତା ? ଏସିଆରେ ପ୍ରତିଷ୍ଠିତ ଗ୍ରୀକ୍ ନଗରଗୁଡ଼ିକ ନାମକୁ ମାତ୍ର ଏସୀୟ । ଏହି ଲୋକଙ୍କର ମନୋବୃତ୍ତି, ଚାଲିଚଳଣ, ଐତିହ୍ୟ ଓ ସଂସ୍କୃତି ଚତୁଃପାର୍ଶ୍ୱର ଏସୀୟଙ୍କଠାରୁ ଅନେକ ଭିନ୍ନ । ଗଣତାନ୍ତ୍ରିକ ମନୋବୃତ୍ତି ସେମାନଙ୍କର ବୈଶିଷ୍ଟ୍ୟ । ପାରସ୍ୟର ଆଡ଼ମ୍ବରପୂର୍ଣ୍ଣ ରାଜ ଦରବାରକୁ ଚଳାଇବା ପାଇଁ ପ୍ରଜାଙ୍କ ଠାରୁ ଅତ୍ୟଧିକ କର ଆଦାୟ କରିବା ପରି ବିଷୟକୁ ଗ୍ରୀକ୍-ମନ ଗ୍ରହଣ କରିଥାନ୍ତା ବୋଲି ଆଶା କରାଯାଇ ନ ପାରେ । ଗୋଟିଏ ସାମ୍ରାଜ୍ୟ ଗଢ଼ିଲା ପରେ ପାର୍ବତ୍ୟ ଅଞ୍ଚଳର ସରଳ ଓ କର୍ମଠ ପାର୍ସୀଙ୍କ ଭିତରକୁ ବେବିଲୋନୀୟ ବିଳାସ ଓ ଦୁର୍ନୀତି ପଶି

ଆସିଲା । ରାଜାଙ୍କୁ ଦେବତା ଜ୍ଞାନ କରିବାର ପ୍ରାଚ୍ୟ ପରମ୍ପରାର ପ୍ରଭାବ ସେମାନଙ୍କ ଉପରେ ପଡ଼ିଲା ।



[ ପାରସ୍ୟର ଅଧୀନ ଗ୍ରୀକ୍ ନଗରରେ ଜଣେ ପାର୍ଶୀ ଗ୍ରୀକ୍‌ଙ୍କଠାରୁ କର ଆଦାୟ କରୁଛି । ଚିତ୍ରଟି ଇଟାଲୀରୁ ମିଳିଛି । ]

ନାଗରିକ ଅଧିକାର ଉପଭୋଗ କରିଥିବା ଓ ସ୍ୱାୟତ୍ତ ଶାସନର ସ୍ୱାଦ ପାଇଥିବା ଗ୍ରୀକ୍‌ମାନଙ୍କୁ ଚଳନ୍ତି ବିଷ୍ଣୁଙ୍କର ଆଦେଶ ନିର୍ଦ୍ଦେଶ ରୁଚିକର ନ ହେବା ସ୍ୱାଭାବିକ୍ । ଗ୍ରୀକ୍‌ଙ୍କର ସ୍ୱତନ୍ତ୍ରବୋଧ ଓ ଜଗତକୁ ବୁଝିବାର ଅନୁସନ୍ଧିତ୍ସା ଜାଗ୍ରତ ହୋଇ ରହିଥାଏ । ତେଣୁ ଅନ୍ଧବିଶ୍ୱାସୀ ଓ ପରମ୍ପରାର ବନ୍ଧନରେ ପଡ଼ିଥିବା ପାର୍ଶୀଙ୍କର ଜୀବନଧାରାର ଆଧିପତ୍ୟକୁ ସେମାନେ ସହ୍ୟ କରନ୍ତେ କିପରି ?

ପ୍ରଥମେ ବିଶାଳ ମିଶର ସାମ୍ରାଜ୍ୟ ଜଗତକୁ ବଳପୂର୍ବକ ତା ବାଟରେ ଚଳାଇଲା । ତା ପରେ ଆସିଲା ଏସିରିଆ । ଏସିରିଆ ପରେ ବେବିଲୋନ୍ । ପାରସ୍ୟର ପାଳି ଚତୁର୍ଥରେ । ଅସି ବଳରେ ପାରସ୍ୟ ଜଗଜ୍ଜିତା ହୋଇ ଆପଣାର ରୁଚି, ବିଶ୍ୱାସ ଓ ପରମ୍ପରାକୁ ସମସ୍ତଙ୍କ ଉପରେ ଲଦି ଦେଲା । ଏସୀୟ ଗ୍ରୀକ୍ ନଗରଗୁଡ଼ିକ ଏହାର ଖୋଲାଖୋଲି ପ୍ରତିବାଦ କରି ପାରୁ ନ ଥିଲେ ମଧ୍ୟ ସେମାନଙ୍କ ଭିତରେ ବିଦ୍ରୋହର ନିଆଁ ଜଳୁଥିଲା । ଏହିପରି ଯୁଗସନ୍ଧି ବେଳାରେ ସାଇରସ୍ ଇହଧାମରୁ ବିଦାୟ ନେଲେ ।

ସାଇରସ୍‌ଙ୍କ ମୃତ୍ୟୁ ପରେ ଏତେବଡ଼ ସାମ୍ରାଜ୍ୟକୁ ସମ୍ଭାଳିବା ତାଙ୍କର ଅର୍ଦ୍ଧପାଗଳ ପୁଅ ପକ୍ଷରେ ସମ୍ଭବ ହେଲନାହିଁ । ନିଜ ଭାଇର ଲୋକପ୍ରିୟତାରେ ଈର୍ଷାନ୍ୱିତ ହୋଇ ସେ ଭାଇକୁ ଗୁପ୍ତରେ ହତ୍ୟାକଲେ ଓ ପରେ ଏହି ପାପ ସମ୍ଭାଳି ନ ପାରି ଆତ୍ମହତ୍ୟା କରି ମଲେ । ପାରସ୍ୟ ସିଂହାସନ ପାଇଁ ଅନେକ ଗଣ୍ଡଗୋଳ ଲାଗିଲା । ଶେଷରେ ରାଜବଂଶୀୟ ଡେରିଅସ୍ ସିଂହାସନ ଦାବି କଲେ । ସାଇରସ୍‌ଙ୍କ କନ୍ୟାକୁ ବିବାହ କରି ସେ ଆପଣାକୁ ପାରସ୍ୟର ସମ୍ରାଟ ବୋଲି ଘୋଷଣା କଲେ । ଫଳରେ ଚତୁର୍ଦ୍ଦିଗରେ ରାଜ୍ୟଲୋଭୀଙ୍କର ବିଦ୍ରୋହ ଆରମ୍ଭ ହୋଇଗଲା । ବିଦ୍ରୋହ ଦମନ କରିବାକୁ ଡେରିଅସ୍‌ଙ୍କୁ ଆଠବର୍ଷ ସମୟ ଲାଗିଲା । ଏତେ ବଡ଼ ସାମ୍ରାଜ୍ୟର ଶାସନ ଶୃଙ୍ଖଳା ଫେରାଇ ଆଣିବା ଡେରିଅସ୍‌ଙ୍କର ଯୋଗ୍ୟତା ପ୍ରମାଣ କରେ ।

ନିଜର ସ୍ଥିତିକୁ ଦୃଢ଼ କରି ସାରିବା ପରେ ଆରମ୍ଭ ହେଲା ନିଜର ଯଶକୀର୍ତ୍ତି ରକ୍ଷିପିବାର ଯୋଜନା । ସାଇରସ୍ ପ୍ରାଚ୍ୟର ଗ୍ରୀକ୍‌ନଗର ଓ ବେବିଲୋନ୍ ଜୟ କରିଥିଲେ । ତାଙ୍କ ପୁଅ ମିଶରକୁ ପାରସ୍ୟ ସାମ୍ରାଜ୍ୟଭୁକ୍ତ କରିଥିଲେ । ରାଜ୍ୟବିସ୍ତାର ପାଇଁ ପଶ୍ଚିମ ଓ ଉତ୍ତର ଦିଗ ଆଡ଼କୁ ଡେରିଅସ୍‌ଙ୍କ ଦୃଷ୍ଟି ପଡ଼ିଲା । ଶୀତଦିନେ ଡାନୁବ୍ ନଦୀର ପାଣି ବରଫ ପାଲଟିଥିବା ସମୟରେ ଡେରିଅସ୍ ନଦୀ ପାରି ହୋଇ ଦୁର୍ଦ୍ଧର୍ଷ ଥ୍ରେସ ଓ ମାସିଡ଼ୋନିଆ ସମେତ ପଶ୍ଚିମର ବହୁ ଅଞ୍ଚଳ ଜୟ କରିନେଇଥିଲେ । ଖ୍ରୀଷ୍ଟପୂର୍ବ ୫୧୦ ବେଳକୁ ଆଫଗାନିସ୍ତାନ, ଉତ୍ତରଭାରତର କିୟଦାଂଶ, ତୁର୍କୀ, ମେସୋପଟାମିଆ, ଉତ୍ତର ଆରବ, ମିଶର, ସାଇପ୍ରସ୍, ପାଲେଷ୍ଟାଇନ୍, ସିରିଆ ଓ ମାସିଡ଼ୋନିଆ ପାରସ୍ୟର ଅନ୍ତର୍ଗତ ହୋଇଥାଏ । ଅତୀତରେ ଏତେ ବିରାଟ ସାମ୍ରାଜ୍ୟ ଆଉ ନ ଥିଲା । ଏପରି ବିଶାଳ ସାମ୍ରାଜ୍ୟର ଅନତିଦୂରରେ ଗ୍ରୀସ୍ କେତେକାଳ ନିରାପଦ ରହି ପାରନ୍ତା ? ଆୟୋନିଆ ଛଡ଼ା ଅନ୍ୟ କୌଣସି ଗ୍ରୀକ୍ ନଗରର ଖବର ଡେରିଅସ୍ ରଖି ନ ଥିଲେ । ତାଙ୍କ କାନରେ ଏଥେନ୍ସର ନାମ ପଡ଼ି ନ ଥିଲା । ହୁଏତ ଡେରିଅସ୍‌ଙ୍କ ଲୋଲୁପ ଦୃଷ୍ଟି ଗ୍ରୀସ୍ ପର୍ଯ୍ୟନ୍ତ ଲମ୍ବି ନ ଥାନ୍ତା । ବିଧାତା କିନ୍ତୁ ଘଟଣାଗୁଡ଼ିକୁ ଅନ୍ୟ ପ୍ରକାର ଖଞ୍ଜିଥାଏ । ଖ୍ରୀ. ପୂ ୫୦୭ରେ ପିସିଷ୍ଟ୍ରାଟସ୍‌ଙ୍କ ପୁତ୍ର ଓ ଏଥେନ୍ସର ନିରଙ୍କୁଶ ଶାସକ ହିପିଆସ୍ ଏଥେନ୍ସରୁ ବିତାଡ଼ିତ ହୋଇ ଆସି ଡେରିଅସ୍‌ଙ୍କ ଶରଣ ପଶିଲେ । ତାଙ୍କ ରାଜ୍ୟ ଫେରି ପାଇବାରେ ସାହାଯ୍ୟ କରିବାକୁ ସେ ଡେରିଅସ୍‌ଙ୍କୁ ଅନୁରୋଧ କଲେ । ଫଳରେ କେବଳ ଏଥେନ୍ସ କାହିଁକି,

ଏଥେନ୍ସରୁ ବିତାଡ଼ିତ ହୋଇଥିବା ରାଜା ହିପିଆସ୍ ପ୍ରତିଶୋଧ ନେବାପାଇଁ ଏଥେନ୍ସକୁ ଅଧିକାର କରିବାର ବୁଦ୍ଧି ଡେରିଅସ୍‌ଙ୍କ ମୁଣ୍ଡରେ ପୂରାଇଲେ ।

ସମୁଦାୟ ଗ୍ରୀସ୍‌କୁ ପାରସ୍ୟ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିବାର ଚିନ୍ତା ଡେରିଅସ୍‌ଙ୍କ ମୁଣ୍ଡରେ ଖେଳିଲା ।

ଡେରିଅସ୍‌ଙ୍କ କ୍ରୋଧାଗ୍ନିରେ ଇନ୍ଧନ ପକାଇବା ପରି ଘଟଣା ଏହି ସମୟରେ ଘଟିଗଲା । ଏସିଆ ମାଇନର୍‌ର ଗ୍ରୀକ୍ ନଗରଗୁଡ଼ିକ ପଚିଶ ବର୍ଷ କାଳ ପାରସ୍ୟର ଶାସନାଧୀନ ରହିବା ପରେ ହଠାତ୍ ସେମାନଙ୍କର ପାର୍ଶୀ ଗଭର୍ଣ୍ଣରଙ୍କୁ ବିତାଡ଼ିତ କରି ସ୍ୱାଧୀନତା ଘୋଷଣା କଲେ । ବିଦ୍ରୋହର ନେତୃତ୍ୱ ନେଇଥିଲା ମିଲେଟସ୍ । ଏ ଘଟଣା ପରେ ସେମାନଙ୍କୁ ଧ୍ୱଂସ କରିଦେବାକୁ ଡେରିଅସ୍ ଆଦେଶ ଦେବେ ବୋଲି ଜାଣିପାରି ସେମାନେ ଗ୍ରୀସ୍‌ର ସାହାଯ୍ୟ ଭିକ୍ଷା କଲେ । ସ୍ପାର୍ଟା କୌଣସି ସାହାଯ୍ୟ ଦେବାକୁ ମନା କରିଦେଲା । ଏଥେନ୍ସ ଆୟୋନୀୟଙ୍କୁ ସମବେଦନା ଜଣାଇ କୋଡ଼ିଏଟି ଯୁଦ୍ଧ ଜାହାଜ ପଠାଇଲା । ଏଥିରେ ଉତ୍ସାହିତ ହୋଇ ଆୟୋନୀୟମାନେ ଯୁଦ୍ଧ କରିବାକୁ ସଜ ହେଲେ । କିନ୍ତୁ ସମସ୍ତେ ମିଳିମିଶି ଗୋଟିଏ ସୈନ୍ୟବାହିନୀ ଗଢ଼ି ଜଣେ ସେନାପତିଙ୍କ ନେତୃତ୍ୱରେ ଲଢ଼ିବା ପରି ମନୋଭାବ ବା ଦୂରଦୃଷ୍ଟି ସେମାନଙ୍କର ନ ଥିଲା । ସାଇରସ୍‌ଙ୍କ ସମୟରେ ସେମାନେ ଯେପରି ସ୍ୱାଧୀନତା ହରାଇଥିଲେ, ସେଥିରୁ କିଛି ବୁଦ୍ଧି ଶିଖିଲେ ନାହିଁ । ତଥାପି ଏଥେନ୍ସର ସାହାଯ୍ୟ ପାଇ ମିଲେଟସ୍ ଲିଡ଼ିଆର ରାଜଧାନୀ ସାର୍ଡ଼ିସ୍ ଆକ୍ରମଣ କରି ଜିଣି ନେଲା । ପାଶ୍ଚାତ୍ୟରେ ସାର୍ଡ଼ିସ୍ ଥିଲା ପାରସ୍ୟର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘାଟି । ସାର୍ଡିସ୍‌ର ପତନ ଡେରିଅସ୍‌ଙ୍କ କ୍ରୋଧରେ ଇନ୍ଧନ ପକାଇଲା ମାତ୍ର ।

ଆୟୋନୀୟ ନଗରଗୁଡ଼ିକ ଗୋଟି ଗୋଟି କରି ଡେରିଅସ୍‌ଙ୍କ କବଳକୁ ଆସିଲେ । ଏକୁଟିଆ ମିଲେଟସ୍ ପାଞ୍ଚବର୍ଷ କାଳ ପ୍ରତିରୋଧ କରି ଶେଷରେ ପରାସ୍ତ ହେଲା । ପାର୍ଶୀ ସେନା ମିଲେଟସ୍‌ର ପୁରୁଷଙ୍କୁ ହତ୍ୟା କରି ନାରୀ ଓ ଶିଶୁଙ୍କୁ ଦାସ ଭାବେ ଧରିନେଲେ । ମିଲେଟସ ଧୂଳିସାତ୍ ହେଲା । ଗୋଟିଏ ଉନ୍ନତ ସଭ୍ୟତାର ଚିର ଅବସାନ ଘଟିଲା । ଆୟୋନିଆରେ ଗଣତନ୍ତ୍ର ଓ ସ୍ୱାଧୀନତାର ଦୀପ ଲିଭିଯାଇ ଏକଚ୍ଛତ୍ରବାଦର ପତାକା ଉଡ଼ିଲା ।

ମିଲେଟସ୍ ଧ୍ୱଂସ ହୋଇଯିବାର ଖବର ପାଇ ଏଥେନ୍ସୀୟଗଣ ଦୁଃଖରେ ଅଭିଭୂତ ହୋଇଗଲେ । ମିଲେଟସ୍‌କୁ ଏଥେନ୍ସ ଯଥାର୍ଥରେ ଆପଣାର ଭାଇ ବୋଲି ମଣୁଥିଲା । ଗ୍ରୀକ୍

ମିଲଟିଅସ୍‌ର ମୃତ୍ୟୁ ହେବା ପରେ 'ମିଲଟିଅସ୍‌ର ପତନ' ନାମକ ଗୋଟିଏ ନାଟକ ଏଥେନ୍‌ସରେ ମଞ୍ଚସ୍ଥ ହୋଇଥିଲା । ଏହି ନାଟକକୁ ଦେଖି ସବୁ ଦର୍ଶକ କାନ୍ଦିଲେ । ନାଟ୍ୟକାର କାହିଁକି ସେମାନଙ୍କୁ ସେମାନଙ୍କର ଏତେବଡ଼ ଦୁଃଖ କଥା ସ୍ମରଣ କରାଇଲେ, ସେହି ଦୋଷରେ ନାଟ୍ୟକାରଙ୍କୁ ହଜାରେ ମୁଦ୍ରା ଜୋରିମାନା ହୋଇଥିଲା ! ବିଚରା ନାଟ୍ୟକାର !! ଆମର ସହାନୁଭୂତି ଆମେ । ନାଟ୍ୟକାରଙ୍କୁ ଜୋରିମାନା କଥାଟି ଲିପିବଦ୍ଧ କରି ଇତିହାସ ବିଷୟଟିକୁ ସେଇଠି ଶେଷ କରିଛି । କିନ୍ତୁ ଏଥେନ୍‌ସୀୟଙ୍କ ସହିତ ସାଧାରଣ ପରିଚୟ ଥିବା ବ୍ୟକ୍ତି କଳ୍ପନାଚକ୍ଷୁରେ ଦେଖିପାରେ, ଜୋରିମାନା କରାଯିବା ଦିନ ସନ୍ଧ୍ୟାବେଳକୁ ଲୋକ-ମାନେ ଦୁଇ ହଜାର ମୁଦ୍ରା ଚାନ୍ଦା କରି ନାଟ୍ୟକାର ପାଖରେ ପହଞ୍ଚାଇଛନ୍ତି ।

ମିଲଟସ୍ ଧ୍ୱଂସ ହୋଇଯିବା ଏଥେନ୍‌ସ ପକ୍ଷରେ କେବଳ ଗଭୀର ଦୁଃଖଦାୟକ ଘଟଣାଟିଏ ନୁହେଁ । ଏଥେନ୍‌ସବାସୀ ଆତଙ୍କିତ ହୋଇପଡ଼ିଲେ । କାରଣ ଆୟୋନିଆକୁ ସାହାଯ୍ୟ କରୁଥିବାରୁ ଡେରିଅସ୍‌ଙ୍କ କ୍ରୋଧ ଏଥେନ୍‌ସ ଉପରେ ପଡ଼ିବ ବୋଲି ସେମାନେ ଆଶଙ୍କା କଲେ । ଏ ଆଶଙ୍କା ସ୍ୱାଭାବିକ୍ । ଏଥେନ୍‌ସକୁ ଧ୍ୱଂସ କରିଦେବାକୁ ଡେରିଅସ୍ ଦୃଢ଼ପ୍ରତିଜ୍ଞ ବୋଲି ଖବର ଆସି ପହଞ୍ଚୁଥାଏ । ନଗରରେ ଖବର ଖେଳିଗଲା ଯେ ସମ୍ରାଟଙ୍କର ରାତ୍ରି-ଭୋଜନ ପୂର୍ବରୁ ପଦେ କଥା ତିନିଥର ଉଚ୍ଚାରଣ କରିବାକୁ ଜଣେ ଭୃତ୍ୟକୁ ଆଦେଶ ଦିଆ-ଯାଇଛି । ସେ ପଦଟି ହେଉଛି, "ସମ୍ରାଟ ! ଏଥେନ୍‌ସୀୟମାନଙ୍କୁ ଭୁଲନ୍ତୁ ନାହିଁ ।"

ଗ୍ରୀସ୍‌କୁ ଉଚିତ ଶିକ୍ଷା ଦେବାକୁ ପ୍ରସ୍ତୁତ ହୋଇ ଡେରିଅସ୍‌ଙ୍କ ଜାମାତା ଖ୍ରୀ. ପୂ ୪୯୨ରେ ଅଭିଯାନ ଆରମ୍ଭ କଲେ । ହେଲେସ୍‌ପଣ୍ଟ ଅତିକ୍ରମ କରି ବହୁ ବାଧାବିଘ୍ନ ସତ୍ତ୍ୱେ ପାରସ୍ୟ ସେନା ଆଗେଇ ଥାଆନ୍ତି । ଦୁର୍ଭାଗ୍ୟକୁ ଗୋଟାଏ ବଡ଼ ଝଡ଼ରେ ପାରସ୍ୟ ଜାହାଜ-ଗୁଡ଼ିକ ସମୁଦ୍ରରେ ବୁଡ଼ି ରହିଥିବା ପାହାଡ଼ରେ ଧକ୍କା ଖାଇ ଧ୍ୱଂସ ହୋଇଗଲେ । ଡେରିଅସ୍‌ଙ୍କ ଜାମାତା ବାଧ୍ୟ ହୋଇ ଅଧା ବାଟରୁ ଫେରିଲେ ।

ଏହି ବିଫଳ ଅଭିଯାନ ଡେରିଅସ୍‌ଙ୍କୁ ଅଧିକ ଉତ୍ତ୍ୟକ୍ତ କଲା । ଗ୍ରୀସ୍ ଆକ୍ରମଣ କରିବାକୁ ଏଥେନ୍‌ସର ବିତାଡ଼ିତ ରାଜା ହିପିଆସ୍ ସମ୍ରାଟଙ୍କୁ ମତାଉଥାଆନ୍ତି । ଗ୍ରୀକ୍‌ମାନଙ୍କୁ ବଞ୍ଚିବାର ଶେଷ ସୁଯୋଗ ଦେଇ ଡେରିଅସ୍ ସବୁ ଗ୍ରୀକ୍ ନଗରକୁ ଦୂତ ପଠାଇଲେ । ଦୂତ



[ ଗ୍ରୀସ୍‌କୁ ଜିଣିବା ସମ୍ପର୍କରେ ଡେରିଅସ୍ ତାଙ୍କର ସାମନ୍ତଙ୍କ ସହିତ ମନ୍ତ୍ରଣା କରୁଛନ୍ତି । ଜଣେ ପାର୍ଶୀ ସାମନ୍ତ ଡେରିଅସ୍‌ଙ୍କୁ କିଛି କହୁଛନ୍ତି । ତାଙ୍କୁ ପରାମର୍ଶ ଦେବାକୁ ତିନିଜଣ ଗ୍ରୀକ୍ ବିଶ୍ୱାସଘାତକ ଉପସ୍ଥିତ । ସେମାନେ ବସିଛନ୍ତି । ଖ୍ରୀ.ପୂ ୪ର୍ଥ ଶତାବ୍ଦୀରେ ଗ୍ରୀକ୍-ଇଟାଲୀରୁ ମିଳିଥିବା ପାତ୍ରାଙ୍କିତ ଚିତ୍ର । ]

ଖବର ନେଇଚାଲି, ପାରସ୍ୟର ଶରଣ ନ ପଶିଲେ ଗ୍ରୀକ୍‌ଙ୍କର ଆଉ ରକ୍ଷା ନାହିଁ । ଶରଣ ନେବାର ସଙ୍କେତ ସ୍ୱରୂପ ପ୍ରତି ନଗର ଦୂତ ହାତରେ ମାଟି ଓ ଜଳ ପଠାନ୍ତୁ । ଇଜିଆନ୍ ଦ୍ୱୀପପୁଞ୍ଜର ନଗରମାନେ ମାଟି ଓ ଜଳ ଅର୍ପଣ କରି ଶରଣ ପଶିଲେ । ପ୍ରଧାନ ଭୂଖଣ୍ଡର କୌଣସି ନଗର କିନ୍ତୁ ଶରଣ ପଶିଲେ ନାହିଁ । ଶ୍ରେଷ୍ଠ ନଗରଗୁଡ଼ିକ କୌଣସି ପ୍ରତିକ୍ରିୟା ନ ଦେଖାଇ ଚୁପ୍ ରହିଲେ । ମାତ୍ର ଦୂତର ପ୍ରସ୍ତାବ ଶୁଣି ସ୍ପାର୍ଟା ଓ ଏଥେନ୍ସ କ୍ରୋଧ ସମ୍ବରଣ କରି ପାରିଲେ ନାହିଁ । ଦୂତ ପ୍ରତି ଦୁର୍ବ୍ୟବହାର ନୀତିବିରୁଦ୍ଧ ବୋଲି ଭୁଲିଯାଇ ଏଥେନ୍ସବାସୀ ଡେରିଅସ୍‌ଙ୍କ ଦୂତକୁ ଗୋଟାଏ ଗାତରେ ପକାଇ ମାରିଲେ । ସ୍ପାର୍ଟୀୟ-ମାନେ ଦୂତକୁ ଗୋଟିଏ କୂଅରେ ବୁଡ଼ାଇ ସେଇଠୁ ମାଟି ଓ ପାଣି ନେଇଯିବାକୁ କହିଲେ । ବିଚରାର ପ୍ରାଣବାୟୁ ଉଡ଼ିଗଲା । ଏଇଟା କିଛି ଭଲ କଥା ହେଲା ନାହିଁ ବୋଲି ଦୂତ ମଲା ପରେ ସ୍ପାର୍ଟାବାସୀଙ୍କ ମୁଣ୍ଡରେ ଚିନ୍ତା ପଶିଲା । ପ୍ରସ୍ତାବ ହେଲା, ଯେହେତୁ ସେମାନେ ପାରସ୍ୟ ଦୂତକୁ ମାରିଛନ୍ତି ତେଣୁ ଦୁଇଜଣ ସ୍ପାର୍ଟୀୟ ରାଜ ଦରବାରକୁ ଦୂତ ହୋଇ ଯିବେ ଓ ଦଣ୍ଡ ଗ୍ରହଣ କରିବେ । ସମ୍ରାଟଙ୍କ ପାଖରେ ପହଞ୍ଚି ଦୁଇ ସ୍ପାର୍ଟୀୟ ମୁଣ୍ଡ ନୁଆଁଇ ଛିଡ଼ା ହେଲେ । ସମ୍ରାଟ ଗମ୍ଭୀର ହୋଇ କହିଲେ, "ସ୍ପାର୍ଟା ଯେଉଁ ନିନ୍ଦନୀୟ ଆଚରଣ କରିଛି, ମୁଁ ସେପରି କରିବି ନାହିଁ । ଦୂତ ଅବଧ୍ୟ ।"

ଖ୍ରୀଷ୍ଟପୂର୍ବ ୪୯୦ରେ ବିଶାଳ ପାରସ୍ୟସେନା ଗ୍ରୀସ୍ ଅଭିମୁଖେ ବାହାରିଲା । ଏଥର ପାରସ୍ୟସେନା ସାଥିରେ ଥାଆନ୍ତି ହିପିଆସ୍ । ଏଥେନ୍ସର ପୂର୍ବତନ ରାଜା ହିସାବରେ ତାଙ୍କ ଠାରୁ ଅନେକ ମୂଲ୍ୟବାନ ପରାମର୍ଶ ମିଳିବ ବୋଲି ପାର୍ଶୀମାନେ ଆଶା କରିବା ସ୍ୱାଭାବିକ୍ । ପୂର୍ବ ଅଭିଜ୍ଞତାରୁ ପାରସ୍ୟ ଯୁଦ୍ଧ ଜାହାଜ ସବୁ ଏକ ଭିନ୍ନ ଜଳ ପଥରେ ଗ୍ରୀସ୍ ଅଭିମୁଖେ ଗଲିଲା । ଗ୍ରୀକ୍ ନଗରଗୁଡ଼ିକ ତଥାପି ବେଧଡ଼କ । ଆତ୍ମରକ୍ଷା କରିବାର କୌଣସି କାର୍ଯ୍ୟକ୍ରମ ସେମାନେ ଆରମ୍ଭ କରି ନ ଥାନ୍ତି । ଏକଦା ଅଭାବରୁ ଆୟୋନିଆସ୍ଥ ଗ୍ରୀକ୍ ଉପନିବେଶ-ଗୁଡ଼ିକ ଧ୍ୱଂସ ପାଇବା ଘଟଣାରୁ ଗ୍ରୀକ୍‌ଙ୍କର କୌଣସି ଶିକ୍ଷା ତଥାପି ହୋଇ ନ ଥାଏ । ଆୟୋନିଆକୁ ସାହାଯ୍ୟ କରିଥିବା ଏଥେନ୍ସ ଓ କ୍ଷୁଦ୍ରନଗର ଇରିଟ୍ରିଆର ଆତଙ୍କ କହିଲେ ନ ସରେ । ପାର୍ଶୀସେନା ଇରିଟ୍ରିଆରେ ପହଞ୍ଚି ତାକୁ ଜାଳିପୋଡ଼ି ଧ୍ୱଂସ କରିଦେଲେ । ତା'ପରେ ଏଥେନ୍ସର ପାଳି ।

ସମୁଦ୍ର ଉପକୂଳରେ ଏକ ପାର୍ବତ୍ୟ ଉପତ୍ୟକାର ଗ୍ରାମ ମାରାଥନ୍ । ଏଥେନ୍ସ ଠାରୁ ମାତ୍ର ପଚିଶ ମାଇଲ ଦୂର । ହିପିଆସ୍‌ଙ୍କ ଉପଦେଶ ଅନୁସାରେ ପାରସ୍ୟ ସେନା ସେଇଠି ଛାଉଣୀ ପକାଇଲେ । ଏଥେନ୍ସ ଉପରେ ଚଢ଼ାଉ କରିବା ପାଇଁ ସେଇ ଉପଯୁକ୍ତ ସ୍ଥାନ ।

## ମାରାଥନ୍ ଯୁଦ୍ଧ

ଗ୍ରୀକ୍ ଭାଷାରେ Persae ( ପାର୍ଶୀ ) ଶବ୍ଦର ଅର୍ଥ ଧ୍ୱଂସ ସାଧକ । ମାରାଥନ୍‌ରୁ ଝାମ୍ପ ଦେବାକୁ ପାରସ୍ୟସେନା ପ୍ରସ୍ତୁତ ହେଉଛନ୍ତି ବୋଲି ଖବର ପହଞ୍ଚିଲା ମାତ୍ରେ ଏଥେନ୍ସରେ ପ୍ରବଳ ଭୟ ଓ ଉତ୍ତେଜନା ଖେଳିଗଲା । କ'ଣ କରିବାକୁ ହେବ ଭାବିବାକୁ ଆଉ ବେଳ କାହିଁ ? ଇରିଟ୍ରିଆ ମୃତ । ଏଥେନ୍ସ ଭାଗ୍ୟରେ, କ'ଣ ଅଛି ? ପାରସ୍ୟ ସେନାର ଅଭିଧାନରେ ପରାଜୟ ଶବ୍ଦ ନାହିଁ । ସମଗ୍ର ଗ୍ରୀସ୍ ତେବେ ଇରିଟ୍ରିଆର ଦଶା ଲଭିବ ?

ସ୍ପାର୍ଟୀୟମାନଙ୍କୁ ସବୁକଥା ଜଣେଇ ଦେବାକୁ ଫିଲିପିଡ଼ୀଜ୍ ନାମକ ଜଣେ ଦୌଡ଼ାଳୀଙ୍କୁ ସ୍ପାର୍ଟା ପଠାଗଲା । ସ୍ପାର୍ଟାରୁ ଏଥେନ୍ସ ଦେଢ଼ଶହ ମାଇଲ । ପୁଣି ପାହାଡ଼ିଆ ରାସ୍ତା । ଫିଲିପିଡ଼ୀଜ୍ ଖବର ନେଇ ଫେରିଲେ ଯେ ସ୍ପାର୍ଟା ସହଯୋଗ

ପାରସ୍ୟ ବିରୁଦ୍ଧରେ ଏକାଠି ମିଶି ଲଢ଼ିବାକୁ ଏଥେନ୍‌ସ ଶେଷ ମୁହୂର୍ତ୍ତରେ ଉଦ୍ୟମ କରିଥିଲା । ମାତ୍ର ସେମାନେ ଏକାଠି ହେବା ପୂର୍ବରୁ ଏଥେନ୍‌ସକୁ ଏକାକୀ ଲଢ଼ିବାକୁ ପଡ଼ିଲା ।

କରିବାକୁ ପ୍ରସ୍ତୁତ । କିନ୍ତୁ ପୂର୍ଣ୍ଣିମା ପୂର୍ବରୁ ସେମାନେ ଯୁଦ୍ଧ ଅନୁକୂଳ କରିପାରିବେ ନାହିଁ । ତାହା ନଗର ପକ୍ଷରେ ଅଶୁଭ ଜନକ । ପୂର୍ଣ୍ଣିମା ଆହୁରି ଛଅଦିନ ବାକି ଥାଏ ।

ଛଅଦିନ ଅପେକ୍ଷା କରିବା କିପରି ସମ୍ଭବ ? ପାରସ୍ୟ-ସେନା ମାଡ଼ି ଆସିଲେ ପ୍ରାଚୀରବିହୀନ ଏଥେନ୍‌ସ ନଗର କ୍ଷଣକରେ ଛାରଖାର ହୋଇଯିବ । କର୍ତ୍ତବ୍ୟ ସ୍ଥିର କରିବାକୁ ସାଧାରଣ ଆସେମ୍ବ୍ଲି ଡକାଗଲା । ନିକ୍‌ସ ପାହାଡ଼ରେ ନଗରର ଧନୀ ଦରିଦ୍ର ସବୁ ନାଗରିକ ରୁଣ୍ଡ ହେଲେ । ଏଥେନ୍‌ସର ଆସେମ୍ବ୍ଲି ସେଇଠି ବସେ । ଯଦି ନଗର ପାରସ୍ୟ-ହାତରେ ପଡ଼େ ତେବେ ସେଇ ହେବ ସେମାନଙ୍କର ଶେଷ ବୈଠକ !

ସତରେ ଯେବେ ଏଥେନ୍‌ସ ଲୋପ ପାଇଥାଆନ୍ତା ତେବେ ପୃଥିବୀ ଇତିହାସ କି ରୂପ ଧାରଣ କରିଥାଆନ୍ତା ତାହା କଳ୍ପନା କରିବା କଷ୍ଟକର । ଏଥେନ୍‌ସ ହେଉଛି ପାଶ୍ଚାତ୍ୟ ସଭ୍ୟତାର ଏକ ସୂତିକାଗାର । କିନ୍ତୁ ହେଉ ହେଉ ଗ୍ରୀସ୍‌ର ଗଣତନ୍ତ୍ର, ସ୍ୱାଧୀନତା ଓ ଜ୍ଞାନପିପାସା ସମାଧି ଲଭିଥିଲେ ୟୁରୋପ କିପରି ଗଢ଼ି ହୋଇଥାଆନ୍ତା ତାହା କଳ୍ପନାତୀତ ।

ଏହି ଐତିହାସିକ ବୈଠକରେ ମିଲ୍‌ଟିଏଡସ୍ ନାମକ ଜଣେ ବ୍ୟକ୍ତି ଉପସ୍ଥିତ ଥିଲେ । ଏଥେନ୍‌ସୀୟଙ୍କ ମନରେ କ୍ଷୀଣ ଆଶାର ଆଲୋକ ଥିଲା ଯେ ସେହି ସଙ୍କଟ କାଳରେ ମିଲ୍‌ଟିଏଡସ୍ ସେମାନଙ୍କୁ ରକ୍ଷା କରିପାରନ୍ତି ! ମିଲ୍‌ଟିଏଡସ୍ ଜଣେ ସେନାପତିଙ୍କ ପୁତ୍ର । ହିପିଆସ୍ ତାଙ୍କ ବଂଶର ଶତ୍ରୁ । ଘଟଣାଚକ୍ରରେ ସେ ଗୋଟିଏ କ୍ଷୁଦ୍ର ଆୟୋନୀୟ ନଗରକୁ କିଛିକାଳ ଶାସନ କରିଥିଲେ ଓ ସେହି ସମୟରେ ପାରସ୍ୟ ସେନା ସହିତ ଲଢ଼ି ଦୁଇଟି ପାର୍ଶ୍ୱୀ ଦ୍ୱୀପ ଜିଣି ନେଇଥିଲେ । ପାର୍ଶୀଙ୍କର ଯୁଦ୍ଧ କୌଶଳ ସହିତ ତାଙ୍କର କିଛି ପରିଚୟ ଥିଲା ।

ସମବେତ ନାଗରିକଙ୍କୁ ମିଲ୍‌ଟିଏଡସ୍ କହିଲେ, ଶତ୍ରୁର ମୁକାବିଲା ନ କରି ତାକୁ ଅପେକ୍ଷା କରି ବସିବା ନିର୍ବୋଧତା । ତାଙ୍କର ଯୁକ୍ତି, ଉତ୍ସାହ ଓ ହୃଦୟସ୍ପର୍ଶୀ ଆହ୍ୱାନ ଲୋକଙ୍କୁ ପ୍ରଭାବିତ କଲା । ସେମାନେ ତାଙ୍କୁ ନେତା ରୂପେ ବାଛିଲେ ।



[ ପାରସ୍ୟ ଯୁଦ୍ଧ ପୂର୍ବରୁ ଗ୍ରୀକ୍ ଦେବଦେବୀଙ୍କର ବୈଠକରେ ମନ୍ତ୍ରଣାର ଏକ ଦୃଶ୍ୟ । ଚିତ୍ରର ବାମ ପ୍ରାନ୍ତରେ ବସିଥିବା ପାରସ୍ୟ ରାଜାଙ୍କୁ ମାଆଙ୍କ ଦେବୀ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଉଛନ୍ତି । ମଝିରେ ଦେବରାଜ ଜିଅସ୍ । ତାଙ୍କ ବାମ ପାର୍ଶ୍ୱରେ ଦେବୀ ହେରା । ହେରାଙ୍କ ପାଖକୁ ଲାଗି ଯୁଦ୍ଧ ବେଶରେ ଦେବୀ ଏଥେନା । ଡାହାଣ ପ୍ରାନ୍ତରେ ଆର୍ଟିମିସ୍ ତାଙ୍କ ବାହାନ ହରିଣ ଉପରେ ବସିଛନ୍ତି । ଆର୍ଟିମିସ୍‌ଙ୍କ ପାଖରେ ହଂସ ସହିତ ଆଫ୍ରୋଡାଇଟ୍ । ଜିଅସ୍‌ଙ୍କ ନିକଟରେ ବିଜୟର ଦେବତା ଦଣ୍ଡାୟମାନ । ଖ୍ରୀ· ପୂ ୪ର୍ଥ ଶତାବ୍ଦୀର ଇଟାଲୀରୁ ଏହି ଚିତ୍ର ମିଳିଛି । ]

ପରବର୍ତ୍ତୀ ପଦକ୍ଷେପ ପାଇଁ ପାର୍ସୀମାନେ ପ୍ରସ୍ତୁତ ହେଉଥାନ୍ତି । ମିଲ୍‌ଟିଏଡିଜ୍‌ଙ୍କ ନେତୃତ୍ୱରେ ଏଥେନ୍‌ସୀୟ ସୈନିକମାନେ ଯାଇ ଗୋଟିଏ ଘାଟି ସ୍ଥାନରେ ଶତ୍ରୁର ବାଟ ଓଗାଳି ରହିଲେ । ପାର୍ସୀଙ୍କ ତୁଳନାରେ ସଂଖ୍ୟା ଦୃଷ୍ଟିରୁ ନଗଣ୍ୟ ନିଜର ସୈନିକଙ୍କୁ ମିଲ୍‌ଟିଏଡିଜ୍ ଖୁବ୍ ଚତୁରତାର ସହିତ ସଜାଇ ଅପେକ୍ଷା କଲେ । ସୈନ୍ୟମାନଙ୍କୁ ତାଙ୍କର ନିର୍ଦ୍ଦେଶ ଥାଏ, ଯୁଦ୍ଧବେଳେ ସେମାନେ ପାର୍ସୀ ସେନାର ନିକଟକୁ ମାଡ଼ିଯିବେ । ଅତି ନିକଟରୁ ଶର ଚାଳନା କରିବା ପାର୍ସୀଙ୍କ ପକ୍ଷରେ ସମ୍ଭବ ହେବ ନାହିଁ । ଫଳରେ ସେମାନେ ବର୍ଚ୍ଛା ଧରି ଲଢ଼ିବାକୁ ବାଧ୍ୟ ହେବେ । ମିଲ୍‌ଟିଏଡିଜ୍‌ଙ୍କ ସାହସ ଓ ରଣ କୌଶଳ ଯୋଗୁ ପାରସ୍ୟ ହାରିଗଲା । ପାରସ୍ୟର ଛଅ ହଜାର ସୈନ୍ୟ ମରିବା ସ୍ଥଳେ ଏଥେନ୍‌ସ ମୋଟେ ଦୁଇଶହ ସୈନ୍ୟ ହରାଇଲା ।

ପାରସ୍ୟ ହାରିଗଲା ! ଏଥେନ୍‌ସୀୟ ସୈନିକମାନେ ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ମାରାଥନ୍‌ରୁ ବିଜୟ ବାର୍ତ୍ତା ନେଇ ଫିଲିପିଡୀଜ୍ ଏଥେନ୍‌ସ ଦୌଡ଼ିଲେ ।

ପଚଶ ମାଇଲ୍ ବାଟ ସେ ଏତେ ଜୋର୍‌ରେ ଦୌଡ଼ିଥିଲେ ଯେ ଏଥେନ୍‌ସରେ ପହଞ୍ଚିଲା ବେଳକୁ ତାଙ୍କର ମାତ୍ର ପଦେ କଥା କହିବା ଭଳି ଶକ୍ତି ବଳିଥାଏ । "ଉତ୍ସବ କର, ଆମେ ଜିଣିଛୁ"—ସମବେତ ନାଗରିକଙ୍କ ମେଳରେ ତାଙ୍କ ପାଟିରୁ ଏଇ ପଦେ କଥା ବାହାରିଲା । ଆନନ୍ଦ ଉଲ୍ଲାସରେ ନାଚୁଥିବା ଦେଶବାସୀଙ୍କ ସମ୍ମୁଖରେ ଫିଲପିଡ଼ୀଜ୍ ଟଳି ପଡ଼ିଲେ । ମୃତ୍ୟୁ ପୁଣି ଏତେ ଲୋଭନୀୟ ହୋଇପାରେ ! ସେ ଦିନୁ ଆରମ୍ଭ ହୋଇଥିବା ପଚଶ ମାଇଲ୍ ମାରାଥନ୍ ଦୌଡ଼ ପ୍ରତିଯୋଗିତା ଚିରକାଳ ଫିଲପିଡ଼ୀଜ୍‌ଙ୍କ ସ୍ମୃତିକୁ ବଞ୍ଚାଇ ରଖିବ ।

ପାର୍ଶୀମାନେ ପୃଷ୍ଠଭଙ୍ଗ ଦେଇ ପଳାୟନ କରିବାର ଦିନଦିନ ପରେ ସ୍ପାର୍ଟାର ବୀରମାନେ ଗର୍ଜନ ତର୍ଜନ କରି ଆସି ପହଞ୍ଚିଲେ । ମାରାଥନ୍ ଯୁଦ୍ଧରେ ଗଭୀର ପ୍ରଭାବ ଏଥେନ୍‌ସ ଉପରେ ପଡ଼ିଲା । ପାରସ୍ୟ ପରି ପରାକ୍ରମୀ ଶତ୍ରୁକୁ ଏକାକୀ ହଟେଇ ଦେବା ଫଳରେ ଏଥେନ୍‌ସର ଆତ୍ମବିଶ୍ୱାସ ଦୃଢ଼ ହେବା ସ୍ୱାଭାବିକ୍ । ଗଣତାନ୍ତ୍ରିକ ଅନୁଷ୍ଠାନ ଓ ମୂଲ୍ୟବୋଧ ଉପରେ ଏଥେନ୍‌ସର ଆସ୍ଥା ଆହିଗଲା ଏ କଥାଟି ତାତ୍ପର୍ଯ୍ୟପୂର୍ଣ୍ଣ । ସ୍ପାର୍ଟା ପରି ସାମରିକ ରାଷ୍ଟ୍ର ପ୍ରତିଷ୍ଠାର ଆଦର୍ଶ ଗ୍ରହଣ ନ କରି ସେମାନେ ଭୁଲ୍ କରି ନାହାନ୍ତି ତ ? ବିପଦ ବେଳେ ଏଥେନ୍‌ସୀୟଙ୍କ ମନରେ ଏହିପରି ଦ୍ୱନ୍ଦ୍ୱ ସୃଷ୍ଟି ହେଉଥିଲା । ପାରସ୍ୟକୁ ହରାଇବା ପରେ ସେମାନଙ୍କର ଏ ଦ୍ୱନ୍ଦ୍ୱ ଚିରକାଳ ପାଇଁ ଦୂର ହେଲା ।

ମାରାଥନ୍ ଯୁଦ୍ଧ ମିଲ୍‌ଟିଏଡ଼ିଜ୍‌ଙ୍କ ନାମକୁ ଅମର କରିଛି । କେଇଟା ବର୍ଷ ପରେ ଏଥେନ୍‌ସ ତାଙ୍କ ପ୍ରତି ଯେପରି ବ୍ୟବହାର କଲା ତାହା ବଡ଼ ବିଚିତ୍ର । ମିଲ୍‌ଟିଏଡ଼ିଜ୍ ପାରୋସ୍ ଦ୍ୱୀପ ଆକ୍ରମଣର ନେତୃତ୍ୱ ନେଇଥିଲେ । ସେ ଯୁଦ୍ଧରେ ବିଫଳ ହୋଇ ଫେରି-ଆସିବା ପରେ ଏଥେନ୍‌ସବାସୀ ଅଳ୍ପଦିନରେ ତାଙ୍କର ମହାନ୍ ସାଫଲ୍ୟ ଓ ଅବଦାନ କଥା ଭୁଲିଯାଇ ତାଙ୍କୁ ଉପହାସ କଲେ । ମିଲ୍‌ଟିଏଡ଼ୀଜ୍‌ଙ୍କ ବିରୁଦ୍ଧରେ ଗୋଟାଏ ଏଣୁ ତେଣୁ ଅଭିଯୋଗ ଅଣାଗଲା । ଯୁଦ୍ଧରେ ଆହତ ହୋଇଥିଲେ ମଧ୍ୟ ସେ ବୁହାହୋଇ ବିଚାରାଳୟକୁ ଆସିଲେ । ବିଚାରରେ ତାଙ୍କୁ ଯେତେ ଜୋରିମାନା ହେଲା ତାହା ଦେଇ ନ ପାରି ସେ ଜେଲ୍ ଗଲେ । ସେଇଠି ବଡ଼ ଦୁଃଖକଷ୍ଟରେ ତାଙ୍କର ପ୍ରାଣ ଗଲା । ମାରାଥନ୍‌ର ବିଜୟୀ-ବୀରଙ୍କୁ ନଗରବାସୀ ଏହିପରି ପୁରସ୍କୃତ କରିଥିଲେ ।

ମାରାଥନ୍ ଯୁଦ୍ଧର ବିଜୟୀ ବୀର ମିଲ୍‌ଟିଏଡ଼ୀଜ୍‌ଙ୍କ ଶେଷ ଜୀବନ ଯନ୍ତ୍ରଣାରେ କଟିଥିଲା ।

## ଜରକ୍‌ସିଜ୍‌ଙ୍କ ଅଭିଯାନ :

ମାରାଥନ୍ ଯୁଦ୍ଧ ପରେ ପାରସ୍ୟ ଦଶବର୍ଷ ଚୁପ୍ ରହିଲା । ଏହି ସମୟ ଭିତରେ ଡେରିଅସ୍‌ଙ୍କର ମୃତ୍ୟୁ ହୋଇଥାଏ । ଡେରିଅସ୍‌ଙ୍କ ଅନ୍ତେ ତାଙ୍କର ସୁପୁତ୍ର ଜର୍କ୍‌ସିଜ୍ ( Xerxes ) ସିଂହାସନ ଆରୋହଣ କଲେ । ଶାସନ ପରିବର୍ତ୍ତନ ସୁଯୋଗରେ ପାରସ୍ୟ ବିରୁଦ୍ଧରେ ବିଦ୍ରୋହ କରି ମିଶର ସ୍ୱାଧୀନତା ଘୋଷଣା କଲେ । ମିଶରର ବିଦ୍ରୋହ ଦମନ କରିବାରେ ଜର୍କ୍‌ସିଜ୍ କିଛି କାଳ ବ୍ୟସ୍ତ ରହିଲେ । ଗ୍ରୀକ୍‌ମାନେ ଭାବିଲେ, ପାରସ୍ୟ ତାଙ୍କ ଦେଶକୁ ପାଶୋରି ଦେଇଛି । ମାତ୍ର ଏଥେନ୍‌ସର ବିଚକ୍ଷଣ ନେତା ଥେମିଷ୍ଟୋକ୍ଲିସ୍‌ଙ୍କ ଚିନ୍ତା ଥିଲା ଭିନ୍ନ ପ୍ରକାର ।

ମାରାଥନ୍ ଯୁଦ୍ଧରେ ଥେମିଷ୍ଟୋକ୍ଲିସ ଥିଲେ ଜଣେ ଯୋଦ୍ଧା । ନଗରର ଶାସକ ଭାବେ ନିର୍ବାଚିତ ହେବା ପରେ ପାରସ୍ୟ ସହିତ ଭବିଷ୍ୟତରେ ଆହୁରି ବଡ଼ ଧରଣର ମୁକାବିଲା ପାଇଁ ଥେମିଷ୍ଟୋକ୍ଲିସ ପ୍ରସ୍ତୁତ ହେଉଥାନ୍ତି । ସେ ଜାଣିଥିଲେ, ସ୍ଥଳ ଯୁଦ୍ଧରେ ପାରସ୍ୟକୁ ପାରିହେବ ନାହିଁ । ଜଳଯୁଦ୍ଧରେ ପାରସ୍ୟ ଦୁର୍ବଳ । ସମୁଦ୍ର ଉପକୂଳରେ ପାରସ୍ୟର ନିଜର କୌଣସି ବଡ଼ ନଗର ନାହିଁ । ତେଣୁ ଜଳଯୁଦ୍ଧ ପାଇଁ ବାଧ୍ୟ ହୋଇ ପାରସ୍ୟ ଆୟୋନିଆ, ମିଶର ଓ ଫୋନିସିଆ ଉପରେ ନିର୍ଭର କରେ । ପାରସ୍ୟ ପ୍ରତି ବିଦ୍ରୋହୀ ମନୋଭାବ ପୋଷଣ କରୁଥିବା ଏହି ଉପନିବେଶ ଗୁଡ଼ିକ ଯୁଦ୍ଧବେଳେ ତାକୁ କଦାପି ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ କରିବେ ନାହିଁ ।

ଏହିପରି ହିସାବ କରି ଭବିଷ୍ୟତରେ ପାରସ୍ୟ ଆକ୍ରମଣର ସମ୍ମୁଖୀନ ହେବା ପାଇଁ ଥେମିଷ୍ଟୋକ୍ଲିସ୍ ଏକ ଶକ୍ତିଶାଳୀ ନୌସେନା ଗଢ଼ିବାରେ ଲାଗି ପଡ଼ିଲେ । ଯଥାଶକ୍ତି ସମ୍ବଳ ଖଟେଇ ଏଥେନ୍‌ସ ଜାହାଜ ପରେ ଜାହାଜ ନିର୍ମାଣ କରି ଚାଲିଲା । ନୂଆ ନୂଆ ବନ୍ଦର ତିଆରି ହେଲା । ବନ୍ଦର ଚାରିପଟେ ସୁଦୃଢ଼ ପାଚେରି ଉଠାଇବାର ପ୍ରସ୍ତାବ ଗ୍ରହଣ କରି ନେବାକୁ ସେ ଲୋକଙ୍କୁ ପ୍ରବର୍ତ୍ତାଇଲେ । ଏଥେନ୍‌ସର ରକ୍ଷଣଶୀଳ ନେତା ଓ ଲୋକମାନେ ଥେମିଷ୍ଟୋକ୍ଲିସ୍‌ଙ୍କ ପରିକଳ୍ପନାର ବିରୋଧ କରିଥିଲେ । କିନ୍ତୁ ଆସେମ୍ବ୍ଲି ତାଙ୍କର ବ୍ୟୟବହୁଳ ଓ ଅଭିନବ ଯୋଜନାକୁ ଗ୍ରହଣ କରିନେଲା ।

ମିଶରର ବିଦ୍ରୋହକୁ ସଫଳ ଭାବେ ଦମନ କରିବା ପରେ ଜରକ୍ସିଜ୍ ଗ୍ରୀସ୍ ଆକ୍ରମଣ କରିବାକୁ ସଜ ହେଲେ । ଜଳ ଓ ସ୍ଥଳ ଉଭୟ ଆଡୁ ଚଢ଼ାଉ କରି ଗ୍ରୀସ୍କୁ କାବୁ କରି ନେବାର ନିଖୁଣ ଯୋଜନା ପ୍ରସ୍ତୁତ ହେଲା । ଏଥରକ ଆଉ ଗ୍ରୀକ୍ଙ୍କର ରକ୍ଷା ନାହିଁ । ଏଥେନ୍ସରେ ଖବର ପହଞ୍ଚିଲା, ଏଥସ୍ ପାହାଡ ଫୁଟେଇ ପାରସ୍ୟ ସେନା ଗୋଟାଏ କେନାଲ୍ ଖୋଳୁଛନ୍ତି । ଏହା ବ୍ୟତୀତ ହେଲେସ୍ପଣ୍ଟ ଠାରେ ଡଙ୍ଗାକୁ ଡଙ୍ଗା ଖଞ୍ଜି ସମୁଦ୍ରରେ ଗୋଟିଏ ଭେଳା ବାନ୍ଧିବାକୁ ଜର୍କସିଜ୍ ନିର୍ଦ୍ଦେଶ ଦେଇଛନ୍ତି । ଏହିପରି ସବୁ ଖବର ପାଇ ଏଥେନ୍ସବାସୀ ଚିନ୍ତିଆ ହୋଇଗଲେ । ଜର୍କ୍ସିଜ୍ଙ୍କ ଦୁର୍ଭାଗ୍ୟକୁ ଗୋଟାଏ ବଡ଼ ଝଡ଼ରେ ଅଧା ତିଆରି ଭେଳା ଭାଙ୍ଗିଗଲା । କ୍ରୋଧରେ ଜର୍କ୍ସିଜ୍ ସବୁ ଇଞ୍ଜିନିୟର୍ଙ୍କର ମୁଣ୍ଡକାଟ ଆଦେଶ ଦେଲେ । ତଥାପି ତାଙ୍କର କ୍ରୋଧ ଶାନ୍ତ ହେଲା ନାହିଁ । ସମୁଦ୍ରକୁ ତିନିଶହ ବେତମାଡ଼ ଦେବାକୁ ଆଦେଶ ହେଲା ! ପାର୍ଶୀ ସୈନ୍ୟମାନେ ସମୁଦ୍ର ଭିତରେ ପଶି ସମ୍ରାଟଙ୍କ ଆଦେଶ ପାଳନ କଲେ । ଜରକ୍ସିଜ୍ କିପରି ପ୍ରତିହିଂସା-ପରାୟଣ ହୋଇ ପଡ଼ିଥିଲେ ତାହା ଏହି ଘଟଣାରୁ କଳାହୁଏ ।

ଘନେଇ ଆସୁଥିବା ସଙ୍କଟ ଥିଲା ଗ୍ରୀକ୍ ଜାତି ପ୍ରତି ଏକ ପ୍ରଚ୍ଛନ୍ନ ଆଶୀର୍ବାଦ । ଗ୍ରୀକ୍ମାନେ ଦେଖିଲେ ଏକତାବଦ୍ଧ ହେଲେ ସେମାନେ ହୁଏତ ବଞ୍ଚିଯାଇ ପାରନ୍ତି । ପରିସ୍ଥିତି ସେମାନଙ୍କୁ ଏକାଠି କରିବାକୁ ବାଧ୍ୟ କଲା । ଗ୍ରୀକ୍ ଜାତିର ଇତିହାସରେ କୌଣସି ଗୋଟିଏ ବୃହତ୍ତର ଲକ୍ଷ୍ୟ ଲାଗି ଏକାଠି ହେବା ଏଇ ପ୍ରଥମ ଘଟଣା । ପରସ୍ପର ସହିତ କଳି କରିବା ଆତ୍ମକୈନ୍ଦ୍ରିକ ଓ ଅହଙ୍କାରୀ ଗ୍ରୀକ୍ ନଗର ମାନଙ୍କର ଅଭ୍ୟାସରେ ପରିଣତ ହୋଇଥିଲା । ତେଣୁ କରିନ୍ଥ ନଗରରେ ସବୁ ନଗରର ପ୍ରତିନିଧିମାନେ ଏକାଠି ବସି ଗ୍ରୀସକୁ ରକ୍ଷା କରିବାର ଉପାୟ ଚିନ୍ତିବା ଗୋଟାଏ ଅଭିନବ ଘଟଣା । ଅବଶ୍ୟ ଏତେ କାଳର ଜମାଟ-ବନ୍ଧା ଈର୍ଷା ଓ ଅହଙ୍କାର ଏକାଦିନକେ ମିଳେଇଯିବ ବୋଲି ଆଶା କରାଯାଇ ନ ପାରେ । ଏଥେନ୍ସ ପ୍ରତି ଈର୍ଷାନ୍ୱିତ ଥିବାରୁ କରିନ୍ଥ ବୈଠକକୁ ପ୍ରତିନିଧି ପଠାଇଲା ନାହିଁ । ସେହିପରି ସ୍ପାର୍ଟା ପ୍ରତି ଅସହିଷ୍ଣୁ ଆର୍ଗୋସ ମଧ୍ୟ ବୈଠକକୁ ପ୍ରତ୍ୟାଖ୍ୟାନ କଲା । ତେବେ କେତେକ ନଗର ଆଶାତୀତ ସହଯୋଗ ମନୋଭାବ ଦେଖାଇଲେ । ଏ ଦିଗରେ ନେତୃତ୍ୱ ନେଇଥିଲା ଏଥେନ୍ସ । ଏଥେନ୍ସ ଗ୍ରୀସ୍ର ପ୍ରଧାନ ନୌଶକ୍ତି । ଗ୍ରୀସ୍ର ମିଳିତ ନୌବାହିନୀକୁ ତାର ଅବଦାନ ଥିଲା ସର୍ବାଧିକ । ତଥାପି ଜଣେ ସ୍ପାର୍ଟୀୟ ଗ୍ରୀକ୍ ନୌବାହିନୀର ମୁଖ୍ୟ ହେବା

ବିଷୟରେ ଏଥେନ୍ସ ରାଜ ହୋଇଗଲା । ସ୍ପାର୍ଟାର ପଦାତିକ ବାହିନୀ ଗ୍ରୀସ୍‌ରେ ଥିଲା ସର୍ବଶ୍ରେଷ୍ଠ । ସ୍ପାର୍ଟାର ରାଜା ମିଳିତ ସେନାବାହିନୀର ମୁଖ୍ୟ ହେଲେ ।

ଜର୍କ୍‌ସିଜ୍‌ଙ୍କ ଆଦେଶରେ ପାରସ୍ୟ ସେନା ଲାଗିପଡ଼ି ବିଖ୍ୟାତ ଉଦ୍ୟମରେ ହେଲେସ୍‌ପଣ୍ଟ ଠାରେ ଜାହାଜ ଭେଲା ତିଆରି କଲେ । ଏଥିପାଇଁ ପ୍ରାୟ ସାତଶହ ଜାହାଜ ଦରକାର ପଡ଼ିଥିଲା । ଏହି ଜାହାଜ ଭେଲାଟି ପ୍ରାଚୀନକାଳର ଇଞ୍ଜିନିୟରିଂ ବୁଦ୍ଧିର ଏକ ନିଦର୍ଶନ । ସମୁଦ୍ର ଉପରେ ସମ୍ରାଟଙ୍କର ଅଦ୍ଭୁତ ସେତୁଟିକୁ ଦେଖି ଲୋକମାନେ ଅବାକ୍ ହୋଇଯାଇଥିଲେ । ଜଣେ ସ୍ଥାନୀୟ ଲୋକ ବିସ୍ମୟରେ କହିଥିଲେ, "ଏ ସ୍ୱୟଂ ଜିଅସ୍‌ଙ୍କ କାମ ।" ଅର୍ଥାତ୍ ଜର୍କ୍‌ସିଜ୍ ସାକ୍ଷାତ ଜିଅସ୍ । ମନୁଷ୍ୟ ପକ୍ଷରେ ସମୁଦ୍ର ଉପରେ ବନ୍ଧ ବାନ୍ଧିବା ଅସମ୍ଭବ । ସାମାନ୍ୟ ଗ୍ରୀସ୍ ଉପରେ ଜିଅସ୍‌ଙ୍କର ଏତେ କୋପ କାହିଁକି ? ଯଦି କୋପ ହୋଇଛି ତେବେ ବଜ୍ର ପେଶି ତାଙ୍କୁ ଧ୍ୱଂସ କରୁନାହାନ୍ତି କାହିଁକି ? ସେତୁବନ୍ଧ ଗୋଟାଏ ବାତୁଳ ମାତ୍ର ।

ଜର୍କ୍‌ସିଜ୍‌ଙ୍କର ଯେଉଁ ବିଶାଳ ସେନାବାହିନୀ ଗ୍ରୀସ୍ ଅଭିମୁଖେ ମାଡ଼ିଚାଲିଲା, ତାହା ଏସିଆ ଓ ଆଫ୍ରିକାର ଛୟାଳିଶଟି ଦେଶର ସୈନ୍ୟଙ୍କୁ ନେଇ ଗଠିତ । ଭାରତବର୍ଷ ଠାରୁ ଇଥିଓପିଆ ପର୍ଯ୍ୟନ୍ତ ଛୟାଳିଶଟି ଦେଶର ସୈନିକମାନେ ନିଜ ନିଜର ଯୁଦ୍ଧପୋଷାକ ଓ ଅସ୍ତ୍ର-ଶସ୍ତ୍ରରେ ସଜ୍ଜିତ ହୋଇ ପାରସ୍ୟର ପତାକା ତଳେ ଏକତ୍ରିତ ହୋଇଥିଲେ । ଯୁଦ୍ଧକୁ ବାହାରିଥିବା ଏତେବଡ଼ ସେନାବାହିନୀ ଇତିହାସରେ ଅଭୂତପୂର୍ବ । ଗ୍ରୀସ୍‌ର ଐତିହାସିକ ହିରୋଡୋଟସ୍‌ଙ୍କ ବିବରଣୀ ଅନୁସାରେ ଜର୍କ୍‌ସିଜ୍ ସେନା-ବାହିନୀରେ ଛବିଶ ଲକ୍ଷ ଲଢ଼ୁଆ ସୈନିକ ଥିଲେ । ଏମାନଙ୍କ ବ୍ୟତୀତ ଥିଲେ ହଜାର ହଜାର ଇଞ୍ଜିନିୟର, ଡାକ୍ତର ଦାସ ଦାସୀ ଓ ବେଶ୍ୟା । ପୂର୍ବରୁ କେହି କେବେ ଏତେ-ସଂଖ୍ୟକ ସୈନ୍ୟଙ୍କୁ ଠୁଳ କରି ନ ଥିଲା । ରଥୀ, ଅଶ୍ୱାରୋହୀ ଓ ଗଜାରୋହୀଙ୍କ ବ୍ୟତୀତ ସାଙ୍ଗରେ ଥିଲେ ବାରଶହ ଯୁଦ୍ଧ-ଜାହାଜ । ତେବେ ତାଙ୍କୁ ଯୁଦ୍ଧ କରିବାକୁ ପଡ଼ିବ ନାହିଁ ବୋଲି ସମ୍ରାଟ ନିଶ୍ଚିତ ଥିଲେ । ଏତେବଡ଼ ଆଟକୁ ଦେଖି ଦେଇ ଯେ କୌଣସି ଶତ୍ରୁ ଶରଣ ପଶିବ । କେତେଜଣ ଗ୍ରୀକ୍ ଗୁପ୍ତଚରଙ୍କୁ ଧରି ପାରସ୍ୟ ସେନାପତି ମାରିବାକୁ ବସିଥିଲେ । ଜର୍କ୍‌ସିଜ୍ ସେମାନଙ୍କୁ

ଜରକ୍‌ସିଜ୍‌ଙ୍କ ବିଶାଳ ସେନା ଇତିହାସରେ ଅଭୂତପୂର୍ବ । ପାରସ୍ୟ ଅଧୀନସ୍ଥ ଛୟାଳିଶଟି ଦେଶର ସୈନିକ ତାଙ୍କ ସେନା-ବାହିନୀରେ ଥିଲେ ।

ମ୍ଭୁକୁଲାଇ ସବୁ ସୈନ୍ୟସାମନ୍ତ ଓ ଅସ୍ତ୍ରଶସ୍ତ୍ର ଭଲଭାବେ ଦେଖି ଫେରିଯିବାକୁ ଆଦେଶ ଦେଲେ । ଉଦ୍ଦେଶ୍ୟ, ଗ୍ରୀକ୍‌ମାନେ ଜାଣନ୍ତୁ ଯେ ପାରସ୍ୟ ସହିତ ଲଢ଼ିବା ଇଚ୍ଛା ପାଗଳାମି ହେବ ।

ଗ୍ରୀସ୍‌କୁ ଉଚିତ୍ ଶିକ୍ଷା ଦେବା ଡେରିଅସ୍‌ଙ୍କ ଉଦ୍ଦେଶ୍ୟ ଥିଲା । ଜର୍‌କ୍‌ସିଜ୍ କିନ୍ତୁ ଗ୍ରୀସ୍‌କୁ ନିଜ ସାମ୍ରାଜ୍ୟରେ ସାମିଲ୍ କରିବାକୁ ଯାଉଥିଲେ । ତାଙ୍କର ଅଭିଯାନ ଖବର ନିଆଁ ପରି ବ୍ୟାପିଗଲା । ପାରସ୍ୟ ସେନା ପାଣି ପିଇଲେ ନଈ ଶୁଖିଯାଉଛି । ଯେଉଁଠି ଝାଳେ ଅଟକୁଛି ସେ ରାଜ୍ୟରୁ ଶସ୍ୟଦାନା ସରି ଯାଉଛି । ଉପାୟ କ'ଣ ? ଶରଣ ପଶିବା ଅସମ୍ଭବ । ପାରସ୍ୟ ସେନା ଯେଉଁ ବାଟରେ ଆସୁଥାଏ ସେ ବାଟରେ ଥର୍ମୋପିଲେ ନାମକ ଗିରିପଥ ଅବସ୍ଥିତ । ଏହି ଗିରିପଥଟି ସମୁଦ୍ର କୂଳରେ ଏବଂ ଥର୍ମୋପିଲେ ପର୍ବତଟି ସମୁଦ୍ରର ପାଣି ପର୍ଯ୍ୟନ୍ତ ବିସ୍ତୃତ । ସୁଉଚ୍ଚ ପାହାଡ଼ ଓ ବିସ୍ତୀର୍ଣ୍ଣ ଜଳରାଶି ମଧ୍ୟରେ ମୋଟେ କୋଡ଼ିଏ ଫୁଟ ଓସାରର ସଙ୍କୀର୍ଣ୍ଣ ରାସ୍ତା ।

ପାରସ୍ୟ ସେନାର ବାଟ ଓଗାଳିବା ପାଇଁ ଥର୍ମୋପିଲେ ଅତି ସୁବିଧାଜନକ ସ୍ଥାନ । ଗିରିପଥକୁ ଜଗିବାକୁ ସ୍ପାର୍ଟାକୁ ଦାୟିତ୍ୱ ଦିଆଗଲା । କିନ୍ତୁ ଯୋଗକୁ ସେତିକି ବେଳେ ସ୍ପାର୍ଟାରେ ଗୋଟିଏ ଧର୍ମୋତ୍ସବ ପାଳିତ ହେଉଥାଏ । ଏହା ନ ସରିବା ପର୍ଯ୍ୟନ୍ତ ଯୁଦ୍ଧ ଅନୁକୂଳ ହୋଇପାରିବ ନାହିଁ । ଅଲମ୍ପିକ୍ ପ୍ରତିଯୋଗିତା ମଧ୍ୟ ଚାଲିଥାଏ । ସାରା ଗ୍ରୀସ୍ ସେଥିରେ ମାତିଥାନ୍ତି । ଶତ୍ରୁ ନୁହେଁ ତ ଯମ ଆସି ଦ୍ୱାର ଦେଶରେ, ତଥାପି ଧର୍ମୋତ୍ସବ ଓ କ୍ରୀଡ଼ା ପ୍ରତିଯୋଗିତା ପଛେଇବ ନାହିଁ ।

କେତୋଟି ମୂଲ୍ୟବାନ ଦିନ ନଷ୍ଟ ନ କରି ସ୍ପାର୍ଟା ଠିକ୍ ସମୟରେ ଥର୍ମୋପିଲେ ଗିରିପଥ ଅବରୋଧ କରିଥିଲେ ପାରସ୍ୟ ସେନା କଦାପି ଗ୍ରୀସ୍‌ରେ ପ୍ରବେଶ କରି ପାରି ନ ଥାନ୍ତେ । ତିନିଶହ ସ୍ପାର୍ଟୀୟ ସୈନ୍ୟଙ୍କ ସମେତ ସାତହଜାର ଗ୍ରୀକ୍ ସୈନିକ ଜଣେ ସ୍ପାର୍ଟୀୟ ସେନାପତିଙ୍କ ନେତୃତ୍ୱରେ ଥର୍ମୋପିଲେରେ ପହଞ୍ଚିଲେ । ସଙ୍କୀର୍ଣ୍ଣ ରାସ୍ତାକୁ ଗୋଟାଏ କାନ୍ଥ ଉଠାଇ ସେମାନେ ବନ୍ଦ କଲେ । ଶତ୍ରୁର ଗତିପଥ ସମ୍ପୂର୍ଣ୍ଣ ଭାବେ ଅବରୋଧ କରିବା ପାଇଁ ଅନ୍ୟାନ୍ୟ ବ୍ୟବସ୍ଥା ଗ୍ରହଣ କରିବାକୁ ଆଉ ବେଳ ନ ଥିଲା ।

ଯଥା ସମୟରେ ଜର୍କ୍ସିଜଙ୍କର ବିଶାଳ ସୈନ୍ୟବାହିନୀ ଥର୍ମୋପିଲେ ପାଖରେ ପହଞ୍ଚିଲେ । ସମୁଦ୍ର ପଥରେ ପାର୍ଶୀଙ୍କୁ ଓଗାଳିବା ପାଇଁ ଗ୍ରୀକ୍ ନୌସେନା ସହିତ ଥେମିଷ୍ଟୋକ୍ଲସ୍ ପ୍ରସ୍ତୁତ ଥାଆନ୍ତି । ଗୋଟିଏ ବଡ଼ ଝଡ଼ରେ ପାର୍ଶୀଙ୍କର ଅନେକ ଜାହାଜ ନଷ୍ଟ ହୋଇଥାଏ । ଥେମିଷ୍ଟୋକ୍ଲସ୍ ଏହାର ସୁଯୋଗ ନେଲେ ଓ ପ୍ରାଣପଣେ ଚେଷ୍ଟା କରି ସମୁଦ୍ର ପଥରେ ପାର୍ଶୀଙ୍କୁ ରୋକି ନେଲେ ।

ଥର୍ମୋପିଲେ ପାଖରେ ଗୁଡ଼ଣୀ ପକାଇ ସମ୍ରାଟ ଚାରିଦିନ କାଳ ଅପେକ୍ଷା କଲେ । ଉଦ୍ଦେଶ୍ୟ, ଘାଟି ଜଗିଥିବା ପାଗଳ କେଇଟାଙ୍କୁ ପଳାୟନ କରିବାକୁ ସୁଯୋଗ ଦେବା ! ଲୋକ କେଇଟା ତ ଅପରାଜେୟ ପାରସ୍ୟ ସୈନ୍ୟ-ସମୁଦ୍ରକୁ ରୋକିବାକୁ ଚେଷ୍ଟା କରିବେ ନାହିଁ ! ଏମାନଙ୍କୁ ମାରି ସେ କାହିଁକି ଅପଯଶ ଅର୍ଜିବେ ? ପଞ୍ଚମଦିନ ସମ୍ରାଟ ଦେଖିଲେ, ମୂର୍ଖମାନେ ତାଙ୍କର ଉଦାରତାର ମୂଲ୍ୟ ବୁଝି ନାହାନ୍ତି । ମୂର୍ଖଙ୍କୁ ଧ୍ୱଂସ କରିଦେବାକୁ ଆଦେଶ ହେଲା । ଏହାର ଫଳାଫଳ ଥିଲା ତାଙ୍କର ଅପ୍ରତ୍ୟାଶିତ । ମୂର୍ଖଗୁଡ଼ା ଏତେ ବୀର ହେଲେ କିପରି ? ସଙ୍କୀର୍ଣ୍ଣ ଗିରିପଥ ମଧ୍ୟରେ ଲଢ଼େଇ ହେଉଥିବାରୁ ସୈନ୍ୟସଂଖ୍ୟା କିଛି କାମରେ ଆସିଲା ନାହିଁ । ସେ ସ୍ଥାନରେ ପୁଣି ଧନୁଶର ଅଚଳ । ଦଳ ଦଳ ସୈନ୍ୟଙ୍କୁ ପାରସ୍ୟ ସେନାପତିମାନେ ଗିରିପଥ ଭିତରକୁ ଠେଲି ଠେଲି ପୂରାଉଥାନ୍ତି । ସିଂହାସନ ଉପରେ ବସି ଜର୍କ୍ସିଜ୍ ଦେଖୁଥାନ୍ତି ତାଙ୍କର ସୈନ୍ୟମାନେ କୁଢ଼ କୁଢ଼ ହୋଇ ମରି ପଡ଼ୁଛନ୍ତି । ନିଷ୍ଫଳ କ୍ରୋଧରେ ସେ ଫାଟି ପଡ଼ିଲେ ।

ଥର୍ମୋପିଲେ ଠାରେ ସ୍ପାର୍ଟୀୟଙ୍କର ବୀରତ୍ୱକୁ ଇତିହାସ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଛି ।

ଏମିତି ତିନିଦିନ ଗଲା । ଚତୁର୍ଥ ଦିନ ସଚରାଚର ଯାହା ଘଟିଥାଏ, ସେଇଆ ଘଟିଲା । ପାର୍ଶୀଙ୍କ ଠାରୁ ପ୍ରଚୁର ଲାଞ୍ଚ ପାଇ ଜଣେ ଗ୍ରୀକ୍ ପାହାଡ଼ ଉପର ଦେଇ ଗୋଟିଏ ଗୁପ୍ତ ବାଟ ଦେଖାଇ ଦେଲା । ସ୍ପାର୍ଟୀୟଙ୍କର ବେଖାତିର୍ ମନୋଭାବ ଯୋଗୁ ଏ ବାଟକୁ ଅଳ୍ପ କେଇଜଣ ଜଗିଥିଲେ । ଏଇ ବାଟ ଦେଇ ପାର୍ଶୀମାନେ ବହୁ ସଂଖ୍ୟାରେ ଆସି ପଛପଟୁ ଗ୍ରୀକ୍ଙ୍କ ଉପରେ ଚଢ଼ାଉ କଲେ । ସ୍ପାର୍ଟାର ସେନାପତି ଦେଖିଲେ, ଆଉ ଉପାୟ ନାହିଁ । ଘାଟିକୁ ଜଗି ରହିଲେ ମୃତ୍ୟୁ ସୁନିଶ୍ଚିତ । ଇଚ୍ଛା କଲେ ଅନ୍ୟ ନଗରର ଗ୍ରୀକ୍ ସୈନ୍ୟମାନେ ଘାଟି ଛାଡ଼ି ଯାଇ ପାରନ୍ତି ବୋଲି ସେ ଘୋଷଣା କଲେ । ସ୍ପାର୍ଟାର ସୈନ୍ୟଙ୍କ କଥା ଅଲଗା ।

ସ୍ପାର୍ଟୀୟ ସ୍ୱାର୍ଥପର, ଦୂରଦୃଷ୍ଟିହୀନ ଓ ଅପରିଣାମଦର୍ଶୀ ହୋଇପାରନ୍ତି । କିନ୍ତୁ ଯୁଦ୍ଧଭୂମି ଛାଡ଼ି ଚାଲିଯିବା ତା ଜାତକରେ ନାହିଁ । ତିନିଶହରୁ ଦୁଇକମ୍ ସ୍ପାର୍ଟୀୟ ସୈନ୍ୟ ଶେଷ ପର୍ଯ୍ୟନ୍ତ ଲଢ଼ି ଥର୍ମୋପିଲେ ଠାରେ ପ୍ରାଣ ଦେଲେ । ଯୁଦ୍ଧରେ ଆଘାତ ପାଇ ପଳାଉଥିବା ଜଣେ ସୈନ୍ୟ ବାଟରେ ମଲା ଓ ଯୁଦ୍ଧଭୂମି ଛାଡ଼ି ଆସିଥିବା ଆଉ ଜଣେ ସୈନ୍ୟ ଲଜ୍ଜାରେ ଆତ୍ମହତ୍ୟା କଲା ।

ଥର୍ମୋପିଲେ ଠାରେ ପ୍ରାଣ ଦେଇଥିବା ସ୍ପାର୍ଟୀୟ ସୈନ୍ୟଙ୍କ ସ୍ମୃତି-ସ୍ତମ୍ଭରେ ଲେଖା ଅଛି, "ହେ ପାନ୍ଥ । ସ୍ପାର୍ଟାରେ ଯାଇ କହିବ, ନଗରର ଆଇନ୍ ପାଳନ କରି ଆମେ ଏ ସ୍ଥାନ ଛାଡ଼ି ନାହୁଁ ।" ଥର୍ମୋପିଲେ ଠାରେ ଗ୍ରୀସ୍ ହାରିଲା । ମାତ୍ର ସେ ଜାତିର ପ୍ରାଣଶକ୍ତି କେତେ ପ୍ରଚଣ୍ଡ ତାର ପ୍ରମାଣ ସେଇଠି ମିଳିଗଲା ।

ଥର୍ମୋପିଲେ ଗିରିପଥ ଖୋଲିଗଲା ପରେ ପାରସ୍ୟସେନା ପାଇଁ ସମୁଦ୍ର ପଥ ମଧ୍ୟ ଖୋଲିଗଲା । ପାରସ୍ୟ ଯୁଦ୍ଧ ଜାହାଜ ସବୁ ନିର୍ବିଘ୍ନରେ ସାଲମିସ୍ ଉପସାଗରରେ ପ୍ରବେଶ କରି ଏଥେନ୍ସକୁ ଘେରିଗଲେ । ଆତଙ୍କରେ ଗ୍ରୀସ୍ କମ୍ପିଲା । ଆଖପାଖ ନଗରର ଲୋକେ ସ୍ପାର୍ଟା ଧାଇଁଲେ । କାରଣ ସ୍ପାର୍ଟା ଚୃତିପଟେ ସୁଦୃଢ଼ ପାଚେରି ଥିବାରୁ ସେ ନଗର ଅପେକ୍ଷାକୃତ ନିରାପଦ । ଏଥେନ୍ସ ଭିତରକୁ ଶତ୍ରୁ ଯେ କୌଣସି ଦିଗରୁ ପ୍ରବେଶ କରିପାରେ । ପୁଣି ତା'ର ପଦାତିକ ବାହିନୀ ଦୁର୍ବଳ । ସେମାନେ କିପରି ଏ ସଙ୍କଟରୁ ରକ୍ଷା ପାଇବେ ? ଦେବତାଙ୍କର ଉପଦେଶ ମାଗି ଜଣେ ଦୂତ ଡେଲ୍ଫାଇ ଧାଇଁଲା । ଦେବ ନିର୍ଦ୍ଦେଶ ଆସିଲା, "ପଳାଅ, କାଠର କାନ୍ଥ ତମମାନଙ୍କର ଶେଷ ଆଶା ।" ଏପରି ଶବ୍ଦ କେତୋଟିର କିଛି ଅର୍ଥ ଅଛି ? ଦୈବବାଣୀ ସର୍ବଦା ଏହିପରି ଦୁର୍ବୋଧ ଓ ରହସ୍ୟମୟ !

ଥେମିଷ୍ଟୋକ୍ଲସ୍ ନଗରବାସୀଙ୍କୁ ପ୍ରବର୍ତ୍ତାଇଲେ, ସେମାନେ ଏଥେନ୍ସ ଛାଡ଼ି ସାଲମିସ୍ ଉପସାଗରର ଛୋଟ ଛୋଟ ଦ୍ୱୀପଗୁଡ଼ିକୁ ପଳାନ୍ତୁ । ସେଇଠି ଏଥେନ୍ସର ଯୁଦ୍ଧ ଜାହାଜ ସବୁ ସେମାନଙ୍କୁ ଜଗି ରହିବ । ତାଙ୍କର ପରାମର୍ଶ ଶୁଣି ଲୋକେ ହୋ ହୋ ପାଞ୍ଚ ହେଉଥିଲେ ଥେମିଷ୍ଟୋକ୍ଲସ୍ ତାଙ୍କର ଶେଷବାଣ ଛାଡ଼ିଲେ—କାଠର କାନ୍ଥ ସେମାନଙ୍କର ଶେଷ ଆଶା ବୋଲି ଯେଉଁ ଦୈବବାଣୀ ହୋଇଛି, ତା'ର ମର୍ମ କାଠ ନିର୍ମିତ ଜାହାଜ ଦ୍ୱାରା ସେମାନେ ରକ୍ଷା ପାଇବେ ।

ଅଗତ୍ୟା ସମସ୍ତେ ତାଙ୍କର କଥା ମାନିଲେ । ଉପସାଗରର ତିନୋଟି ଦ୍ୱୀପକୁ ସ୍ତ୍ରୀ, ପିଲା ଓ ବୃଦ୍ଧମାନେ ଉଠିଗଲେ । ଶତ୍ରୁ ସହିତ ଲଢ଼ିବା ପାଇଁ ଅନ୍ୟମାନେ ଜାହାଜରେ ଅପେକ୍ଷା କରି ରହିଲେ । ଏଥେନ୍‌ସରେ ପ୍ରବେଶ କରି ଜର୍‌କ୍‌ସିଜ୍‌ ଦେଖିଲେ ନଗର ଶୂନ୍ୟ ! ଅଳ୍ପ କେଇଜଣ ପାହାଡ଼ ଉପରେ ଆକ୍ରୋପଲିସ୍‌କୁ ଜଗି ରହିଛନ୍ତି । ସେଇ ଅବରୁଦ୍ଧ ପାହାଡ଼ ଉପରକୁ ଚଢ଼ିବା ପାରସ୍ୟ ସେନା ପକ୍ଷରେ ସହଜ ହୋଇ ନ ଥିଲା । ପନ୍ଦର ଦିନ ପରେ ସେମାନେ ସଫଳ ହୋଇଥିଲେ । ସାଲାମିସ୍ ଦ୍ୱୀପରେ ଥାଇ ଏଥେନ୍‌ସବାସୀ ଦେଖିଲେ, ସେମାନଙ୍କର ପ୍ରାଣରୁ ପ୍ରିୟ ମନ୍ଦିର ତଥା ଦୁର୍ଗ ଜଳି ଯାଉଛି । ପର୍ବତ ଉପରେ ଅଗ୍ନିର ଲେଲିହାନ ଶିଖାର ଭାଷା ସେମାନେ ବୁଝିନେଲେ ।

ଗ୍ରୀକ୍ ନୌବାହିନୀର ଶତକଡ଼ା ଷାଠିଏ ଯୁଦ୍ଧ ଜାହାଜ ଏଥେନ୍‌ସର । ତଥାପି ନେତୃତ୍ୱ ଥିଲା ଜଣେ ସ୍ପାର୍ଟୀୟ ସେନାପତିଙ୍କ ହାତରେ । ଏଥିପାଇଁ ଏଥେନ୍‌ସର ସୈନ୍ୟ ଓ ସେନାପତିଙ୍କ ଭିତରେ ଅଶାନ୍ତ କୁହୁଳୁ ଥିଲା । ଥେମିଷ୍ଟୋକ୍ଲିସ୍ ସେମାନଙ୍କୁ କୌଣସି ପ୍ରକାରେ ସମ୍ଭାଳି ରଖିଥାଆନ୍ତି । ଦ୍ୱୀପରେ ନିରାଶ୍ରୟ ନାରୀ, ଶିଶୁ ଓ ବୃଦ୍ଧମାନଙ୍କୁ ଛାଡ଼ି ପଳାଇବା ପାଇଁ ଅନେକ ଏଥେନ୍‌ସୀୟ ଇଚ୍ଛା ପ୍ରକାଶ କରୁଥିଲେ । ସେମାନଙ୍କ ଭିତରେ ଏହିପରି ଅସନ୍ତୋଷ ଓ ଯୁକ୍ତିତର୍କ ଚାଲିଥିବା ସମୟ ଭିତରେ ଦେଖାଗଲା, ଉପସାଗରର ଗୋଟିଏ ପଟେ ପାରସ୍ୟ ଯୁଦ୍ଧ ଜାହାଜ ଛକି ଗଲେଣି । ସେ ବାଗରେ ଆଉ ପଳାଇବାର ବାଟ ନାହିଁ । ଯଦି ପାରସ୍ୟ ଜାହାଜ ଆରପଟଟିକୁ ମଧ୍ୟ ରୋଧିଦିଏ ତେବେ ଗ୍ରୀକ୍‌ମାନେ ଦରିଆ ମଝିରେ ବନ୍ଦୀ । ବରଂ ତାହା କାମ୍ୟ । ଯୁଦ୍ଧ କରିବା ପରିବର୍ତ୍ତେ କପରି ପଳାଇବା ସେ ବିଷୟରେ ଗ୍ରୀକ୍‌ମାନେ ଅଧିକ ମୁଣ୍ଡ ଖେଳାଉଥିବାରୁ ଥେମିଷ୍ଟୋକ୍ଲିସ୍ ଏକ କୂଟବୁଦ୍ଧିର ଆଶ୍ରୟ ନେଲେ ।

ଜର୍‌କ୍‌ସିଜ୍‌ଙ୍କ ପାଖକୁ ଚିଠି ଲେଖି ସେ ଜଣେ ଗୁପ୍ତଚର ହାତରେ ପଠାଇଲେ । ଚିଠିରେ ଲେଖାଥିଲା, ଥେମିଷ୍ଟୋକ୍ଲିସ୍ ଗ୍ରୀକ୍ ପକ୍ଷ ଛାଡ଼ି ସମ୍ରାଟଙ୍କର ଶରଣ ନେବାକୁ ଚାହୁଁଛନ୍ତି । ସମ୍ରାଟଙ୍କ ପ୍ରତି ବିଶ୍ୱସ୍ତତାର ପ୍ରମାଣ ସ୍ୱରୂପ ସେ ଲେଖିଲେ ଯେ ଗ୍ରୀକ୍‌ମାନେ ଅନ୍ୟ ବାଗରେ ଖସି ପଳାଇବାକୁ ବସିଛନ୍ତି । ସମ୍ରାଟ ସେ ବାଗକୁ ବନ୍ଦ କରନ୍ତୁ ।

ଜର୍‌କ୍‌ସିଜ୍ ଟୋପ ଗିଳିଲେ । କାରଣ ସ୍ୱାର୍ଥଲୋଭୀ ବିଶ୍ୱାସଘାତକଙ୍କର ଅଭାବ ନ ଥିଲା ସେ ଯୁଗରେ । କେଉଁଯୁଗରେ ବା ସେମାନଙ୍କର ଅଭାବ ଥାଏ ? ପୁଣି ଗ୍ରୀକ୍‌ଙ୍କ

ମଧ୍ୟରେ ଏକତା ନ ଥିବା ଓ ବିଭିନ୍ନ ନଗରର ସେନାପତିଙ୍କ ମଧ୍ୟରେ ମନାନ୍ତର କଥା ସମ୍ରାଟଙ୍କୁ ଜଣାଥାଏ ।

ପରଦିନ ସକାଳୁ ଏଥେନ୍‌ସୀୟମାନେ ଦେଖିଲେ, ଯେଉଁ ବାଟରେ ସେମାନେ ପଳାଇବାକୁ ଚାହୁଁଥିଲେ, ସେ ବାଟକୁ ପାରସ୍ୟ ଯୁଦ୍ଧ ଜାହାଜ ସବୁ ଜଗି ଯାଇଛନ୍ତି । ଅର୍ଥାତ୍ ଯୁଦ୍ଧ କରିବା ବ୍ୟତୀତ ସେମାନଙ୍କର ଦ୍ୱିତୀୟ ଉପାୟ ନାହିଁ । ଥେମିଷ୍ଟୋକ୍ଲିସ୍ ଏଇୟା ବୁଝିଥିଲେ ।

ପାରସ୍ୟର ଛଅଶହରୁ ଅଧିକ ଯୁଦ୍ଧ ଜାହାଜ । ସଂଖ୍ୟାରେ ଗ୍ରୀକ୍ ପକ୍ଷର ଜାହାଜର ଦୁଇଗୁଣ । ଆକାର, ସାଜ ସଜ୍ଜା ଓ ଆଡ଼ମ୍ବର ଦୃଷ୍ଟିରୁ ପାରସ୍ୟର ଜାହାଜ ସହିତ ଗ୍ରୀକ୍ ଜାହାଜର ତୁଳନା ହୋଇ ନ ପାରେ । ଯୁଦ୍ଧର ଫଳାଫଳ କିନ୍ତୁ ଭିନ୍ନପ୍ରକାର ହେଲା । ଗ୍ରୀକ୍‌ଙ୍କର ଯୁଦ୍ଧ କୌଶଳ ଉନ୍ନତ । ସେମାନଙ୍କର ସାହାସ ଓ ବୀରତ୍ୱ ପ୍ରଶଂସନୀୟ । ସର୍ବୋପରି ଥେମିଷ୍ଟୋକ୍ଲିସ୍‌ଙ୍କ ଉତ୍ସାହବାଣୀ ସେମାନଙ୍କ ମନରେ ଅପୂର୍ବ ଉନ୍ମାଦନା ଆଣି-ଦେଲା । ଗୋଟାଏ ସଂକୀର୍ଣ୍ଣ ପ୍ରଣାଳୀରେ ପାରସ୍ୟର ଅଧିକ ସଂଖ୍ୟକ ଜାହାଜ ହେଲା ସେମାନଙ୍କର କାଳ । ଯୁଦ୍ଧ ସମୟରେ ପାରସ୍ୟର ଜାହାଜଗୁଡ଼ିକ ପଛକୁ ଫେରିବାକୁ ବାଟ ପାଇଲେ ନାହିଁ । ଗ୍ରୀସ୍‌ର ପ୍ରଥମ ମହାନ୍ ଟ୍ରାଜେଡ଼ିକାର ଏସ୍କିଲସ୍ ଜଣେ ସୈନିକ ଭାବେ ସାଲମିସ୍ ଯୁଦ୍ଧରେ ଲଢ଼ୁଥିଲେ । ଏହି ଲୋମହର୍ଷଣକାରୀ ଯୁଦ୍ଧର ଚିତ୍ର ତାଙ୍କର ପାର୍ଶୀ ନାମକ ନାଟକରୁ ମିଳେ ।

ସନ୍ଧ୍ୟାବେଳକୁ ଜର୍କ୍‌ସିଜ୍ ଦେଖିଲେ ତାଙ୍କର ନୌବାହିନୀର କଳ୍ପନାତୀତ କ୍ଷୟ କ୍ଷତି ଘଟିଛି । ସାଲମିସ୍‌ଠାରେ ପ୍ରମାଣିତ ହେଲା ଯେ ଜଳଯୁଦ୍ଧରେ ଏଥେନ୍‌ସ ଅଜେୟ । ଜର୍କ୍‌ସିଜ୍ ପଛଘୁଞ୍ଚା ଦେଲେ । ସେ ଗୋଟାଏ ଯୁଦ୍ଧରେ ହାରିଗଲେ କିନ୍ତୁ ଗ୍ରୀସ୍ ଠାରୁ ସହଜରେ ପରାଜୟ ସ୍ୱୀକାର କରିବା ଲୋକ ସେ ନୁହନ୍ତି । ଶୀତଦିନ ସରିଗଲେ ଗ୍ରୀସକୁ ଆଉ ଥରେ ଆକ୍ରମଣ କରିବାକୁ ସେନାପତିଙ୍କୁ ନିର୍ଦ୍ଦେଶ ଦେଇ ଓ ତାଙ୍କ ପାଖରେ ତିନିଲକ୍ଷ ସୈନ୍ୟ ଛାଡ଼ି ଜର୍କ୍‌ସିଜ୍ ଫେରିଗଲେ ।

ସାଲମିସ୍‌ରୁ ଫେରି ଏଥେନ୍‌ସବାସୀ ଦେଖିଲେ, ସେମାନଙ୍କର ପ୍ରିୟ ନଗର ଭସ୍ମୀଭୂତ । କୌଣସି ପ୍ରକାର ବାହାର ସାହାଯ୍ୟକୁ ଅପେକ୍ଷା ନ କରି ସେମାନେ ନଗର ନିର୍ମାଣରେ

ଲାଗିପଡ଼ିଲେ । ପାରସ୍ୟ ସେନାପତି ଜାଣି ପାରିଥିଲେ ଯେ ଏଥେନ୍ସ ଗ୍ରୀସ୍‌ର ବୁଦ୍ଧି । ଅସଲ ପ୍ରତିରୋଧ ଏଥେନ୍ସରୁ ଆସୁଛି । ତେଣୁ ଏଥେନ୍ସକୁ ନାନା ପ୍ରକାର ପ୍ରଲୋଭନ ଦେଖାଇ ହାତ କରିବାକୁ ସେ ଚେଷ୍ଟା କଲେ । ସ୍ପାର୍ଟା ଏ କଥା ଜାଣି ଉଦ୍‌ବିଗ୍ନ ହେଲା । ସ୍ୱାଭାବିକ୍ କଥା । କାରଣ ଏଥେନ୍ସ ଯଦି ପାରସ୍ୟ ସହିତ ହାତ ମିଳାଏ ତେବେ ସ୍ପାର୍ଟାର ଅବସ୍ଥା ଖରାପ ହେବ । ସ୍ପାର୍ଟା ଜାଣିଥାଏ, ଯୁଦ୍ଧର ସମସ୍ତ ଦାୟିତ୍ୱ ଏଥେନ୍ସ ମୁଣ୍ଡାଇ-ଥିଲା । ସେ ବିଶେଷ କିଛି କରିନାହିଁ । ତେଣୁ ସ୍ପାର୍ଟାର ଏଥେନ୍ସକୁ ଖବର ଗଲା, ଭବିଷ୍ୟତରେ ସ୍ପାର୍ଟା ସମସ୍ତ ଶକ୍ତି ଖଟେଇ ଶତ୍ରୁ ସହିତ ଲଢ଼ିବ । ଏହାର ମର୍ମ ପାରସ୍ୟ ସହିତ ଏଥେନ୍ସ ସନ୍ଧି ନ କରୁ ।

ଶତ୍ରୁ ସହିତ ସାଲିସ୍ କରିବାର ପ୍ରଶ୍ନ ନ ଥିଲା ଏଥେନ୍ସ ପକ୍ଷରେ । ପାରସ୍ୟ ସେନାପତିଙ୍କ ପାଖକୁ ଖବର ପଠାଗଲା, "ଆକାଶରେ ସୂର୍ଯ୍ୟଚନ୍ଦ୍ର ଥିବା ପର୍ଯ୍ୟନ୍ତ ଜର୍କ୍‌ସିଜ୍‌ଙ୍କ ସହିତ ଏଥେନ୍ସର ମିଳାମିଶା ଅସମ୍ଭବ ।" ସ୍ପାର୍ଟା ଯଥା ସମୟରେ ତାର କଥା ରକ୍ଷା କରିବ ବୋଲି ଆଶା ପ୍ରକାଶ କରି ସ୍ପାର୍ଟାକୁ ଜଣେଇ ଦିଆଗଲା ।

ସ୍ପାର୍ଟା କିନ୍ତୁ ଠିକଣା ସମୟରେ ବିପଦରେ ପକାଇଲା । ଶୀତ ଅନ୍ତେ ପାରସ୍ୟ ସେନା ଆକ୍ରମଣ କରିବାକୁ ସଜ ହେଉଛନ୍ତି ବୋଲି ଏଥେନ୍ସରୁ ସ୍ପାର୍ଟାକୁ ଖବର ଗଲା । ଶୀଘ୍ର ପାରସ୍ୟର ଗତିରୋଧ କରିବାକୁ ହେବ । ମାତ୍ର ଏହା କିପରି ସମ୍ଭବ ? ଏଥିରିକ ମଧ୍ୟ ସ୍ପାର୍ଟାରେ ଗୋଟିଏ ଧର୍ମୋତ୍ସବ ଚାଲିଥାଏ । ଏଥେନ୍ସ ଧ୍ୱଂସ ପାଉ ବୋଲି ହୁଏତ ସ୍ପାର୍ଟା ଚାହୁଁଥିଲା । ତେଣୁ ଧର୍ମ ଆଳରେ ଠିକ୍ ସମୟରେ ଯୁଦ୍ଧକୁ ବାହାରୁ ନ ଥିଲା ।

ଦ୍ୱିତୀୟ ଥର ପାଇଁ ଏଥେନ୍ସ ସାଲାମିସ୍‌ର ଦ୍ୱୀପକୁ ଉଠିଗଲେ । ଅଗ୍ନି ପୁଣି ଥରେ ଏଥେନ୍ସକୁ ଗ୍ରାସିଦେଲା । ଏଥେନ୍ସ କ'ଣ ଏକାକୀ ଧାଏଁଲା ପାରସ୍ୟ ସେନାର ମୁକାବିଲା କରିପାରିବ ? କିନ୍ତୁ ଫଳାଫଳ ଯାହାହେଉ ଲୋକେ ଆତ୍ମସମର୍ପଣ କଥା ଚିନ୍ତାହିଁ କରୁ ନ ଥିଲେ । ଯୁଦ୍ଧ କରିବା ସମ୍ପର୍କରେ ଜନମତ ନିଆଯାଉ ବୋଲି କାଉନ୍‌ସିଲ୍‌ର ଜଣେ ସଭ୍ୟ ମତ ଦେଇଥିଲେ । ଏଥେନ୍ସବାସୀ ପିଟି ପିଟି ସେ ସଭ୍ୟକୁ ମାରି ପକାଇଲେ । ଏହି ଘଟଣାରୁ ସେମାନଙ୍କର ମନୋଭାବ ଜାଣି ହୁଏ ।

ଏଥେନ୍ସର ଦୂତମାନେ ଯେତେ ବୁଝାଇଲେ ଆଗ ଧର୍ମୋତ୍ସବଠୁ ସତ୍ତ୍ୱ ! ସୌଭାଗ୍ୟ-ବଶତଃ ମୋଟା ବୁଦ୍ଧିଆଙ୍କ ଭିତରୁ ଜଣେ କାହାର ଶୁଭ ବୁଦ୍ଧି ଉଦୟ ହେଲା । ଏଥେନ୍ସ ଧ୍ୱଂସ ହେଲା ପରେ ଶତ୍ରୁର ଦୃଷ୍ଟି ସ୍ପାର୍ଟା ଓ ଅନ୍ୟାନ୍ୟ ନଗରଙ୍କ ଉପରେ ପଡ଼ିବ । ଏଥେନ୍ସ ବିନା ଜଳ ଯୁଦ୍ଧରେ ପାରସ୍ୟର ସମ୍ମୁଖୀନ ହେବା ଅସମ୍ଭବ । ମୋଟା ବୁଦ୍ଧିଆଙ୍କ ମନକୁ ଏ ସୂକ୍ଷ୍ମ ବସ୍ତୁଟା ପାଇଗଲା । ସ୍ପାର୍ଟାରେ ସାଜ ସାଜ ରବ ଶୁଭିଲା । ଯୁଦ୍ଧ ପାଇଁ ସେମାନଙ୍କର ପ୍ରସ୍ତୁତି ଅନାବଶ୍ୟକ । ଯୁଦ୍ଧ ସ୍ପାର୍ଟୀୟଙ୍କ ଖେଳ । ଦୈବବଳ ସେମାନେ ଯୁଦ୍ଧକୁ ବାହାରିଲେ ।

ଏକୁଟିଆ ସ୍ପାର୍ଟା ନୁହେଁ, ଗ୍ରୀକ୍ ଇତିହାସରେ ପ୍ରଥମ କରି ପ୍ରାୟ ସମସ୍ତ ନଗର ସ୍ପାର୍ଟାର ନେତୃତ୍ୱରେ ଏକାଠି ହେଲେ । ସ୍ପାର୍ଟାର ସେନାପତି ପଉସାନିଅସ୍ଙ୍କ ଅଧିନାୟକତ୍ୱରେ ଗ୍ରୀକ୍ ସେନାବାହିନୀ ଶତ୍ରୁକୁ ପ୍ଲାଟିଆ ନାମକ ସ୍ଥାନରେ ପରାସ୍ତ କଲା । ପାରସ୍ୟ ସମସ୍ତ ଶକ୍ତି ଖଟାଇ ଲଢ଼ିଥିଲା । ମାତ୍ର ସ୍ୱାଧୀନତାକୁ ଜୀବନଠାରୁ ପ୍ରିୟ ମଣୁଥିବା ଗ୍ରୀକ୍ଙ୍କୁ ହରାଇବା ସମ୍ଭବ ହେଲା ନାହିଁ । ପ୍ଲାଟିଆ ଯୁଦ୍ଧକ୍ଷେତ୍ରର ଫଳାଫଳ ଅତି ଗୁରୁତ୍ୱପୂର୍ଣ୍ଣ । ଏହି ଯୁଦ୍ଧର ଫଳାଫଳ ଉପରେ ସମଗ୍ର ୟୁରୋପ ଓ ବିଶ୍ୱ ସଭ୍ୟତାର ଭବିଷ୍ୟତ ନିର୍ଭର କରୁଥିଲା ।

> ପ୍ଲାଟିଆ ଯୁଦ୍ଧକ୍ଷେତ୍ରରେ ମିଳିତ ଗ୍ରୀକ୍ ସେନାବାହିନୀ ପଉସାନିଅସ୍ଙ୍କ ଅଧିନାୟକତ୍ୱରେ ପାରସ୍ୟକୁ ପରାସ୍ତ କଲେ । ଏହା ଥିଲା ପାରସ୍ୟର ଅନ୍ତିମ ପରାଜୟ ।

ପାରସ୍ୟ ହାରିବାର ମୁଖ୍ୟ କାରଣ ହେଉଛି, କେବଳ ସମ୍ରାଟଙ୍କ ଭୟରେ ବିଭିନ୍ନ ପରାଧୀନ ଦେଶର ସୈନ୍ୟମାନେ ଗ୍ରୀସ୍ ସହିତ ଲଢ଼ୁଥିଲେ । ଗୋଟାଏ ଗୋଳିଆ ମିଶା ସେନାବାହିନୀର କୌଣସି ଆଦର୍ଶ ବା ସ୍ଥିର ଲକ୍ଷ୍ୟ ନ ଥିଲା । ଘମାଘୋଟ ଯୁଦ୍ଧ ଲାଗିଲା ବେଳେ ଅନିଚ୍ଛାରେ ଲଢ଼ୁଥିବା ଅଣପାର୍ଶୀ ସୈନ୍ୟମାନେ ଯୁଦ୍ଧକ୍ଷେତ୍ର ଛାଡ଼ି ପଳାଇ ଥିଲେ ।



# ଏଥେନ୍ସର ସ୍ୱର୍ଣ୍ଣଯୁଗ

* ପାରସ୍ୟବାସୀଙ୍କୁ ପରାଜିତ କଲାପରେ ଏଥେନ୍ସବାସୀଙ୍କ ମନରେ ଅପୂର୍ବ ଉତ୍ସାହ, ଉନ୍ମାଦନା ଆସିଲା ।
* ପେରିକ୍ଲିଜ୍ ଏଥେନ୍ସର ସ୍ୱର୍ଣ୍ଣଯୁଗର ମହାନ୍ ନେତା ।
* ବିଶ୍ୱବନ୍ଦିତ ସ୍ଥପତି ଫିଡ଼ିଆସ୍ ଭସ୍ମୀଭୂତ ଏଥେନ୍ସକୁ ଅଳକାପୁରୀ କରି ଗଢ଼ିଲେ ।
* କଳା, ସାହିତ୍ୟ ଓ ଦର୍ଶନର ଅଭୂତପୂର୍ବ ଉନ୍ନତି ଆରମ୍ଭ ହେଲା ।

ପାର୍ଶୀମାନେ ପରାଜିତ ହୋଇ ଫେରିଯିବା ପରେ ଏଥେନ୍ସୀୟଗଣ ସେମାନଙ୍କର ଭସ୍ମୀଭୂତ ନଗରର ପୁନର୍ଗଠନ କାର୍ଯ୍ୟରେ ଲାଗି ପଡ଼ିଲେ । ଖୋଲା ନଗରରେ ବାସ କରିବାର ବିପଦ ଅଙ୍ଗେ ନିଭାଇବା ଫଳରେ ନଗର ଚାରିପଟେ ଦୃଢ଼ ପ୍ରାଚୀର ନିର୍ମାଣ କରିବାର ଆବଶ୍ୟକତା ସମ୍ପର୍କରେ ସେମାନେ ସଚେତନ ହେଲେ । ଏ ବୁଦ୍ଧି ଥେମିଷ୍ଟୋକଲ୍ସଙ୍କର । ଗ୍ରୀସ୍‌ର ଅନେକ ନଗର ଏଥେନ୍ସକୁ ଈର୍ଷା କରୁଥିଲେ ଓ ସେ ଶକ୍ତିଶାଳୀ ନ ହେଉ ବୋଲି ଚାହୁଁଥିଲେ । ଏଥେନ୍ସକୁ ପ୍ରାଚୀର ନିର୍ମାଣରୁ ନିବୃତ୍ତ କରିବା ପାଇଁ କହିବାକୁ ସେମାନେ ସ୍ପାର୍ଟାକୁ ମତାଇଲେ । ସଦ୍ୟ ଦୁର୍ଦ୍ଧାନ୍ତ ଶତ୍ରୁ ସହିତ ଲଢ଼ି ଏଥେନ୍ସ ବହୁ କ୍ଷୟ କ୍ଷତି ସହିଥାଏ । ତେଣୁ ସ୍ପାର୍ଟା ସହିତ କୌଣସି ବିବାଦ ସୃଷ୍ଟି

ବିଚକ୍ଷଣ ଥେମିଷ୍ଟୋକଲ୍‌ସ ଯୁଦ୍ଧରେ, ପାରସ୍ୟକୁ ପରାଜିତ କଲାପରେ ଏଥେନ୍‌ସର ସ୍ୱର୍ଣ୍ଣ-ଯୁଗର ଆରମ୍ଭ ହେଲା ।

କରିବାକୁ ଥେମିଷ୍ଟୋକଲ୍‌ସ ଚାହିଁଲେ ନାହିଁ । କୂଟନୀତି ଦ୍ୱାରା ଏ ସମସ୍ୟାର ସମାଧାନ କରିବାକୁ ସେ ସ୍ଥିର କଲେ । ଯଥା ସମ୍ଭବ ଦ୍ରୁତ ବେଗରେ ଏଥେନ୍‌ସ ଚାରିପଟେ ପାଚେରୀ ନିର୍ମାଣ କରିବାକୁ ନିର୍ଦ୍ଦେଶ ଦେଇ ଥେମିଷ୍ଟୋକଲ୍‌ସ ସ୍ପାର୍ଟା ବାହାରି ଗଲେ । ଉଦ୍ଦେଶ୍ୟ, ସ୍ପାର୍ଟାର ରାଜା ଓ ନେତାଙ୍କ ସହିତ କଥାବାର୍ତ୍ତା କରିବା ।

ସ୍ପାର୍ଟାରେ ପହଞ୍ଚି ଥେମିଷ୍ଟୋକଲ୍‌ସ ଜାଣିଶୁଣି ଆଲୋଚନା ଗୁଡ଼ାଏ ଦିନ ଚାଲୁ ରଖିଲେ । ଆଲୋଚନା ଚାଲିଥାଏ, ସ୍ପାର୍ଟାରେ ଆସି ଖବର ପହଞ୍ଚିଲା ଯେ ଏଥେନ୍‌ସରେ ପାଚେରୀ ନିର୍ମାଣ ଚାଲିଛି । ସତ୍ୟାସତ୍ୟ ପରୀକ୍ଷା କରିବାକୁ ସ୍ପାର୍ଟାରୁ ଗୋଟାଏ ଦଳ ଏଥେନ୍‌ସ ବାହାରିଲା । ଏହି ଦଳ ଏଥେନ୍‌ସରେ ପହଞ୍ଚି ଦେଖେ ତ କାମ ଶେଷ । ପର୍ଯ୍ୟବେକ୍ଷକ ଦଳ ପାଚେରୀକୁ ସ୍ୱଚକ୍ଷୁରେ ଦେଖିଲେ କିନ୍ତୁ ଫେରିବାକୁ ଅନୁମତି ମିଳିଲା ନାହିଁ । ଥେମିଷ୍ଟୋକଲ୍‌ସଙ୍କ ନିର୍ଦ୍ଦେଶ ଥିଲା ସେହିପରି । ପର୍ଯ୍ୟବେକ୍ଷକଙ୍କୁ ବନ୍ଦୀ କରି ରଖାଗଲା । ଖବର ଗଲା, ସ୍ପାର୍ଟା ଥେମିଷ୍ଟୋକଲ୍‌ସଙ୍କୁ ଭଲରେ ଛାଡ଼ି ଦେଲେ ଏଥେନ୍‌ସ ମଧ୍ୟ ସେମାନଙ୍କ ଲୋକଙ୍କୁ ସସମ୍ମାନେ ବିଦାୟ ଦେବ । ସ୍ପାର୍ଟା ଏ ଖବର ପାଇ କାନମୁଣ୍ଡା ଆଉଁସି ଥେମିଷ୍ଟୋକଲ୍‌ସଙ୍କୁ ଛାଡ଼ିଦେଲା ।

ନଗର ରାଷ୍ଟ୍ରର ଦୁଇଟି ବିଶିଷ୍ଟ ସହର ଏଥେନ୍‌ସ ଓ ପିରିଅସ୍ ବନ୍ଦର ଚାରିପଟେ ଥେମିଷ୍ଟୋକଲ୍‌ସଙ୍କ ଅମଳରେ ପାଚେରୀ ଉଠିଲା । ଏଥେନ୍‌ସ ଠାରୁ ପିରିଅସ୍ କୋଡ଼ିଏ ମାଇଲ । ନଗରର ହୃତ୍‌ପିଣ୍ଡ ସ୍ୱରୂପ ଏହି ଦୁଇ ବନ୍ଦରକୁ ଯୋଡ଼ି କରି ପାଚେରୀ ବେଢ଼ାଇବା ପାଇଁ ଥେମିଷ୍ଟୋକଲ୍‌ସଙ୍କର ଯୋଜନା ଥିଲା । ସେ ଏହି ଯୋଜନା ଆରମ୍ଭ କରିଥିଲେ ଓ ତାହା ପେରିକ୍ଲିଜ୍‌ଙ୍କ ଅମଳରେ ଶେଷ ହୋଇଥିଲା । କୋଡ଼ିଏ ମାଇଲ ଲମ୍ବା, ତିରିଶ ଫୁଟ ଉଚ୍ଚ ଓ ବାର ଫୁଟ ମୋଟେଇ ବିଶିଷ୍ଟ ଏହି ପ୍ରାଚୀର ନିର୍ମାଣ ସରିବା ପରେ ଏଥେନ୍‌ସ ନଗରରାଷ୍ଟ୍ରର ପ୍ରତିରକ୍ଷା ସୁଦୃଢ଼ ହୋଇଥିଲା ।

ପାରସ୍ୟ ସହିତ ଗ୍ରୀସ୍‌ର ବିଜୟ ସୂଚକ ଯୁଦ୍ଧର ସେନାପତି ପଉସାନିଅସ୍‌ଙ୍କ ଜୀବନର ଶେଷ ପରିଣତି ବଡ଼ କରୁଣ । ଏଥେନ୍‌ସ ସମେତ ସମଗ୍ର ଗ୍ରୀସ୍‌କୁ ରକ୍ଷା କରିବାରେ

ଧାରସ୍‌ ମଦ୍ଧ୍ୟ ପ୍ଲାଟିଆ ସମର କ୍ଷେତ୍ରରେ , ଗ୍ରୀସ୍‌କୁ ବିଜୟୀ କରିଥିବା ପଉସାନିଅସ୍‌ଙ୍କର ଜୀବନର ଶେଷ ପରିଣତି ବଡ଼ କରୁଣ ।

ଅତୁଳନୀୟ ଅବଦାନ ଥିବା ଥେମିଷ୍ଟୋକଲ୍‌ସ୍‌ଙ୍କ ଜୀବନର ମଧ୍ୟ କରୁଣ ପରିସମାପ୍ତି ଘଟିଥିଲା । ପ୍ଲାଟିଆ ରଣକ୍ଷେତ୍ରରେ ହାରି ପାରସ୍ୟସେନା ଇଜିଆନ୍ ସମୁଦ୍ର ଉପକୂଳ ଥାଆନ୍ତି । ଶତ୍ରୁକୁ ଇଜିଆନ୍‌ରୁ ହଟେଇବାକୁ ପରବର୍ଷ ସ୍ପାର୍ଟାର ସୈନ୍ୟବାହିନୀକୁ ଧରି ପଉସାନିଅସ୍ ସେମାନଙ୍କ ଉପରେ ଚଢ଼ାଉ କଲେ । ପାର୍ଶୀଙ୍କୁ ଘଉଡ଼େଇ ସେ ସାଇପ୍ରସ୍‌କୁ ସେମାନଙ୍କ କବଳରୁ ଉଦ୍ଧାର କଲେ । ତାଙ୍କର ଏପରି ସାଫଲ୍ୟ ଫଳରେ ପଉସାନିଅସ୍‌ଙ୍କ ମୁଣ୍ଡରେ ଭୂତ ପଶିଲା । ପଉସାନିଅସ୍ ଭାବିଲେ, ତାଙ୍କ ପରି ବୀରକୁ ଗ୍ରୀସ୍‌ର ଛତ୍ରପତି ସମ୍ରାଟ ହେବା ସାଜେ । ଜରକ୍‌ସିଜ୍‌ଙ୍କ ସାହାଯ୍ୟ ମିଳିଲେ ଏହା ସମ୍ଭବ ହୋଇପାରେ । ଜରକ୍‌ସିଜ୍‌ଙ୍କ ଝିଅକୁ ବାହା ହୋଇ ତାଙ୍କ ଆଶୀର୍ବାଦରେ ଗ୍ରୀସ୍ ଜୟ କରିବା ପାଇଁ ସେ ଯୋଜନା କଲେ । ତାଙ୍କର କାର୍ଯ୍ୟକଳାପରେ ସନ୍ଦେହ କରି ପଉସାନିଅସ୍‌ଙ୍କୁ ଦୁଇଥର ସ୍ପାର୍ଟାରୁ ଡାକରା ଆସିଲା । ମାତ୍ର ଦୁଇଥର ଯାକ କୌଣସି ପ୍ରମାଣ ମିଳିଲା ନାହିଁ । ତୃତୀୟ ଥର ପ୍ରମାଣ ସହିତ ପଉସାନିଅସ୍ ଧରା ପଡ଼ିଲେ । ଜନତା ହାତରୁ ପ୍ରାଣ ବଞ୍ଚାଇବାକୁ ସେ ଏଥେନାଙ୍କ ମନ୍ଦିରରେ ପଶିଗଲେ । ମନ୍ଦିର ଭିତରେ କାହାକୁ ମାରିବା ଅନୁଚିତ । ସ୍ପାର୍ଟାବାସୀ ମନ୍ଦିର ଦ୍ୱାରକୁ କାନ୍ଥ ଦେଇ ବନ୍ଦ କରିଥିଲେ । କାନ୍ଥର ପ୍ରଥମ ଇଟା ଉଠାଇଥିଲେ ପଉସାନିଅସ୍‌ଙ୍କ ମାଆ ।

ପଉସାନିଅସ୍‌ଙ୍କ ସହିତ ମିଶି ଥେମିଷ୍ଟୋକ୍ଲସ୍ ପାରସ୍ୟ ସମ୍ରାଟଙ୍କ ସହିତ ହାତ ମିଶାଇଥିଲେ ବୋଲି ସ୍ପାର୍ଟା ଗୋଟାଏ ଗୁଜବ୍ ପ୍ରଚାର କରିଦେଲା । ଥେମିଷ୍ଟୋକ୍ଲସ୍ ସ୍ପାର୍ଟାର ପୁରାତନ ଶତ୍ରୁ । ସ୍ପାର୍ଟା ଥେମିଷ୍ଟୋକ୍ଲସଙ୍କୁ ବଦନାମ କରିବାର ସୁଯୋଗ ଛାଡ଼ିଲେ ନାହିଁ । ଏଥେନ୍‌ସରେ ଥେମିଷ୍ଟୋକ୍ଲସ୍‌ଙ୍କ ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀମାନେ ଏପରି ଗୁଜବ୍‌ର ପୂରା ଫାଇଦା ଉଠାଇଲେ । ସେତେବେଳେ ଥେମିଷ୍ଟୋକ୍ଲସ୍ ଏଥେନ୍‌ସ ବାହାରେ । ତାଙ୍କୁ ଗିରଫ କରିବାକୁ ଓ୍ୱାରେଣ୍ଟ ଗଲା । ଖବର ପାଇ ଥେମିଷ୍ଟୋକ୍ଲସ୍ ଲୁଚିଲେ । ଶେଷରେ ନିରୁପାୟ ହୋଇ ଜରକ୍‌ସିଜ୍‌ଙ୍କର ଶରଣାପନ୍ନ ହେଲେ । ନିୟତିର ବିଚିତ୍ର କି ବିଚାର ! ଥେମିଷ୍ଟୋକ୍ଲସ୍‌ଙ୍କୁ ଗୋଟିଏ ପାର୍ଶୀ ପ୍ରଦେଶର ଗଭର୍ଣ୍ଣର ଭାବେ ନିଯୁକ୍ତ କରାଗଲା । ତାଙ୍କ ସାହାଯ୍ୟରେ ଗ୍ରୀସ୍ ଜୟ କରିବାର ଆଶା ସମ୍ରାଟଙ୍କର ଚେଇଁ ଉଠିଲା । ଥେମିଷ୍ଟୋକ୍ଲସ୍

ମଧ୍ୟ ଏଥିପାଇଁ ପ୍ରସ୍ତୁତ ହେଉଥାନ୍ତି । କିନ୍ତୁ ୭୫ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହୋଇଯିବା ଫଳରେ ସବୁ ଯୋଜନା ପଣ୍ଡ ହେଲା ।

ଜୀବନକୁ ବାଜି ମାରି ଥେମିଷ୍ଟୋକ୍ଲସ୍ ପାରସ୍ୟ ସହିତ ଲଢ଼ିଥିଲେ । ମାତ୍ର ତାଙ୍କ ଜୀବନର ଶେଷ ପରିଣତି ପ୍ରତି ଧ୍ୟାନ ଦେଲେ ଗ୍ରୀକ୍ ଜାତିର କ'ଣ ଗୋଟାଏ ଅଭାବ ଥିଲା ବୋଲି ଆମେ ଅନୁଭବ କରୁ । ଏକଦା ଥେମିଷ୍ଟୋକ୍ଲସ୍‌ଙ୍କ ଅବଦାନ ସମ୍ପର୍କରେ ଏଥେନ୍‌ସରେ ଦ୍ୱିମତ ନ ଥିଲା । ଯୁଦ୍ଧ ସରିବା ପରେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଅବଦାନ ଭିତ୍ତିରେ ଦୁଇଟି ପୁରସ୍କାର ଦେବାକୁ ଏଥେନ୍‌ସର ନେତାମାନେ ସ୍ଥିର କରିଥିଲେ । ସବୁ ନାଗରିକଙ୍କୁ ଏକାଠି କରି ଭୋଟ ନିଆଗଲା । ଦେଖାଗଲା, ପ୍ରଥମ ପୁରସ୍କାର ପାଇଁ ପ୍ରତ୍ୟେକ ନାଗରିକ ତା ନିଜ ନାମଟି ବାଛିଛି । ମାତ୍ର ଦ୍ୱିତୀୟ ପୁରସ୍କାର ପାଇଁ ସମସ୍ତେ ଥେମିଷ୍ଟୋକ୍ଲସ୍‌ଙ୍କୁ ଭୋଟ ଦେଇଛନ୍ତି !

ପଉସାନିଅସ୍‌ଙ୍କ ବିଶ୍ୱାସଘାତକତା ଧରା ପଡ଼ିବା ପରେ ସ୍ପାର୍ଟାର ନୈତିକ ବଳ ଭାଙ୍ଗିଗଲା । ଫଳରେ ପାର୍ଶୀଙ୍କୁ ଇଜିପ୍ଟାନ୍‌ରୁ ଘଉଡ଼େଇବାର ନେତୃତ୍ୱ ଏଥେନ୍‌ସ ହାତକୁ ଗଲା । ଆରିଷ୍ଟିଡିଜ୍ ନାମକ ଆଉ ଜଣେ ଦକ୍ଷ ନେତା ଏଥେନ୍‌ସରୁ ବାହାରିଲେ । ସେ ଅନେକଗୁଡ଼ିଏ ଗ୍ରୀକ୍ ନଗରଙ୍କୁ ଏକାଠି କରି ଗୋଟିଏ ଲିଗ୍ ବା ମିତ୍ରଗୋଷ୍ଠୀ ଗଠନ କଲେ । ମିତ୍ରଗୋଷ୍ଠୀ ସଭ୍ୟଭୁକ୍ତ ନଗରମାନଙ୍କର ପ୍ରତିନିଧିମାନେ ପ୍ରଥମେ ଡେଲସ୍ ଠାରେ ଏକତ୍ରିତ ହୋଇଥିବାରୁ ଏହାର ନାମ ରହିଲା ଡେଲସ୍ ମିତ୍ରଗୋଷ୍ଠୀ । ଏଥେନ୍‌ସ ଡେଲସ୍ ମିତ୍ରଗୋଷ୍ଠୀର ଅଧିନାୟକ । ପ୍ରଧାନତଃ ଆୟୋନିୟ ନଗରଗୁଡ଼ିକ ଏହାର ସଭ୍ୟ । ଲିଗ୍‌ର ପ୍ରାୟ ଅର୍ଦ୍ଧେକ ଯୁଦ୍ଧ ଜାହାଜ ଓ ସୈନ୍ୟ ଏଥେନ୍‌ସର । ପୂର୍ବରୁ ଡୋରିଆନ୍ ନଗର ରାଷ୍ଟ୍ର-ଗୁଡ଼ିକ ସ୍ପାର୍ଟାର ନେତୃତ୍ୱରେ ପିଲୋପୋନେସିଆନ୍ ଲିଗ୍ ଗଠନ କରିଥିଲେ । ଡେଲିଆନ୍ ଲିଗ୍ ପିଲୋପୋନେସିଆନ୍ ଲିଗ୍‌ର ପ୍ରତିଦ୍ୱନ୍ଦ୍ୱୀ ହୋଇ ଉଠିବା ସ୍ୱାଭାବିକ । ଗ୍ରୀସ୍‌ର ପ୍ରାୟ ପ୍ରତ୍ୟେକ ନଗର ଦୁଇଟି ମଧ୍ୟରୁ ଗୋଟିକର ସଭ୍ୟ ଥିଲା । ଏହି ଦୁଇ ଲିଗ୍ ମଧ୍ୟରେ ପ୍ରତିଯୋଗିତା ଓ ବିବାଦ ଅନେକ ବର୍ଷ ଧରି ଗ୍ରୀକ୍ ଜାତିର ଇତିହାସ ଗଢ଼ିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମିଲ୍‌ଟିଏଡ଼ିଜ୍‌ଙ୍କ ସୁଯୋଗ୍ୟ ପୁତ୍ର ସାଇମନ୍‌ଙ୍କ ଅଧିନାୟକତ୍ୱରେ ଡେଲିଆନ୍ ଲିଗ୍ ପାରସ୍ୟ ସେନାକୁ ଦକ୍ଷିଣ ଏସିଆ ମାଇନର୍‌ରେ ଜଳ ଓ ସ୍ଥଳ ଯୁଦ୍ଧରେ ପରାସ୍ତ କଲା । ଲକ୍ଷ୍ୟ-

ପୂରଣ ହୋଇ ଯିବାରୁ ଲିଗ୍‌କୁ ବଞ୍ଚାଇ ରଖିବାର ଆବଶ୍ୟକତା ସଭ୍ୟମାନେ ଅନୁଭବ କଲେ ନାହିଁ । ଏଥେନ୍‌ସର ମତ୍‌ଲବ କିନ୍ତୁ ଅନ୍ୟ ପ୍ରକାର । ସେ ଲିଗ୍‌କୁ ଭାଙ୍ଗିଦେବା ସପକ୍ଷରେ ନ ଥିଲା । ତେଣୁ ଯେଉଁ ନଗର ଲିଗ୍ ଛାଡ଼ିଲା ବଳପୂର୍ବକ ତାକୁ ଅଧିକାର କରି-ନେଇ ଏଥେନ୍‌ସ ନିଜ ଅଧୀନକୁ ଆଣିଲା ଓ ତାର ବାର୍ଷିକ ଦେୟ ଆଦାୟ କଲା । ଡେଲିଆନ୍ ଲିଗର ନଗରଗୁଡ଼ିକ ଯେଉଁ କର ଦେଉଥିଲେ ତାହା ଏଥେନ୍‌ସର ରାଜକୋଷକୁ ଯାଉଥିଲା । ଫଳରେ ଅଳ୍ପକାଳ ମଧ୍ୟରେ ଏଥେନ୍‌ସ ବିଭବଶାଳୀ ହୋଇ ଉଠିଲା । ମୂଳରୁ ଆରମ୍ଭ ହୋଇଥିବା ଲିଗ୍‌ଟି ଏଥେନ୍‌ସର ସାମ୍ରାଜ୍ୟ ହେଲା । ତେବେ ଏଥେନ୍‌ସର କରଦ ନଗର-ଗୁଡ଼ିକରେ ଗଣତନ୍ତ୍ର ଶାସନ ଚାଲୁ ରହୁଥାଏ ।

ଡେଲିଆନ୍ ଲିଗ୍‌ର ସଭ୍ୟଗଣ ଏଥେନ୍‌ସ ବିରୁଦ୍ଧରେ ବିଦ୍ରୋହ କରି ସ୍ପାର୍ଟାର ସାହାଯ୍ୟ ଭିକ୍ଷା କରିଥିଲେ । ସ୍ପାର୍ଟା ମଧ୍ୟ ସେମାନଙ୍କୁ ସାହାଯ୍ୟ ଦେବାକୁ ଷଡ଼ଯନ୍ତ୍ର କରୁଥିଲା । କିନ୍ତୁ ଦୁର୍ଯୋଗକୁ ସେତିକବେଳେ ସ୍ପାର୍ଟାର ଦଳିତ ଦାସମାନେ (Helots) ବିଦ୍ରୋହ କଲେ । ସ୍ପାର୍ଟା ଏଥେନ୍‌ସ ଆକ୍ରମଣ କରିବା ପରିବର୍ତ୍ତେ ନିଜର ଆଭ୍ୟନ୍ତରୀଣ ଦମନ କରିବା ପାଇଁ ଏଥେନ୍‌ସର ସାହାଯ୍ୟ ପ୍ରାର୍ଥୀ ହେଲା । ସ୍ପାର୍ଟାକୁ ସାହାଯ୍ୟ କରିବା ବିଷୟରେ ଏଥେନ୍‌ସରେ ତୀବ୍ର ମତଭେଦ ଦେଖାଗଲା । ଡିମୋକ୍ରେଟିକ୍ ଦଳ ସାହାଯ୍ୟ ଦେବା ସପକ୍ଷରେ ନ ଥିଲେ । ପେରିକ୍ଲିଜ୍ ଏହି ଦଳର ନେତା । କିନ୍ତୁ ଅଭିଜାତ ଶ୍ରେଣୀର ନେତା ସାଇମନ୍ ସାହାଯ୍ୟ କରିବା ସପକ୍ଷରେ ମତ ଦେବାରୁ ଏଥେନ୍‌ସର ଗୋଟିଏ ସୈନ୍ୟ ଦଳ ସ୍ପାର୍ଟା ଯାତ୍ରା କଲା । ସ୍ପାର୍ଟା ସିନା ସାହାଯ୍ୟ ମାଗିଥିଲା କିନ୍ତୁ ସାହାଯ୍ୟ ପହଞ୍ଚିଲା ପରେ ତାହା ଗ୍ରହଣ କରିବାକୁ ଭୟ କଲା । ଏଥେନ୍‌ସର ସୈନ୍ୟମାନେ ସ୍ପାର୍ଟାରେ ପଶିଲା ପରେ କ'ଣ କରିବେ କିଏ ଜାଣେ ? ସ୍ପାର୍ଟା ଏଥେନ୍‌ସର ସୈନ୍ୟଦଳକୁ ଫେରାଇ ଦେଲା । ଏହିଭଳି ଅପମାନିତ ହୋଇ ସେମାନେ କ୍ରୋଧରେ ଏଥେନ୍‌ସ ଫେରିଲେ । ଫଳରେ ସାଇମନ୍ ନିନ୍ଦିତ ହେଲେ ଓ ପେରିକ୍ଲିଜ୍‌ଙ୍କ ସମ୍ମାନ ବଢ଼ିଗଲା ।

ପେରିକ୍ଲିଜ୍ ନେତୃତ୍ୱ ନେବା ପରେ ସ୍ପାର୍ଟା ସହିତ ଏଥେନ୍‌ସର ଶୀତଳଯୁଦ୍ଧ ଘନୀଭୂତ ହେଲା । ପେରିକ୍ଲିଜ୍ କିନ୍ତୁ ଜଣେ ବିଚକ୍ଷଣ କୂଟନୀତିଜ୍ଞ । ତାଙ୍କ ପରି ମହାନ୍ ରାଷ୍ଟ୍ରନାୟକ ପୃଥିବୀରେ କ୍ୱଚିତ ଜନ୍ମଗ୍ରହଣ କରିଛନ୍ତି । ଏଥେନ୍‌ସର କରଦ ଆୟୋନୀୟ

ନଗରଗୁଡ଼ିକୁ ସଙ୍ଗଠିତ କରି ଓ ଅନ୍ୟାନ୍ୟ ଜନହିତକର ପଦକ୍ଷେପ ନେଇ ପେରିକ୍ଲିଜ୍ ଅଳ୍ପ କାଳ ଭିତରେ ଏଥେନ୍ସକୁ ଗୋଟିଏ ଶକ୍ତିଶାଳୀ ନଗର ଭାବରେ ଗଢ଼ି ଦେଲେ । ସେତିକି ନୁହେଁ, ଖ୍ରୀ. ପୂ ୪୪୫ରେ ସ୍ପାର୍ଟା ସହିତ ଗୋଟିଏ ତିରିଶବର୍ଷିଆ ଯୁଦ୍ଧବନ୍ଦ ଚୁକ୍ତି କରିବାରେ ସେ ସଫଳ ହେଲେ । ଏହିଦିନ ଠାରୁ ଏଥେନ୍ସର ସ୍ୱର୍ଣ୍ଣ ଯୁଗର ଆରମ୍ଭ ।

ପେରିକ୍ଲିଜ୍ (Pericles) ଏଥେନ୍ସର ଗଣତାନ୍ତ୍ରିକ ଦଳର ନେତା । ଏକ ବଶିଷ୍ଟ ଅଭିଜାତ ବଂଶରେ ତାଙ୍କର ଜନ୍ମ । କିନ୍ତୁ ଗରିବ ଓ ଅବହେଳିତ ଲୋକଙ୍କ ପାଇଁ ସେ ସର୍ବଦା ଚିନ୍ତା କରୁଥିଲେ । ଏଇଟା ତାଙ୍କର ବଂଶ ପରମ୍ପରା କହିଲେ ଅତ୍ୟୁକ୍ତି ହେବ ନାହିଁ । ରୁଚି ଓ ମାନସିକ ଗଠନରେ ପେରିକ୍ଲିଜ୍ ସମ୍ପୂର୍ଣ୍ଣ ଭାବେ ଅଭିଜାତକ । ସେ ଜଣେ ମର୍ଯ୍ୟାଦାବନ୍ତ ପୁରୁଷ । ଲୋକପ୍ରିୟ ହେବାପାଇଁ ସେ କୌଣସି ଲଘୁ ଆଚରଣ ଓ ଇତର ରୁଚିକୁ ପ୍ରଶ୍ରୟ ଦେଉ ନ ଥିଲେ । ପେରିକ୍ଲିଜ୍‌ଙ୍କ ପରି ବ୍ୟକ୍ତି ଗୋଟିଏ ଜାତିର ଅପ୍ରତିଦ୍ୱନ୍ଦୀ ନେତା ହୋଇପାରିବା ସେ ଜାତିର ଉନ୍ନତ ସଂସ୍କୃତିର ଲକ୍ଷଣ । ମୁଁଆଡ଼ିଆ କଥା କହି ଲୋକଙ୍କ ମନ କିଣିବା ପରି ତଥାକଥିତ ଜନପ୍ରିୟ ନେତା ସେ ନୁହନ୍ତି । ଏଥେନ୍ସର ମଙ୍ଗଳ କାମନା ପେରିକ୍ଲିଜ୍‌ଙ୍କ ହୃଦୟକୁ ଅଧିକାର କରିଥିଲା । ତାଙ୍କର ଦେଶପ୍ରେମ ଓ ନ୍ୟାୟ ବିଚାର ସମ୍ପର୍କରେ ଲୋକଙ୍କ ମନରେ ଲେଶ ମାତ୍ର ସନ୍ଦେହ ନ ଥିଲା ।

ଏଥେନ୍ସର ସ୍ୱର୍ଣ୍ଣ ଯୁଗର କର୍ଣ୍ଣଧାର ପେରିକ୍ଲିଜ୍ ବିଶ୍ୱର ଜଣେ ମହାନ୍ ଗଣତନ୍ତ୍ରନାୟକ ଭାବେ ପରିଗଣିତ । ଏକ ଅଭିଜାତ ବଂଶରେ ତାଙ୍କର ଜନ୍ମ । ମେଜାଜ୍‌ରେ ସେ ଅଭିଜାତକ । ସାଧାରଣ ଗରିବ ଲୋକଙ୍କୁ ପେରିକ୍ଲିଜ୍ ପ୍ରାଣ ଦେଇ ଭଲ ପାଉଥିଲେ ।

ଯୌବନରେ ପେରିକ୍ଲିଜ୍ ଆନାକ୍ସଗୋରସ୍‌ଙ୍କର ଶିଷ୍ୟ ଥିଲେ । ଆନାକ୍ସଗୋରସ୍ ଆୟୋନିଆର ମହାନ୍ ଦାର୍ଶନିକ । ସେ ଆନାକ୍ସଗୋରସ୍‌ଙ୍କ ଠାରୁ ଶିଖିଥିଲେ ଯେ ସୂର୍ଯ୍ୟ ଜଣେ ଦେବତା ନୁହନ୍ତି ବା ଦେବତାମାନେ ଜଗତକୁ ଚଳାଉ ନାହାନ୍ତି । ଏକ ବୁଦ୍ଧିମୟ ସତ୍ତା ଦ୍ୱାରା ଜଗତ ପରିଚାଳିତ । ଯୌବନରୁ ବୁଦ୍ଧିର ଶକ୍ତି ଉପରେ ପେରିକ୍ଲିଜ୍ ଭରସା ରଖିଲେ । ଏହି ମୁକ୍ତ ଚିନ୍ତକଙ୍କର ସ୍ୱାତନ୍ତ୍ର୍ୟ ସମ୍ବନ୍ଧରେ ଜନସାଧାରଣ ସଚେତନ ଥିଲେ ।

ସେ କାଳର ବିଖ୍ୟାତ ସଙ୍ଗୀତଜ୍ଞ ଡାମନ୍ ଥିଲେ ପେରିକ୍ଲିଜ୍‌ଙ୍କର ସଙ୍ଗୀତ ଗୁରୁ । ଗ୍ରୀସ୍‌ର ମହାନ୍ କଳାକାର ଫିଡ଼ିଆସ୍ ତାଙ୍କର ଘନିଷ୍ଠ ବନ୍ଧୁ । ବିଶିଷ୍ଟ ସାହିତ୍ୟ ପଣ୍ଡିତଙ୍କ

ଠାରୁ ପେରିକ୍ଲିଜ୍ ସାହିତ୍ୟ ଶିକ୍ଷା କରିଥିଲେ । ଏଥେନ୍ସର ଦାର୍ଶନିକ ଓ ବର୍ତ୍ତନଶିକ୍ଷକ ଜେନୋଙ୍କ ବକ୍ତୃତା ସଭାରେ ଯୋଗ ଦେବା ଥିଲା ତାଙ୍କର ଅନ୍ୟତମ ରୁଚି ।

ରାଜନୈତିକ କ୍ଷମତା ପେରିକ୍ଲିଜ୍ଙ୍କ ଶକ୍ତିର ଉତ୍ସ ନୁହେଁ । ଜନତାର ଆସ୍ଥା ଓ ବିଶ୍ୱାସଭାଜନ ହୋଇପାରିବା ତାଙ୍କର ଅସଲ ବଳ । ବିରୁଦ୍ଧ ମତକୁ ସହ୍ୟ କରିବା, ଅନୈକ୍ୟକୁ ହଜମ କରିବା ପରି ଗଣତନ୍ତ୍ର ଏଥେନ୍ସରେ ପାଳନ ହୋଇଥିଲା । ଅଥଚ ସାଂସ୍କୃତିକ କ୍ଷେତ୍ରରେ ଆଭିଜାତ୍ୟର ପ୍ରଭାବ ଥିଲା ସ୍ପଷ୍ଟ । ଗଣତାନ୍ତ୍ରିକ ଶାସନରେ ଆସ୍ଥା, ଦୁଃଖୀ ଦରିଦ୍ରଙ୍କ ପ୍ରତି ହୃଦୟରେ ଦରଦ ଏବଂ କଳା ଓ ସଂସ୍କୃତି କ୍ଷେତ୍ରରେ ଉଚ୍ଚତର ମୂଲ୍ୟବୋଧ ପ୍ରତି ସଜାଗ ଥିବା ଜଣେ କର୍ଣ୍ଣଧାର ପାଇବା ଯେ କୌଣସି ଦେଶ ପକ୍ଷରେ ଅତ୍ୟନ୍ତ ସୌଭାଗ୍ୟର ବିଷୟ । ମହାନ୍ ହେବା ପାଇଁ ଭିତ୍ତିଭୂମି ପ୍ରସ୍ତୁତ କରିଥିବା ଏଥେନ୍ସ ଇତିହାସର ଏକ ପରମ ଶୁଭ ମୁହୂର୍ତ୍ତରେ ପେରିକ୍ଲିଜ୍ଙ୍କ ହାତରେ ପଡ଼ିଲା ।

ପାରସ୍ୟ ସେନା ଏଥେନ୍ସକୁ ଜାଳପୋଡ଼ି ଧ୍ୱଂସ କରିଥିଲେ । ନଗରକୁ ଏକ କଳା-ମନ୍ଦିର ରୂପେ ଗଢ଼ି ତୋଳିବାକୁ ପେରିକ୍ଲିଜ୍ ଏଥେନ୍ସର ଆର୍ଟିଷ୍ଟ କୁଳକୁ ଆହ୍ୱାନ କଲେ । ଏଥେନ୍ସକୁ ସୁନ୍ଦର କରି ନିର୍ମାଣ କରିବାକୁ ରାଜକୋଷ ଖୋଲି ଦିଆଗଲା । ଡେଲିକାନ୍ ଲିଗ୍ରୁ ପ୍ରଚୁର କର ଆଦାୟ ହେଉଥିବାରୁ ଏଥେନ୍ସର ଅର୍ଥ ଅଭାବ ନ ଥାଏ । ଏଥେନ୍ସ ନଗରର ସର୍ବସାଧାରଣ ଅଟ୍ଟାଳିକା, ମନ୍ଦିର, ମୂର୍ତ୍ତି ଗଠନ ଓ ଚିତ୍ରାଙ୍କନ ପାଇଁ ଏଥେନ୍ସୀୟ ଆସେମ୍ବ୍ଲି ଖ୍ରୀ. ପୂ ୪୪୭ ରୁ ୪୩୧—ଏହି ଷୋହଳ ବର୍ଷ ଭିତରେ ଆଧୁନିକ ମୁଦ୍ରା ହିସାବରେ ପାଞ୍ଚଶହ ଛଅସ୍ତରି ଲକ୍ଷ ଡଲାର୍ ଖର୍ଚ୍ଚ ବ୍ୟବସ୍ଥା କରିଥିଲା । ଏଥେନ୍ସର ଆକାରକୁ ଦୃଷ୍ଟିରେ ଏ ବିପୁଳ ପରିମାଣର ଅର୍ଥ ବ୍ୟୟ କଳ୍ପନାତୀତ । ଗୋଟିଏ ମହାନ୍ କଳାପ୍ରିୟ ଜାତିର କଳ୍ପନା ବାସ୍ତବ ରୂପନେବା ଫଳରେ ନୂତନ ଏଥେନ୍ସ ସୃଷ୍ଟି ହେଲା । ସତେକି ସ୍ୱର୍ଗପୁରରୁ କେଉଁ ସ୍ୱପ୍ନପୁରୀ ଉର୍ଦ୍ଧ୍ୱଭୂତ ଏଥେନ୍ସକୁ ଖସି ଆସିଲା ! କାଳ ମୁଖରୁ ବର୍ତ୍ତି ଯାଇଥିବା ଗ୍ରୀସ୍ର ଗୋଟିଏ ଭଙ୍ଗା ମୂର୍ତ୍ତିଟିଏ ଆମକୁ ଅଭିଭୂତ କରିବାକୁ ଯଥେଷ୍ଟ ।

ଏଥେନ୍ସକୁ ଗୋଟିଏ କଳାମନ୍ଦିର କରି ଗଢ଼ିବାକୁ ଯେତେ ଅର୍ଥ ବ୍ୟୟ ହୋଇଥିଲା, ଏ ପର୍ଯ୍ୟନ୍ତ କୌଣସି ଗଣତାନ୍ତ୍ରିକ ଦେଶରେ ତାହା ବିରଳ ।

ପେରିକ୍ଲିଜ୍‌ଙ୍କ ବନ୍ଧୁ ବିଶ୍ୱବିଖ୍ୟାତ ଭାସ୍କର୍ଯ୍ୟ ଫିଡିଆସ୍‌ଙ୍କ ନେତୃତ୍ୱରେ ଏଥେନ୍‌ସର କଳାକାରଗଣ ସେମାନଙ୍କର ସ୍ୱପ୍ନ ନଗରୀକୁ ଗଢ଼ିବାରେ ମନ ପ୍ରାଣ ଦେଇ ଲାଗିପଡ଼ିଲେ । ମନୋରମ ଅଟ୍ଟାଳିକା, ସୁନ୍ଦର ମନ୍ଦିର, ମୂର୍ତ୍ତି, ପୂଜାପୀଠ ଓ ଉଦ୍ୟାନରେ ପରିପୂର୍ଣ୍ଣ ଏଥେନ୍‌ସ ସତେ କି ଅଗ୍ନି ସ୍ନାନରୁ ଶୁଦ୍ଧ ସୁବର୍ଣ୍ଣ ପରି ଝଟକି ବାହାରିଲା ।

ପେରିକ୍ଲିଜ୍ ( ଖ୍ରୀ. ପୂ ୪୯୫—୪୨୯ ) ଙ୍କ ଜନ୍ମ ଠାରୁ ଆରିଷ୍ଟୋଟଲ୍‌ଙ୍କ ମୃତ୍ୟୁ ( ଖ୍ରୀ. ପୂ ୩୨୨ ) ପର୍ଯ୍ୟନ୍ତ ଦେଢ଼ଶହ ବର୍ଷ କାଳ ଭିତରେ ଗ୍ରୀକ୍ ସଂସ୍କୃତିର ଚରମ ବିକାଶ ଘଟିଥିଲା । ଆୟତନରେ ଗ୍ରୀସ୍ ଓଡ଼ିଶା ଠାରୁ ଛୋଟ । ଦେଢ଼ଶହ ବର୍ଷ ଅତି ସ୍ୱଳ୍ପ କାଳ । ସ୍ଥାନ ଓ କାଳର ଏହି ସୀମା ଭିତରେ କି ମହାନ୍ ସଂସ୍କୃତି ସମ୍ଭବ ହୋଇ ପାରିଲା ! ଗ୍ରୀକ୍ ସଂସ୍କୃତିକୁ ଏଥେନ୍‌ସର ଅବଦାନ ସବୁଠାରୁ ଅଧିକ । ଆଟିକା ନଗର-ରାଷ୍ଟ୍ରଟି ଆୟତନରେ ଓଡ଼ିଶାର ଗୋଟିଏ ସବ୍‌ଡିଭିଜନ୍ ପରି ଏତେବଡ଼ ପୃଥିବୀରେ ଏତିକ ଟିକିଏ ଜାଗାରେ ପ୍ରାୟ ୨୪୦୦ ବର୍ଷ ତଳେ ଯେଉଁ ସଂସ୍କୃତି-କୁସୁମ ପ୍ରସ୍ଫୁଟିତ ହୋଇଥିଲା, ତା'ର ମହକରେ ପୃଥିବୀ ଏ ପର୍ଯ୍ୟନ୍ତ ଚମତ୍କୃତ ହେଉଛି । ସ୍ଥାନ କାଳର ଏତେ କ୍ଷୁଦ୍ର ପରିସୀମା ଭିତରେ ଯେଉଁ ସଂସ୍କୃତି ସମ୍ଭବ ହେଲା, ସମଗ୍ର ପୃଥିବୀ ଉପରେ ତା'ର ପ୍ରଭାବ କି ଗଭୀର ଓ ବ୍ୟାପକ !

ପେରିକ୍ଲିଜ୍‌ଙ୍କ ଠାରୁ ପଚାଶ ବର୍ଷ ଭିତରେ ଏଥେନ୍‌ସ ଯେତେଜଣ ଜିନିୟସ୍‌ଙ୍କୁ ଜନ୍ମ ଦେଇଥିଲା, ପୃଥିବୀର ଯେ କୌଣସି ବଡ଼ ଦେଶ ସମସ୍ତର ଯେ କୌଣସି ବିନ୍ଦୁରୁ ପାଞ୍ଚଶହ ବର୍ଷ ମଧ୍ୟରେ ସେତିକ ଜଣ ଜିନିୟସ୍‌ଙ୍କର ଜନ୍ମଭୂମିର ଗୌରବରେ ଧନ୍ୟ ହୁଅନ୍ତା । ଜିନିୟସ୍ କିଏ ? ଗୋଟିଏ ସଂଜ୍ଞାରୁ ଏ ପ୍ରଶ୍ନର ଉତ୍ତର ମିଳେ ନାହିଁ । ଜିନିୟସ୍‌କୁ ଦେଖି ଆମେ ଜିନିୟସ୍ ସହିତ ପରିଚିତ ହେଉ । ଜଗତ ପେରିକ୍ଲିଜ୍, ଫିଡିଆସ୍, ସୋଫୋକ୍ଲିଜ୍, ୟୁରିପିଡ଼ିଜ୍, ସକ୍ରେଟିସ୍ ଓ ପ୍ଲେଟୋଙ୍କୁ ବକ୍ଷରେ ଧାରଣ କରିବା ଦ୍ୱାରା ଜିନିୟସ୍‌ର ଅର୍ଥ ବୁଝିବା ପାଇଁ ବାଟ ପାଇଛି । କହିବା ବାହୁଲ୍ୟ, ଜିନିୟସ୍ ଜଣେ ବଡ଼ ବିଶେଷଜ୍ଞ ନୁହନ୍ତି, ଏକ ବା ଏକାଧିକ କ୍ଷେତ୍ରରେ ଅସାଧାରଣ ପ୍ରତିଭାର ପରିଚୟ ଦେଇଥିବା ବ୍ୟକ୍ତିଟିଏ କେବଳ ନୁହନ୍ତି— ଜିନିୟସ୍ ଅଲୌକିକ ପ୍ରତିଭା ଓ ଶକ୍ତିମାନ୍ ବ୍ୟକ୍ତିତ୍ୱର ଏକୀଭୂତ ପ୍ରକାଶ ।

ଗ୍ରୀକ୍ ଜାତି ପରି ଗ୍ରୀକ୍ ଜିନିୟସ୍‌ର ବୈଶିଷ୍ଟ୍ୟ ହେଉଛି ତା'ର ବ୍ୟାପ୍ତି । ଗୋଟିଏ ଜାତି ଓ ତାର ଜିନିୟସ୍ ମଧ୍ୟରେ ସାମଞ୍ଜସ୍ୟ ଥାଏ । ଜିନିୟସ୍ ମାଧ୍ୟମରେ ଜାତିର ବୈଶିଷ୍ଟ୍ୟ

ପ୍ରକାଶ ପାଏ । କାରଣ ଜାତି ଓ ଜନପଦ୍ ପରସ୍ପରକୁ ଗଢ଼ନ୍ତି । ଜଣେ ଆରଜଣର ଦର୍ପଣ । ଗ୍ରୀକ୍ ଜାତି ଓ ଗ୍ରୀକ୍ ଜନପଦ୍—ଉଭୟର ବୈଶିଷ୍ଟ୍ୟ ହେଉଛି ବହୁମୁଖୀତା । ଗ୍ରୀସ୍‌ରେ କ୍ରୀଡ଼ା ପ୍ରତିଯୋଗିତା ଯେପରି ଅନୁଷ୍ଠିତ ହେଉଥିଲା, ସେଥିରୁ ଏହାର ପ୍ରମାଣ ମିଳିଯାଏ । ଖେଳ ଦେଖିବାକୁ ଆସିଥିବା ଦର୍ଶକମାନେ ଷ୍ଟେଡିୟମ୍‌ରେ ବାଗ୍ମୀଙ୍କର ବକ୍ତୃତା ଶୁଣୁଥିଲେ । ସେଇଠି ଗାୟକମାନେ ସୁଲଳିତ କଣ୍ଠରେ ବିଶିଷ୍ଟ କବିଙ୍କର କବିତା ଆବୃତ୍ତି କରୁଥିଲେ । ଖେଳ ଦେଖିବାକୁ ଆସିଥିବା ଲୋକଙ୍କ ଠାରୁ ଏପରି ରୁଚି ଆଜିକାଲି କେଉଁ ଦେଶରେ ଆଶା କରାଯାଇପାରେ ? ପ୍ରତିଯୋଗୀ ଯୁବକ କ୍ରୀଡ଼ାବିତ୍‌ଙ୍କର ଦୈହିକ ଗଠନ ଓ ସୌନ୍ଦର୍ଯ୍ୟ ଅଧ୍ୟୟନ କରିବାକୁ ଖେଳ ପଡ଼ିଆରେ ଆର୍ଟିଷ୍ଟମାନେ ରୁଣ୍ଡ ହେଉଥିଲେ । ଲୋକଙ୍କର ମତିଗତି ଠଉରେଇବା ପାଇଁ ରାଜନୈତିକ ନେତାମାନେ ଆସୁଥିଲେ । ମେଳାରେ ସଂସାର ଓ ମଣିଷକୁ ବୁଝିବାର ସୁଯୋଗ ନେବାକୁ ଆସୁଥିଲେ ଦାର୍ଶନିକମାନେ । ଗ୍ରୀସ୍‌ର କ୍ରୀଡ଼ାପ୍ରେମୀ ଗୋଷ୍ଠୀ ବିଭିନ୍ନ କ୍ଷେତ୍ରରୁ ଆସୁଥିବା ଲୋକଙ୍କୁ ନେଇ ଗଢ଼ା ହେଉଥିଲା ।

ଗ୍ରୀସ୍‌ର ମହାପୁରୁଷ ସକ୍ରେଟିସ୍‌ଙ୍କ ଭିତରେ ଆମେ ଗ୍ରୀକ୍ ଜାତିର ବୈଶିଷ୍ଟ୍ୟ ଓ ମହତ୍ତ୍ୱର ଆଉ ଗୋଟିଏ ଦିଗ ଦେଖିବାକୁ ପାଉ । ସକ୍ରେଟିସ୍ କେତେବଡ଼ ଜ୍ଞାନୀ ମହାତ୍ମା—କିନ୍ତୁ ଜଣେ ସାଧାରଣ ଗ୍ରୀକ୍ ଇଚ୍ଛା କଲେ ତାଙ୍କ ସହିତ ସ୍ୱଚ୍ଛନ୍ଦରେ ମିଶି ପାରୁଥିଲା । ସକ୍ରେଟିସ୍‌ଙ୍କ ସହିତ କଥାବାର୍ତ୍ତା ହେବାରେ ତାର କୌଣସି ପ୍ରତିବନ୍ଧକ ନ ଥିଲା । ସେ ସକ୍ରେଟିସ୍‌ଙ୍କ ସହିତ ମିଶିବ କ'ଣ ସକ୍ରେଟିସ୍ ଯାଇ ତା ପାଖରେ ପହଞ୍ଚୁଥିଲେ । ତେଣିକି ସେ ତାଙ୍କ ସହିତ ଯେତେଦୂର ମିଶି ପାରିଲା । ଏଥେନ୍‌ସର ବଜାର ହାଟରେ ଘୂରିବୁଲିବା ଥିଲା ସକ୍ରେଟିସ୍‌ଙ୍କର ଦୈନନ୍ଦିନ କାମ । ଯଦି ଜଣେ ଦି'ଜଣ ତାଙ୍କ ସହିତ

ସକ୍ରେଟିସ୍ ଗପୁଡ଼ି ଗ୍ରୀକ୍ ଜାତିର ପ୍ରତିନିଧିତ୍ୱକାରୀ ଦାର୍ଶନିକ ।

କୌଣସି ବିଷୟରେ କଥାବାର୍ତ୍ତା କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ, ତେବେ କଥାବାର୍ତ୍ତା ଆରମ୍ଭ ହେଉଥିଲା । କ୍ରମଶଃ ଆଗ୍ରହୀ ଶ୍ରୋତା କେତେଜଣ ଜମୁଥିଲେ । ଗପୁଡ଼ି ଗ୍ରୀକ୍‌ଙ୍କର ଅଧିକାଂଶ ସମୟ ଘର ବାହାରେ କଟୁଥିଲା । ଜଣେ ଗ୍ରୀକ୍ ପକ୍ଷରେ ଘରର ସଂଜ୍ଞା ରାତିରେ ବିଶ୍ରାମ ନେବାର ସ୍ଥାନ । ହାଟବଜାର, ଆସେମ୍ବ୍ଲି, କାଉନ୍‌ସିଲ୍, କୋର୍ଟକଚେରୀ, ଉତ୍ସବ କ୍ରୀଡ଼ା ପ୍ରତିଯୋଗିତା ଓ ପ୍ରେକ୍ଷାଳୟରେ ତାର ସମୟ ବିତୁଥିଲା । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ପଦାରେ ଘୂରି ବୁଲି ଲୋକଙ୍କ ସହିତ ଗପିବା ଓ ସେଇ ସୁଯୋଗରେ କୌଣସି ବିଷୟ ଚର୍ଚ୍ଚା

କରୁଥିବା ସକ୍ରେଟିସ୍ ଗ୍ରୀକ୍ ଜାତିର ପ୍ରତିନିଧିତ୍ୱକାରୀ ଦାର୍ଶନିକ । କିଏ ଭଲ ବା କିଏ ବଡ଼ ସେପରି ପିଲାଳିଆ ପ୍ରଶ୍ନକୁ ବାଦ୍ ଦେଇ ବିଚାର କଲେ ସକ୍ରେଟିସ୍ ଓ ହିମାଳୟରେ ତପସ୍ୟାରତ ଋଷିଙ୍କ ମଧ୍ୟରେ ଅନେକ ତଫାତ୍ । ହାଟ ମଧ୍ୟରେ ବ୍ରହ୍ମଜ୍ଞାନ ସମ୍ଭବ ନୁହେଁ ସତ, କିନ୍ତୁ ଜ୍ଞାନ ସମ୍ଭବ ବୋଲି ଗ୍ରୀକ୍ ଜାତି ଓ ସକ୍ରେଟିସ୍ ଦେଖାଇ ଦେଇଛନ୍ତି ।

ସକ୍ରେଟିସ୍ ଏକ ଚରମ ଦୃଷ୍ଟାନ୍ତ ହୋଇପାରନ୍ତି । ତଥାପି ବଡ଼ ମଣିଷଙ୍କ ସହିତ ମିଶିବାର ଯେଉଁ ସୁଯୋଗ ପ୍ରାଚୀନ ଗ୍ରୀସ୍‌ର ଜଣେ ସାଧାରଣ ଲୋକ ପାଉଥିଲା, ଆଧୁନିକ ଜନବହୁଳ ପୃଥିବୀରେ ତାହା ଆକାଶକୁସୁମ । ଗ୍ରୀସ୍‌ର ଲୋକସଂଖ୍ୟା ଓ ପ୍ରତିଭାବାନ୍ ବ୍ୟକ୍ତିଙ୍କର ସଂଖ୍ୟାର ଅନୁପାତ ପ୍ରତି ଧ୍ୟାନ ଦେଲେ ଜାଣିହୁଏ ଯେ ବିଶିଷ୍ଟ ଦାର୍ଶନିକ, କବି, ନାଟ୍ୟକାର, କଳାକାର, ବାଗ୍ମୀ ଓ ବିଦ୍ୱାନ ଶିକ୍ଷକ (ସେମାନେ ସଫିଷ୍ଟସ୍ ନାମରେ ପରିଚିତ)ଙ୍କ ସାନ୍ନିଧ୍ୟରେ ଆସିବାର ପ୍ରଚୁର ସୁଯୋଗ ଜଣେ ସାଧାରଣ ଲୋକର ଥିଲା ।



[ ନେପୁଲ୍‌ସ ମିଉଜିୟମ୍‌ରେ ଥିବା ସକ୍ରେଟିସ୍‌ଙ୍କର ଆବକ୍ଷ ମୂର୍ତ୍ତି ।]

ବିଖ୍ୟାତ ନାଟ୍ୟକାର (ଧରନ୍ତୁ) ୟୁରିପିଡ଼ିଜ୍‌ଙ୍କ ନାଟକ ଅଭିନୀତ ହେଉଥିବା ପ୍ରେକ୍ଷାଳୟରେ ପେରିକ୍ଲିଜ୍, ଆସ୍‌ପାସିଆ, ଆଲ୍‌ସିବିଏଡ଼ସ୍, ସକ୍ରେଟିସ୍, ଆନାକ୍‌ସଗୋରସ ଓ ଫିଡ଼ିଆସ୍ ଦର୍ଶକ ଆସନ ଅଳଙ୍କୃତ କରୁଥିଲେ । ସେମାନଙ୍କ ମେଳରେ ବସି ଜଣେ ସାଧାରଣ ନାଗରିକ ଅଭିନୟ ଦେଖୁଥିଲା । ଏହି ଘଟଣାର ଆଉ ଗୋଟିଏ ଦିଗ ମଧ୍ୟ ସ୍ପଷ୍ଟ । ଗ୍ରୀକ୍ ଜୀବନରେ କଳା, ବିଜ୍ଞାନ, ସାହିତ୍ୟ, ଦର୍ଶନ, ସଙ୍ଗୀତ, ଧର୍ମ ଓ ରାଜନୀତି ଯେ ସ୍ୱାଭାବିକ୍ ଭାବେ ମିଶି ପାରୁଥିଲା—ଗ୍ରୀକ୍ ପ୍ରେକ୍ଷାଳୟର ବିଶିଷ୍ଟ ଦର୍ଶକମଣ୍ଡଳୀ ତାହା ସ୍ପଷ୍ଟ ଭାବେ ଦେଖାଇ ଦିଏ ।

ଟ୍ରାଜେଡ଼ିକାର ଆଗାଥନ୍‌ଙ୍କର ଗୋଟିଏ ନାଟକ ପୁରସ୍କୃତ ହୋଇଥିବା ଉପଲକ୍ଷେ ସେ ଗୋଟିଏ ଭୋଜର ଆୟୋଜନ କରିଥାନ୍ତି । ସକ୍ରେଟିସ୍, ଆରିଷ୍ଟୋଫେନ୍‌ସ (କମେଡ଼ିଆନ୍) ଏରିକ୍‌ସିମେଚସ୍ (ଡାକ୍ତର), ଆଲ୍‌ସିବିଏଡ଼ସ୍ (ଯୁବକ ରାଜନୀତିଜ୍ଞ) ପ୍ରଭୃତି ଏଥେନ୍‌ସର ବିଶିଷ୍ଟ ବ୍ୟକ୍ତିମାନେ ଏହି ନୈଶ୍ୟ-ଭୋଜରେ ଯୋଗ ଦେଇ ଥାଆନ୍ତି । ମଦ୍ୟ ପରିବେଷଣ ସମୟରେ ଗୋଟିଏ ପ୍ରସ୍ତାବ ଆସିଲା ଯେ ପ୍ରେମର ମହତ୍ତ୍ୱ ଓ କନ୍ଦର୍ପଙ୍କ ବନ୍ଦନା କରି ପ୍ରତ୍ୟେକେ କିଛି କିଛି କହନ୍ତୁ । କବି ଭାବୁକ ତ ସହଜେ ନିଶାଗ୍ରସ୍ତ । ଏମାନଙ୍କୁ ମଦ୍ୟପାତ୍ର ଧରେଇ ଦେଇ ଯଦି ପ୍ରେମ ସମ୍ପର୍କରେ ଗପିବାକୁ କୁହାଯାଏ, ତେବେ ରାତି ଆଉ ଅଣ୍ଟିବ ? ନିଶା-କାଳର ମାଦକତା, ମଦ୍ୟର ମାଦକତା ଓ ପ୍ରେମର ମାଦକତାକୁ କି ଅଦ୍ଭୁତ କଳା-କୌଶଳରେ ଫେଣ୍ଟି ଦେଇ ସେଇ ଉତ୍ସବର ବିବରଣୀ ଲେଖି ଯାଇଛନ୍ତି ଭାଷାର ଯାଦୁକର



[ ଭିନ୍ନ ଆକୃତିର ଦୁଇଟି ଅତି ସୁନ୍ଦର ପାନପାତ୍ର । ଡାହାଣ କଡ଼ରେ ମଦ ଓ ପାଣି ମିଶାଇବାର ପାତ୍ରଟି କମ୍ ସୁନ୍ଦର ଓ ଲୋଭନୀୟ ନୁହେଁ ।]

ପ୍ଲେଟୋ ତାଙ୍କର ସିମ୍ପୋଜିୟମ୍ ଡାଏଲଗ୍‌ରେ । ଅଢ଼େଇ ହଜାର ବର୍ଷ ଧରି ସାରା ପୃଥିବୀର କବି, ଶିଳ୍ପୀ, ଭାବୁକ ଓ ପ୍ରେମିକମାନେ ଏହି ରାତିଟିକୁ ଝୁରୁଛନ୍ତି । ଆଗାଥନ୍‌ଙ୍କ ଭୋଜି-ସଭାରେ ଯୋଗ ଦେବାର ସୌଭାଗ୍ୟରୁ ବଞ୍ଚିତ ହୋଇ ସେମାନେ କେତେବେଳେ ଦୁଃଖ କରନ୍ତି ତ ପୁଣି କେଉଁ ନିଶା ବେଳାରେ ସେଠି ପହଞ୍ଚିଯାଇ ବିଭୋର ହୁଅନ୍ତି । ସିମ୍ପୋଜିୟମ୍ କେବଳ ଗୋଟିଏ ମହାନ୍ ଗ୍ରନ୍ଥ ନୁହେଁ, ଅଧିକନ୍ତୁ ଗ୍ରୀସ୍‌ର କବି-ଭାବୁକ-କଳାକାରଙ୍କ

ମେଳକୁ ବିଶ୍ୱର ସବୁକାଳର କବି-ପ୍ରେମିକଙ୍କୁ ଏକ ଆମନ୍ତ୍ରଣ । ପ୍ଲେଟୋଙ୍କ ଲେଖଣୀ କେଉଁ ଅତୀତ ଗ୍ରୀସ୍‌ର ସେଇ ବିଶିଷ୍ଟ ରୀତିଟିକୁ ଅମର କରି ରଖିଛି ।

କିମ୍ବା ବାହୁଲ୍ୟ, ସିମ୍ପୋଜିୟମ୍‌ରେ ବର୍ଣ୍ଣିତ ଭୋଜିସଭା କେବଳ କବି କଳ୍ପନା ନୁହେଁ । କବି ଶୂନ୍ୟରୁ ଆଣି ବା ଶୂନ୍ୟବାସୀ ଥାଇ କଳ୍ପନା କରେନା । ଏଥେନ୍‌ସୀୟ ପରିବାରରେ ରାତି ଭୋଜନ ପରେ ଏକାଠି ପାନ କରିବାର ବ୍ୟବସ୍ଥା ଥିଲା । ଗ୍ରୀକ୍ ଭାଷାରେ ସିମ୍ପୋଜିୟମ୍‌ର ଅର୍ଥ ଏକତ୍ର ପାନ କରିବା । ସ୍ପାର୍ଟା ଓ ଏଥେନ୍‌ସରେ ପାନୀୟ କ୍ଳବ ସବୁ ଥିଲା । ଏପରି କ୍ଳବର ସଭ୍ୟଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ । ନୃତ୍ୟ ଗୀତ, କବିତା ଆବୃତ୍ତି ଓ ସରସ ଆଳାପ ପାନୀୟ କ୍ଳବ ଗୁଡ଼ିକର ବିଶେଷ ଆକର୍ଷଣ । ଶିକ୍ଷିତ ଏଥେନ୍‌ସୀୟଙ୍କ ସିମ୍ପୋଜିୟମ୍‌ରେ ମଝିରେ ମଝିରେ ଆଲୋଚନା ହୁଏ । ଆଲୋଚନା ବେଳେ ବିଶୃଙ୍ଖଳା ଓ ଗୋଳମାଳ ରୋକିବା ପାଇଁ ଜଣେ ସଭାପତି ବଛା ଯାଆନ୍ତି । ପ୍ରତ୍ୟେକ ଲୋକ ତା ପାଳି ଆସିଲେ କହେ । ଆଗାଥନ୍‌ଙ୍କ ଭୋଜିସଭାର ସିମ୍ପୋଜିୟମ୍ ଏହିପରି ଅନୁଷ୍ଠିତ ହୋଇଥିଲା ।

ଧର୍ମ, କଳା, ସାହିତ୍ୟ, ବିଜ୍ଞାନ, ରାଜନୀତି, ବାଣିଜ୍ୟ, ପାରିବାରିକ ସମ୍ପର୍କ, ସାମାଜିକ ଚଳଣି ଓ ଅନୁଷ୍ଠାନ—ଜାତୀୟ ଜୀବନରେ ଏମାନଙ୍କର ପ୍ରତିଫଳନରୁ ଯେଉଁ ଇନ୍ଦ୍ରଧନୁ ସୃଷ୍ଟି ହୋଇଥାଏ, ତାହାହିଁ ତ ଜାତିର ସଂସ୍କୃତି । ଗ୍ରୀକ୍ ସଂସ୍କୃତିର ବର୍ଣ୍ଣ ବୈଚିତ୍ର୍ୟ ଆମକୁ ମନ୍ତ୍ରମୁଗ୍ଧ କରେ । ଗ୍ରୀସ୍‌ର ଷ୍ଟେଡ଼ିୟମ୍, ପ୍ରେକ୍ଷାଳୟ ବା ଭୋଜି ଉତ୍ସବରେ ତାର ଏହି ବୈଚିତ୍ର୍ୟ ଆମ ଦୃଷ୍ଟିରେ ପଡ଼େ । ଗ୍ରୀସ୍‌ର ବଡ଼ କବି, ଭାବୁକ ବା ରାଷ୍ଟ୍ରନାୟକର ବହୁମୁଖୀ ଓ ଚିତ୍ତାକର୍ଷକ ବ୍ୟକ୍ତିତ୍ୱ ତାର ସଂସ୍କୃତି ପରି ପ୍ରଶସ୍ତ ଓ ମନୋହର । ଗ୍ରୀକ୍ ସଂସ୍କୃତିର ଅବକ୍ଷୟ ଆରମ୍ଭ ହେବା ପୂର୍ବରୁ ସେ ଜାତିର ଯେ କୌଣସି ମହାନ୍ ସନ୍ତାନକୁ ଏହାର ଦୃଷ୍ଟାନ୍ତ ଭାବେ ନିଆଯାଇପାରେ ।

ଧରନ୍ତୁ ପେରିକ୍ଲିଜ୍ । ଆମେ ତାଙ୍କ ସମ୍ବନ୍ଧରେ ଆଲୋଚନା କରୁଥିଲୁ । ଡ଼ାମନ୍‌ଙ୍କ ଠାରୁ ସଙ୍ଗୀତ ଶିକ୍ଷା କରି ସେ ତାଙ୍କର ସଙ୍ଗୀତ ତୃଷ୍ଣା ମେଣ୍ଟାଇଲେ । ଆନାକ୍‌ସଗୋରସ୍‌ଙ୍କ ପ୍ରତି ଆକୃଷ୍ଟ ହୋଇ ଦର୍ଶନରେ ମଜ୍ଜିଲେ । କଳା ପ୍ରୀତି ତାଙ୍କୁ ଫିଡ଼ିଆସ୍‌ଙ୍କ

ସମ୍ଭବତ ବସନ୍ତଭୂତରେ ଛନ୍ଦ ଦେଲ । ଏତେକଥା ସମ୍ଭବତ ପେରକ୍ଲିଜ୍ ଜଣେ ମହାନ୍ ପ୍ରେମିକ । ପେରକ୍ଲିଜ୍ ଓ ଆସ୍‌ପାସିଆ ଇତିହାସର ବଶିଷ୍ଟ ପ୍ରେମିକ ପ୍ରେମିକା ଯୋଡ଼ । ଆସ୍‌ପାସିଆଙ୍କ ଜନ୍ମଭୂମି ମିଲେଟସ୍ । ସେଠାରୁ ସେ ଏଥେନ୍‌ସ ଉଠି ଆସିଥିଲେ । ଗ୍ରୀସରେ ନାରୀର ସ୍ଥାନ ଘରର ଚାରିକାନ୍ଥ ମଧ୍ୟରେ ସୀମାବଦ୍ଧ ଥିଲ । ଆୟୋନିଆରେ କିନ୍ତୁ ନାରୀମାନେ ଅନେକାଂଶରେ ସ୍ୱାଧୀନ ବାତାବରଣ ଭିତରେ ବଢ଼ୁଥିଲେ । ଏଥେନ୍‌ସ ଆସି ଆସ୍‌ପାସିଆ ପୁରୁଷଙ୍କ ସମ୍ଭବତ କାନ୍ଧ ମିଳେଇ ସାଂସ୍କୃତିକ କାର୍ଯ୍ୟ-କଳାପରେ ଭାଗ ନେଲେ । ଏ କଥା ଅନେକଙ୍କ ଦୃଷ୍ଟିରେ ଗଲ ନାହିଁ । ପେରକ୍ଲିଜ୍‌ଙ୍କ ପରି ସୁପୁରୁଷ ଆସ୍‌ପାସିଆଙ୍କ ପରି ବିଦୁଷୀ ଓ ରସିକା ନାରୀଙ୍କ ପ୍ରତି ଆକୃଷ୍ଟ ହେବା ଆମକୁ ସ୍ୱାଭାବିକ୍ ମନେହୁଏ । ଗ୍ରୀସ୍‌ରେ କିନ୍ତୁ ଜଣେ ନାରୀକୁ ପ୍ରେମ କରିବା କଥାଟି ଗୋଟାଏ ବଡ଼ ଅଖାଡ଼ୁଆ କଥା ରୂପେ ବିବେଚିତ ହେଉଥିଲ । ଏଥେନ୍‌ସରେ ବହୁ ନୂଆ କଥା ଆରମ୍ଭ କରିଥିବା ପେରକ୍ଲିଜ୍ ପ୍ରେମ କରି ନଗର-ବାସୀଙ୍କୁ ଗୋଟିଏ ଅମଡ଼ାବାଟ ଦେଖାଇ ଦେଲେ ।

ପେରକ୍ଲିଜ୍ ଓ ଆସ୍‌ପାସିଆ ଇତିହାସ ପ୍ରସିଦ୍ଧ ମହାନ୍ ପ୍ରେମିକ ପ୍ରେମିକା । ନାରୀକୁ ଘର କୋଣରେ ବନ୍ଦୀ କରି ରଖୁଥିବା ଏଥେନ୍‌ସୀୟମାନେ ସେମାନଙ୍କର ପ୍ରେମକୁ ଭଲ ଦୃଷ୍ଟିରେ ଦେଖୁ ନ ଥିଲେ ।

ଏଥେନ୍‌ସ ଆସି ଆସ୍‌ପାସିଆ ନାରୀଶିକ୍ଷା ସପକ୍ଷରେ ସାହସର ସହିତ ପ୍ରଚାର କଲେ । ସେତିକି ନୁହେଁ, ବାଗ୍ମିତା ଓ ଦର୍ଶନ ଶିକ୍ଷା ଦେବା ପାଇଁ ସେ ଗୋଟିଏ ସ୍କୁଲ ଖୋଲିଲେ । କେତେକ ସମ୍ଭ୍ରାନ୍ତ ପରିବାରର ଝିଅ ବୋହୂ ତାଙ୍କର ଛାତ୍ରୀ ହେଲେ । କେବଳ ନାରୀ ବା ସାଧାରଣ ଲୋକ ନୁହନ୍ତି; ସକ୍ରେଟିସ୍, ୟୁରିପିଡ଼ିଜ୍, ଆଲ୍‌ସିବିଏଡ଼ସ୍ ଓ ଫିଡ଼ିଆସ୍ ପରି ବଶିଷ୍ଟ ଏଥେନ୍‌ସୀୟମାନେ ଆସ୍‌ପାସିଆଙ୍କ କ୍ଲାସରେ ଯୋଗ ଦେବାକୁ ଆସୁଥିଲେ । ଆସ୍‌ପାସିଆଙ୍କ ଜ୍ଞାନ ଓ ପ୍ରତିଭାର ପରିଚୟ ଏଇଥିରୁ ମିଳେ । ସକ୍ରେଟିସ୍ କହିଛନ୍ତି ଯେ ଆସ୍‌ପାସିଆଙ୍କ ବାଗ୍ମିତା ଅସାଧାରଣ । ଏପରିକ ସେ ତାଙ୍କଠାରୁ ବାଗ୍ମିତା ଶିକ୍ଷା କରିଛନ୍ତି ବୋଲି ସକ୍ରେଟିସ୍ କହନ୍ତି ।

ପତ୍ନୀ ଯେ ସ୍ୱାମୀର ସହଧର୍ମିଣୀ ହୋଇପାରେ, ସେ କାଳର ଏଥେନ୍‌ସରେ କେହି ସେ କଥା କଳ୍ପନା କରୁ ନ ଥିଲେ । ତାଙ୍କର ପ୍ରେରଣାଦାୟୀଙ୍କୁ ଜୀବନର ସହକର୍ମିଣୀ ଓ ସହଧର୍ମିଣୀ ଭାବେ ଗ୍ରହଣ କରିବାର ବ୍ୟାକୁଳତା ଲକ୍ଷ୍ୟ କରି ପେରକ୍ଲିଜ୍ ସ୍ତ୍ରୀ ସ୍ୱେଚ୍ଛାରେ ତାଙ୍କୁ

ଗ୍ଲଡ଼ପନ୍ତ ଦେଇଥିଲେ । ଆସ୍‌ପାସିଆଙ୍କୁ ବିବାହ କରି ପେରିକ୍ଲିଜ୍ ଘରକୁ ଆଣିଲେ । କିନ୍ତୁ ଏ ବିବାହକୁ ଆଇନ୍ ସ୍ୱୀକାର କଲା ନାହିଁ । କାରଣ ଜଣେ ଏଥେନ୍‌ସୀୟର କୌଣସି ବିଦେଶୀ (ଏପରିକି ଆୟୋନୀୟ) ସହିତ ବିବାହ ନଗରର ଆଇନ୍ ଦ୍ୱାରା ନଥିଲା ।

ଆସ୍‌ପାସିଆ ଆସିଲା ପରେ ପେରିକ୍ଲିଜ୍‌ଙ୍କର ଘର କେବଳ ଏଥେନ୍‌ସର କାହିଁକି, କିଛି କାଳ ମଧ୍ୟରେ ସାରା ଗ୍ରୀସ୍‌ର ଜ୍ଞାନୀ, ପଣ୍ଡିତ, କବି, କଳାକାର, ଦାର୍ଶନିକ ଓ ରାଷ୍ଟ୍ରନୀତିଜ୍ଞଙ୍କର ଆଡ୍‌ଡ଼ାରେ ପରିଣତ ହେଲା । ଆସ୍‌ପାସିଆଙ୍କ ପ୍ରଭାବରେ ଏଥେନ୍‌ସର ନାରୀ ମହଲରେ ଶିକ୍ଷା ପ୍ରତି ଆଗ୍ରହ ଆଧୁନିକ ରୁଚି ପ୍ରବେଶ କରିବା ସ୍ୱାଭାବିକ୍ । ରକ୍ଷଣଶୀଳ-ମାନେ ଏ କଥା ସହ୍ୟ କରି ପାରିଲେ ନାହିଁ । ଆସ୍‌ପାସିଆଙ୍କ ନାମରେ ନାନା ଦୁର୍ନାମ ଉଠିଲା । ଏଥେନ୍‌ସରେ ବ୍ୟକ୍ତି ସ୍ୱାଧୀନତାର ସୁଯୋଗ ନାଟ୍ୟକାରମାନେ ନେଲେ । ଗଣତନ୍ତ୍ରରେ କଳା ସାହିତ୍ୟ ଉପରେ ଅଙ୍କୁଶ ରହନ୍ତା ନା କଣ ? ତଥାକଥିତ ହାସ୍ୟରସିକ ନାଟ୍ୟକାରମାନେ ପେରିକ୍ଲିଜ୍‌ଙ୍କୁ ଲକ୍ଷ୍ୟ କରି ସେମାନଙ୍କର ନାଟକରେ ଅରୁଚିକର ଦୃଶ୍ୟ ସବୁ ଖଞ୍ଜିଲେ । ପେରିକ୍ଲିଜ୍‌ଙ୍କ ରାଜନୈତିକ ଶତ୍ରୁମାନେ ତାଙ୍କୁ ହଟେଇବାର ଅନ୍ୟ କୌଣସି ଉପାୟ ନ ପାଇ ଦୁର୍ନାମ ରଟନାରେ ଲାଗିଗଲେ । ପ୍ରଚୁର ହେଲା, ଏଥେନ୍‌ସ ଆସିବା ପୂର୍ବରୁ ଆସ୍‌ପାସିଆ ଆୟୋନିଆରେ ଗୋଟିଏ ବେଶ୍ୟାଳୟ ଚଳାଉଥିଲେ । ଏଥେନ୍‌ସ ଆସି ମଧ୍ୟ ସେ ପୂର୍ବ ଅଭ୍ୟାସ ଛାଡ଼ି ନାହାନ୍ତି । ଭଲ ଘରର ଝିଅ ବୋହୂଙ୍କୁ ନେଇ ବଡ଼-ବଡ଼ଆଙ୍କ ପାଖରେ ଜୁଟାଇବା ତାଙ୍କର କାମ । ଏଥେନ୍‌ସ ପରି ସଂସ୍କୃତିସମ୍ପନ୍ନ ନଗରରେ କୁତ୍ସାରଟନା ପୁଣି ଏତେଦୂର ଯାଇପାରେ ! ସେ କାଳରୁ, ଖବରକାଗଜ ଜନ୍ମ ହେବା ପୂର୍ବରୁ ମଧ୍ୟ ଗଣତନ୍ତ୍ର ତାର ଏ ରୂପ ଦେଖାଇ ସାରିଛି ।

ଗ୍ରୀସ୍‌ର ଦେବଦେବୀଙ୍କୁ ଅମାନ୍ୟ କରନ୍ତି (ବେଶ୍ ଗୋଟିଏ ସୁବିଧାଜନକ ଅଭିଯୋଗ । ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ଏହି ଅଭିଯୋଗ ଆସିଥିଲା) ଅଭିଯୋଗରେ ଆସ୍‌ପାସିଆଙ୍କ ବିରୁଦ୍ଧରେ ନାଲିସ୍ କରାଗଲା । ପେରିକ୍ଲିଜ୍ ନିଜେ ପନ୍ଦର ଶହ ଜୁରି ସଭ୍ୟଙ୍କ ସମ୍ମୁଖରେ ଆସ୍‌ପାସିଆଙ୍କ ସପକ୍ଷରେ ଯୁକ୍ତି କଲେ । ସମସ୍ତ ଶକ୍ତି ଖଟେଇ ତାଙ୍କୁ ଲଢ଼ିବାକୁ ହୋଇଥିଲା । ତାଙ୍କର ସବୁ ବୁଦ୍ଧି, ଆଇନ୍ ଜ୍ଞାନ ଓ ବାଗ୍ମିତା

ପ୍ରୟୋଗ କରି ପେରିକ୍ଲିଜ୍ ଆସ୍ପାସିଆଙ୍କୁ ଖଲାସ କରିଥିଲେ । ବିଗ୍ରୁରାଳୟରେ କଥା କହୁ କହୁ ପେରିକ୍ଲିଜ୍ ଭାବାବେଗରେ ଭାଙ୍ଗି ପଡ଼ନ୍ତି । ଶେଷରେ ଆସ୍ପାସିଆ ଖଲାସ୍ ହୋଇଥିଲେ ସତ, ମାତ୍ର ସମୁଦାୟ ଘଟଣା ପେରିକ୍ଲିଜ୍‌ଙ୍କ ପକ୍ଷରେ ଏକ ଶକ୍ତ ଧକ୍କା ।

ମୂର୍ତ୍ତି ଗଢ଼ିବା ପାଇଁ ଥିବା ସୁନା ଫିଡ଼ିଆସ୍ ଆତ୍ମସାତ୍ କରିଛନ୍ତି ବୋଲି ତାଙ୍କ ବିରୁଦ୍ଧରେ ଅଭିଯୋଗ ଆସିଥିଲା । ଏ ମିଥ୍ୟା ଫିଡ଼ିଆସ୍‌ଙ୍କ ଉପରେ ଲଦି ଦେଇ ଗୋଟିଏ ଶକ୍ତିଶାଳୀ ଗୋଷ୍ଠୀ ପେରିକ୍ଲିଜ୍‌ଙ୍କୁ ଦୁର୍ବଳ କରିବାକୁ ଚକ୍ରାନ୍ତ କରିଥିଲେ ।

ବନ୍ଧୁ ଫିଡ଼ିଆସ୍‌ଙ୍କୁ ରକ୍ଷା କରିବାପାଇଁ ପେରିକ୍ଲିଜ୍‌ଙ୍କୁ କମ୍ ଦୁଃଖ ଭୋଗିବାକୁ ପଡ଼ି ନ ଥିଲା । ସେ ସୁନା ଖାଇଗଲେ ବୋଲି ତାଙ୍କୁ ଦୁର୍ନାମ କରାଗଲା । ପେରିକ୍ଲିଜ୍ ଫିଡ଼ିଆସ୍‌ଙ୍କୁ ଯଥା ସମୟରେ ଏଥେନ୍‌ସ ଛାଡ଼ି ପଳାଇବାରେ ସାହାଯ୍ୟ କରିଥିଲେ । ତାଙ୍କ ଅନୁପସ୍ଥିତିରେ ଫିଡ଼ିଆସ୍‌ଙ୍କର ବିଚାର ହୋଇଥିଲା । ସେତେବେଳେ ଫିଡ଼ିଆସ୍ ଯାଇ ଅଲିମ୍ପିଆରେ । ଫିଡ଼ିଆସ୍ ଖାଇଯାଇଛନ୍ତି ବୋଲି ଅଭିଯୋଗ ହୋଇଥିବା ସୁନାର ପରିମାଣ ଠାରୁ ଯଥେଷ୍ଟ ଅଧିକ ସୁନା ଏଥେନ୍‌ସକୁ ଦେଇ ଅଲିମ୍ପିଆ-ବାସୀ ତାଙ୍କୁ ମୁକ୍ତ କରିଥିଲେ ଓ ଜିଅସ୍‌ଙ୍କ ମନ୍ଦିର ନିର୍ମାଣ ଦାୟିତ୍ୱ ଫିଡ଼ିଆସ୍‌ଙ୍କୁ ଅର୍ପଣ କରିଥିଲେ ।

ପେରିକ୍ଲିଜ୍‌ଙ୍କର ଅନ୍ୟତମ ବନ୍ଧୁ ଓ ଗୁରୁ ଆନାକ୍ସଗୋରସ୍‌ଙ୍କୁ ମଧ୍ୟ ଚକ୍ରାନ୍ତକାରୀମାନେ ଛାଡ଼ି ନ ଥିଲେ । ସୂର୍ଯ୍ୟ ଗୋଟିଏ ଉତ୍ତପ୍ତ ପିଣ୍ଡ ଓ ଏହିପରି ଧର୍ମବିରୋଧୀ କଥା କହିବା ଅଭିଯୋଗରେ ଆନାକ୍ସଗୋରସ୍ ଦଣ୍ଡିତ ହୋଇଥାଆନ୍ତେ । ପେରିକ୍ଲିଜ୍ ତାଙ୍କୁ ଠିକ୍ ସମୟରେ ଏଥେନ୍‌ସ ବାହାରକୁ ପଠାଇ ଦେଇଥିଲେ ।

ଏଥେନ୍‌ସର ସ୍ୱର୍ଣ୍ଣଯୁଗ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଆରମ୍ଭରୁ ସେ କାଳର ଏଥେନ୍‌ସର କେତୋଟି କଳା ଦାଗ ପ୍ରତି ଦୃଷ୍ଟି ଆକର୍ଷଣ କରିବା ଆମର ଉଦ୍ଦେଶ୍ୟ ନୁହେଁ । ପେରିକ୍ଲିଜ୍‌ଙ୍କ ପ୍ରସଙ୍ଗରେ ଏହିପରି କେତୋଟି କଥା ଆସିଯାଇଛି । ଯେତେବଡ଼ କ୍ଷମତାରେ ଥାଆନ୍ତୁ ନା କାହିଁକି, ଜଣେ ଅସାଧାରଣ ବ୍ୟକ୍ତିଙ୍କର ଜୀବନକୁ ବୁଝି ନ ପାରି ସାଧାରଣ ଜନତା କୁତ୍ସା ସୃଷ୍ଟି କରେ । ପେରିକ୍ଲିଜ୍‌ଙ୍କ କ୍ଷେତ୍ରରେ ତାହା ଘଟିଥିଲା ।

କଳା, ସାହିତ୍ୟ ଓ ଦର୍ଶନ କ୍ଷେତ୍ରରେ ଏଥେନ୍ସ ମହାନ୍ ସାଫଲ୍ୟ ଲାଭ କରିଥିଲା । ସେ ସବୁ ବିଷୟରେ ଆଲୋଚନା ପୂର୍ବରୁ ଏଥେନ୍ସର ସମାଜ ଓ ଶାସନ ସମ୍ପର୍କରେ ଗୋଟିଏ ମୋଟାମୋଟି ଚିତ୍ର ପ୍ରଦାନ କରିବା ଆବଶ୍ୟକ ମଣୁଛୁ ।

## ଏଥେନ୍ସର ଗଣତନ୍ତ୍ର :

ପେରିକ୍ଲିଜଙ୍କ ସମୟରେ ଏଥେନ୍ସ ନଗରରାଷ୍ଟ୍ରର ଲୋକସଂଖ୍ୟା କେତେ ଥିଲା ତାହା ସଠିକ୍ ଭାବେ କହିବା ସମ୍ଭବ ନୁହେଁ । ତେବେ ଆଟିକା ଅର୍ଥାତ୍ ସମୁଦାୟ ନଗର-ରାଷ୍ଟ୍ରର ଲୋକସଂଖ୍ୟା ତିନିଲକ୍ଷ ପନ୍ଦର ହଜାର ଥିଲା ବୋଲି ଅନୁମାନ କରାଯାଏ । ଏମାନଙ୍କ ମଧ୍ୟରୁ ନାଗରିକଙ୍କ ସଂଖ୍ୟା ମାତ୍ର ତେୟାଳିଶ ହଜାର । ଏତିକ ଲୋକ ବିଶିଷ୍ଟ ନଗରଟିଏ ଇତିହାସରେ ଅତୁଳନୀୟ ସଂସ୍କୃତି ଗଢ଼ିଦେଲା ।

ଉଭୟ ପିତା ଓ ମାତା ନାଗରିକ ହୋଇଥିଲେ ଯାଇ ପୁତ୍ରକୁ ନାଗରିକ ଭାବେ ସ୍ୱୀକାର କରାଯାଏ । ଅବଶ୍ୟ ଏଥେନ୍ସର ନାରୀଙ୍କୁ ନାଗରିକ କହିବା ଠିକ ନୁହେଁ । କାରଣ ସେମାନଙ୍କର କୌଣସି ନାଗରିକ ଅଧିକାର ନ ଥିଲା । ଏକୋଇଶ ବର୍ଷ ବୟସରେ ପହଞ୍ଚିଲେ ଜଣେ ପୁରୁଷକୁ ନାଗରିକ ଅଧିକାର ମିଳୁଥିଲା । ନାଗରିକର କର୍ତ୍ତବ୍ୟ ଭୋଟ ଦେବାରେ ସୀମିତ ନ ଥିଲା । ନାଗରିକମାନେ ପ୍ରତ୍ୟକ୍ଷ ଭାବେ ନଗରର ପରିଚାଳନାରେ ଭାଗ ନେଉଥିଲେ । ପାଳି ଅନୁସାରେ ବା ଲଟେରୀ ଦ୍ୱାରା ନିର୍ବାଚିତ ହୋଇ ଜଣେ ନାଗରିକ ଶାସନ ଓ ବିଚାର ବିଭାଗର ବିଭିନ୍ନ ପଦରେ ନିଯୁକ୍ତ ହେଉଥିଲା ।

ଏଥେନ୍ସରେ ବିଧିବଦ୍ଧ ରାଜନୈତିକ ଦଳ ନ ଥିଲା । ତେବେ ଭୋଟରମାନେ ଦୁଇଟି ବିରୋଧୀ ଦଳରେ ବିଭକ୍ତ ଥିଲେ । ଗୋଟିଏ ହେଉଛି ଗଣତାନ୍ତ୍ରିକ ଗୋଷ୍ଠୀ ଓ ଅନ୍ୟଟି ଧନତାନ୍ତ୍ରିକ ଗୋଷ୍ଠୀ ( Oligarchic ) । ଗଣତାନ୍ତ୍ରିକ ଗୋଷ୍ଠୀଟି ଗରିବଙ୍କର । ଧନୀମାନଙ୍କର ପ୍ରାଧାନ୍ୟ ଦୂର କରି ଗରିବଙ୍କୁ ଅଧିକ କ୍ଷମତା ଦେବାକୁ ଏ ଗୋଷ୍ଠୀ ଚାହୁଁଥିଲା । ଧନତାନ୍ତ୍ରିକ ଗୋଷ୍ଠୀର ଆଭିମୁଖ୍ୟ ଥିଲା ଠିକ୍ ବିପରୀତ । ଏମାନେ ରାଜନୈତିକ ଦଳ ଗଠନ କରି ନ ଥିଲେ । ତେବେ ଖ୍ରୀ. ପୂ ୫ମ ଶତାବ୍ଦୀର ଗ୍ରୀସ୍‌ରେ ଅନେକ ପ୍ରକାରର ସଂଘ ଥିଲା । ଏକା ବୃତ୍ତିର ଲୋକମାନେ ଗୋଟିଏ ଗୋଟିଏ ସଂଘ

ବାଧ୍ୟବାଧ ରାଜନୈତିକ ଦଳ ନ ଥିଲେ ମଧ୍ୟ ଲୋକମାନେ ଦୁଇଟି ଗୋଷ୍ଠୀରେ ବିଭକ୍ତ ଥିଲେ । କେବଳ ରାଜନୀତି କ୍ଷେତ୍ରରେ ନୁହେଁ, ବିଭିନ୍ନ କ୍ଷେତ୍ରରେ ସମାନ ରୁଚିର ଲୋକେ ନିଜ ନିଜର ସଂଘ ଗଢ଼ୁଥିଲେ ।

ଗଢ଼ୁଥିଲେ । ଶ୍ରମିକଙ୍କର ସଂଘ, ଅଭିନେତା ସଂଘ, ଭଲ ଖାନାପିନା ସଂଘମାନ ଥିଲା । ଏପରି ସଂଘକୁ କ୍ଲବ କହିବା ଯଥାର୍ଥ । ଧର୍ମ ଓ ରାଜନୈତିକ ବିଶ୍ୱାସ ଭିତ୍ତିରେ ସଂଘସବୁ ଥିଲା । ତେବେ ଧନୀକ ସଂଘଗୁଡ଼ିକ ଥିଲା ସବୁଠାରୁ ସଙ୍ଗଠିତ ଓ ଏକତାବଦ୍ଧ । ଏହି ସଂଘର ସଭ୍ୟମାନେ ପରସ୍ପରକୁ ସାହାଯ୍ୟ କରିବା ପାଇଁ ସଙ୍କଳ୍ପ କରୁଥିଲେ । ସେମାନଙ୍କର ସମ୍ପତ୍ତି ଓ ଶକ୍ତି ଉପରେ ଆଞ୍ଚ ଆସିଲା ପରି କିଛି ଘଟିଲେ ସମସ୍ତେ ଏକାଠି ଲଢ଼ୁଥିଲେ । ଗଣତାନ୍ତ୍ରିକ ସଂଘଗୁଡ଼ିକ ଅପେକ୍ଷାକୃତ ଦୁର୍ବଳ ହେଲେ ମଧ୍ୟ ସେମାନଙ୍କ ସାହାଯ୍ୟରେ କେତେକ ଗରିବ ବ୍ୟକ୍ତିଙ୍କ ହାତକୁ ଏଥେନ୍ସର ନେତୃତ୍ୱ ଆସିଥିଲା । ଏହି ପ୍ରସଙ୍ଗରେ କ୍ଲିଅନ୍ ( ଜଣେ ମୋଚି ), ଲାଇସିକ୍ଲିଜ୍ ( ଜଣେ ମେଣ୍ଢା ବେପାରୀ ), ୟୁକ୍ରେଟିଜ୍, କ୍ଲିଓଫୋନ୍ ( ବୀଣା ନିର୍ମାତା ) ଓ ହାଇପର୍‌ବୋଲସ୍ ( ଲଣ୍ଠନ କାରିଗର ) ଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଗଣତନ୍ତ୍ରବାଦୀ, ଧନୀକତନ୍ତ୍ରବାଦୀ ଓ ଅଭିଜାତଙ୍କ ମଧ୍ୟରେ ଗୋଟିଏ ବୁଝାମଣା ଆଣି ପେରିକ୍ଲିଜ୍ ଏଥେନ୍ସକୁ କିଛିକାଳ ଶାନ୍ତ କରିଥିଲେ । କିନ୍ତୁ ତାଙ୍କ ଅନ୍ତେ ଏଥେନ୍ସରେ ଗୋଷ୍ଠୀ ବିବାଦ ପୁଣି ମୁଣ୍ଡ ଟେକିଲା । କେବଳ ଏଥେନ୍ସ ନୁହେଁ; ଗ୍ରୀସ୍‌ର ପ୍ରତ୍ୟେକ ନଗରକୁ ଶ୍ରେଣୀ ସଂଘର୍ଷର ଫଳ ଭୋଗିବାକୁ ହେଉଥିଲା । କୁହାଯାଏ, ନଗର ନଗର ମଧ୍ୟରେ ଲାଗି ରହିଥିବା ଯୁଦ୍ଧ ଓ କଳହ ଗ୍ରୀସ୍‌ର କାଳ । ମାତ୍ର ଗୋଟିଏ ନଗରରେ ଘଟୁଥିବା ଅନ୍ତର୍ବିବାଦ ଥିଲା ଆହୁରି ସାଂଘାତିକ । ଶ୍ରେଣୀ ସଂଘର୍ଷହିଁ ଗ୍ରୀସ୍‌ର କାଳ ହୋଇଥିଲା ।

ଏଥେନ୍ସ ନଗରବସ୍ତିଟି ପାହାଡ଼ିଆ । ଏହାର ଜମି ଅନୁର୍ବର । ତେଣୁ ଲୋକେ କୃଷିକାର୍ଯ୍ୟ ଅପେକ୍ଷା ବାଣିଜ୍ୟ ଉପରେ ଅଧିକ ନିର୍ଭର କରୁଥିଲେ । ସମୁଦ୍ରକୂଳ ବସ୍ତିରେ ଅନେକଗୁଡ଼ିଏ ସହର ଥିଲା । ପାହାଡ଼ିଆ ବସ୍ତିରେ ଯାତାୟାତର ସୁବିଧା ନ ଥିବାରୁ ଆସେମ୍ବ୍ଲି ବୈଠକରେ ସଭ୍ୟ ସଂଖ୍ୟା ଦୁଇ ତିନ ହଜାର ମଧ୍ୟରେ ସୀମାବଦ୍ଧ ରହୁଥିଲେ । ମୁଖ୍ୟତଃ ଏଥେନ୍ସ ଓ ପିରିଅସ୍‌ର ନାଗରିକମାନେ ଆସେମ୍ବ୍ଲିରେ ଯୋଗ ଦେଉଥିଲେ । ଆସେମ୍ବି

ମାସକୁ ଦୁଇଥର ବସେ । ପ୍ରଥମ ବୈଠକରେ ନୂଆ ବ୍ୟବସ୍ଥା ପ୍ରଣୟନର ପ୍ରସ୍ତାବ ଦିଆଯାଏ । ପରେ ଏହି ପ୍ରସ୍ତାବ ଅଧିକ ଭୋଟରେ ଗୃହୀତ ବା ପ୍ରତ୍ୟାଖ୍ୟାତ ହୁଏ । କିନ୍ତୁ ଗୋଟିଏ ବିଲ୍ ଗୃହୀତ ହୋଇଯିବା ଫଳରେ ଯଦି ଭବିଷ୍ୟତରେ ନଗରକୁ କୌଣସି ପ୍ରକାର ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େ, ତେବେ ବିଲ୍ ଆଣିଥିବା ପ୍ରସ୍ତାବକାରୀଙ୍କୁ ଦଣ୍ଡ ମିଳେ । ଦାୟିତ୍ୱ-ହୀନ ଭାବେ ବିଲ୍ ଆଣିବାକୁ ରୋକିବା ଏହି ନିୟମର ଉଦ୍ଦେଶ୍ୟ । ଆସେମ୍ବ୍ଲିରେ କୌଣସି ବିଲ୍‌ର ବିଷୟର ଆଲୋଚନା ହେବା ପୂର୍ବରୁ ତାକୁ ପ୍ରଥମେ କାଉନ୍‌ସିଲ୍‌କୁ ପଠାଯାଏ । କାଉନ୍‌ସିଲ୍‌ରେ ବିଲ୍‌ଟିର ବିଭିନ୍ନ ଦିଗ ପରୀକ୍ଷା କରାଯାଏ । ଏହା ଛଡ଼ା ବିଲ୍‌ଟି ସମ୍ବିଧାନ ବିରୋଧୀ ନୁହେଁ ବୋଲି ବିଚାରାଳୟ ମତ ନ ଦେବା ପର୍ଯ୍ୟନ୍ତ ତାହା ଆସେମ୍ବ୍ଲିରେ ପେଶ୍ କରାଯାଏ ନାହିଁ ।

ଆସେମ୍ବ୍ଲିର ଆଲୋଚନାରେ ଭାଗ ନେବାକୁ ଇଚ୍ଛୁକ ସଭ୍ୟମାନେ ସେମାନଙ୍କ ବୟସ ଅନୁକ୍ରମରେ କହନ୍ତି । ଅବଶ୍ୟ ଦକ୍ଷ ବକ୍ତାଙ୍କ ବ୍ୟତୀତ ଅନ୍ୟମାନେ ମୁହଁ ଖୋଲିବାକୁ ସାହସ କରନ୍ତି ନାହିଁ । କାରଣ ଦୁଇ ତିନି ହଜାର ଲୋକଙ୍କ ସମ୍ମୁଖରେ କିଛି କହିବା ମୁସ୍କିଲ୍ ବ୍ୟାପାର । ସେଠି ସାମାନ୍ୟ ଉଚ୍ଚାରଣ ଭୁଲ୍‌ରେ ହସର ଜୁଆର ଛୁଟେ । ବିଷୟ-ବସ୍ତୁର ଟିକିଏ ଏକଡ଼ ସେକଡ଼ରେ ହୋ ହଲ୍ଲା । ଅଥଚ ଯଦି ବାଗ୍ମିତା ଶକ୍ତି ଅଛି ତେବେ ଜଣେ ସେମାନଙ୍କୁ ଟିଙ୍କଶାଳ ପ୍ରସଙ୍ଗ କହିବାକୁ ଯାଇ ଢେଙ୍କାନାଳରେ ପହଞ୍ଚାଇ ପାରେ । ଆସେମ୍ବ୍ଲି ଓ କୋର୍ଟକଚେରୀରେ ସଫଳତାର ସହିତ ପ୍ରବର୍ତ୍ତାଇ ପାରିବାର କଳା ଶିଖିବା ପାଇଁ ଏଥେନ୍‌ସୀୟ ଯୁବକଙ୍କ ମଧ୍ୟରେ ପ୍ରବଳ ଆଗ୍ରହ ସୃଷ୍ଟି ହେବା ସ୍ୱାଭାବିକ୍ । ସୋଫିଷ୍ଟସ୍ ଏହାର ସୁଯୋଗ ନେଲେ ।

ଆସେମ୍ବ୍ଲିରେ ପ୍ରତ୍ୟେକ ବକ୍ତାଙ୍କୁ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ବକ୍ତବ୍ୟ ଶେଷ କରିବାକୁ ପଡ଼ୁଥିଲା । ସମୟ ମାପିବା ପାଇଁ ସେତେବେଳେ ଜଳଘଡ଼ି ବ୍ୟବହୃତ ହେଉଥିଲା । ଆସେମ୍ବ୍ଲି ଉପରକୁ କାଉନ୍‌ସିଲ୍ । ଏହାର ସଭ୍ୟସଂଖ୍ୟା ପାଞ୍ଚ ଶହ । ଆଟିକାର ଦଶୋଟି ଉପଜାତିରୁ ପଚାଶ କରି ପାଞ୍ଚ ଶହ ସଭ୍ୟ ବର୍ଷକ ପାଇଁ ଲଟେରୀ ଦ୍ୱାରା ନିର୍ବାଚିତ ହୁଅନ୍ତି । କାଉନ୍‌ସିଲର୍‌ମାନେ ବୈଠକ ସମୟରେ ଦୈନିକ ଭତ୍ତା ପାଆନ୍ତି । ଆସେମ୍ବ୍ଲିର ବିଲ୍ ପରୀକ୍ଷା କରିବା ବ୍ୟତୀତ ଶାସନ ଦାୟିତ୍ୱରେ ଥିବା କର୍ମଚାରୀ ଓ ଧର୍ମାନୁଷ୍ଠାନ ସହିତ ଜଡ଼ିତ ବ୍ୟକ୍ତିଙ୍କର କାର୍ଯ୍ୟ କଳାପ ପ୍ରତି ସତର୍କ ଦୃଷ୍ଟି ରଖିବା କାଉନ୍‌ସିଲ୍‌ର କର୍ତ୍ତବ୍ୟ ।

## ନାଗରିକ, ବିଦେଶୀ ଓ ଦାସ :

କାମ କରିବା ଇତର ଜନୋଚିତ ବୋଲି ଗ୍ରୀକ୍‌ମାନଙ୍କର ବଦ୍ଧମୂଳ ଧାରଣା ଥିଲା । ଜ୍ଞାନୀ ଓ ବୁଦ୍ଧିମାନ୍ ବ୍ୟକ୍ତିମାନେ ଏହି କଥା ଆନ୍ତରିକ ଭାବେ ବିଶ୍ୱାସ କରୁଥିଲେ । ଶରୀରକୁ ସୁସ୍ଥସବଳ କରି ଗଢ଼ିବା ପାଇଁ ଯୁବକମାନେ ଖେଳ କସରତରେ ଯଥେଷ୍ଟ ସମୟ ଦେଉ-ଥିଲେ । କିନ୍ତୁ ଦୈହିକ ଶ୍ରମ କରି ପେଟ ପୋଷିବା ଚିନ୍ତା ସେମାନଙ୍କର ଅସହ୍ୟ ଥିଲା ।

ଗ୍ରୀକ୍‌ମାନେ ଯେପରି ଶ୍ରମ କରିବାକୁ ପ୍ରସ୍ତୁତ ନ ଥିଲେ, ସେହିପରି ଧନ ଅର୍ଜନ କରିବା ପାଇଁ ସେମାନଙ୍କର ଲାଳସା ନ ଥିଲା । ଏଥେନ୍‌ସର ଦୋକାନୀ, ବେପାରୀ, କାରିଗର ଓ ଋଣଦାତାମାନେ ଥିଲେ ବିଦେଶୀ (metics) । ଏମାନଙ୍କର ଶ୍ରେଷ୍ଠ ଅଧିକାର ନ ଥିଲା । ଏପରିକି ପେଷାଦାର ସଙ୍ଗୀତଜ୍ଞ, ଭାସ୍କର୍ଯ୍ୟ ଓ କଳାକାରମାନେ ବିଦେଶୀ ଶ୍ରେଣୀର ଅନ୍ତର୍ଭୁକ୍ତ ଥିଲେ । ନାଗରିକର କୌଣସି ନିର୍ଦ୍ଦିଷ୍ଟ ବୃତ୍ତି ନ ଥିଲା । ଏଇ କଥାଟି ଆମକୁ ଆଶ୍ଚର୍ଯ୍ୟ କରେ । ଗ୍ରୀକ୍ ବିଚାରୁଥିଲା ଯେ ସ୍ୱାଧୀନ ନାଗରିକ ଅର୍ଥ ଚିନ୍ତାରୁ ମଧ୍ୟ ମୁକ୍ତ ରହିବା ଉଚିତ୍ । ସେଥିପାଇଁ ବେପାର, ବାଣିଜ୍ୟ, କାରିଗରୀ କାମ ପ୍ରଭୃତି ବିଦେଶୀଙ୍କୁ ଛାଡ଼ି-ଦିଆଯାଉଥିଲା । ତେବେ ଦାସ ଓ ବିଦେଶୀଙ୍କୁ ନିଯୁକ୍ତ କରି ଜଣେ ନାଗରିକ ବ୍ୟବସାୟ କରିବା ଦୋଷାବହ ନ ଥିଲା । କର୍ମ ଜଞ୍ଜାଳରୁ ମୁକ୍ତ ରହିଲେ ଯାଇ ଜଣେ ତାର ନାଗରିକ ଦାୟିତ୍ୱକୁ ଆନ୍ତରିକ ଭାବେ ତୁଲାଇ ପାରିବ । ଅବସର ବ୍ୟତୀତ କଳା, ସାହିତ୍ୟ ଓ ଦର୍ଶନ ପ୍ରତି ଆଗ୍ରହ ଅଙ୍କୁରିତ ହୁଏ ନାହିଁ । ଏହା ଥିଲା ଗ୍ରୀକ୍‌ର ଦୃଢ଼ ବିଶ୍ୱାସ ।

ବିଦେଶୀର ନାଗରିକ ଅଧିକାର ନ ଥିଲା । କିନ୍ତୁ ଧନ ଉପାର୍ଜନର ଯଥେଷ୍ଟ ସୁଯୋଗ ତା ପାଇଁ ଥିଲା । ତାର ସ୍ୱାଧୀନ ଜୀବନ ଯାହା ଉପରେ କୌଣସି କଟକଣା ନ ଥିଲା ।

ନାଗରିକର ଘରକାମ, ଜମିବାଡ଼ି କାମ ଦାସଙ୍କ ଉପରେ ନ୍ୟସ୍ତ ଥିଲା । ନଗରର ବ୍ୟବସାୟ ଓ ଶିଳ୍ପ ଉତ୍ପାଦନ ବିଷୟ ମୁଖ୍ୟତଃ ବିଦେଶୀମାନେ ବୁଝୁଥିଲେ । କିନ୍ତୁ କେବଳ ନାଗରିକ ହିଁ ଜମିର ମାଲିକ ଥିଲା । କୌଣସି ବିଦେଶୀ ଜମିର ମାଲିକ ହେବା ଅସମ୍ଭବ । ତାର ମଧ୍ୟ ନାଗରିକ ଅଧିକାର ନ ଥିଲା । ନାଗରିକ ପରିବାରରେ ବିବାହ ଏବଂ ଧର୍ମାନୁଷ୍ଠାନ ସହିତ ସମ୍ପୃକ୍ତ ହେବା ବିଦେଶୀଙ୍କୁ ମନା । ତଥାପି ଅର୍ଥ ଉପାର୍ଜନର ସୁଯୋଗ ଲାଭ କରି ଏଥେନ୍‌ସର ମୁକ୍ତ ବାତାବରଣରେ ଜୀବନ ଯାପନ କରିବା ଲୋଭରେ ଅନେକ ବିଦେଶୀ ଏଥେନ୍‌ସ ଆସୁଥିଲେ ଓ ସେଠାରେ

ସ୍ଥାୟୀ ବାସିନ୍ଦା ରୂପେ ବାସ କରୁଥିଲେ । ବିଦେଶୀଙ୍କର ସ୍ୱାର୍ଥ ଜାଣିବା ପାଇଁ ଅନେକ ଆଇନ୍ ଥିଲା । ନାଗରିକଙ୍କ ପରି ସେମାନେ କର ଦେଉଥିଲେ । ପ୍ରେତିକ ନୁହେଁ, ସେମାନେ ଏଥେନ୍ସକୁ ମାତୃଭୂମି ପରି ଭଲ ପାଉଥିଲେ ଓ ଯୁଦ୍ଧ ବେଳେ ନାଗରିକଙ୍କ ସହିତ ମିଶି ମନ ପ୍ରାଣ ଦେଇ ଲଢ଼ୁଥିଲେ । ବିଦେଶୀଙ୍କ ପାଇଁ ବାଣିଜ୍ୟ କ୍ଷେତ୍ରରେ ଏଥେନ୍ସର ଆଧିପତ୍ୟ ଅନେକ କାଳ ଅତୁଟ ରହିଥିଲା । ଏକ ସାମ୍ରାଜ୍ୟ ପ୍ରତିଷ୍ଠା ପାଇଁ ଅର୍ଥନୈତିକ ଭିତ୍ତି ଗଢ଼ିଦେବା ସେମାନଙ୍କର କୃତିତ୍ୱ ।

ବ୍ୟବସାୟ ବାଣିଜ୍ୟରେ ପଶୁ ନ ଥିଲେ ମଧ୍ୟ ନାଗରିକଙ୍କ ମଧ୍ୟରେ ବଡ଼ ଧନୀ ଥିଲେ । ସେମାନେ ହେଉଛନ୍ତି ଜମିଦାର । ଆହୁରି ମଧ୍ୟ କେବଳ ନାଗରିକଙ୍କୁ ଖଣିପଟ୍ଟା ମିଳୁଥିଲା । ଏଥେନ୍ସର ଖଣିଜ ସମ୍ପଦ ପ୍ରଚୁର । ଲୁହା, ଜିଂକ୍, ରୂପା ଓ ସୀସା ଯଥେଷ୍ଟ ପରିମାଣରେ ଏଥେନ୍ସରେ ଥିଲା । ବିଶେଷତଃ ଦକ୍ଷିଣାଞ୍ଚଳର ରୂପାଖଣିରୁ ଏଥେନ୍ସ ପ୍ରଚୁର ଧନ ପାଉଥିଲା । ଲଉରିୟମ୍‌ଠାରେ ଥିବା ରୂପାଖଣିରେ ଦାସ ଓ ବିଦେଶୀଙ୍କୁ ମିଶାଇ କୋଡ଼ିଏ ହଜାର ଲୋକ କାମ କରୁଥିଲେ । କିନ୍ତୁ ଖଣିପଟ୍ଟା ପାଇବା ପାଇଁ କେବଳ ନାଗରିକମାନେ ଥିଲେ ହକ୍‌ଦାର୍ । ଖ୍ରୀ. ପୂ ୪୮୩ରେ ସରକାର ଖଣିରୁ ଯେତେ ଆୟ କରିଥିଲେ ତହିଁରୁ ନିର୍ମିତ ହୋଇଥିବା ଯୁଦ୍ଧ ଜାହାଜଗୁଡ଼ିକ ଏଥେନ୍ସରୁ ସାଲମିସ୍ ଯୁଦ୍ଧରେ ରକ୍ଷା କରିଥିଲା ।

ଦରିଦ୍ର ନାଗରିକଙ୍କ ବ୍ୟତୀତ ପ୍ରତ୍ୟେକ ନାଗରିକ ଥିଲା ଦାସର ମାଲିକ । ବିଶେଷତଃ ଏଥେନ୍ସ ପରି ସହରବାସୀ ନାଗରିକ ବିନା ଦାସରେ ଚଳି ପାରୁ ନ ଥିଲା । ଗ୍ରାମାଞ୍ଚଳର ଦରିଦ୍ର ନାଗରିକ ନିଜ କ୍ଷେତରେ ଖଟିବାକୁ ବାଧ୍ୟ ହେଉଥିଲା । ମୁକ୍ତ ଦାସମାନେ ତା କ୍ଷେତରେ ମୂଲ ଲାଗୁଥିଲେ । ଏଇ ମୁକ୍ତ ଦାସ କିଏ ? ଦାସର କାମରେ ସନ୍ତୁଷ୍ଟ ହୋଇ କେତେକ କ୍ଷେତ୍ରରେ ମାଲିକ ଦାସକୁ ମୁକ୍ତି ଦେଉଥିଲା । ଏପରି ଦାସକୁ ମୁକ୍ତ ଦାସ କୁହାଯାଏ । ମୁକ୍ତ ଦାସ ନିଜ ଶ୍ରମରେ ସ୍ୱାଧୀନ ଭାବେ ଚଳେ । ସେମାନଙ୍କ ମଧ୍ୟରୁ ଅନେକ ଶିଳ୍ପ, ବାଣିଜ୍ୟ, ଏପରିକି ମହାଜନୀ କାରବାରରେ ପଶୁଥିଲେ । ଅନେକ ସମୟରେ ଦାସ ନିଜର ଦୀର୍ଘକାଳର ସଞ୍ଚିତ ଅର୍ଥ ମାଲିକକୁ ଦେଇ ନିଜକୁ ମୁକୁଳାଉଥିଲା ।

ମୁକ୍ତ ଦାସଙ୍କ ମଧ୍ୟରୁ ଜଣେ ଜଣେ ବଡ଼ ଧନୀ ହୋଇପାରୁଥିଲେ । ଡେମୋସ୍ଥିନିଜ୍‌ଙ୍କ ଅସ୍ତ୍ରନିର୍ମାଣ କାରଖାନାର ପରିଚାଳକ ମାଇଲିଆସ୍ ଜଣେ ମୁକ୍ତ ଦାସ । ଦୁଇଜଣ ମୁକ୍ତ ଦାସ

ପାସିଆନ୍ ଓ ଫୋର୍ମିଓ ହେଉଛନ୍ତି ଏଥେନ୍ସର ସବୁଠାରୁ ଧନୀ ମହାଜନ । ଦାସ ସର୍ଦ୍ଦାର ଭାବେ ନିଯୁକ୍ତ କ୍ଷେତ୍ରରେ ମୁକ୍ତ ଦାସଙ୍କ ଗୁରୁତ୍ୱ ଥିଲା ସମସ୍ତଙ୍କ ଠାରୁ ଅଧିକ । କାରଣ ଦାସମାନେ କପଟ ଠକନ୍ତି ଓ କପଟ ଦଣ୍ଡ ପାଇଲେ ସାବାଡ଼୍ ହୁଅନ୍ତି ନିଜ ଅଭିଜ୍ଞତାରୁ ମୁକ୍ତ ଦାସ ତାହା ଭଲ ଭାବେ ଜାଣିଥାଏ ।

ନାଗରିକ, ବିଦେଶୀ ଓ ମୁକ୍ତଦାସ—ଏହି ତିନି ଶ୍ରେଣୀର ଲୋକଙ୍କ ବ୍ୟତୀତ ସମଗ୍ର ଆଟିକାରେ ଲକ୍ଷେ ପନ୍ଦର ହଜାର ଦାସ ଥିଲେ । ମୁଖ୍ୟତଃ ଯୁଦ୍ଧବନ୍ଦୀ, ପରାଜିତ ରାଜ୍ୟର ବାସିନ୍ଦା ଅନାଥ ଶିଶୁ ଓ ଅପରାଧୀଙ୍କୁ ନେଇ ଦାସ ଶ୍ରେଣୀଟି ଗଠିତ । ଦାସମାନଙ୍କ ମଧ୍ୟରେ ଗ୍ରୀକ୍ଙ୍କ ସଂଖ୍ୟା ନଗଣ୍ୟ । ଦାସ ବେପାରୀମାନେ ଗ୍ରୀସ୍‌ର ବିଭିନ୍ନ ନଗରରେ ଦାସ ବିକ୍ରୀ କରୁଥିଲେ । କେତେକ ନାଗରିକ ଦାସଙ୍କୁ କିଣି ଭଡ଼ା ଲଗାଉଥିଲେ । ଭଡ଼ା ଲାଗୁଥିବା ଦାସମାନେ କଳ କାରଖାନା, ଖଣିକାମ ବା ଘରୋଇ କାମରେ ନିଯୁକ୍ତ ହେଉଥିଲେ । ମାଲିକର ମୁନାଫା ଦୃଷ୍ଟିରୁ ବ୍ୟବସାୟଟି ମନ୍ଦ ନୁହେଁ । ଗ୍ରାମାଞ୍ଚଳରେ ଦାସଙ୍କ ସଂଖ୍ୟା କମ୍ । ଘର କାମରେ ଲଗାଇବାକୁ ଜଣେ ଗ୍ରାମବାସୀ ସାଧାରଣତଃ ନାରୀ ଦାସୀଙ୍କୁ ରଖୁଥିଲା । ଖଟଣୀ କାମ ବ୍ୟତୀତ କେତେକ କ୍ଷେତ୍ରରେ ଦାସମାନେ ମାଲିକର ବ୍ୟବସାୟ ବୁଝୁଥିଲେ ଓ ଗୁମାସ୍ତା କାମ କରୁଥିଲେ ।

ମାଲିକ ଅସନ୍ତୁଷ୍ଟ ହେଲେ ଦାସକୁ ପିଟୁଥିଲା । ବଦ୍‌ମାସି କଲେ ମାଡ଼ । ମାଡ଼ ଖାଇଲା ବେଳେ ଦାସ କୌଣସି ପ୍ରତିରୋଧ କରୁ ନ ଥିଲା । ତେବେ ମାଡ଼ ଅସହ୍ୟ ହେଲେ ସେ ଦୌଡ଼ି ପଳାଇ ମନ୍ଦିରରେ ଆଶ୍ରୟ ନେଇପାରେ । ଏପରି ଘଟିଲେ ମାଲିକ ତାକୁ ବିକି ଦେବାକୁ ବାଧ୍ୟ । ଦାସ ବୁଢ଼ା ହୋଇଗଲେ ମାଲିକ ତା'ର ଯତ୍ନ ନେଉଥିଲା । ଏଥେନ୍ସରେ ପ୍ରଭୁଭକ୍ତ ଦାସମାନେ ପରିବାର ଭିତରେ ଘର ମଣିଷ ପରି ରହୁଥିଲେ । ଐତିହାସିକମାନେ କହନ୍ତି, ଏଥେନ୍ସରେ ଦାସଙ୍କ ଦୁଃଖକଷ୍ଟ, ଅନେକ ସଭ୍ୟ ଦେଶର ଗରିବ, ଶ୍ରମଜୀବୀଙ୍କ ଦୁଃଖକଷ୍ଟ ଠାରୁ କମ୍ ।

ଦାସ ଗ୍ରୀକ୍ ଜୀବନର ଅଙ୍ଗ । ଦାସ ହୁଅନ୍ତୁ ବା ନ ହୁଅନ୍ତୁ ପ୍ରାଚୀନ କାଳର ସବୁ ଦେଶ ଗରିବ ଗୁରୁବାଙ୍କର କଠିନ ଶ୍ରମ ଉପରେ ନିର୍ଭର କରୁଥିଲା । କଳ କାରଖାନା ହେବା ପରେ କେବଳ ହାଡ଼ଭଙ୍ଗା ପରିଶ୍ରମରୁ ମଣିଷ ରକ୍ଷା ପାଇଛି । ଆରିଷ୍ଟୋଟଲ୍ ସେ କାଳରୁ

କହୁଥିଲେ, ଗ୍ରୀକର ମୂଲିଆଙ୍କ କାମ ସ୍ୱୟଂଚାଳିତ ମେସିନ୍ ନ କରିବା ପର୍ଯ୍ୟନ୍ତ ଦାସତ୍ୱପ୍ରଥା କୌଣସି ନା କୌଣସି ଆକାରରେ ରହିଥିବ । ଦାସତ୍ୱ ପ୍ରଥା ଉଠେଇ ଦେବା ବିଷୟ ଏଥେନ୍‌ସବାସୀ କଳ୍ପନା କରି ପାରୁ ନଥିଲେ । ଜଣେ ଗ୍ରୀକ୍ ଆଉ ଜଣେ ଗ୍ରୀକ୍‌ର ଦାସ ହେବା କଥାକୁ ପ୍ଲେଟୋ ନିନ୍ଦା କରନ୍ତି । ଗ୍ରୀସ୍‌ର ସିନିକ୍ ଦାର୍ଶନିକମାନେ ଦାସତ୍ୱପ୍ରଥାର ଘୋର ବିରୋଧୀ । ଯୁଦ୍ଧବନ୍ଦୀ ଦାସଙ୍କର କରୁଣ ଚିତ୍ର ପ୍ରଦାନ କରି ୟୁରିପିଡ଼ୀଜ୍ ନଗରବାସୀଙ୍କ ମନରେ ଦୟା ଉଦ୍ରେକ କରିବାର ଉଦ୍ୟମ କରିଥିଲେ । ଖ୍ରୀ ପୂ ୪ର୍ଥ ଶତାବ୍ଦୀର ସଫିଷ୍ଟ ଆଲ୍‌ସି-ଡାମାସ୍ ଖୁବ୍ ସାହାସର ସହିତ ବୁଲି ବୁଲି ପ୍ରଚାର କରୁଥିଲେ, "ଈଶ୍ୱର ସବୁ ମଣିଷଙ୍କୁ ସ୍ୱାଧୀନ କରି ସଂସାରକୁ ପଠାଇଛନ୍ତି । ପ୍ରକୃତି କାହାକୁ ଦାସ ରୂପେ ଜନ୍ମ ଦେଇନି ।" ଏ କଥା ପଦକ ଭିତରୁ ରୁଷୋଙ୍କର ସ୍ୱର ଶୁଭିଯାଏ ।

ସିନିକ୍ ଓ କେତେକ ସଫିଷ୍ଟ ଦାସତ୍ୱ ପ୍ରଥାର ବିରୋଧୀ ଥିଲେ । ପରେ ଷ୍ଟୋଇକ୍‌ମାନେ ଦାସତ୍ୱ ପ୍ରଥାକୁ ଜଗିରହି ନିନ୍ଦା କରିଥିଲେ ।

## ନାରୀ :

ଗ୍ରୀକ୍ ସଂସ୍କୃତିକୁ ଗଢ଼ିବାରେ ନାରୀର ଉଲ୍ଲେଖଯୋଗ୍ୟ ଅବଦାନ ନାହିଁ । ଏପରିକି ପୁରୁଷର ପ୍ରେରଣାଦାତ୍ରୀ ଭାବେ ନାରୀ ଗ୍ରୀକ୍ ସଂସ୍କୃତିର ପ୍ରଚ୍ଛଦ ଗାୟିକା ମଧ୍ୟ ନୁହେଁ । ଏହା ଏକ ବିସ୍ମୟ । ବୀରତ୍ୱର ଯୁଗରେ ନାରୀର ରୂପ କିଛିଟା ଉଜ୍ଜ୍ୱଳମୟ । ନିରଙ୍କୁଶ ଶାସକଙ୍କ ଯୁଗରେ ସେମାନଙ୍କର କିଛି ପ୍ରଭାବ ଥିଲା ବୋଲି ଅନୁଭବ କରିହୁଏ । ତା ପରେ ହଠାତ୍ ଗ୍ରୀସ୍‌ର ବୃହତ୍ତର ଜୀବନ ମଞ୍ଚରୁ ନାରୀମାନେ ଉଭେଇ ଗଲେ ।

'ନାରୀର ସ୍ଥାନ ଘର ଭିତରେ' ମତଟି ଗ୍ରୀସ୍‌ରେ ସର୍ବଜନ ସମ୍ମତ ଥିଲା । ସନ୍ତାନ ସୃଷ୍ଟିରେ ପୁରୁଷର ଭୂମିକା ଅଜଣା ଥିବା ପର୍ଯ୍ୟନ୍ତ ନାରୀର ପ୍ରାଧାନ୍ୟ ରହିଥିବା ସ୍ୱାଭାବିକ୍ । ମାତ୍ର ପୁରୁଷର ଭୂମିକା ଜଣାଯିବା ପରେ ଗୋଟାଏ ଧାରଣା ହୋଇଗଲା ଯେ ପୁରୁଷ ଅସଲ; ନାରୀ କେବଳ ସନ୍ତାନ ଧାରଣ କରିବାର ଗୋଟାଏ ଯନ୍ତ୍ର । ହୋମରଆନ୍‌ଙ୍କ ମଧ୍ୟରେ ନାରୀକୁ ଅନ୍ତଃପୁରରେ ଆବଦ୍ଧ ରଖିବାର ଚଳଣି ପ୍ରଚଳିତ ନ ଥିଲା । ବୋଧହୁଏ ପ୍ରାଚ୍ୟରୁ ଆୟୋନିଆ ବାଟେ ଏହି ଚଳଣି ଆଟିକାକୁ ଆସିଲା । କନ୍ୟା ସମ୍ପତ୍ତିର ମାଲିକାଣୀ ହେବା ପରମ୍ପରାର ଇତି ଘଟିବା ଓ ନାରୀ ଘର କାମରେ ଲାଗିଲେ ସୁବିଧା ହେଉଛି ବୋଲି

ଆବିଷ୍କାର କରିବା ପ୍ରଭୃତି କେତେକ ସାମାଜିକ ତଥା ଅର୍ଥନୈତିକ କାରଣ ନାରୀର ସ୍ଥାନ ଘର କୋଣରେ ନିର୍ଦ୍ଦିଷ୍ଟ କରିଦେଲା ।

ଗ୍ରୀସ୍‌ରେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ବୟସର ତାରତମ୍ୟ ଥିଲା ଅନେକ ବେଶୀ । ବରକୁ ତିରିଶ ବର୍ଷ ଓ କନ୍ୟାକୁ ପନ୍ଦର । ଦୁହିଁଙ୍କର ବିବାହ ହେବା ଫଳରେ ବାଳିକାଟିଏ ଅଭିଜ୍ଞ ଓ ପୋଖତ ପୁରୁଷର ଅଧୀନ ହୋଇଯିବା ସ୍ୱାଭାବିକ୍ । ତେବେ ଘର ଭିତରେ ନାରୀର କର୍ତ୍ତୃତ୍ୱକୁ ପୁରୁଷ ସ୍ୱୀକାର କରି ନେଇଥିଲା । ଘର ଚଳେଇବା କାମ ନାରୀର । ସେଥିରେ ପୁରୁଷ ପାଟି ଫିଟାଏ ନାହିଁ । ଆଧୁନିକ କାଳ ପର୍ଯ୍ୟନ୍ତ ଅଧିକାଂଶ ଦେଶରେ ଜଣା ଅଧିକେ ଏହିପରି ପରିସ୍ଥିତି ଥିଲା । ଥରେ ଥେମିଷ୍ଟୋକଲ୍‌ସ ତାଙ୍କର ଶିଶୁ ସନ୍ତାନ ସମ୍ପର୍କରେ କହିଥିଲେ, "ଏଇ ପିଲା ଜାଣ ଏଥେନ୍‌ସରେ ସର୍ବେସର୍ବା । ମୁଁ ଏଥେନ୍‌ସକୁ ଚଳାଉଛି କିନ୍ତୁ ମୋ ସ୍ତ୍ରୀ ମତେ ବଶ କରି ରଖିଛି । ଆଉ ମୋ ସ୍ତ୍ରୀ ତ ଏଇ ପିଲା ପାଖରେ ବନ୍ଧା । ଏଇଥିରୁ ବୁଝ ।" ନାରୀକୁ ଅଧିକ ସ୍ୱାଧୀନତା ଦେବା ସମ୍ପର୍କରେ ସାମୁଏଲ୍ ଜନ୍‌ସନ୍ ମନ୍ତବ୍ୟ କରିଥିଲେ, "ପ୍ରକୃତି ନାରୀକୁ ଏତେ ଶକ୍ତି ଦେଇଛି ଯେ ଆଇନ୍ ତାକୁ ଆଉ ବଢ଼େଇବା ଠିକ୍ ହେବ ନାହିଁ ।" ଥେମିଷ୍ଟୋକଲ୍‌ସଙ୍କ ଏଥେନ୍‌ସ ଠାରୁ ଜନ୍‌ସନ୍‌ଙ୍କ ଇଂଲଣ୍ଡ ବହୁତ ଦୂର । ତଥାପି ଏଇ ଦୁଇ ବ୍ୟକ୍ତିଙ୍କ ଉକ୍ତିରେ ଗୋଟାଏ ମେଳ ଥିବାର ବାରି ହୋଇପଡ଼େ ।

ସଂସ୍କୃତି କ୍ଷେତ୍ରକୁ ଅବଦାନ ଦୃଷ୍ଟିରୁ ବିଚାର କଲେ ଖ୍ରୀ. ପୂ. ୬ଷ୍ଠ ଶତାବ୍ଦୀର କେତେଜଣ ନାରୀଙ୍କର ସାହିତ୍ୟ ପ୍ରତି ଅବଦାନ କଥା ମନକୁ ଆସେ । ମାତ୍ର ଖ୍ରୀ.ପୂ. ୫ମ ଶତାବ୍ଦୀରେ ଅବସ୍ଥା ଭିନ୍ନ ପ୍ରକାର ହେଲା । ତେବେ ଆସ୍‌ପାସିଆ ଗୋଟିଏ ବ୍ୟତିକ୍ରମ । ସେ ଜଣେ ବଡ଼ ବିଦୁଷୀ । ପୁଣି ଏଥେନ୍‌ସର ଗୋଟିଏ ଅଭାବକୁ ଯଥା ସାମାନ୍ୟ ଦୂର କରିବା ପାଇଁ ସତେକ ଅନ୍ତର୍ବୋଧର ନିର୍ଦ୍ଦେଶ ମାନି ନେଇ ଏଥେନ୍‌ସର ସ୍ୱର୍ଣ୍ଣଯୁଗର କର୍ଣ୍ଣଧାର ପେରିକ୍ଲିଜ୍ ଆସ୍‌ପାସିଆଙ୍କୁ ଭଲ ପାଇଲେ । ଏହେନ ମହାନ୍ ନଗରୀ ଏଥେନ୍‌ସରେ କେଉଁଠି ପ୍ରେମର ଦୀପଶିଖା ନ ଜଳିବା ତା'ର କଳଙ୍କ ନୁହେଁ କି ? ଆସ୍‌ପାସିଆ ପେରିକ୍ଲିଜ୍‌ଙ୍କର ପ୍ରେରଣାଦାୟିନୀ, ପ୍ରେମିକା କିନ୍ତୁ କୁଳବଧୂ ନୁହନ୍ତି । ଏହା ଏକ ବ୍ୟତିକ୍ରମ ନୁହେଁ । ବରଂ ବିବାହିତା ସ୍ତ୍ରୀ ବା ପ୍ରେମିକା ପରିବର୍ତ୍ତେ ଆଉ କିସମର ନାରୀଏ ଗ୍ରୀକ୍ ପୁରୁଷଙ୍କର ପ୍ରେରଣାଦାୟିନୀ ହୋଇଥିବାର ଏହା ଏକ ଦୃଷ୍ଟାନ୍ତ ।

ଗ୍ରୀସ୍‌ରେ ରୋମାଣ୍ଟିକ୍ ପ୍ରେମ ଅଜଣା ନ ଥିଲା । ମାତ୍ର ପ୍ରେମରେ ପଡ଼ିବାର ଅବସ୍ଥାକୁ ସେମାନେ କାଳେଣୀ ଲାଗିବାର ଅବସ୍ଥା ବା ପାଗଳାମି ବୋଲି ମନେ କରୁଥିଲେ । ପ୍ରେମ ଏକ ଉନ୍ମାଦତା, ପ୍ରେମିକ ଜଣେ କାଳେଣୀ—କଥାଟା ଭୁଲ୍ ନୁହେଁ । କିନ୍ତୁ ପ୍ରେମରେ ପଡ଼ିଥିବା ଗ୍ରୀକ୍ ଯୁବକ ଭାବୁଥିଲା, ଏ ପାଗଳାମି ଶୀଘ୍ର ଦୂର ହେଲେ ରକ୍ଷା । ଭାଙ୍ଗ ଖାଇଲା ପରି ପ୍ରେମ ପାଗଳାମି ଏକ ସାମୟିକ ବ୍ୟାପାର । ପ୍ରେମିକାକୁ ବିବାହ କରିବା ଏକ ହାସ୍ୟାସ୍ପଦ ଅବାସ୍ତବ କଳ୍ପନା । ଗ୍ରୀକ୍ ଯୁବକ ଜାଣିଥିଲା, ପ୍ରେମ ଓ ବିବାହ ଏ ଦୁଇଟି ସମ୍ପୂର୍ଣ୍ଣ ଭିନ୍ନ ବିଷୟ । ଗ୍ରୀକ୍ ଯୁବକର ବିବାହ ତା ବାପା ଠିକ୍ କରୁଥିଲେ । କନ୍ୟାପିତାର ଯୌତୁକ ଦେବାର ଶକ୍ତି ଉପରେ ମୁଖ୍ୟତଃ ବିବାହ ନିର୍ଭର କରୁଥିଲା । କେଉଁ ଅନାଦିକାଳରୁ ଯୌତୁକ ପ୍ରଥା କେତେ କେତେ ଦେଶରେ, କେତେ କେତେ ରୂପରେ ଆତ୍ମପ୍ରକାଶ ନ କରିଛି !

ନାରୀର ସ୍ନେହ, ପ୍ରେମ, କୋମଳତା, ସହିଷ୍ଣୁତା ପ୍ରଭୃତି ଗୁଣ ବିଷୟରେ ଗ୍ରୀକ୍ ଜାତି ସଚେତନ ଥିଲା । ଏଥେନ୍ସୀୟ ସ୍ୱାମୀ ତା ସ୍ତ୍ରୀକୁ ଭଲ ପାଉଥିଲା । ମାତ୍ର ସଂସ୍କୃତି କ୍ଷେତ୍ରକୁ ଅବଦାନ ପ୍ରସଙ୍ଗରେ ଗ୍ରୀସ୍‌ର କୁଳବଧୂ ନୁହନ୍ତି, ଆଉ କିସମର ନାରୀଙ୍କ କଥା ମନକୁ ଆସେ ।

ଗ୍ରୀସ୍‌ରେ ବିବାହ ଖୁବ୍ ଏକ ବ୍ୟକ୍ତିଗତ ଆନନ୍ଦର ବିଷୟ ନ ଥିଲା । ଧର୍ମର ବିଧି ତଥା ରାଷ୍ଟ୍ର ପ୍ରତି କର୍ତ୍ତବ୍ୟ ଦୃଷ୍ଟିରୁ ନାଗରିକମାନେ ବିବାହ କରୁଥିଲେ । ଅବିବାହିତ ରହିବା ଆଟିକାରେ ଦଣ୍ଡନୀୟ ଅପରାଧ ଥିଲା । ମାତ୍ର କିଏ ଏ ନିୟମ ଭଙ୍ଗ କରୁଛି ସେଥିପ୍ରତି କେହି ଧ୍ୟାନ ଦେଉ ନ ଥିଲେ । ଗ୍ରୀକ୍‌ମାନେ ଆଇନ୍‌କୁ ଅତି ପବିତ୍ର ମଣୁଥିଲେ ଓ ସ୍ୱେଚ୍ଛାରେ ଆଇନ୍ ମାନି ଚଳୁଥିଲେ । ଏହା ସତ୍ତ୍ୱେ ଉକ୍ତ ଆଇନ୍‌କୁ ଗୁରୁତ୍ୱ ଦିଆଯାଉ ନ ଥିଲା । ଏଥେନ୍‌ସରେ ଅବିବାହିତଙ୍କର ସଂଖ୍ୟା ଏତେ ବଢ଼ିଗଲା ଯେ ପେରିକ୍ଲିଜଙ୍କ ସମୟକୁ ତାହା ଏକ ସମସ୍ୟା ହୋଇପଡ଼ିଲା । ମଉଜ କରିବାର ଏତେ ଉପାୟ ଥାଉ ଥାଉ ବିବାହ ପରି ଅଡ଼ୁଆ କଥାରେ ପଶେ କିଏ ?

ଅଧିକାଂଶ ବିବାହିତ ପୁରୁଷଙ୍କର ଜଣେ ରକ୍ଷିତା ଥିଲା । ତା ଛଡ଼ା ରୂପବତୀ, ମାର୍ଜିତ ରୁଚିସମ୍ପନ୍ନା ଗଣିକାଙ୍କର ଅଭାବ ନ ଥିଲା । ଡିମୋସ୍ଥିନିଜ୍ ଥରେ କହିଥିଲେ, "ଆମୋଦ ପାଇଁ ଆମର ରସବତୀ ଗଣିକାମାନେ ଅଛନ୍ତି, ଦେହପା'ର ଯତ୍ନ ନେବାକୁ ଆମେ ରକ୍ଷିତା ରଖୁ, ସ୍ତ୍ରୀ ଆମ ସନ୍ତାନର ମାଆ ହୁଏ ଓ ଘର ସମ୍ଭାଳେ ।" ଗ୍ରୀକ୍‌ଙ୍କର ମତିଗତି

ଡିମୋସ୍ଥିନାଜ୍‌ଙ୍କର ଏହି ଉକ୍ତିରେ ପ୍ରତିଫଳିତ । ରକ୍ଷିତା ଏଥେନ୍‌ସୀୟ ଆଇନ୍‌ର ସ୍ୱୀକୃତି ପାଇଥିଲା । ରକ୍ଷିତାର ଯୌବନ କେବେ ସରିବ ଓ ସେ ଘରର ଚୋଇଲାଟିଏ ହୋଇ ରହିବ, ସେଇଥିପାଇଁ ଅପେକ୍ଷା କରି ସ୍ତ୍ରୀ ରକ୍ଷିତାକୁ ସହୁଥିଲା ।

ଅବିବାହିତ ଯୁବକ କୌଣସି ଗଣିକା ସହିତ ସାମୟିକ ସମ୍ପର୍କ ରଖିଲେ ସେଥିପ୍ରତି କେହି ଗୁରୁତ୍ୱ ଦେଉ ନ ଥିଲେ । ବିବାହିତ ପୁରୁଷର ଏପରି କାର୍ଯ୍ୟ ମଧ୍ୟ ଚଳି ଯାଉଥିଲା । ଏଥେନ୍‌ସରେ ବେଶ୍ୟାବୃତ୍ତି ଥିଲା ଆଇନ୍ ସମ୍ମତ । ଗଣିକାମାନଙ୍କୁ କର ଦେବାକୁ ପଡ଼ୁଥିଲା । କେବଳ ଏଥେନ୍‌ସ କାହିଁକି, ଅଧିକାଂଶ ଗ୍ରୀକ୍ ନଗରରେ ବେଶ୍ୟାବୃତ୍ତି ପ୍ରସାର ଲାଭ କରିଥିଲା । ଆଟିକାରେ ନିମ୍ନ ସ୍ତରର ଦେହଜୀବୀଙ୍କ ଠାରୁ ଆରମ୍ଭ କରି ବହୁ ଗୁଣ ସମ୍ପନ୍ନା, ଉଚ୍ଚବର୍ଗ ଗଣିକାମାନେ ଥିଲେ । ଗ୍ରୀସ୍‌ର ବେଶ୍ୟାଙ୍କୁ କେତୋଟି ଶ୍ରେଣୀରେ ବିଭକ୍ତ କରାଯାଇଥାଏ । ସବୁଠାରୁ ନିକୃଷ୍ଟ ଗଣିକା ପୋର୍ଣ୍ଣି (Pornai—ଏଇଥିରୁ ଇଂରାଜୀ ପୋର୍ଣ୍ଣୋଗ୍ରାଫି ଶବ୍ଦର ସୃଷ୍ଟି) ନାମରେ ପରିଚିତ । ପିରିଅସ୍ ବନ୍ଦର ପୋର୍ଣ୍ଣିଙ୍କର ପ୍ରଧାନ ପୀଠ ଥିଲା । ଏମାନେ ସମ୍ପୂର୍ଣ୍ଣ ଭାବେ ଦେହଜୀବୀ । ପଶୁ ପ୍ରବୃତ୍ତି ଚରିତାର୍ଥ କରିବା ବ୍ୟତୀତ ପୋର୍ଣ୍ଣିଠାରୁ ଜଣେ ଅଧିକ ଆଶା କରୁ ନ ଥିଲା । ପୋର୍ଣ୍ଣିଙ୍କ ଉପରକୁ ବଂଶୀବାଦିକା (auletuides)ଙ୍କର ଆସନ । ଏଇ ନାରୀମାନେ ବଂଶୀବାଦନ ଓ ନୃତ୍ୟଗୀତ ପ୍ରବୀଣା । ନାଚଗୀତରେ ଏମାନେ ଲୋକଙ୍କର ମନ ମୋହନ୍ତି । ଜଣେ ବଂଶୀବାଦିକାର ମନ ନେଇ ରସିକ ନାଗର ତା ସହିତ ରାତି ପୁହାଇ ପାରେ । କହିବା ବାହୁଲ୍ୟ, ବଂଶୀବାଦିକାମାନେ ଦେହସର୍ବସ୍ୱ ନୁହନ୍ତି । ଏଥେନ୍‌ସରେ ସେମାନଙ୍କୁ ତାଲିମ୍ ଦେବାପାଇଁ ଅନେକ ଟ୍ରେନିଂ ସ୍କୁଲ ଥିଲା । ଟ୍ରେନିଂ କାଳରେ ସେମାନେ ନୃତ୍ୟ, ସଙ୍ଗୀତ, ପ୍ରସାଧାନ ଓ ପୁରୁଷ ବଶୀକରଣ ବିଦ୍ୟାରେ ତାଲିମ୍ ପାଉଥିଲେ । ଜଣେ ବଂଶୀବାଦିକା ତାର ପ୍ରେମିକା ପ୍ରତି ଅନୁରକ୍ତ ଓ ବିଶ୍ୱସ୍ତ ରହୁଥିବାର ଅନେକ ଦୃଷ୍ଟାନ୍ତ ଅଛି ।

ଗ୍ରୀସ୍‌ର ଗଣିକାମାନେ ପୋର୍ଣ୍ଣି, ବଂଶୀବାଦିକା ଓ ହିଟିରି—ଏହି ତିନି ଶ୍ରେଣୀରେ ବିଭକ୍ତ ଥିଲେ ।

ସର୍ବୋତ୍କୃଷ୍ଟ ଗଣିକା ହିଟିରି (hetairai) ନାମରେ ପରିଚିତ । ଏମାନଙ୍କୁ ଗଣିକା କହିବା ପରିବର୍ତ୍ତେ ସଖୀ (girl friend) କହିବା ଅଧିକ ଠିକ୍ । ଆଧୁନିକ ପରିଭାଷାରେ

କହିଲେ, ଜଣେ ହିଟିରା ତାର ମନୋମତ ପୁରୁଷ ସହିତ କଣ୍ଟ୍ରାକ୍ଟ ମ୍ୟାରେଜ୍ କରୁଥିଲା । ହିଟିରାମାନେ ସାଧାରଣତଃ ନାଗରିକ ଶ୍ରେଣୀର ମହିଳା । କୌଣସି ଦୁର୍ନାମ ଅର୍ଜନ କରିବା ଫଳରେ ଏମାନେ ଏଇ ବାଟଟି ବାଛୁ ନଥନ୍ତି । ହିଟିରାଙ୍କ ଭିତରେ ରୂପଜୀବୀ, ସ୍ୱୟଂବରା, ସ୍ୱେଚ୍ଛାଚାରିଣୀ ଓ ଗତାନୁଗତିକ ସମାଜ ସହିତ ଖାପ୍ ଖୁଆଇ ଚଳି ପାରୁ ନ ଥିବା ବିଦୁଷୀ ରମଣୀମାନେ ଥିଲେ । ସରସ ଆଳାପ ଓ କଳା ସାହିତ୍ୟ ଚର୍ଚ୍ଚାରେ ଶିକ୍ଷିତ ପୁରୁଷଙ୍କୁ ହିଟିରାମାନେ ଆକୃଷ୍ଟ କରୁଥିଲେ । ଥାସିସ୍, ଡାଇଓଟିମା, ଆସ୍ପାସିଆ ଓ ଲିଓଟିନଶ୍ଚନ୍‌ଙ୍କ ପରି ବିଦୁଷୀ ରମଣୀମାନେ ହିଟିରାଙ୍କ ମଧ୍ୟରେ ଗଣ୍ୟ । ଆସ୍ପାସିଆଙ୍କ ପରି ଡାଇଓଟିମାଙ୍କ ପାଣ୍ଡିତ୍ୟର ଉଚ୍ଚ ପ୍ରଶଂସା ସକ୍ରେଟିସ୍ କରିଛନ୍ତି ।

ଇତିହାସ ଗ୍ରୀସ୍‌ର କୌଣସି କୁଳନାରୀ ନୁହେଁ, କେଇଜଣ ବାରନାରୀଙ୍କର ନାମକୁ ସ୍ମରଣ ରଖିଛି ! ତଥାକଥିତ ବାରନାରୀମାନେ ଗ୍ରୀସ୍‌ର ଅନେକ କବି, କଳାକାର ଓ ଦାର୍ଶନିକଙ୍କର ପ୍ରେରଣାଦାୟିନୀ । ଥିଓରିସ୍ ନାମକ ଜଣେ ହିଟିରା ଥିଲେ ସୋଫୋକ୍ଲିଜ୍‌ଙ୍କ ସଙ୍ଗିନୀ । ବୃଦ୍ଧକାଳ ପର୍ଯ୍ୟନ୍ତ ସେ ସୋଫୋକ୍ଲିଜ୍‌ଙ୍କର ସେବା ଯତ୍ନ କରିଥିଲେ । ଚିରକୁମାର ପ୍ଲେଟୋଙ୍କର ଜଣେ ବାନ୍ଧବୀ ଥିଲେ । ତାଙ୍କର ନାମ ଆର୍କିଆନାସା ଡାନାଇ ଓ ଲିଓଣ୍ଟିନମ୍ ନାମକ ଦୁଇ-ଜଣ ନାରୀ ବିଶିଷ୍ଟ ଦାର୍ଶନିକ ଏପିକୁରସ୍‌ଙ୍କୁ ‘ଆମୋଦର ଦର୍ଶନ’ ମନ୍ତ୍ର ଶିଖାଇଥିଲେ । ଲିଓଣ୍ଟିନମ୍ ଜଣେ ବିଦୁଷୀ ନାରୀ । ସେ ଥିଲେ ଏପିକୁରସ୍‌ଙ୍କର ଛାତ୍ରୀ ଓ ପ୍ରେମିକା । ଏପିକୁରସ୍‌ଙ୍କର ଜଣେ ସମସାମୟିକ ଦାର୍ଶନିକ ଥିଓଫାଷ୍ଟ୍ରସ୍ (ଖ୍ରୀ. ପୂ. ତୃତୀୟ ଶତାବ୍ଦୀ) ଥରେ ତାଙ୍କର ଗୋଟିଏ ରଚନାରେ ନାରୀମାନଙ୍କୁ ସାଂଘାତିକ ଭାବେ ଆକ୍ରମଣ କରିଥିଲେ । ଥିଓଫାଷ୍ଟ୍ରସ୍ ଜଣେ ଅତ୍ୟନ୍ତ ଲୋକପ୍ରିୟ ଦାର୍ଶନିକ । ସେ ଏତେବଡ଼ ବାଗ୍ମୀ ଯେ ତାଙ୍କ ବାଗ୍ମିତାରେ ମୁଗ୍ଧ ହୋଇ ଆରିଷ୍ଟୋଟଲ୍ ତାଙ୍କୁ ଗୋଟିଏ ନାଁ ଦେଇଥିଲେ । ଏଇ ନାମର ଅର୍ଥ ‘ଯିଏ ଦେବତାଙ୍କ ପରି କଥା କହିପାରନ୍ତି’ । ଏପରି ଜଣେ ଯଶସ୍ୱୀ ଦାର୍ଶନିକଙ୍କର ଉପରୋକ୍ତ ଲେଖାର ଜବାବ୍ ଦେଇଥିଲେ ଲିଓଣ୍ଟିନମ୍ । ତାଙ୍କର ଲେଖାଟି ଗ୍ରୀସ୍‌ରେ ଚହଳ ପକାଇ ଦେଇଥିଲା । ହିଟିରାଙ୍କ ମଧ୍ୟରେ କିପରି ବିଦୁଷୀ ନାରୀ ଥିଲେ ଲିଓଣ୍ଟିନମ୍ ତାର ଦୃଷ୍ଟାନ୍ତ ।

> ଗ୍ରୀସ୍‌ର ଅନେକ କବି, କଳାକାର ଓ ଦାର୍ଶନିକ ସେମାନଙ୍କର ବିବାହିତ ନାରୀ ପରିବର୍ତ୍ତେ ସଖୀଙ୍କ ଠାରୁ ସୃଜନ ପ୍ରେରଣା ଲାଭ କରୁଥିଲେ ।

ଫ୍ରାନ ଖ୍ରୀ. ପୂ ଚତୁର୍ଥ ଶତାବ୍ଦୀ ଏଥେନ୍‌ସର ସୁନ୍ଦରୀ ଶିରୋମଣି । ତାଙ୍କର ସୌନ୍ଦର୍ଯ୍ୟ ଏକ କିମ୍ବଦନ୍ତୀରେ ପରିଣତ ହୋଇଛି । ଫ୍ରାନଙ୍କ ସହିତ ଗୋଟିଏ ରାତି ଯାପନ କରିବାର ମୂଲ୍ୟ ଥିଲା ଏକ ହଜାର ଡ୍ରାକ୍‌ମା ✽ । ସେ କ୍ୱଚିତ ପଦାକୁ ବାହାରୁଥିଲେ ଓ ଯେବେ ବାହାରୁଥିଲେ ସମ୍ପୂର୍ଣ୍ଣ ଭାବେ ଆବୃତ୍ତ ହୋଇ । ତେବେ ବିଶେଷ ଧର୍ମୋତ୍ସବ ଉପଲକ୍ଷେ ଫ୍ରାନ ଅନାବୃତ୍ତ ହୋଇ ସର୍ବସାଧାରଣଙ୍କ ସମ୍ମୁଖରେ ସମୁଦ୍ରରେ ସ୍ନାନ କରୁଥିଲେ । ଗ୍ରୀସ୍‌ର ଅନ୍ୟତମ ମହାନ୍ ଭାସ୍କର୍ଯ୍ୟ ପ୍ରାକ୍‌ସିଟିଲିଜ୍ ଫ୍ରାନଙ୍କର ପ୍ରେମିକ । ସ୍ୱପ୍ନ ସୁନ୍ଦରୀ ଫ୍ରାନଙ୍କୁ ମଡେଲ୍ କରି ପ୍ରାକ୍‌ସିଟିଲିଜ୍ ଆଫ୍ରୋଡାଇଟ୍‌ଙ୍କର ଅପୂର୍ବ, ଅମର ମୂର୍ତ୍ତି ଗଢ଼ି ଯାଇଛନ୍ତି । କେତେକଙ୍କ ମତରେ ଏହି ମୂର୍ତ୍ତିଟିରେ ଗ୍ରୀକ୍ କଳା ଚରମ ଉତ୍କର୍ଷତା ଲାଭ କରିଛି । ସେ କାଳରେ ଏହାକୁ ଦେଖିବାକୁ ବହୁ ଦୂରଦୂରାନ୍ତରୁ ଦର୍ଶକମାନେ ଗ୍ରୀସ୍ ଆସୁଥିଲେ । କଥିତ ଅଛି, ପ୍ରାକ୍‌ସିଟିଲିଜ୍‌ଙ୍କ ଆଫ୍ରୋଡାଇଟ୍‌ଙ୍କୁ ଦେଖି ଦର୍ଶକମାନେ କାମ ଭାବରେ ପାଗଳ ହୋଇଯାଉଥିଲେ । ନାରୀ ସୌନ୍ଦର୍ଯ୍ୟରେ ବିଭୋର ହେବାରେ ପ୍ରାକ୍‌ସିଟିଲିଜ୍ ଗ୍ରୀସ୍‌ର ପ୍ରଥମ ବିଶିଷ୍ଟ ଶିଳ୍ପୀ । ତାଙ୍କ ସମ୍ବନ୍ଧରେ ଆମେ ଯଥା ସ୍ଥାନରେ ଆଲୋଚନା କରିବା ।

ଫ୍ରାନଙ୍କର ଏତେ ଧନ ଥିଲା ଯେ ଥିବାଜ୍ ନଗର ଭଗ୍ନପଟେ ପାଚେରୀ ଗଢ଼ିଦେବା ପାଇଁ ସେ ତାଙ୍କ ତରଫରୁ ପ୍ରସ୍ତାବ ଦେଇଥିଲେ । ତେବେ ତାଙ୍କର ଗୋଟିଏ ସର୍ତ୍ତ ଥିଲା । ନିର୍ମାତା ଭାବେ ତାଙ୍କ ନାମ ପାଚେରୀରେ ଖୋଦିତ ହେବ । ଥିବାଜ୍‌ର ଅଧିବାସୀଗଣ ଏ ପ୍ରସ୍ତାବରେ ରାଜି ହେଲେ ନାହିଁ ।

କରିନ୍‌ଥ ନଗରର ଲାଇଜ୍ ପ୍ରାଚୀନ ଗ୍ରୀସ୍‌ର ସର୍ବଶ୍ରେଷ୍ଠ ସୁନ୍ଦରୀ ରୂପେ ବିଖ୍ୟାତ । ତାଙ୍କୁ ଥରଟିଏ ଦେଖିବା ପାଇଁ ଗ୍ରୀସ୍‌ର ଶିଳ୍ପୀମାନେ ଲାଇଜ୍‌ଙ୍କ ଦୁଆରେ ଅଧିଆ ପଡ଼ୁଥାନ୍ତି । ସେଇ ଲଜ୍ଜାବତୀ ନାରୀର କରୁଣା ଲାଭ କରିବା ସହଜ ନୁହେଁ । ଗ୍ରୀସ୍‌ର ବିଖ୍ୟାତ ଭାସ୍କର୍ଯ୍ୟ ମିରନ୍ (ଖ୍ରୀ· ପୂ ୪୫୦—ତାଙ୍କର ଡିସ୍‌କସ୍ ଥ୍ରୋ କରୁଥିବା ଭଙ୍ଗୀର ବ୍ରୋଞ୍ଜ ମୂର୍ତ୍ତି ସୁପରିଚିତ ବୃଦ୍ଧକାଳରେ ଥରେ ଲାଇଜ୍‌ଙ୍କୁ ମଡେଲ୍ ହେବା ପାଇଁ ପ୍ରବର୍ତ୍ତାଇ ପାରିଥିଲେ । ଲାଇଜ୍ ନିଜ ଶରୀରକୁ ଅନାବୃତ୍ତ କରନ୍ତେ ମିରନ୍ ସବୁ ଭୁଲିଯାଇ ତାଙ୍କର ସମସ୍ତ ସମ୍ପତ୍ତି

---

✽ ଗ୍ରୀକ୍ ମୁଦ୍ରା ଏକ ଡ୍ରାକ୍‌ମାର କ୍ରୟ ମୂଲ୍ୟ ଏକ ଡଲାର୍ ସହିତ ସମାନ ।

ବିନିମୟରେ ଲାଇଜ୍‌ଙ୍କ ସହିତ ରାତି ଯାପନର ପ୍ରସ୍ତାବ ବାଢ଼ିଲେ । ଲୁଗାପଟା ସଜାଡ଼ି ଲାଇଜ୍ ଉଠିଗଲେ । ମିରନ୍ ଭାବିଲେ ତାଙ୍କର ବାର୍ଦ୍ଧକ୍ୟ, ଦାଢ଼ି, ପକ୍ୱକେଶ ଓ ବେଶଭୂଷା ଯୋଗୁ ଲାଇଜ୍ ରାଜି ହେଲେ ନାହିଁ । ପରଦିନ ଦାଢ଼ି କାଟି, ବାଳ କଳା କରି, ମୂଲ୍ୟବାନ୍ ପୋଷାକ ଓ ସୁନାହାର ଇତ୍ୟାଦି ପିନ୍ଧି ସନ୍ଧ୍ୟାବେଳେ ମିରନ୍ ଲାଇଜ୍‌ଙ୍କ ପାଖରେ ହାଜର୍ । ତାଙ୍କର ଏ ରୂପାନ୍ତର ଦେଖି ଲାଇଜ୍ କହିଥିଲେ, "ବନ୍ଧୁ ! ତମ ବାପାଙ୍କୁ କାଲି ଯେଉଁ ଜିନିଷଟି ମନା କରିଥିଲି ତାହା ମାଗିବାକୁ ତମେ ଆଜି ଆସିଲ ?" ଡିମୋସ୍ଥିନିଜ୍‌ଙ୍କ କାମନାଶା ଛଡ଼ାଇବା ପାଇଁ ଲାଇଜ୍ ତାଙ୍କ ଠାରୁ ରାତିକୁ ଦଶହଜାର ଡ୍ରାକ୍‌ମା ଦାବି କରୁଥିଲେ । କିନ୍ତୁ କପର୍ଦ୍ଦକ-ଶୂନ୍ୟ ସିନିକ୍ ଦାର୍ଶନିକ ଡାଇଓଜିନିଜ୍‌ଙ୍କ ପ୍ରତି ତାଙ୍କର ବ୍ୟବହାର ଖୁବ୍ ଭିନ୍ନ । ମିରନ୍ ଯେତେ ଧନ ଉପାର୍ଜନ କରୁଥିଲେ, ତା'ର ମୋଟା ଅଂଶ ପାନ୍ଥଶାଳା, ମନ୍ଦିର ତୋଳା ଓ ଦାନ ଦକ୍ଷିଣାରେ ବ୍ୟୟ ହେଉଥିଲା ।

ସିନିକ୍‌ମାନେ ସ୍ୱେଚ୍ଛାରେ ଅତି ଦରିଦ୍ର ଭାବେ ବଞ୍ଚୁଥିଲେ । ମାତ୍ର ଯୌନ କ୍ଷୁଧାକୁ ସେମାନେ ସ୍ୱୀକାର କରୁଥିଲେ । ଯଦି ପେଟକୁ ଖାଇବା ଲଜ୍ଜା କଥା ନୁହେଁ ତେବେ ଦେହର କ୍ଷୁଧା ମେଣ୍ଟାଇବାରେ ଲାଜ କ'ଣ.?

ଗ୍ରୀକ୍ ସଭ୍ୟତାର ଅପରାହ୍ନରେ ବିଦୁଷୀ ଓ ରସିକା ହିଟିରାଙ୍କର ଆବିର୍ଭାବ । ଫଳସ୍ୱରେ ଗ୍ରୀକ୍ ଶିଳ୍ପୀ ନାରୀ-ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହେଲା । ନୈତିକ ସଂଯମ ହରାଇ ବିଶୃଙ୍ଖଳ ହୋଇ ପଡ଼ୁଥିବା ଗ୍ରୀକ୍ ଜାତି ତା'ର ସଭ୍ୟତାର ଅପରାହ୍ନରେ ନାରୀଙ୍କୁ ନେଇ ମାତିଲା ( ଓ ଏଇଟା ସେମାନଙ୍କର ଅଧୋଗତିର କାରଣ ବୋଲି ଯୁକ୍ତି ) କରିବା ଠିକ୍ ନୁହେଁ । ନରନାରୀର ସମ୍ପର୍କ ଓ ପ୍ରେମ ଏକ ସ୍ୱାଭାବିକ କଥା । ଏକ ଉନ୍ନତ ସଭ୍ୟତାରେ ଏଇ ସ୍ୱାଭାବିକତା ନ ଥିବା ବରଂ ବିସ୍ମୟର ବିଷୟ । ଏହାରି ଅଭାବରୁ ସମଲିଙ୍ଗୀ ପ୍ରେମ ଓ ଯୌନ ସମ୍ପର୍କ ଗ୍ରୀସ୍‌ରେ ବିଶେଷ ରୂପେ ଦେଖା ଦେଇଥିଲା ( ସଭ୍ୟତାର ଚରମ ବିକାଶ ସମୟରେ ମଧ୍ୟ ) । ସ୍ଥଳ ବିଶେଷରେ ଜଣେ ପୁରୁଷ ଓ ତା'ର ବାଳକ ପ୍ରେମିକା ମଧ୍ୟରେ ସମ୍ପର୍କ ରୋମାଣ୍ଟିକ୍ ପ୍ରେମ ପର୍ଯ୍ୟାୟକୁ ଉନ୍ନୀତ ହେଉଥିଲା । ରୋମାଣ୍ଟିକ୍ ପ୍ରେମର ଲକ୍ଷଣସବୁ ଯଥା—ତୀବ୍ର କାମନା, ଆବେଗ, ଉଲ୍ଲାସ, ଈର୍ଷା ଓ ବିରହ ବ୍ୟଥା ସମଲିଙ୍ଗୀ ପ୍ରେମରେ ଦେଖିବାକୁ ମିଳୁଥିଲା । 'ଗାର୍ଲ ଫ୍ରେଣ୍ଡ' ଜିନିଷଟି ଆଧୁନିକ ଯୁଗରେ ଆରମ୍ଭ ହୋଇଛି । ଗ୍ରୀକ୍‌ମାନେ କିନ୍ତୁ ବୟ ଫ୍ରେଣ୍ଡର ଅର୍ଥ ଠିକ୍ ବୁଝି ପାରିଥାନ୍ତେ । ଯେଉଁ ଝିଅ ସହିତ କିଛି ଭାବ ଥାଏ ତାକୁ କ'ଣ କୁହାଯିବ ସେଥିପାଇଁ ଗ୍ରୀକ୍ ଅଭିଧାନରେ ଶବ୍ଦ ନ

ଥିଲ । ତାଙ୍କ ସମ୍ବନ୍ଧ ଶୁଣି ଥିବା ଗୋଟିଏ ଝିଅକୁ ଖ୍ରୀ.ପୂ ସପ୍ତମ ଶତାବ୍ଦୀର କବି ଆଲ୍‌କମାନ, "ମୋର ନାରୀ ବନ୍ଧୁ-ଫ୍ରେଣ୍ଡ" ବୋଲି ଡାକୁଥିଲେ ଦେଇଥିଲେ ।

ଃ

କୁହାଯାଏ ପ୍ରେମ ଜାତି, କୁଳ, ବୟସ ଇତ୍ୟାଦି ବାଧା ମାନେନା । ଗ୍ରୀସ୍‌ରେ ଲିଙ୍ଗ-ଭେଦ ପ୍ରେମରେ ବାଧା ସୃଷ୍ଟି କରୁ ନ ଥିଲା । ସମଲିଙ୍ଗୀ ସମ୍ପର୍କକୁ କେହି ହୀନ ଦୃଷ୍ଟିରେ ଦେଖୁ ନ ଥିଲେ । ଅବଶ୍ୟ ଏହା ବିରୁଦ୍ଧରେ ଏଥେନ୍‌ସରେ ନାମକୁ ମାତ୍ର ଗୋଟାଏ ଆଇନ୍ ଥିଲା । ସ୍ପାର୍ଟା ଓ କ୍ରିଟ୍‌ରେ ଏହା ଆଦୌ ନିନ୍ଦନୀୟ ନ ଥିଲା । ଥିବାନ୍ ପରି କେତେକ ନଗର ଧରି ନେଇଥିଲେ ଯେ ସାମରିକ ସଙ୍ଗଠନ ଓ ଯୁଦ୍ଧକ୍ଷେତ୍ରରେ ବୀରତ୍ୱ ପ୍ରଦର୍ଶନକୁ ସମଲିଙ୍ଗୀ ପ୍ରେମ ସାହାଯ୍ୟ କରିପାରିବ ।

ପ୍ଲେଟୋଙ୍କ ସିମ୍ପୋଜିୟମ୍ ଡାଏଲଗ୍‌ରେ ସବୁ ବକ୍ତା ଗୋଟିଏ ବିଷୟରେ ଏକମତ । ତାହା ହେଉଛି, ବିସମଲିଙ୍ଗୀ ପ୍ରେମ ଠାରୁ ସମଲିଙ୍ଗୀ ପ୍ରେମର ଆସନ ଉଚ୍ଚରେ । ସେମାନଙ୍କ ମତରେ, ଏହା ଦ୍ୱାରା ମଣିଷର ଆତ୍ମିକ ଉନ୍ନତି ସମ୍ଭବ । କେବଳ ପୁରୁଷଙ୍କ ମଧ୍ୟରେ ନୁହେଁ, ନାରୀଙ୍କ ମଧ୍ୟରେ ସମଲିଙ୍ଗୀ ପ୍ରେମ ବେଶ୍ ପ୍ରଚଳିତ ଥିଲା । ସାଫୋଙ୍କର ଚମତ୍କାର ପ୍ରେମ-କବିତାଗୁଡ଼ିକ ତାଙ୍କର ନାରୀ ସଙ୍ଗିନୀଙ୍କ ଉଦ୍ଦେଶ୍ୟରେ ଲିଖିତ । କେତେକ ବଂଶୀବାଦିକା ପରସ୍ପରକୁ ସେମାନଙ୍କର ପୁରୁଷ ନାଗରଙ୍କ ଅପେକ୍ଷା ଅଧିକ ଆବେଗର ସହିତ ଭଲ ପାଉଥିଲେ । ଏପରି ଗଣିକାଳୟର ପତ୍ନୀଙ୍କ ମଧ୍ୟରେ ପ୍ରେମ ସମ୍ପର୍କ ପ୍ରତିଷ୍ଠା ହେଉଥିଲା ।

ଜନସଂଖ୍ୟା ବୃଦ୍ଧି ରୋକିବା ଗ୍ରୀକ୍‌ମାନଙ୍କର ଯୌନ ବିକୃତିର କାରଣ ବୋଲି ଆରିଷ୍ଟୋଟଲ୍ କହନ୍ତି । ଏହା କିଛି ପରିମାଣରେ ସତ ହୋଇପାରେ । ପରିବାର ଓ ସମାଜ ଭିତରୁ ବାହାରି ଆସି ଅଲଗା ରହି ତାଲିମ ପାଉଥିବା ପାଞ୍ଚ ଛଅ ବର୍ଷ ବୟସର ବାଳକ-ମାନେ ନାରୀର ଶରୀର ଲକ୍ଷ୍ୟ କରିବାର ସୁଯୋଗ ପାଉ ନ ଥିଲେ । ସେମାନେ ସେମାନଙ୍କର ବାଳକ ବନ୍ଧୁଙ୍କ ମେଳରେ ବଢ଼ୁଥିଲେ । ଫଳରେ ନାରୀର ଶରୀର ଓ ସୌନ୍ଦର୍ଯ୍ୟ ସମ୍ବନ୍ଧରେ ସେମାନେ ଥିଲେ ଅଚେତନ । ଘର କୋଣରେ କୂପମଣ୍ଡୂକ ପରି ବଢ଼ୁଥିବା ନାରୀ ଓ ଶିକ୍ଷିତ ପୁରୁଷଙ୍କ ମଧ୍ୟରେ ଗୋଟାଏ ବଡ଼ ବ୍ୟବଧାନ ରହିଥିଲା । ଫଳରେ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଆବେଗିକ ସମ୍ପର୍କ ବଢ଼ି ପାରୁ ନ ଥିଲା । ତେଣୁ ପରବର୍ତ୍ତୀ କାଳର ବଂଶୀବାଦିକା ବା ହିଟିରାଙ୍କ ପ୍ରତି ଆକୃଷ୍ଟ ହେବା ଶିକ୍ଷିତ ପୁରୁଷଙ୍କ ପକ୍ଷରେ ସ୍ୱାଭାବିକ୍ ।

## କଳା :

ଗ୍ରୀକ୍ ଗୋଟିଏ କଳାପ୍ରିୟ ଜାତି ବୋଲି କହିବା ଯଥେଷ୍ଟ ହେବ ନାହିଁ । କଳା ଗ୍ରୀକ୍ ଜାତିର ପ୍ରାଣ । ଗ୍ରୀସ୍ ଅନେକ ମହାନ୍ ଶିଳ୍ପୀଙ୍କୁ ଜନ୍ମ ଦେଇଛି । ପାଶ୍ଚାତ୍ୟର ଇତିହାସରେ ରେନେସାଁ ସମୟରେ ସାରା ୟୁରୋପରୁ ଆର୍ଟିଷ୍ଟମାନେ ଆସି ଠୁଳ ହୋଇଥିବା ଇଟାଲି କେବଳ ଆର୍ଟିଷ୍ଟଙ୍କର କର୍ମଭୂମିରେ ପରିଣତ ହୋଇଥିବା ପେରିକ୍ଲିଜ୍‌ଙ୍କ ଏଥେନ୍‌ସ ସହିତ ତୁଳନୀୟ । ଗ୍ରୀକ୍ ଜାତି କେବଳ ଚମତ୍କାର ଅଟ୍ଟାଳିକା, କାରୁକାର୍ଯ୍ୟ ମଣ୍ଡିତ ଅପୂର୍ବ ସୁନ୍ଦର ମନ୍ଦିର ଓ ମୁଗ୍ଧ ଚକିତ କରିଦେଲା ପରି ମୂର୍ତ୍ତି ଗଢ଼ି ଥାଆନ୍ତା, ତେବେ ମଧ୍ୟ କଳା ସେ ଜାତିର ପ୍ରାଣ ବୋଲି ଆମେ କହନ୍ତୁ ନାହିଁ । ଗ୍ରୀକ୍ ଜୀବନରେ କଳାର ଅଖଣ୍ଡ ପ୍ରଭାବ ଦେଖି ଆମେ ସେ ଜାତିର କଳାଗତ ପ୍ରାଣର ପରିଚୟ ପାଉ ।

ଏଥେନ୍‌ସୀୟର ଘର ଦ୍ୱାରର ସାଜସଜ୍ଜା ଓ ବ୍ୟବହୃତ ଜିନିଷପତ୍ର ଯଥା—ହାଣ୍ଡି, ମାଠିଆ, ଥାଳି, କପ୍, ପ୍ଲେଟ୍, ଟେବୁଲ୍, ଚଉକି, ପଲଙ୍କ ସବୁଥିରେ କଳାର ଛାପ ଦେଖିବାକୁ ମିଳେ । ଗ୍ରୀକ୍ ଆଖି ବଡ଼ ସୌନ୍ଦର୍ଯ୍ୟ-ରଙ୍କ । ନିଖୁଣ ଆକାର, ଅଙ୍ଗ ବିନ୍ୟାସ ( Symmetry ) । ଗଢ଼ଣରେ ଉଚିତ ଅନୁପାତ ଓ ଶୃଙ୍ଖଳା-ଜ୍ଞାନ ଦେଖି ଗ୍ରୀକ୍ ଚକ୍ଷୁ ଆହ୍ଲାଦିତ ହେଉଥିଲା । କଳାକୁ ଅଯଥା ଅଳଙ୍କୃତ କରିବା ଗ୍ରୀକ୍ ରୁଚିର ବହିର୍ଭୂତ । ଶୃଙ୍ଖଳା, ଅନୁପାତ ଜ୍ଞାନ ଓ ସୁଷମାର ସମନ୍ୱୟ ଦର୍ଶନରେ ତାର ସୌନ୍ଦର୍ଯ୍ୟବୋଧ ତୁଷ୍ଟ ହେଉଥିଲା ।

## ଚିତ୍ରକଳା :

ଗ୍ରୀକ୍ ଚିତ୍ରକଳାକୁ ମୋଟାମୋଟି ଭାବେ ଦୁଇଟି ଯୁଗରେ ବିଭକ୍ତ କରାଯାଏ । ଖ୍ରୀ. ପୂ ୭ମ ଶତାବ୍ଦୀର ଚିତ୍ରକରମାନେ ମୁଖ୍ୟତଃ କୁମ୍ଭପାତ୍ରରେ ଚିତ୍ର ଆଙ୍କୁଥିଲେ । ବିଭିନ୍ନ ଆକାର ଓ ରଙ୍ଗ ବିଶିଷ୍ଟ ପାତ୍ରକୁ ଚିତ୍ରିତ କରି ଅଧିକ ସୁନ୍ଦର କରିବା ସେମାନଙ୍କର ଲକ୍ଷ୍ୟ ଥିଲା । ଖ୍ରୀ. ପୂ ୫ମ ଶତାବ୍ଦୀରେ କୋଠାବାଡ଼ି, ମନ୍ଦିର ଓ ମୂର୍ତ୍ତିଙ୍କୁ ରଙ୍ଗୀନ୍ ଓ ଚିତ୍ରିତ କରିବା ପ୍ରତି ଚିତ୍ରଶିଳ୍ପୀଙ୍କର ଧ୍ୟାନ ଗଲା । ପରବର୍ତ୍ତୀ ଶତାବ୍ଦୀରେ ସେମାନଙ୍କ ଦୃଷ୍ଟି ପଡ଼ିଲା ବାସଗୃହ ଉପରେ । ଏ ଯୁଗରେ ଗ୍ରୀକ୍‌ମାନେ ଘରକୁ ଚିତ୍ରବିଚିତ୍ର କରି ସଜେଇବା ଓ

ମଣିଷର ଚିତ୍ରଲେଖ ଆଙ୍କିବା ପ୍ରତି ଗୁରୁତ୍ୱ ଦେଲେ । କାଳକ୍ରମେ ଘରର ସାଜସଜ୍ଜା ପ୍ରତି ଲୋକମାନେ ଅଧିକ ଆକୃଷ୍ଟ ହୋଇଥିଲେ ।

ଗ୍ରୀକ୍ ଚିତ୍ରକଳାରେ ଅଙ୍କନର ତିନୋଟି ପ୍ରଣାଳୀ ବିକଶିତ ହୋଇଥିଲା । ଯଥା— ଫ୍ରେସ୍କୋ ( fresco ) ବା ଓଦା ପ୍ଲାଷ୍ଟର ଉପରେ ରଙ୍ଗଦେବା, ଟେମ୍ପେରା ( tempera ) ବା ଅଣ୍ଡା ନାଳରେ ମିଶ୍ରିତ ରଙ୍ଗରେ ଓଦା କପଡ଼ା ଓ ବୋର୍ଡ଼କୁ ଚିତ୍ରିତ କରିବା ଓ ଏନ୍‌କଷ୍ଟିକ( encaustic ) ଅର୍ଥାତ୍ ତରଳ ମହମରେ ରଙ୍ଗ ମିଶାଇ ତକ୍ତିରେ ଆଙ୍କିବା । ଶେଷୋକ୍ତ ପ୍ରଣାଳୀଟି ତୈଳ ଚିତ୍ରାଙ୍କନର ପାଖାପାଖି । ପ୍ରାଚୀନ କାଳରୁ ଗ୍ରୀସ୍‌ରେ ଚିତ୍ରକଳାର ଆଦର ଥିଲା । ପ୍ରଥମ ଶତାବ୍ଦୀର ରୋମାନ୍ ଐତିହାସିକ ପ୍ଲିନିଙ୍କୁ ଯଦି ବିଶ୍ୱାସ କରାଯାଏ, ତେବେ ଖ୍ରୀ. ପୂ ୮ମ ଶତାବ୍ଦୀ ଲିଡ଼ିଆର ରାଜା ଗୋଟିଏ ଚିତ୍ରକୁ ତା'ର ଓଜନର ସୁନା ଦେଇ କିଣିଥିଲେ ।

ଖ୍ରୀ. ପୂ ୫ମ ଶତାବ୍ଦୀର ଭାସ୍କର୍ଯ୍ୟ ଫିଡିଆସ୍ ବା ଇକ୍‌ଟିନସ୍ ( Ictinus )ଙ୍କ ପରି ଥାସୋସ୍ ନଗରର ଚିତ୍ରକର ପଲିଗ୍ନୋଟସ୍‌ଙ୍କ ଖ୍ୟାତି ସାରା ଗ୍ରୀସ୍‌ରେ ବ୍ୟାପି ଯାଇଥିଲା । ଏଥେନ୍‌ସର ଗୋଟିଏ ଜାତୀୟ ପୋର୍ଟିକୋ ( Stoa poecili ନାମରେ ଖ୍ୟାତ ) ରେ ପଲିଗ୍ନୋଟସ୍ ତାଙ୍କର ବିଖ୍ୟାତ ଟ୍ରୟ ପତନର ଶେଷ ଦୃଶ୍ୟଟି ଅଙ୍କନ କରିଥିଲେ । ଟ୍ରୟର କାଳ ରାତିରେ ଗ୍ରୀକ୍‌ମାନେ କୌଶଳରେ ଟ୍ରୟ ନଗର ଭିତରେ ପଶିଗଲେ । ସେଇ ରାତିରେ ଟ୍ରୟରେ ଅଗ୍ନିର ତାଣ୍ଡବ-ଲୀଳା ଚାଲିଲା । ରାଜପଥରେ ରକ୍ତର ସୁଅ ଛୁଟିଲା । ପରଦିନ ସକାଳେ ଭସ୍ମୀଭୂତ ଟ୍ରୟ ଓ କୁଡ଼ କୁଡ଼ ମଡ଼ ଦେଖି ବିଦାୟ ନେଉଥିବା ବିଜେତା ଗ୍ରୀକ୍‌ଙ୍କ ମୁହଁରେ ଯେଉଁ ବିଷାଦ ଫୁଟି ଉଠିଥିଲା, ତା'ର ଚିତ୍ର ଆଙ୍କିଛନ୍ତି ପଲିଗ୍ନୋଟସ୍ ! ଷ୍ଟୋଇକ୍‌ବାଦ୍ ଶିକ୍ଷା ଦେବା ପାଇଁ ଉପଯୁକ୍ତ ସ୍ଥାନ ! ଡେଲ୍‌ଫାଇ ଠାରେ ପଲିଗ୍ନୋଟସ୍ ଟ୍ରୟ ଯୁଦ୍ଧ କାହାଣୀର ଆଉ ଏକ ଚିତ୍ର ଆଙ୍କିଛନ୍ତି । ଟ୍ରୟକୁ ଜିଣି ସୁନ୍ଦରୀ ହେଲେନ୍‌ଙ୍କୁ ଧରି ଜାହାଜରେ ମେନଲଉସ୍ ଫେରୁଛନ୍ତି । ଅନେକ ବୀରଙ୍କ ମଝିରେ ଦାସୀ ପରିଚାରିକା ବେଷ୍ଟିତ ହୋଇ ହେଲେନ୍ ବସିଥାନ୍ତି । ସମସ୍ତଙ୍କ ଦୃଷ୍ଟି ତାଙ୍କର ଉପରେ । ଚିତ୍ରରୁ ମନେହୁଏ, ହେଲେନ୍

ଏହି ପୋର୍ଟିକୋରେ ୧୭୦ ବର୍ଷ ପରେ ଜିନୋ ଦୀର୍ଘକାଳ ଧରି ତାଙ୍କର ଷ୍ଟୋଇକ୍ ଦର୍ଶନବାଦ ଶିକ୍ଷା ଦେଉଥିଲେ ।

ଯେପରି ପ୍ରତ୍ୟେକ ଘରକୁ ବୁଝିଁଛନ୍ତି ! ଏହି ଦୁଇଟି ଚିତ୍ର ପାଇଁ ଚିତ୍ରକର ଏଥେନ୍ସ ବା ଡେଲ୍‌ଫାଇ ଠାରୁ କୌଣସି ଅର୍ଥ ଗ୍ରହଣ କରି ନ ଥିଲେ । ଏଥେନ୍ସ ତାଙ୍କୁ ନାଗରିକ ଅଧିକାର ପ୍ରଦାନ କଲା । ଗ୍ରୀସ୍‌ରେ ସେ ଯେଉଁ ନଗରକୁ ଯାଉଥିଲେ । ସେଠାରେ ତାଙ୍କୁ ବିପୁଳ ଅଭ୍ୟର୍ଥନା ମିଳୁଥିଲା ।

ଗ୍ରୀକ୍ ନାଟକର ବିକାଶର ପ୍ରଭାବ ଚିତ୍ରକଳା ଉପରେ ପଡ଼ିଥିଲା । ନାଟକାଭିନୟ ପାଇଁ ଏସ୍କିଲସ୍ ଓ ସୋଫୋକ୍ଲିଜ୍ ସିନେରି ଚିତ୍ରଣ କରିବାକୁ ଆଗାଥ୍ରାଚସ୍ ନାମକ ଜଣେ ଚିତ୍ରକରଙ୍କୁ ନିଯୁକ୍ତ କରିଥିଲେ । ଦର୍ଶକଙ୍କର ଦୃଶ୍ୟଭ୍ରମ ସୃଷ୍ଟି କରିବାକୁ ନିଜ ଅଭିଜ୍ଞତାରୁ ଆଗାଥ୍ରାଚସ ତାଙ୍କ ଅଙ୍କନରେ ଛାୟାଲୋକ (Light and shade) ଟେକ୍‌ନିକ୍ ବ୍ୟବହାର କରିଥିଲେ । ତାଙ୍କର ନବ ଆବିଷ୍କୃତ ଟେକ୍‌ନିକ୍‌ର ଗୁରୁତ୍ୱ ଚିତ୍ରକରମାନେ କିଛିକାଳ ହୃଦୟଙ୍ଗମ କରିପାରିଲେ ନାହିଁ । ମାତ୍ର ମହାନ୍ ଚିତ୍ରକର ଜକ୍‌ସିସ୍ (Zeuxis) ଛାୟାଲୋକ ଟେକ୍‌ନିକ୍‌ର ଉପଯୁକ୍ତ ବ୍ୟବହାର କରି ଚିତ୍ରକଳା ଜଗତରେ ଆଲୋଡ଼ନ ସୃଷ୍ଟିକଲେ । ଜକ୍‌ସିସ୍‌ଙ୍କ ଜନ୍ମସ୍ଥାନ ଏଥେନ୍ସ ନୁହେଁ । ଖ୍ରୀ:ପୂ ୪୨୪ରେ ଏଥେନ୍ସ ଆସି ସେ ସେଇଠି ବସବାସ କଲେ । ତାଙ୍କର ଆଗମନ ଏଥେନ୍ସରେ ଚହଳ ପକାଇଥିଲା । କାରଣ ଜକ୍‌ସିସ୍ କେବଳ ମହାନ୍ ଚିତ୍ରକର ନୁହନ୍ତି, ସେ ଏକ ଚିତ୍ତାକର୍ଷକ ବ୍ୟକ୍ତିତ୍ୱ । ଅଲିମ୍ପିକ୍ କ୍ରୀଡ଼ା ପ୍ରତିଯୋଗିତା ବେଳେ ତାଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଥିବା ପୋଷାକ ପିନ୍ଧି ସେ ଦର୍ଶକଙ୍କ ଭିତରେ ବୁଲୁଥିଲେ । ତାଙ୍କ ପାଖରେ ପ୍ରଚୁର ଧନ ଥିଲା, ସନ୍ଦେହ ନାହିଁ । ମାତ୍ର ତାଙ୍କର ଶ୍ରେଷ୍ଠ ଚିତ୍ରଗୁଡ଼ିକୁ ଜକ୍‌ସିସ୍ ବିନା ମୂଲ୍ୟରେ ଦାନ କରୁଥିଲେ । ଏହାର କାରଣ ବଡ଼ ସରଳ । ଯେଉଁ ଚିତ୍ରଗୁଡ଼ିକ ଅମୂଲ୍ୟ ସେମାନଙ୍କ ପାଇଁ ମୂଲ୍ୟ ଗ୍ରହଣ କରିବା ଠିକ୍ ହୁଅନ୍ତା କି ?

ସାରା ଗ୍ରୀସ୍‌ରେ ଜକ୍‌ସିସ୍‌ଙ୍କ ସମକକ୍ଷ ଆଉ ଜଣେ ଚିତ୍ରକର ସେତେବେଳେ ଏଥେନ୍ସରେ ଥିଲେ । ତାଙ୍କର ନାମ ପାର୍ରସିହସ୍ । ସେ ମଧ୍ୟ ଜଣେ ବିଦେଶୀ । କେବଳ ପ୍ରତିଭା ଦୃଷ୍ଟିରୁ ଦୁଇ ଚିତ୍ରକର ପରସ୍ପର ସମକକ୍ଷ ନୁହନ୍ତି, ଆର୍ଟିଷ୍ଟ ସୁଲଭ ବଡ଼ିମା ଦେଖାଇବା ଓ ଚାଞ୍ଚଲ୍ୟକର ଘଟଣା ସୃଷ୍ଟି କରିବାରେ ଦୁହେଁ ଥିଲେ ସମାନ । ପାର୍ରସିହସ୍ ମୁଣ୍ଡରେ

ପ୍ରବାଦ ଅଛି, ପାରସିହସ୍ ତାଙ୍କର ବିଖ୍ୟାତ ପ୍ରୋମିଥିଅସ୍ ଚିତ୍ର ଆଙ୍କିବା ବେଳେ ଜଣେ ଦାସକୁ ଯନ୍ତ୍ରଣା ଦେଇ ତାର ଯନ୍ତ୍ରଣା-କାତର ମୁଖଭଙ୍ଗୀ ଲକ୍ଷ୍ୟ କରୁଥିଲେ ।

ଗୋଟିଏ ସୁନା ମୁକୁଟ ପିନ୍ଧୁଥିଲେ ଓ ନିଜକୁ ନିଜେ 'ଚିତ୍ରକରଙ୍କର ରାଜା' ଉପାଧିରେ ଭୂଷିତ କରିଥିଲେ । ତାଙ୍କର 'ଦୌଡ଼ାଳୀ' ଚିତ୍ରଟି ଏତେ ଜୀବନ୍ତ ଯେ କେତେ-ବେଳେ ସେହି ଚିତ୍ରରୁ ଝାଳ ବୋହିପଡ଼ିବ ବା ସେ ଥକି ପଡ଼ିଯିବ, ତାହା ଦେଖିବା ପାଇଁ ଦର୍ଶକମାନେ ଅପେକ୍ଷା କରୁଥିଲେ । ପାରସିହସ୍ 'ଏଥେନ୍ସର ଲୋକ' ନାମରେ ଗୋଟିଏ ବିରାଟ ଚିତ୍ର ଆଙ୍କିଥିଲେ । ଏଇଟି ଏଥେନ୍ସର ଲୋକଙ୍କ ସମ୍ପର୍କରେ ଅତି ସତ୍ୟ ଏକ ଅଦ୍ଭୁତ ଚିତ୍ର । ଏଥେନ୍ସୀୟ ଲୋକେ ନିର୍ଦ୍ଦୟ ଓ ଦୟାଳୁ, ଉଦ୍ଧତ ଓ ବିନମ୍ର, ଦୁର୍ଦ୍ଧର୍ଷ ଓ ଭୀରୁ ତଥା ଦାନୀ ଓ କୃପଣ ଭାବେ ରୂପ ପାଇଥିଲେ ଏଇ ବିରାଟ ଚିତ୍ରଟିରେ । ସେମାନେ କେଡ଼େ ବିଚିତ୍ର ! ଅଜବ୍ ସତରେ ! ପାରସିହସ୍ଙ୍କ ଚିତ୍ରଟି ଦେଖି ଏଥେନ୍ସବାସୀ ଆତ୍ମ ସଚେତନ ହେଲେ ଓ ଆପଣାର ବୈଚିତ୍ର୍ୟ ବିଷୟରେ ପ୍ରଥମ କରି ଜାଣିଲେ ।

ଥରେ ଜକ୍ସିସ୍ଙ୍କ ସହିତ ପାରସିହସ୍ଙ୍କର ଗୋଟିଏ ପ୍ରତିଯୋଗିତା ହେଲା । ବିଚାରକମାନେ ଆସନ ଗ୍ରହଣ କଲାପରେ ପ୍ରଥମେ ଜକ୍ସିସ୍ ତାଙ୍କର ଚିତ୍ର ଦେଖାଇବାକୁ ଡକାଗଲା । ସେ ପେନ୍ଥାଏ ଅଙ୍ଗୁରର ଚିତ୍ର ଆଙ୍କିଥାନ୍ତି । ଏଡ଼େ ଜୀବନ୍ତ ଚିତ୍ର ଯେ ଅଙ୍ଗୁର ଖାଇବାକୁ ଚଢ଼େଇମାନେ ଆସି ପହଞ୍ଚିଗଲେ । ବିଜୟ ସୁନିଶ୍ଚିତ ଜାଣି ଜକ୍ସିସ୍ ପରଦା ଉଠେଇବାକୁ ପାରସିହସ୍ଙ୍କୁ ଅନୁରୋଧ କଲେ । ପରଦା ଅନ୍ତରାଳରେ କି ଚିତ୍ର ଅଛି ବିଚାରକ-ମଣ୍ଡଳୀ ଦେଖନ୍ତୁ । "ଦୟାକରି ଆପଣ ପରଦା ଉଠାଇ ଦେବେ କି ?" ଖୁବ୍ ବିନମ୍ର ସହିତ ପାରସିହସ୍ ଜକ୍ସିସ୍ଙ୍କୁ ଅନୁରୋଧ କଲେ । ପରଦା ଉଠେଇବାକୁ ଯାଇ ଜକ୍ସିସ୍ ହତବାକ୍ ! କାରଣ ଯାହାକୁ ସେ ଓ ସବୁ ବିଚାରକ ପରଦା ବୋଲି ଭାବିଥିଲେ, ତାହା ପରଦା ନୁହେଁ, ପରଦାର ଚିତ୍ର !! ଜକ୍ସିସ୍ଙ୍କ ଚିତ୍ର ଚଢ଼େଇଙ୍କୁ ଭ୍ରମରେ ପକାଇଦେଲା କିନ୍ତୁ ପାରସିହସ୍ଙ୍କ ଚିତ୍ର ଦେଖି ତ ମଣିଷମାନେ ଭ୍ରମିଗଲେ ! ବିସ୍ମୟାଭିଭୂତ ବିଚାରକମାନେ ବାସ୍ତବ ରାଜ୍ୟକୁ ଫେରିବା ପୂର୍ବରୁ ସେମାନଙ୍କ ଘୋଷଣାକୁ ଅପେକ୍ଷା ନ କରି ଜକ୍ସିସ୍ ପାରସିହସ୍ଙ୍କ ବେକରେ ଜୟମାଲ୍ୟ ପିନ୍ଧାଇ ଦେଲେ ।

## ଭାସ୍କର୍ଯ୍ୟ :

ଗ୍ରୀକ୍ ଚିତ୍ରକଳାର ଉଚ୍ଚମାନ ସମ୍ବନ୍ଧରେ ସନ୍ଦେହ ରଖିବାର ପ୍ରଶ୍ନ ନାହିଁ । ମାତ୍ର ଗ୍ରୀକ୍ ଶିଳ୍ପୀ ମାନଙ୍କର ପ୍ରଧାନ ଆକର୍ଷଣ ହେଉଛି ଭାସ୍କର୍ଯ୍ୟ । ଚିତ୍ର ଅପେକ୍ଷା ମୂର୍ତ୍ତିକୁ ଗ୍ରୀକ୍-ମାନେ ଅଧିକ ଆଦର କରୁଥିଲେ । ଗ୍ରୀକ୍ ଘର, ମନ୍ଦିର ଏପରିକି କବରଖାନାରେ ମୂର୍ତ୍ତିମାନେ ଆସ୍ଥାନ ଜମେଇ ଥିଲେ । ଗ୍ରୀକ୍ ତାର ଦେବତାଙ୍କୁ ମୂର୍ତ୍ତି ଆକାରରେ ପୂଜୁଥିଲା । କ୍ରୀଡ଼ାରତ ଶିଶୁ, କଳସି ଧରି ବୁଲୁଥିବା ବାଳିକା, ମୁଗ୍ଧ ନୟନରେ ନିଜ ଅଳଙ୍କାର ଦେଖୁଥିବା ନାରୀ, ପଢ଼ାପିଲାର ଚଉକି, ଚଉକି ତଳେ ଶୋଇଥିବା କୁକୁର—ଏହିପରି ନିତିଦିନିଆ ଜୀବନର ସାଧାରଣ ବିଷୟକୁ ଗ୍ରୀକ୍ ଶିଳ୍ପୀମାନେ ବଡ଼ ସୁନ୍ଦର ଭାବେ ରୂପ ଦେଉଥିଲେ । ଗ୍ରୀସ୍‌ର ଘରେ ଘରେ ଏହିପରି ସାଧାରଣ ମୂର୍ତ୍ତି ସ୍ଥାନ ପାଇଥିଲା ।

ଅର୍ଫିଅସ୍‌ଙ୍କ ଠାରୁ ୟୁରିଡାଇସ୍‌ଙ୍କର ବିଦାୟ, କୃଷିର ପ୍ରଚଳନ ପାଇଁ ଡିମିଟର୍‌ଙ୍କର ସୁବର୍ଣ୍ଣ ବିହନ ଦାନ ଓ ସମୁଦ୍ର ଭିତରୁ ଆଫ୍ରୋଡ଼ାଇଟ୍‌ଙ୍କର ଜନ୍ମ ପ୍ରଭୃତି କେତୋଟି ବିଷୟ ଗ୍ରୀକ୍ ଶିଳ୍ପୀର ଅତି ପ୍ରିୟ । ଅନେକ ଶିଳ୍ପୀ ଏହିସବୁ ବିଷୟକୁ ରୂପଦାନ ଦେଇଛନ୍ତି । ବିଶେଷତଃ ସମୁଦ୍ରରୁ ଉଠି ଆସୁଥିବା ଆଫ୍ରୋଡ଼ାଇଟ୍‌ଙ୍କୁ ଜଣେ ଅଜ୍ଞାତ ଶିଳ୍ପୀ ମାର୍ବଲ ପଥରରେ ଯେପରି ସୁନ୍ଦର ଭାବେ ଖୋଦିତ କରିଛନ୍ତି ତାହା ଅପୂର୍ବ । ସତେକି ଶିଳ୍ପୀର କଳ୍ପନା ପଥର ଦେହରେ ବନ୍ଦୀ ହୋଇଯାଇଛି ! ଏହି ବିରାଟ ମାର୍ବଲ ଖଣ୍ଡଟି ରୋମ୍‌ର ଲୁଡୋଭିସି ଭିଲାରୁ ୧୮୮୭ ଖ୍ରୀଷ୍ଟାବ୍ଦରେ ଉଦ୍ଧାର କରାଯାଇଥିଲା । ତେଣୁ ଏହା ଲୁଡୋଭିସି ଥ୍ରୋନ ନାମରେ ପରିଚିତ । ଏହାର ଗୋଟିଏ ପଟେ ଆଫ୍ରୋଡ଼ାଇଟ୍ ଓ ଅନ୍ୟ ପଟେ ଆଉ ଦୁଇଟି ମୂର୍ତ୍ତି ଖୋଦିତ ।

କାଠ, ହାତୀଦାନ୍ତ, ମାର୍ବଲ୍, ଚୂନପଥର, ରୂପା ଓ ସୁନା—ଏହିସବୁ ଉପକରଣକୁ ନେଇ ମୂର୍ତ୍ତି ଗଢ଼ିବାରେ ଗ୍ରୀକ୍ ଶିଳ୍ପୀ ଧୁରନ୍ଧର ହୋଇ ଉଠିଥିଲା । ତେବେ ବ୍ରୋଞ୍ଜ ମୂର୍ତ୍ତି ଗଢ଼ିବା ପ୍ରତି ତାର ଥିଲା ବିଶେଷ ଆଗ୍ରହ । କାରଣ ଅଧିକାଂଶ ସମୟ ଘର ବାହାରେ ସୂର୍ଯ୍ୟାଲୋକରେ କଟାଉଥିବା ସ୍ୱଭାବତଃ ବଳିଷ୍ଠ ଗ୍ରୀକ୍ ଶରୀରର ରଙ୍ଗ ବ୍ରୋଞ୍ଜର ରଙ୍ଗ ସହିତ ମିଳିଯାଏ । ଠାଣି ମାର୍ବଲ୍‌ରେ ନିହାଣ କାମ କରିବାର ଚ୍ୟାଲେଞ୍ଜ ନେଇ ଗ୍ରୀକ୍ ଶିଳ୍ପୀ ମାର୍ବଲ୍ ପ୍ରତି ଆକୃଷ୍ଟ ହୋଇଥିଲା । ଆୟୋନିଆ ଓ ଏଥେନ୍‌ସର ଶିଳ୍ପୀଙ୍କର ମାର୍ବଲ୍ ମୂର୍ତ୍ତି ଥିଲା ବଡ଼ ପ୍ରିୟ ।

ଗ୍ରୀକ୍ ଶିଳ୍ପୀକୁଳ କେଉଁ କେଉଁ ଟେକ୍‌ନିକ୍‌ରେ ପରୀକ୍ଷା ନିରୀକ୍ଷା କରି ମୂର୍ତ୍ତି ଗଢ଼ିବାର କାରିଗରୀ କୌଶଳରେ ଓସ୍ତାଦ୍ ହୋଇଥିଲେ, ତାର ଇତିହାସ ଆଲୋଚନା କରିବାର ଉଦ୍ଦେଶ୍ୟ ଆମର ନାହିଁ । ଖ୍ରୀ. ପୂ ପଞ୍ଚମ ଶତାବ୍ଦୀ ବେଳକୁ ଗ୍ରୀକ୍ ସ୍ଥାପତ୍ୟର ବିଭିନ୍ନ 'ସ୍କୁଲ୍' ସୁପ୍ରତିଷ୍ଠିତ । ପ୍ରତି ସ୍କୁଲ୍‌ର ଏକ ପରମ୍ପରା ଓ ଗୁରୁମାନେ ଥିଲେ । ତରୁଣ ଶିକ୍ଷାର୍ଥୀ ଜଣେ ଅଭିଜ୍ଞ ଗୁରୁଙ୍କର ଶିଷ୍ୟ ହେଉଥିଲା । ଅତୀତର ଦକ୍ଷତାକୁ ଉତ୍ତରାଧିକାରୀ ସୂତ୍ରରେ ପାଇଥିବା ଓ ତା ସହିତ ନିଜ ଅଭିଜ୍ଞତାକୁ ମିଶାଇଥିବା ଓସ୍ତାଦ୍-ଶିଳ୍ପୀଙ୍କ ଠାରୁ ଯୁବକମାନେ ତାଲିମ୍ ପାଉଥିଲେ । ଗ୍ରୀକ୍ ଶିଳ୍ପର ଉନ୍ନତ ମାନର ଏଇଟା ଏକ ବଡ଼ କାରଣ । ପ୍ରଶ୍ନ ଉଠିପାରେ, ଗୋଟିଏ ସ୍କୁଲ୍‌ରେ ତାଲିମ୍ ପାଇଲେ ଜଣେ ଶିଳ୍ପୀର ସୃଜନ ପ୍ରତିଭାର ପୂର୍ଣ୍ଣ ବିକାଶ ସମ୍ଭବ କି ? ପ୍ରଶ୍ନଟି କଳା, ସଙ୍ଗୀତ, ସାହିତ୍ୟ—ସବୁ କ୍ଷେତ୍ରରେ ଉଠିପାରେ । କଥା ହେଉଛି, ସାଧାରଣ ପ୍ରତିଭା, ପରମ୍ପରା ଓ ତାଲିମ୍‌କୁ ଅପେକ୍ଷା କରେ । କିନ୍ତୁ ପରମ୍ପରା ମହାନ୍ ପ୍ରତିଭାର ପ୍ରତିବନ୍ଧକ ହୁଏ ନାହିଁ । ମହାନ୍ ପ୍ରତିଭା ପରମ୍ପରା ଓ ଗୁରୁ ଠାରୁ ଶିଖିଥିବା ବିଦ୍ୟାକୁ ଅତିକ୍ରମ କରିଯାଏ ।

ଗ୍ରୀକ୍ ଶିଳ୍ପୀ ତା ଜାତିର ମିଥ୍ ଓ ଦେବଦେବୀ ଉପାଖ୍ୟାନରୁ ସୃଜନ ପ୍ରେରଣା ପାଉଥିଲା । ଗ୍ରୀସ୍‌ର ଶିଳ୍ପୀକୁଳ ସେମାନଙ୍କର ଦେବତାଙ୍କୁ ବାରମ୍ବାର ଗଢ଼ିଛନ୍ତି, ସୁନ୍ଦରରୁ ସୁନ୍ଦରତର କରି ଗଢ଼ିବା ପାଇଁ ସାଧନା କରିଛନ୍ତି । ଦେବତାଙ୍କ ବ୍ୟତୀତ ହୃଷ୍ଟପୁଷ୍ଟ ବ୍ୟାୟାମବୀର ଓ ଖେଳାଳିଙ୍କର ଶାରୀରିକ ସୌନ୍ଦର୍ଯ୍ୟକୁ ରୂପ ଦେବା ବିଷୟରେ ସେମାନେ ଆଗ୍ରହୀ ଥିଲେ ।

ଫିଡ଼ିଆସ୍ (ଖ୍ରୀ: ପୂ: ୪୯୦-୪୩୨)—ବିଶ୍ୱକଳା ଇତିହାସରେ ଫିଡ଼ିଆସ୍ ଏକ ବିସ୍ମୟ । ସେ ଗ୍ରୀସ୍‌ର ସର୍ବମହାନ୍ ଶିଳ୍ପୀ । ଫିଡ଼ିଆସ୍ ଜଣେ ଚିତ୍ରକରଙ୍କର ପୁଅ ଓ ପ୍ରଥମରୁ ଚିତ୍ରାଙ୍କନ କରୁଥିଲେ । ପରେ ସେ ସ୍ଥାପତ୍ୟ କ୍ଷେତ୍ରକୁ ଆସିଲେ ।

ଫିଡ଼ିଆସ୍ ପେରିକ୍ଲିଜ୍‌ଙ୍କର ଘନିଷ୍ଠ ବନ୍ଧୁ । ଏଥେନ୍ସର ପୁନର୍ଗଠନ କାର୍ଯ୍ୟ ତଦାରଖ କରିବାରେ ପେରିକ୍ଲିଜ୍ ତାଙ୍କୁ ନିଯୁକ୍ତ କରିଥିଲେ । ମାତ୍ର କେବଳ ତଦାରଖ ଦ୍ୱାରା ତାଙ୍କର ସୃଜନ ପ୍ରତିଭା ସନ୍ତୁଷ୍ଟ ନ ହେବା ସ୍ୱାଭାବିକ । ଫିଡ଼ିଆସ୍ ନିଜ ହାତରେ ପାର୍ଟିନନ୍ (Parthenon)ର ଶହ ଶହ ମୂର୍ତ୍ତି ଖୋଦନ କରିଥିଲେ । ତାଙ୍କର ଅନେକ ଦକ୍ଷ

ସହକର୍ମୀ ଥିଲେ । ସେମାନଙ୍କ ମଧ୍ୟରେ ଆଲ୍‌କାମିନାଜ୍ ଓ ଇକ୍‌ଟିନସ୍‌ଙ୍କ ପରି ବଶିଷ୍ଟ ଶିଳ୍ପୀ ଅନ୍ତର୍ଭୁକ୍ତ । ଏଥେନ୍‌ସର ଆରାଧ୍ୟା ଦେବୀ ଏଥେନାଙ୍କର ତିନୋଟି ସୁବଖ୍ୟାତ ମୂର୍ତ୍ତି ଫିଡ଼ିଆସ ନିଜ ହାତରେ ଗଢ଼ିଥିଲେ । ସେଥିମଧ୍ୟରୁ ଗୋଟିଏ ଏଥେନ୍‌ସର ଉତ୍ତରପଶ୍ଚିମ ଲେମ୍‌ନସ୍‌ରେ ଅବସ୍ଥିତ । ବ୍ରୋଞ୍ଜର ମୂର୍ତ୍ତି ଟିଏ । ସାଧାରଣ ଆକାର । କିନ୍ତୁ ଏତେ ସୁନ୍ଦର ଓ ଲାଳିତ୍ୟପୂର୍ଣ୍ଣ ଯେ ଅନେକ କଳା ସମୀକ୍ଷକ ଏହାକୁ ଫିଡ଼ିଆସ୍‌ଙ୍କର ଶ୍ରେଷ୍ଠ କୃତି ବୋଲି ମନେ କରନ୍ତି । ଯୁଦ୍ଧ ବେଶରେ ଆବିର୍ଭୂତା ନଗରର ରକ୍ଷାକାରିଣୀ ଦେବୀଙ୍କର ସତୁରି ଫୁଟ ଉଚ୍ଚର ଏକ ବିଶାଳ ମୂର୍ତ୍ତି ଫିଡ଼ିଆସ୍‌ଙ୍କର ଦ୍ୱିତୀୟ କୀର୍ତ୍ତି । ଏଥେନା ପ୍ରୋମାଚ୍ଚେସ୍ (Athene Promachos) ନାମରେ ଏହି ମୂର୍ତ୍ତି ଜଗତ ବିଖ୍ୟାତ । ଦେବୀଙ୍କର ଏହି ବିଶାଳ ରୂପ ଦେଖି ଶତ୍ରୁମାନେ ଚକିତ ଯାଉଥିଲେ । ସମୁଦ୍ର ଭିତରେ ନାବିକମାନେ ତାଙ୍କୁ ଦେଖି ଦିଗ ନିର୍ଣ୍ଣୟ କରିପାରୁଥିଲେ । ୩୩୦ ଖ୍ରୀଷ୍ଟାବ୍ଦରେ ଏଥେନା ପ୍ରୋମାଚ୍ଚେସ୍‌ଙ୍କୁ କନ୍‌ଷ୍ଟାଣ୍ଟିନୋପଲ୍ ନିଆଗଲା । ୧୨୦୩ ଖ୍ରୀଷ୍ଟାବ୍ଦରେ ଏକ ବଡ଼ ଧରଣର ଦଙ୍ଗାହଙ୍ଗାମ ସମୟରେ ଏହି ମୂର୍ତ୍ତି ଧ୍ୱଂସ ପାଇଲା ।

ପାର୍ଥିନନ୍ ମଧ୍ୟରେ ଅବସ୍ଥିତ ଏଥେନା ପାର୍ଥେନସ୍ ଦେବୀଙ୍କର ସର୍ବମହାନ୍ ମୂର୍ତ୍ତି । ପ୍ରଜ୍ଞା ଓ ସତୀତ୍ୱର ଦେବୀଙ୍କର ଏହି ପ୍ରତିମୂର୍ତ୍ତିଟି ହାତୀ ଦାନ୍ତରରେ ଗଢ଼ା । ୩୮ ଫୁଟ ଉଚ୍ଚର ଏହି ଶୁଭ୍ର, ଜ୍ୟୋତିର୍ମୟୀ ପ୍ରତିମା ସୁବର୍ଣ୍ଣର ବସ୍ତ୍ର ପରିଧାନ କରି ଦିବ୍ୟ ସୁନ୍ଦର ଦିଶୁଥିଲେ । ଏହି ମୂର୍ତ୍ତିରେ ଅଢ଼େଇ ହଜାର ପାଉଣ୍ଡରୁ ଅଧିକ ସୁନା ଲାଗିଥିଲା ।

ଏଥେନା ପାର୍ଥିନନ୍‌ଙ୍କୁ ଗଢ଼ିବା ବେଳେ ଫିଡ଼ିଆସ୍ ସୁନା ଆତ୍ମସାତ୍ କରିଛନ୍ତି ବୋଲି ଦୁର୍ନାମ ଉଠିବାରୁ ଶିଳ୍ପୀ ଭୟରେ ଅଲିମ୍ପିଆ ପଳାଇଗଲେ । ଫିଡ଼ିଆସ୍‌ଙ୍କ ମୁକ୍ତିପଣ ସ୍ୱରୂପ ଅଲିମ୍ପିଆ ଏଥେନ୍‌ସକୁ ପ୍ରଚୁର ପରିମାଣର ସୁନା ଦେଇ ମୁକୁଳାଇଲା ଓ ତାଙ୍କୁ ଜିଅସ୍‌ଙ୍କ ମନ୍ଦିରର ମୂର୍ତ୍ତି ଗଢ଼ିବାର ଦାୟିତ୍ୱ ଅର୍ପଣ କଲା । ଏଥେନା ପାର୍ଥିନସ୍‌ଙ୍କୁ ଗଢ଼ିବା ପାଇଁ ଏଥେନ୍‌ସୀୟମାନେ ଯେତିକି ପରିମାଣରେ ସୁନା ଓ ହାତୀଦାନ୍ତ ଫିଡ଼ିଆସ୍‌ଙ୍କ ଜିମା ଦେଇଥିଲେ ଅଲିମ୍ପ ଆବାସୀ ତା ଠାରୁ ଅଧିକ ମୂଲ୍ୟର ସୁନା ତାଙ୍କ ଦାୟିତ୍ୱରେ ଛାଡ଼ିଦେଲେ । ମନ୍ଦିରରେ ଜିଅସ୍‌ଙ୍କର ଷାଠିଏ ଫୁଟ ଉଚ୍ଚର ମୂର୍ତ୍ତି ସ୍ଥାପିତ ହେବା ପରେ

ନଗରବାସୀ ଦେବରାଜଙ୍କୁ ଦର୍ଶନ କରି ଚମତ୍କୃତ ହେଲେ । ବସିବା ଭଙ୍ଗୀରେ ଦେବାଧି- ପତିଙ୍କର ଅପୂର୍ବ ବିଗ୍ରହ । ଖୁଣିବାର କିଛି ନାହିଁ । ତଥାପି ଦେବତା ଆବିର୍ଭୂତ ହୋଇଥିବା ଏହି ମୂର୍ତ୍ତିଙ୍କୁ ଦର୍ଶନ କରି କେତେଲୋକ ଶିଳ୍ପୀଙ୍କର ଏକମାତ୍ର ଦୋଷ କାଢ଼ୁଥିଲେ । କଥା ହେଉଛି, ଦେବତା ଯଦି ଛିଡ଼ା ହୋଇ ପଡ଼ନ୍ତି ତେବେ ତାଙ୍କର ମସ୍ତକ ମନ୍ଦିରର ଚୂଳ ଫଟେଇ ବାହାରିବ । ମନ୍ଦିରଟା ଭାଙ୍ଗି ଯିବ ଯିନା ! ଏତେବଡ଼ ଶିଳ୍ପୀଙ୍କୁ ଏ କଥାଟା ବାଗିଲ ନାହିଁ !

ଜିଅସ୍‌ଙ୍କ ଡାହାଣ ହାତରେ ଗୋଟିଏ ଶ୍ରେଷ୍ଠ ବିଜୟୀର ମୂର୍ତ୍ତି ଶୋଭା ପାଉଥିଲା । ଏଇଟି ସୁନା ଓ ହାତୀଦାନ୍ତରେ ନିର୍ମିତ । ବାମ ହାତରେ ଦେବରାଜ ବହୁ ମୂଲ୍ୟବାନ୍ ହୀରାମୋତି ଖଚିତ ଦଣ୍ଡ ଧରିଥିଲେ । ତାଙ୍କର ସୁବର୍ଣ୍ଣ ପରିଧେୟରେ ଅତି ସୁନ୍ଦର ସୂକ୍ଷ୍ମ କାମ ହୋଇଥାଏ । ପାଦରେ ସୁବର୍ଣ୍ଣର ପାଦୁକା । ସୁନା ହାତୀଦାନ୍ତ ଓ ଶାଗୁଆନ୍ କାଠରେ ନିର୍ମିତ ସିଂହାସନରେ ଦେବରାଜ ଆବୋହଣ କରିଥାଆନ୍ତି । ଋରିପଟେ ଆପୋଲୋ, ଆର୍ଟିମିଜ୍ ପ୍ରଭୃତି, କେତେକ ଦେବଦେବୀ ଦଣ୍ଡାୟମାନ୍ । ଫିଡିଆସ୍ ଏହି ମୂର୍ତ୍ତି ନିର୍ମାଣ କରୁଥିବାର ସମ୍ବାଦ ଗ୍ରୀସ୍‌ର ସୀମା ଅତିକ୍ରମ କରି ବ୍ୟାପୀ ଯାଇଥାଏ । ମୂର୍ତ୍ତିଙ୍କୁ ଗଢ଼ି ସାରି ଫିଡ଼ିଆସ୍ ଦେବରାଜଙ୍କୁ ପ୍ରାର୍ଥନା କଲେ । ଦେବତାଙ୍କର ସନ୍ତୋଷର ବାର୍ତ୍ତା ସ୍ୱରୂପ ମୂର୍ତ୍ତି ପାଖରେ ବଜ୍ରପାତ ହୋଇଥିଲା । ବଜ୍ର ଜିଅସ୍‌ଙ୍କ ଅସ୍ତ୍ର ।

ଜିଅସ୍‌ଙ୍କର ଏହି ଅପୂର୍ବ ମୂର୍ତ୍ତିର ରୂପ ବର୍ଣ୍ଣନାକୁ ଯାଇ କବିମାନେ ମୂକ ପାଲଟିଛନ୍ତି । ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଏହି ମୂର୍ତ୍ତି ଅନ୍ୟତମ ।

ଫିଡ଼ିଆସ୍‌ଙ୍କ ଅନ୍ତେ ତାଙ୍କର ସୁଯୋଗ୍ୟ ଶିଷ୍ୟମାନେ ଗ୍ରୀକ୍ ଶିଳ୍ପର ଠେକ ବଜାୟ ରଖିଥିଲେ ।

## ଏଥେନ୍‌ସର ପୁନର୍ଗଠନ :

ଖ୍ରୀ.ପୂ ୫ମ ଶତାବ୍ଦୀ ଓ ତା ପୂର୍ବରୁ ଗ୍ରୀସ୍‌ରେ ଅନେକ ସୁଦୃଶ୍ୟ, କାରୁକାର୍ଯ୍ୟ ମଣ୍ଡିତ ଅଟ୍ଟାଳିକା ଓ ମନ୍ଦିର ପ୍ରଭୃତି ନିର୍ମିତ ହୋଇଥିଲା । ମାତ୍ର ପାରସ୍ୟସେନା ନଗରକୁ ଜାଳି ଦେବା ପରେ ପେରିକ୍ଲିଜ୍‌ଙ୍କ ଇଚ୍ଛାନୁସାରେ ଗ୍ରୀକ୍ ଶିଳ୍ପୀକୁଳ ଏଥେନ୍‌ସକୁ କଳାର ଏକ

ସ୍ୱପ୍ନନଗରୀ ରୂପେ ଗଢ଼ିଦେଲେ । ଜଣେ ସମ୍ରାଟ ମନ୍ଦିର ତୋଳିବା ବା ନଗର ଗଢ଼ିବା ପାଇଁ ପ୍ରଚୁର ଅର୍ଥ ବ୍ୟୟ କରିଥିବାର ଦୃଷ୍ଟାନ୍ତ ରହିଛି । ମାତ୍ର ଗୋଟିଏ ଗଣତାନ୍ତ୍ରିକ ନଗରର ସାଧାରଣ ଲୋକେ ରାଜକୋଷରୁ ଏତେ ପରିମାଣର ଅର୍ଥ କଳାର ପରିପ୍ରକାଶ ପାଇଁ ବ୍ୟୟ କରିବାକୁ ଭୋଟ ଦେବା ଇତିହାସରେ ଏକ ବିରଳ ଦୃଷ୍ଟାନ୍ତ । ପାର୍ଥିନନ୍‌ରେ ବୟାଳିଶ ଲକ୍ଷ ଡଲାର୍ ଖର୍ଚ୍ଚ ହୋଇଥିଲା । ଏଥେନା ପାର୍ଥିନସ୍‌ଙ୍କ ମୂର୍ତ୍ତିକୁ ମାର୍ବଲ୍‌ରେ ଗଢ଼ିବାକୁ ଫିଡିଆସ୍ ଚାହୁଁଥିଲେ । ମାତ୍ର ଆରାଧ୍ୟା ଦେବୀଙ୍କୁ ହାତୀଦାନ୍ତ ଓ ସୁନାରେ ଗଢ଼ିବାକୁ ଏଥେନ୍‌ସବାସୀ ଦାବୀ କରିଥିଲେ । ମୂର୍ତ୍ତି ଗଢ଼ାରେ ଖର୍ଚ୍ଚ ହେଲା ଷାଠିଏ ଲକ୍ଷ ଡଲାର୍ । ଏଥେନସ ଓ ପିରିଅସ୍‌ରେ ଅନ୍ୟାନ୍ୟ ଶ୍ରେଷ୍ଠ ଶ୍ରେଷ୍ଠ ମୂର୍ତ୍ତି ଇତ୍ୟାଦି ଗଢ଼ିବାରେ ପ୍ରାୟ ଦୁଇକୋଟି ଡଲାର୍ ଓ ସାଜସଜ୍ଜାରେ ଦେଢ଼କୋଟି ଡଲାର୍ ଖର୍ଚ୍ଚ ହୋଇଗଲା । ଖ୍ରୀ: ପୂ ୪୪୭ରୁ ୪୩୧ ଏହି ଷୋହଳ ବର୍ଷରେ ମନ୍ଦିର ତୋଳା, ମୂର୍ତ୍ତିଗଢ଼ା, ସର୍ବସାଧାରଣ ଅଟ୍ଟାଳିକା ନିର୍ମାଣ ଓ ସାଜସଜ୍ଜାରେ ଏଥେନ୍‌ସ ଆସେମ୍ବ୍ଲି ପାଞ୍ଚଶହ ଛଅସ୍ତରୀ ଲକ୍ଷ ଡଲାର୍ ମଞ୍ଜୁର କରିଥିଲା ।

ଗ୍ରୀକ୍ ମୁଦ୍ରାମାପରେ ପାର୍ଥିନନ୍ ପାଇଁ ସାତଶହ ଟାଲେଣ୍ଟ ଖର୍ଚ୍ଚ ହୋଇଥିଲା । ଗୋଟିଏ ଟାଲେଣ୍ଟର ମୂଲ୍ୟ ସେତେବେଳେ ପ୍ରାୟ ଅଠାବନ ପାଉଣ୍ଡ ସୁନାର ମୂଲ୍ୟ ସହିତ ସମାନ । ଏହି ହିସାବରେ ଏକ ଟାଲେଣ୍ଟର ମୂଲ୍ୟ ଛଅହଜାର ଡଲାର୍ ।

ଗୋଟିଏ ପୁରୁଷ ଭିତରେ ଏଥେନ୍‌ସର ପୁନର୍ଗଠନ ସମ୍ପୂର୍ଣ୍ଣ ହୋଇଗଲା । କେବଳ ସରକାରୀ କୋଠାବାଡ଼ି, ସର୍ବସାଧାରଣ ମନ୍ଦିର, ପୋର୍ଟିକୋ ଇତ୍ୟାଦି ନୁହେଁ ଲୋକଙ୍କ ପାଇଁ ନୂଆ ବାସଗୃହ, ନଗର ଚତୁଃପାର୍ଶ୍ୱେ ପାଚେରୀ ନିର୍ମାଣ ସମ୍ପୂର୍ଣ୍ଣ ହେବା ଗୋଟିଏ ବଡ଼ ସାଫଲ୍ୟ । ପ୍ରାଚୀନ କାଳର ବିଖ୍ୟାତ ନଗର ନିର୍ମାଣ ଶିଳ୍ପୀ ମିଲଟସର ହିପୋଡାମସ୍ ପିରିଅସ୍ ସହରକୁ ସମ୍ପୂର୍ଣ୍ଣ ନୂତନ ରୂପ ଦେଇ ଗଢ଼ିଲେ । ପୁରୁଣା ଆବୁରୁଜାବୁରୁ ରାସ୍ତାଘାଟ ଭାଙ୍ଗି ସେ ପ୍ରଶସ୍ତ ଓ ସଳଖ ରାସ୍ତାମାନ ତିଆରି କଲେ ।

ଏଥେନ୍‌ସର ଶାସନକେନ୍ଦ୍ର ତଥା ପବିତ୍ର ପୂଜାପୀଠ ଆକ୍ରୋପୋଲିସ୍‌କୁ ଶିଳ୍ପୀମାନେ ବିଶେଷ ଯତ୍ନ ସହକାରେ ଗଢ଼ିଲେ । ଆକ୍ରୋପୋଲିସ୍‌ର ନିର୍ମାଣ କୌଶଳ, ଶୀର୍ଷ ପର୍ଯ୍ୟନ୍ତ ଉଠିବା ପାଇଁ ମାର୍ବଲ୍ ପାହାଚର ରାସ୍ତା, ରାସ୍ତାର ଦୁଇପାର୍ଶ୍ୱେ ସୁନ୍ଦର ସୁନ୍ଦର ମୂର୍ତ୍ତି, ମନ୍ଦିର ଓ ଅଟ୍ଟାଳିକାର ବର୍ଣ୍ଣନା ଏଠାରେ ସମ୍ଭବ ନୁହେଁ । ତେବେ ତାର ଦୁଇଟି ପ୍ରଧାନ ଆକର୍ଷଣ

ସମ୍ବନ୍ଧରେ ସୂଚନା ଦିଆଯାଇପାରେ । ଗୋଟିଏ ହେଉଛି ଓଡ଼ିଅମ୍ ବା ମ୍ୟୁଜିକ୍ ହଲ୍ ଓ ଅନ୍ୟଟି ପାର୍ଥିନନ୍ । ମ୍ୟୁଜିକ୍ ହଲ୍ଟି ଶଙ୍କୁ ( Cone ) ଆକାରର ଗୋଟିଏ ଗମ୍ବୁଜ । ଆକାର ଦୃଷ୍ଟିରୁ ଏଇଟି ଅଭିନବ । ଏହା କାଠରେ ନିର୍ମିତ ହୋଇଥିବାରୁ ଦୀର୍ଘକାଳ ତିଷ୍ଠି ରହି ନ ଥିଲା । ଏଠି ଅନେକ ଦିନ ସଙ୍ଗୀତ ଆସର ଜମେ । ନାଟକାଭିନୟର ରିହର୍ସାଲ୍ ଚାଲେ । ପେରିକ୍ଲିଜ୍ ନିଜେ ଏହି ମ୍ୟୁଜିକ୍-ହଲ୍ ନିର୍ମାଣ କରିବାକୁ ପ୍ରସ୍ତାବ ଦେଇଥିଲେ । ଶଙ୍କୁ ଆକାରର ମ୍ୟୁଜିକ୍ ହଲ୍ ସହିତ ତାଙ୍କ ଲମ୍ବାଳିଆ ମୁଣ୍ଡ ସାଦୃଶ୍ୟ ବ୍ୟଙ୍ଗ ଲେଖକଙ୍କୁ ଭଲ ଖୋରାକ୍ ଯୋଗାଇଥିଲା ।

ଫିଡିଆସ୍ଙ୍କ ତତ୍ତ୍ୱାବଧାନରେ ଇକ୍ଟିନସ୍ ଆକ୍ରୋପୋଲିସ୍‌ରେ ଗୋଟିଏ ମନ୍ଦିର ତୋଳିଲେ । ଦେବୀ ଏଥେନାଙ୍କର ଏହି ମନ୍ଦିରଟି ବେଶ୍ ବଡ଼ । ମନ୍ଦିରର ପଶ୍ଚିମ କୋଣରେ ଥିବା ଗୋଟିଏ କୋଠରୀକୁ ଇକ୍ଟିନସ୍ ଦେବୀଙ୍କର କୁମାରୀ ପୂଜାରିଣୀଙ୍କ ପାଇଁ ନିର୍ଦ୍ଦିଷ୍ଟ କରି ଦେଇଥିଲେ । କୋଠରୀଟି ସେମାନଙ୍କ ମୂର୍ତ୍ତି ରହିବା ପାଇଁ ଉଦ୍ଦିଷ୍ଟ ଥିଲା । ସେ ଏହି କୋଠରୀର ନାମ ରଖିଥିଲେ, 'ton parthenon' । ଗ୍ରୀକ୍ ଭାଷାରେ ପାର୍ଥିନନ୍ର ଅର୍ଥ କୁମାରୀ । ଲୋକମୁଖରେ ସମୁଦାୟ ମନ୍ଦିରଟି ପାର୍ଥିନନ୍ ନାମରେ ପରିଚିତ ହୋଇଗଲା । ଦେବୀ ଏଥେନା ଗୋପ୍ୟ ରହି ପାର୍ଥିନନ୍ଙ୍କର ପ୍ରକାଶ ହେଲା ! ଶେଷକୁ ନାମ ରହିଲା ଏଥେନା ପାର୍ଥିନନ୍ ।

ପାର୍ଶୀମାନେ ଆକ୍ରୋପୋଲିସ୍କୁ ପୋଡ଼ି ଦେଇଥିଲେ । ସେହି ସ୍ଥାନରେ ନୂତନ ଆକ୍ରୋପୋଲିସ୍ ନ ଗଢ଼ିବା ନଗର ପ୍ରତି ଅଶୁଭ ବୋଲି ପ୍ରଜାପଣ୍ଡାମାନେ କହିବା ସତ୍ତ୍ୱେ ପେରିକ୍ଲିକ୍ ଅନ୍ୟସ୍ଥାନରେ ଏହାର ନିର୍ମାଣ ଆରମ୍ଭ କଲେ । ଓଡ଼ିଅମ୍ ଓ ଏଥେନା ପାର୍ଥିନନ୍ଙ୍କ ମନ୍ଦିର ନୂତନ ଆକ୍ରୋପୋଲିସ୍ର ଦୁଇଟି ବିଶେଷ ଆକର୍ଷଣ ।

ଧଳା ମାର୍ବଲ୍ରେ ପାର୍ଥିନନ୍ ମନ୍ଦିର ଗଢ଼ା । ମାର୍ବଲ୍ ଖଣ୍ଡସବୁ ଏଡ଼େ କୌଶଳରେ ଓ ସୂକ୍ଷ୍ମ ଭାବେ କଟାଯାଇଥିଲା ଯେ ସେ ଗୁଡ଼ିକୁ ଯୋଡ଼ିବା ପାଇଁ କୌଣସି ଲେପ ଆବଶ୍ୟକ ହୋଇ ନ ଥିଲା । ଖଣ୍ଡମାନଙ୍କୁ ବିନା ଲେପରେ ଯୋଡ଼ିବା ନିଶ୍ଚିତ ଭାବେ ପୋଖତ କାରିଗରୀ କୌଶଳର ପରିଚୟ ଦିଏ । ସମୁଦାୟ ମନ୍ଦିରଟି ଯେପରି ଗୋଟିଏ ପଥରରେ ଗଢ଼ା ସେଇ ଭାବ ସୃଷ୍ଟି କରି ଦର୍ଶକ ଉପରେ ଅଦ୍ଭୁତ ପ୍ରଭାବ ପକାଉଥିଲା । ସେତିକି ନୁହେଁ, ମନ୍ଦିରର ନିର୍ମାଣଶୈଳୀ ବିଜ୍ଞାନ ଓ ଗଣିତରେ ଉନ୍ନତ ଜ୍ଞାନର ଅପେକ୍ଷା ରଖେ । ସମୁଦାୟ ପାର୍ଥିନନ୍ ଏଡ଼େ ଜୀବନ୍ତ ଓ କମନୀୟ ଯେ ଗ୍ରୀକ୍ ଶିଳ୍ପୀ ଏଇଠି ଶିଳାକୁ ଜୀବନ୍ୟାସ ଦେଇଛି ବୋଲି କୁହାଯାଏ ।

ଅଲମ୍ପିଆ ପର୍ବତରେ ଦେବରାଜ ଜିଅସ୍ ଦେବତାଙ୍କର ବୈଠକ ଡାକନ୍ତି । ପାର୍ଥିନନ୍ ମନ୍ଦିରଟି ସବୁ ଅଲମ୍ପିଆନ୍ ଦେବଦେବୀଙ୍କର ମିଳନ ପୀଠ ହୋଇଥିଲା । ପାର୍ଥିନନ୍ ଭିତରେ ଜଣେ ଜଣେ ଦେବତାଙ୍କର ବିଭିନ୍ନ ଭଙ୍ଗୀରେ ଏକାଧିକ ମୂର୍ତ୍ତି । ଏଥେନ୍ସର ଶିଳ୍ପୀକୁଳ ପ୍ରଧାଣ ମୂନରେ ପୌରାଣିକ ଉପାଖ୍ୟାନଗୁଡ଼ିକୁ ପାର୍ଥିନନ୍‌ରେ ଲେଖିଗଲେ । କେବଳ ଦେବତା ନୁହନ୍ତି, ମନ୍ଦିରର ମଣିଷ ଓ ପଶୁମାନଙ୍କୁ ମଧ୍ୟ ଗ୍ରୀକ୍ ଶିଳ୍ପୀ ଅପୂର୍ବ ସୁନ୍ଦର କରି ଗଢ଼ିଥିଲା । ପୂର୍ବ ପଟେ ଉଦୟ ଭାନୁଙ୍କର ରଥକୁ ଅଶ୍ୱମାନେ ଟାଣି ଆଣୁଛନ୍ତି । ପଶ୍ଚିମରେ ଚନ୍ଦ୍ରଙ୍କର ରଥ । ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ରଥରେ ଯୋଗ୍ୟ ହୋଇଥିବା ଅଶ୍ୱମାନେ ଅପୂର୍ବ ସୁନ୍ଦର । ସୂର୍ଯ୍ୟଙ୍କ ରଥକୁ ଦ୍ରୁତ ବେଗରେ ଟାଣି ନେଉଥିବା ଅଶ୍ୱଙ୍କର ଆଖି, ଫୁଲି ଉଠୁଥିବା ନାକପୂଡ଼ା, ଅଳ୍ପ ମେଲା ପାଟି ଅତି ଜୀବନ୍ତ । ଏପରି ନିଖୁଣ, ଜୀବନ୍ତ ଅଶ୍ୱ ଅନ୍ତତଃ ପାଶ୍ଚାତ୍ୟର ଶିଳ୍ପ ଇତିହାସରେ ଅତୁଳନୀୟ ।

ଫିଡ଼ିଆସ୍‌ଙ୍କ ସମୟକୁ ଗ୍ରୀକ୍ ଦେବଦେବୀଙ୍କର ଦିନ ସରି ଆସୁଥିଲା । ଗ୍ରୀସ୍‌ରେ ଜ୍ଞାନ ବିଜ୍ଞାନର ଯୁଗ ଆରମ୍ଭ ହୋଇଯାଇଥାଏ । ଲୋକଙ୍କ ଜୀବନରୁ ଦେବତାମାନେ ଦୂରେଇ ଯାଉଥାନ୍ତି । ମହାକାଳରେ ଅସ୍ତ ଯିବା ପୂର୍ବରୁ ସତେକି ସେମାନେ ଫିଡ଼ିଆସ୍ ଓ ତାଙ୍କର ସମଧର୍ମୀଙ୍କ ସୃଷ୍ଟି ଭିତରେ ଛପିଗଲେ ! ଗୋଟାଏ ବଳିଷ୍ଠ ଜାତିରେ ଅନ୍ତର୍ବୋଧ ଯଥା ସମୟରେ ତାର ମହାନ୍ ଶିଳ୍ପୀଙ୍କ ସାହାଯ୍ୟରେ ଦେବତାମାନଙ୍କୁ କଳା ଭିତରେ ବଞ୍ଚାଇ ରଖିଲା ।

ଗ୍ରୀସ୍‌ର ଶ୍ରେଷ୍ଠ କଳା ସମ୍ପଦକୁ କାଳ ଜୀର୍ଣ୍ଣ କରି ଦେଇଛି । ମାତ୍ର ଗ୍ରୀକ୍ ସ୍ଥାପତ୍ୟ ଯେ ବିଭିନ୍ନ ଦେଶର ଓ ଯୁଗର କଳାକାରଙ୍କୁ ପ୍ରଚୁର ପ୍ରେରଣା ଓ ପଥ୍‌ପ୍ରଦର୍ଶନ ଦେଇଛି ସେଥିରେ ସନ୍ଦେହ ନାହିଁ ।

ଗ୍ରୀକ୍ ସାହିତ୍ୟ ଓ ଦର୍ଶନ ସମ୍ପର୍କରେ ସ୍ୱତନ୍ତ୍ର ଅଧ୍ୟାୟରେ ଆଲୋଚନା କରାଯାଉଛି ।



# ଗ୍ରୀକ୍ ନାଟକ

※ ସବୁ ମହାନ୍ ନାଟ୍ୟକାର ଏଥେନ୍‌ସରେ ଜନ୍ମ ହୋଇଥିଲେ ।

※ ଡାଇଓନସସ୍‌ଙ୍କ ପୂଜାରୁ ଟ୍ରାଜେଡ଼ିର ସୃଷ୍ଟି ।

※ ଏସ୍କିଲସ୍, ସୋଫୋକ୍ଲିଜ୍ ଓ ୟୁରିପିଡ଼ୀଜ୍ ତିନିଜଣ ମହାନ୍ ଟ୍ରାଜେଡିକାର ।

କଳା, ସାହିତ୍ୟ ଏବଂ ଦର୍ଶନ, ଗ୍ରୀକ୍ ଅନ୍ତଃସତ୍ତ୍ୱର ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର । ପେରିକ୍ଲିଜ୍‌ଙ୍କ ଯୁଗରେ ଏହି ତିନୋଟି କ୍ଷେତ୍ରରେ ଗ୍ରୀସ୍ ମହାନ୍ ସାଫଲ୍ୟ ଅର୍ଜନ କରିଥିଲା ବୋଲି କହିବା ବାହୁଲ୍ୟ ମାତ୍ର । ଗ୍ରୀକ୍ ଜାତିର ସାଫଲ୍ୟ କଳନା କରିବା ଚିତ୍ତାକର୍ଷକ ଓ ଆନନ୍ଦଦାୟକ ହୋଇପାରେ । କିନ୍ତୁ ଏ ଜାତିର ନାଡ଼ିର ଭାଷା ବୁଝିବା, ତାର ଗତିବିଧି ପ୍ରତି ଧ୍ୟାନ ଦେବା ଆମ ପାଇଁ ଏକ ରୋମାଞ୍ଚକର ଅନୁଭୂତି । ସ୍ୱର୍ଣ୍ଣଯୁଗ ଗ୍ରୀସ୍‌ର ସ୍ୱପ୍ନ, ଆକାଂକ୍ଷା, ସଙ୍କଟ, ଦ୍ୱନ୍ଦ୍ୱ ଓ ଗତିଶୀଳତା—ମୋଟ ଉପରେ ସେ ଜାତିର ଜୀବନ ମଞ୍ଚରେ ଅଭିନୀତ ନାଟକର ଦର୍ଶକ ହୋଇପାରିଲେ ଆମେ ଅଧିକ ଉପକୃତ ହେବୁ ।

ଧର୍ମରୁ ପ୍ରେରଣା ପାଇ ଗ୍ରୀକ୍ କଳାର ସୃଷ୍ଟି । ଗ୍ରୀକ୍ କଳା ଧର୍ମ ପ୍ରତି ବିଶ୍ୱସ୍ତ ଓ ଅନୁରକ୍ତ । କିନ୍ତୁ ପେରିକ୍ଲିଜ୍‌ଙ୍କ ବେଳକୁ ଗୋଟିଏ ପଟେ ଧର୍ମ ଏବଂ ଅନ୍ୟ ପଟେ କ୍ରମ-ବର୍ଦ୍ଧିଷ୍ଣୁ ଜ୍ଞାନ ଓ ନୂତନ ଜୀବନୋପଲବ୍ଧି ମଧ୍ୟରେ ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼ିଲା । ଗ୍ରୀକ୍ ନାଟକ ଏହି ମହାନାଟକର ଅଂଶ । ଧର୍ମ ବିଶ୍ୱାସର ରଜ୍ଜୁ ଶିଥିଳ ହୋଇଯାଉଛି

ବୋଲି ଅନୁଭବ କରି ଏବଂ ଦେବତା ଘଣ୍ଟ ଘୋଡ଼େଇ ରଖିଥିବା ନିରୁପଦ୍ରବ ଜୀବନରୁ ଫିଟିଯାଇଥିବା ଗ୍ରୀକ୍ ସଂଶୟର ଇଲାକାରେ ବୁଲି ନିଷିଦ୍ଧ ଫଳ ଚାଖିବା ଦ୍ୱାରା ଜୀବନର କେଉଁ ଟ୍ରାଜେଡ଼ିକୁ ଅନୁଭବୀ ଗ୍ରୀକ୍ ଅଙ୍ଗେ ନିଭେଇଲେ, ସେଇଥିରୁ ତାକୁ ଟ୍ରାଜେଡ଼ି ରଚନାର ଉପାଦାନ ମିଳିଗଲା । ପାରସ୍ୟ ଯୁଦ୍ଧରେ ଗ୍ରୀସ୍‌ର ବିପୁଳ ବିଜୟ, ବିଜୟୋତ୍ତର ଉନ୍ନତି, ପ୍ରଗତି, ଜ୍ଞାନବିଜ୍ଞାନ କ୍ଷେତ୍ରରେ ନୂଆ ନୂଆ ସୃଷ୍ଟି ସତ୍ତ୍ୱେ ଗ୍ରୀକ୍ ଜାତି ଟ୍ରାଜେଡ଼ି ପ୍ରତି ଆକୃଷ୍ଟ ହେଲା କାହିଁକି ? ଅନେକ ସମୟରେ ଏହିପରି ପ୍ରଶ୍ନ ଉଠେ । ଏଥିରୁ କେବଳ ଜୀବନ ସମ୍ବନ୍ଧରେ ଅଗଭୀର ଅଭିଜ୍ଞତା ଧରାପଡ଼େ ମାତ୍ର । ଏକଥା ସତ ଯେ, ଖ୍ରୀ. ପୂ. ୫ମ ଶତାବ୍ଦୀର ଗ୍ରୀକ୍ ଆରାମଦାୟକ ଆପୋଲୋୟ ଜାହାଜରେ ବସିଥିଲା । ସୁଦକ୍ଷ ନାବିକମାନେ ଏହାର ଚାଳକ । କିନ୍ତୁ ଜାହାଜଟି ଯେ ଥଳକୂଳ ନ ଥିବା ଭୟଙ୍କର ଡାଇଓନିସସୀୟ ସମୁଦ୍ର ମଝିରେ ଭାସୁଛି—ଗ୍ରୀକ୍ ଦୃଷ୍ଟିଶକ୍ତି ତାହା ଦେଖିପାରିବା ଭଳି ତୀକ୍ଷ୍ଣ ହୋଇ ସାରିଥିଲା ।

ଗ୍ରୀକ୍ ଆର୍ଟିଷ୍ଟର ଅନ୍ତର୍ବୋଧ ସଚେତ କରି ଦେଇଥିଲା ଯେ ନୂତନ ଜ୍ଞାନବିଜ୍ଞାନ ଓ ଜିଜ୍ଞାସାର ଆଘାତରେ ଦେବଦେବୀଙ୍କର ଆସନ ଦୋହଲି ଯାଉଛି । ସେଥିପାଇଁ ଦେବଦେବୀ-ଗଣ ମଣିଷ ହୃଦୟରୁ ଆସନଚ୍ୟୁତ ହେବା ପୂର୍ବରୁ ଶିଳ୍ପୀମାନେ ସେମାନଙ୍କ ପାଇଁ କଳାର ମନ୍ଦିର ତୋଳି ଦେଲେ । ଗ୍ରୀକ୍ ସାହିତ୍ୟ ଓ ନାଟକରେ ନୂତନ ଚିନ୍ତା ଓ ପ୍ରାଚୀନ ବିଶ୍ୱାସ ମଧ୍ୟରେ ସଂଘର୍ଷ ସ୍ପଷ୍ଟ ଭାବେ ଦେଖି ହୁଏ । ଏବଂ ପ୍ରାଚୀନ ଧର୍ମଧାରଣା ଉପରେ ନୂତନ ଜିଜ୍ଞାସା ଓ ସଂଶୟର ବିଜୟ ଘୋଷଣା ଗ୍ରୀକ୍ ଦର୍ଶନ ରୂପରେ ପ୍ରକାଶ ପାଇଛି । ଗ୍ରୀକ୍ ମନୋ-ରାଜ୍ୟରେ ଚାଲିଥିବା ଝଡ଼କୁ ବାଦ୍ ଦେଇ କେବଳ ସେ ଜାତିର ଖୁସିକୁ ବିଚାର କରିବା ଏକ ଅଗଭୀର ବିଚାର ।

ଗ୍ରୀକ୍ ନାଟକର ଭିତ୍ତି ହେଉଛି ଧର୍ମ । ମାତ୍ର ଧର୍ମର ସୀମା ଭିତରେ ଗ୍ରୀକ୍ ନାଟକ ଆବଦ୍ଧ ହୋଇ ରହିଲା ନାହିଁ । ଡାଇଓନିସସ୍‌ଙ୍କ ପୂଜାବିଧି ଭିତରୁ ଟ୍ରାଜେଡ଼ିର ଜନ୍ମ । ବସନ୍ତକାଳରେ ଡାଇଓନିସସ୍‌ଙ୍କ ଭକ୍ତମାନେ ମହା ଉତ୍ସାହ ଓ ଉଲ୍ଲାସର ସହିତ ଦେବତାଙ୍କର ପୂଜା କରନ୍ତି । ରାତିରେ ବଣ ପାହାଡ଼ରେ ସେମାନେ ଦଳ ଦଳ ହୋଇ ସ୍ୱୈରଭାବେ ନାଚନ୍ତି ଓ ଗାଆନ୍ତି । ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀରେ ଡାଇଓନିସସ୍ ଏଥେନ୍ସରେ ପ୍ରବେଶ କଲେ । ଇକାରିଆ ନାମକ ଗ୍ରାମରେ ତାଙ୍କର ଆସ୍ଥାନ ଜମିଲା । ଯାତ୍ରୀମାନେ ହେଉଛନ୍ତି

ଡାଇଓନାଇସସ୍‌ଙ୍କର ସେବକ ଓ ଅନୁଚର । ଭକ୍ତମାନେ ଛେଳି ଚମଡ଼ା ପିନ୍ଧି ସାଟୀର ବେଶ ହୋଇ ନାଚଗାଇ ଦେବତାଙ୍କ ପୂଜା କରନ୍ତି । ଦେବତାଙ୍କ ବେଦୀ ଚାରିପଟେ ସେମାନେ



[ଏକ ପାତ୍ରାଙ୍କିତ ଚିତ୍ରରେ ଛାଗ-ଗୀତର ଦୃଶ୍ୟ । ବାମ ପ୍ରାନ୍ତରେ ଘୋଷକ ଛାଗଗୀତ ଆରମ୍ଭର ଘୋଷଣା କରିବା ପରେ ଗୀତନୃତ୍ୟ ଆରମ୍ଭ ହୋଇଯାଇଛି ।]

ଯେଉଁ 'କୋରସ୍' ଗାଉଥିଲେ ତାହା ଛାଗ-ଗୀତ (tragc-dia) ନାମରେ ପରିଚିତ । ଯେଉଁ କୋରସ୍ ବୋଲି ଯାଉଥିଲି ତାହା ଡାଇଓନାସସ୍‌ଙ୍କ ଚରିତ ବା ମହିମା ସମ୍ବନ୍ଧୀୟ ହେବା ସ୍ୱାଭାବିକ୍ । କବିମାନେ ଏହି କୋରସ୍ ରଚନା କରୁଥିଲେ ।

ଆଟିକାରେ ଡାଇଓନସସ୍‌ଙ୍କର ପାରମ୍ପରିକ ଛାଗ-ଗୀତର ବିବର୍ତ୍ତନ ଆରମ୍ଭ ହେଲା । ଖ୍ରୀ· ପୂ ଷଷ୍ଠ ଶତାବ୍ଦୀରେ ଇକାରିଆର ଥେସ୍‌ପିସ୍ (Thespis) ଛାଗ-ଗୀତିକୁ ନାଟକ ସୋପାନକୁ ନେବା ଦିଗରେ ପ୍ରଥମ ବିଶିଷ୍ଟ ପଦକ୍ଷେପ ନେଇଥିଲେ । ଥେସ୍‌ପିସ୍ ଥିଲେ କୋରସ୍‌ରେ ଟ୍ରେନିଂ ଦେଉଥିବା ଜଣେ ଅଭିଜ୍ଞ ନିର୍ଦ୍ଦେଶକ । ଡୋରିଆନ୍‌ମାନେ ସୃଷ୍ଟି କରିଥିବା ଟ୍ରାଜିକ୍ କୋରସ୍ କୌଣସି ପ୍ରକାରରେ ଆଟିକାରେ ପହଞ୍ଚି ସାରିଥାଏ । କୋରିଲ୍

ନୃତ୍ୟ-ଗୀତରେ ଜଣେ ଅଭିନେତାଙ୍କୁ ଯୋଡ଼ିବା ଥେସ୍‌ପିସ୍‌ଙ୍କ ଅବଦାନ । କୋରସ୍‌ର ମୁଖ୍ୟ ଗାୟକ ସହିତ ଅଭିନେତାଙ୍କର ଉକ୍ତି ପ୍ରତ୍ୟୁକ୍ତି ଛାଗ-ଗୀତିକୁ ନାଟକର ନିକଟତର କଲା । ଥେସପିସ୍ ମୁହଁରେ ମୁଖା ପିନ୍ଧି ଅଭିନେତା ଭୂମିକାରେ ଅବତୀର୍ଣ୍ଣ ହେଉଥିଲେ * । ଫଳରେ ପରବର୍ତ୍ତୀ କାଳରେ ମଧ୍ୟ ଗ୍ରୀସ୍‌ରେ ଅଭିନେତାମାନେ ମୁଖା ପିନ୍ଧିବାର ପରମ୍ପରା ଚାଲୁ ରହିଲା । ମୁଖା ପିନ୍ଧୁଥିବା ହେତୁ ମୁଖା ବଦଳାଇ ଥେସ୍‌ପିସ୍ ବିଭିନ୍ନ ଅଭିନେତା (ମଞ୍ଚ ଉପରେ ଏକ ସମୟରେ ଜଣେ ଅଭିନେତା ରହିବାର ବିଧି) ଭୂମିକାରେ ଦର୍ଶକଙ୍କୁ ମୁଗ୍ଧ କରୁଥିଲେ ।

କୋରସ୍ ଲିରିକ୍ ବା ଗୀତିକବିତା ଆକାରରେ ରଚିତ ହେଉଥିଲା । ପାରୋସ୍‌ର ଆର୍କିଲୋଚସ୍ (ଖ୍ରୀ ପୂ ୭୦୦-୬୫୦) କୋରସ୍ ଗୀତର ରଚୟିତା ଭାବେ ସୁପରିଚିତ । ଗୀତିକବିତାରେ ବ୍ୟକ୍ତିଗତ ଅନୁଭବ ପ୍ରାଧାନ୍ୟ ପାଏ ଓ ଏହା ସମବେତ ସଙ୍ଗୀତ ପାଇଁ ଉପଯୁକ୍ତ ନୁହେଁ । ଡୋରିଆନ୍‌ମାନେ 'ଛାଗ-ଗୀତ'ର ଉନ୍ନତି ସାଧନ କରିଥିଲେ । ଖ୍ରୀ. ପୂ. ୬୦୦ ବେଳକୁ ଆରିଅନ୍ ନାମକ ଜଣେ କବି ଏକ ପ୍ରକାର ଟ୍ରାଜିକ୍ ଗୀତି ଲେଖିଲେ । ଟ୍ରାଜିକ୍ କୋରସ୍ ଛାଗ-ଗୀତ ହେବାପାଇଁ ଅଧିକ ଉପଯୁକ୍ତ ।

ଛାଗଳ ଗୀତରେ ଥେସ୍‌ପିସ୍ ଏଇ ଯେଉଁ ପରିବର୍ତ୍ତନ ଆଣିଲେ ତା ଫଳରେ ବଡ଼ ଧରଣର ଗୋଟାଏ ଆଲୋଡ଼ନ ସୃଷ୍ଟି ହେଲା । ଅଭିନେତା ପାଇଁ ଗ୍ରୀକ୍‌ରେ ଯେଉଁ ଶବ୍ଦ ଅଛି, ସେଇଥିରୁ ଏହି ଆଲୋଡ଼ନର କାରଣ ବାରିହୁଏ । ଅଭିନେତା ପାଇଁ ମୂଳ ଗ୍ରୀକ୍ ଶବ୍ଦଟି ହେଉଛି 'ହିପୋକ୍ରେଟ୍'। ଏହିଥିରୁ ଇଂରାଜୀ hypocrite ଶବ୍ଦର ସୃଷ୍ଟି । 'ହିପୋକ୍ରେଟ୍'ର ଆକ୍ଷରିକ ଅର୍ଥ—ଯିଏ ବାସ୍ତବ ଜୀବନରେ ଅଭିନୟ କରେ । ଥେସ୍‌ପିସ୍‌ଙ୍କୁ ଅଭିନେତା ଭୂମିକାରେ ଦେଖିବା ସୋଲନ୍‌ଙ୍କର ସହ୍ୟ ହୋଇ ନ ଥିଲା । କାରଣ ଅଭିନୟ ଦ୍ୱାରା ଜନତାଙ୍କୁ ଭୁଲେଇ ଦିଆଯାଇ ପାରୁଛି ବୋଲି ସୋଲନ୍ ଲକ୍ଷ୍ୟ କରିଥିଲେ । ତେଣୁ ଧରିନେଲେ ଯେ ଅଭିନୟ ଗୋଟାଏ ପ୍ରକାର ଠକାମି । ସୋଲନ୍‌ଙ୍କର ଭୟ ହେଲା, ଅଭିନୟ ଯୋଗୁ କଳା ଅନୈତିକ ହୋଇପଡ଼ିବ । କଳା ଓ ନୈତିକତା ମଧ୍ୟରେ ବିବାଦ ସତେ କେତେ କାଳର ! ସୋଲନ୍ ସତର୍କ କରି ଦେଇଥିଲେ ଯେ ଶୀଘ୍ର ଅଭିନୟ ବାସ୍ତବ ଜୀବନକୁ କଳୁଷିତ କରିବ । ଭୁଲ୍

* କୋରସ୍‌ରେ ଭାଗ ନେଉଥିବା ଗାୟକମାନେ ଆଦ୍ୟରୁ ମୁଖାଧାରୀ ଥିବା ସମ୍ଭବ ।

କଥା ? ଅଲ୍ପଦିନ ଭିତରେ ପିସିଷ୍ଟ୍ରାଟସ୍ ନିଖୁଣ ଅଭିନୟ କରି ଏଥେନ୍ସର ସର୍ବେସର୍ବା ହୋଇଥିଲେ । ନାଟକାଭିନୟର ସେ ଜଣେ ବଡ଼ ପୃଷ୍ଠ-ପୋଷକ । ଡାଇଓନିସସ୍‌ଙ୍କ ପୂଜୋତ୍ସବ ସମୟରେ ନାଟକ ପ୍ରତିଯୋଗିତା ପିସିଷ୍ଟ୍ରାଟସ୍ ଆରମ୍ଭ କରିଥିଲେ ।

ଖ୍ରୀ. ପୂ ପଞ୍ଚମ ଶତାବ୍ଦୀ ଆରମ୍ଭରେ ଏସ୍କିଲସ୍ ଜଣେ ପରିବର୍ତ୍ତେ ଦୁଇଜଣ ଅଭିନେତା ଆଣିଲେ । ସୋଫୋକ୍ଲିଜ୍ ଅଭିନେତାଙ୍କ ସଂଖ୍ୟା ଦୁଇରୁ ତିନିକୁ ବଢ଼ାଇଲେ । ଥେସ୍‌ପିସ୍ ଗ୍ରାମଗୀତିକୁ ଟ୍ରାଜେଡ଼ି ଆଡ଼କୁ ମୁହେଁଇ ଦେବାର ପଚାଶ ବର୍ଷ ଭିତରେ ତିନିଜଣ ମହାନ୍ ଟ୍ରାଜେଡ଼ିକାର ଏଥେନ୍ସରେ ଜନ୍ମଗ୍ରହଣ କରିବା ଇତିହାସର ଏକ ବିସ୍ମୟ । ଏସ୍କିଲସ୍ (୫୨୫-୪୫୬ଖ୍ରୀ.ପୂ), ସୋଫୋକ୍ଲିଜ୍ (୪୯୫-୪୦୬ ଖ୍ରୀ. ପୂ) ଓ ୟୁରିପିଡ଼ିଜ୍ (୪୮୦-୪୦୬ ଖ୍ରୀ.ପୂ)ଙ୍କ ସମକକ୍ଷ ଟ୍ରାଜେଡ଼ିକାର ପୃଥିବୀ ଇତିହାସରେ ମାତ୍ର ଆଉ ଜଣେ ଦେଖା ଦେଇଛନ୍ତି । ସେ ହେଉଛନ୍ତି ସେକ୍‌ସପିୟର ।

ହିପୋକ୍ରେସି କଳାରେ ପ୍ରଥମେ ପଶିଲା । ତା ପରେ ବାସ୍ତବ ଜୀବନକୁ ଯିବ । ସୋଲନ୍ ଏହି-ପରି ଆଶଙ୍କା କରୁଥିଲେ । ପିସିଷ୍ଟ୍ରାଟସ୍‌ଙ୍କ ନିଖୁଣ ଅଭିନୟରେ ଆଟିକା ରାଷ୍ଟ୍ର ଭୁଲିଗଲା । ପିସିଷ୍ଟ୍ରାଟସ୍ ନିଜେ ଥିଏଟର୍ ପ୍ରତି ବିଶେଷ ଆକୃଷ୍ଟ ଥିଲେ । ସେ ଥେସ୍‌ପିସ୍‌ଙ୍କର ଜଣେ ପ୍ରଶଂସକ । ଏଥେନ୍ସରେ ଅଭିନୟ ପ୍ରତି-ଯୋଗିତାରେ ପ୍ରଥମ ହୋଇ ଥେସ୍‌ପିସ୍ ପିସିଷ୍ଟ୍ରାଟସ୍‌ଙ୍କ ହାତରୁ ଖ୍ରୀ. ପୂ ୫୩୪ରେ ପୁରସ୍କାର ଗ୍ରହଣ କରିଥିଲେ ।

ଡାଇଓନିସସ୍‌ଙ୍କ ସହିତ ଟ୍ରାଜେଡ଼ିର ସମ୍ପର୍କ ଆଦୌ ଆକସ୍ମିକ ନୁହେଁ । କାରଣ ଏହି ଦେବତାଙ୍କର ଜୀବନରେ ପ୍ରଚୁର ଟ୍ରାଜିକ୍ ଉପାଦାନ ରହିଛି । ଏଥେନ୍ସରେ ଡାଇଓ-ନିସିସ୍‌ଙ୍କ ପୂଜା ଓ ନାଟକୋତ୍ସବ ଏକ ବିଶେଷ ଘଟଣା ଥିଲା । ବସନ୍ତର ଆଗମନ ପରେ ନଗରବାସୀ ଉତ୍କଣ୍ଠାର ସହିତ ଏହି ଉତ୍ସବକୁ ଅପେକ୍ଷା କରନ୍ତି । ପୂଜାଦିନ ଭକ୍ତଙ୍କ ଗହଣରେ ବିଜେ କରିଥିବା ଡାଇଓନିସସ୍ ଦେବତାଙ୍କୁ ଦେଖିବା ପାଇଁ ନଗର ସାରା ଲୋକେ ପଦାକୁ ବାହାରି ଆସନ୍ତି । ସେମାନେ ଘରଗୁଡ଼ିକ ଓ ଗଛ ଉପରେ ଚଢ଼ି ବା ରାସ୍ତା କଡ଼ରେ ଛିଡ଼ା ହୋଇ ଦେବ ଦର୍ଶନ କରନ୍ତି । ଡାଇଓନିସସ୍‌ଙ୍କର ପ୍ରାଚୀନ କାଠମୂର୍ତ୍ତିକୁ ଭକ୍ତମାନେ ଗୋଟିଏ ଗାଡ଼ିରେ ବସାଇ ଟାଣି ଟାଣି ଡାଇଓନିସସ୍ ପ୍ରେକ୍ଷାଳୟ ପର୍ଯ୍ୟନ୍ତ ନିଅନ୍ତି । ଦେବତା ତାଙ୍କ ସିଂହାସନରେ ବସିବାପରେ ନାଟକୋତ୍ସବ ଆରମ୍ଭ ହୁଏ ।

ଡାଇଓନିସସ୍‌ଙ୍କର ମୁକ୍ତ ରଙ୍ଗମଞ୍ଚ ଏଥେନ୍‌ସର ଏକ ଗୌରବ । ଖୋଲା ଆକାଶ ତଳେ ସତର ହଜାର ଲୋକ ବସି ଦେଖି ପାରିବା ଭଳି ଡାଇଓନିସସ୍ ପ୍ରେକ୍ଷାଳୟଟି ଆକ୍ରୋପଲିସ୍‌ର ଦକ୍ଷିଣ ପଟ ପାହାଡ଼ ଢାଲୁରେ ଅବସ୍ଥିତ । ଖ୍ରୀ.ପୂ ୫୦୦ ବେଳେ ଥରେ



[ ଦୁଇଟି ପାତ୍ରାଙ୍କିତ ଚିତ୍ରକୁ ଏକାଠି ଦିଆଯାଇଛି । ବାମ ପଟେ ସାଟୀର୍‌ଙ୍କ ଗହଣରେ ମାତାଲ ଡାଇଓନିସସ୍ । ଚିତ୍ରଟିକୁ ଆଙ୍କିଛନ୍ତି ବିଖ୍ୟାତ କଳାକାର ବ୍ରାଇଗସ୍ ( ଖ୍ରୀ· ପୂ ୪୯୦ ) । ଡାହାଣ ପଟେ ଡାଇଓନିସସ୍‌ଙ୍କ ପୂଜାରେ ଭେଳ ମଦ୍ୟପାତ୍ର ଓ ବଣ ପଶୁକୁ ଧରିଥିବା ନୃତ୍ୟରତା ନାରୀଗଣ । ଆଙ୍କିଛନ୍ତି ଆଉ ଜଣେ ଚିତ୍ରକାର ମାକ୍ରନ । ]

ଦର୍ଶକଙ୍କର ବେଞ୍ଚ ଭାଙ୍ଗି କେତେକ ଲୋକ ଆଘାତ ପାଇଥିଲେ । ଏହି ଦୁର୍ଘଟଣା ପରେ ନଗରବାସୀ କାଠ ବେଞ୍ଚ ସବୁ ଉଠାଇ ପଥରର ବେଞ୍ଚ ଗଢ଼ିଦେଲେ । ଦର୍ଶକ ବେଞ୍ଚଗୁଡ଼ିକ ଅର୍ଦ୍ଧ-ବୃତ୍ତାକାରରେ ସଜ୍ଜିତ । ନିମ୍ନରୁ କ୍ରମଶଃ ଉଚ୍ଚକୁ ଉଠିଥିବା ପାହାଡ଼ ପାଦଦେଶରୁ ପଛକୁ ପଛ ଅନେକ ଉଚ୍ଚ ପର୍ଯ୍ୟନ୍ତ ଦର୍ଶକ ଆସନଗୁଡ଼ିକ ଲମ୍ବିଥିଲା ।

ଡାଇଓନିସସ୍ ପ୍ରେକ୍ଷାଳୟ ଢାଞ୍ଚାରେ ଗ୍ରୀସର ବିଭିନ୍ନ ସ୍ଥାନରେ ପ୍ରେକ୍ଷାଳୟମାନ ନିର୍ମିତ ହେଲା । କିନ୍ତୁ ପ୍ରତ୍ୟେକ ବିଶିଷ୍ଟ ଟ୍ରାଜେଡ଼ି ଓ କମେଡ଼ି ପ୍ରଥମେ ଡାଇଓନିସସ୍

ରଙ୍ଗମଞ୍ଚରେ ଅଭିନୀତ ହେଉଥିଲା । ଏହି ରଙ୍ଗମଞ୍ଚରେ ଗୋଟିଏ ନାଟକ ଦୁଇଥର ଅଭିନୀତ ହେବା ବିରଳ । ଯେଉଁମାନେ ଏଠି ଗୋଟିଏ ନାଟକ ଦେଖିବାର ସୁଯୋଗ ହରାନ୍ତି, ସେମାନେ ତାକୁ ଅନ୍ୟ ନଗରର ରଙ୍ଗମଞ୍ଚ ବା ଆଟିକାରେ ଅନ୍ୟତ୍ର ଥିବା ( ଆଟିକାର ଗ୍ରାମାଞ୍ଚଳରେ ମଧ୍ୟ ରଙ୍ଗମଞ୍ଚ ଥିଲା ) ରଙ୍ଗମଞ୍ଚରେ ଦେଖି ପାରୁଥିଲେ । ଖ୍ରୀ. ପୂ ୪୮୦-୩୮୦—ଏହି ଶହେ ବର୍ଷ ଭିତରେ ଏଥେନ୍ସରେ ଦୁଇ ହଜାରଟି ନୂତନ ନାଟକ ମଞ୍ଚସ୍ଥ କରାଯାଇଥିଲା ।

ନାଟକୋତ୍ସବ ତିନିଦିନ ଚାଲେ । ପ୍ରତିଦିନ ପାଞ୍ଚୋଟି ନାଟକ ଅଭିନୀତ ହୁଏ । ଜଣେ କବିଙ୍କର ତିନୋଟି ଟ୍ରାଜେଡ଼ି ଓ ଗୋଟିଏ ଗ୍ରାମ୍ୟ-ଗୀତ ( ପରମ୍ପରାକୁ ବଞ୍ଚାଇ ରଖିବା ଉଦ୍ଦେଶ୍ୟରେ ) ଏବଂ ଆଉ ଜଣେ କବିର ଗୋଟିଏ କମେଡ଼ି ପରିବେଷଣ କରାଯାଏ । ଉଦୟ-ସୂର୍ଯ୍ୟର ପ୍ରଥମ ଆଲୋକ ମଞ୍ଚ ଉପରେ ପଡ଼ିଲେ ପରଦା ଉଠେ ଓ ଅଭିନୟ ଆରମ୍ଭ ହୋଇଯାଏ । ଅଭିନେତାଙ୍କ ସମ୍ମୁଖରେ କେତେବେଳେ ସ୍ତବ୍ଧ ଓ କେତେବେଳେ ମୁଖର ଜନସମୁଦ୍ର, ଗୋଟିଏ ପଟେ ପର୍ବତଶ୍ରେଣୀ ଅନ୍ୟପଟେ ନୀଳ ସମୁଦ୍ର, ଉପରେ ଖୋଲା ଆକାଶ । ଅଭିନେତା ଗ୍ରୀକ୍ ଜାତିକୁ ସମ୍ବୋଧନ କଲେ ଦର୍ଶକଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରେ ଓ ତାର ପ୍ରତିଧ୍ୱନି ସେମାନଙ୍କ ହୃଦୟରେ ସୃଷ୍ଟି ହୁଏ । ଆକାଶ, ପୃଥିବୀ, ସୂର୍ଯ୍ୟ ତାରା ବା ସାଗରକୁ ସମ୍ବୋଧନ କରି ଅଭିନେତା ଯାହା କହେ, ସେହି ପ୍ରାକୃତିକ ପରିବେଶରେ ଦର୍ଶକ ତାକୁ ଅତି ବାସ୍ତବ ଓ ନିବିଡ଼ ଭାବେ ଅନୁଭବ କରେ । କହିବା ବାହୁଲ୍ୟ ଯେ, ଅଭିନୟରେ ଗ୍ରୀକ୍ ଅଭିନେତାମାନେ ଅତ୍ୟନ୍ତ ଦକ୍ଷ ଥିଲେ । ସେମାନଙ୍କୁ ମୁଖା ପିନ୍ଧି ଅଭିନୟ କରିବାକୁ ପଡ଼ୁଥିଲା । ଜଣେ ଅଭିନେତା ଯେଉଁ ଚରିତ୍ରରେ ଅବତୀର୍ଣ୍ଣ ହେଉଥିଲା, ତାକୁ ଖାପ ଖାଇଲା ପରି ମୁଖା ପିନ୍ଧୁଥିଲା । ମୁହଁ ଦେଖାଇବାର ସୁଯୋଗ ନ ଥିଲେ ମଧ୍ୟ ସାବଲୀଳ ଅଙ୍ଗଭଙ୍ଗୀ ଓ ସ୍ୱର ପରିବର୍ତ୍ତନ ଦ୍ୱାରା ଅଭିନେତାମାନେ ଜୀବନ୍ତ ଅଭିନୟ କରୁଥିଲେ ।

ଉତ୍ସବର କେତେଦିନ ପୂର୍ବରୁ କବିମାନେ ତିନୋଟି ଟ୍ରାଜେଡ଼ି ବା ଗୋଟିଏ କମେଡ଼ି ମାଜିଷ୍ଟ୍ରେଟଙ୍କ ପାଖରେ ଦାଖଲ କରୁଥିଲେ । ନାଟକ ବାଛିବା ଦାୟିତ୍ୱ ମାଜିଷ୍ଟ୍ରେଟମାନଙ୍କର । ତଥାପି କୌଣସି ଉତ୍କୃଷ୍ଟ ନାଟକ କାଟ ଖାଉଥିବାର ପ୍ରମାଣ ନାହିଁ । ଜଣେ ମାଜିଷ୍ଟ୍ରେଟ ସାହିତ୍ୟିକ ନୁହନ୍ତି, କିନ୍ତୁ ସାହିତ୍ୟିକ ମୂଲ୍ୟ ଅନୁସାରେ ସେ ନାଟକ ବାଛିଦେବା ଘଟଣା

ଆମକୁ ବଞ୍ଚିତ କରିବା ସ୍ୱାଭାବିକ୍ । ପୁଣି ଏଥେନ୍‌ସର ଶାସକବର୍ଗଙ୍କୁ ଆକ୍ଷେପ କରାଯାଇଥିବା ନାଟକ ( ୟୁରିପିଡିଜ୍‌ଙ୍କର ଏହିପରି ନାଟକ ଅଛି ) ମଧ୍ୟ ମଞ୍ଚସ୍ଥ ପାଇଁ ଯୋଗ୍ୟ ବିବେଚିତ ହେଉଥିଲା । ଜନତା ଉଚ୍ଚାଙ୍ଗ ସାହିତ୍ୟ ବୁଝିପାରେ ନାହିଁ ବୋଲି ଦୁର୍ନାମ ଅଛି । ମାତ୍ର ଏଥେନ୍‌ସୀୟ ଜନତା ସୋଫୋକ୍ଲିଜ୍ ଓ ୟୁରିପିଡିଜ୍‌ଙ୍କର ଉଚ୍ଚ ଭାବ ସମ୍ବଳିତ ନାଟକକୁ ତନ୍ମୟ ହୋଇ ଦେଖୁଥିଲେ ।

ସ୍ୱର୍ଣ୍ଣଯୁଗ ପୂର୍ବରୁ ଶ୍ରେଷ୍ଠ ଟ୍ରାଜେଡ଼ି ପାଇଁ ପୁରସ୍କାର ଥିଲା ଗୋଟିଏ ଛେଳି ଏବଂ ଶ୍ରେଷ୍ଠ କମେଡି ପାଇଁ ଗୋଟିଏ ବଡ଼ ପାତ୍ରରେ ପ୍ରଚୁର ମଦ ସହିତ ଟୋକେଇଏ ଫଳ । ସ୍ୱର୍ଣ୍ଣଯୁଗରେ ଟ୍ରାଜେଡ଼ି ପାଇଁ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଏହିପରି ତିନୋଟି ଏବଂ କମେଡ଼ି ପାଇଁ ଗୋଟିଏ ପ୍ରାଇଜ୍ ରାଜକୋଷରୁ ଅର୍ଥ ଆକାରରେ ଦିଆଗଲା । କାଉନ୍‌ସିଲ୍ ପ୍ରସ୍ତୁତ କରିଥିବା ଗୋଟିଏ ଲମ୍ବା ତାଲିକାରୁ ଦଶଜଣ ବିଚାରକ ନାଟକ ଆରମ୍ଭ ଦିନ ସକାଳେ ଲଟେରି ଦ୍ୱାରା ବଛାଯାଆନ୍ତି । ସେମାନଙ୍କର ନାମ ସମ୍ପୂର୍ଣ୍ଣ ଗୋପନ ରଖାଯାଏ । ମାତ୍ର ସେମାନେ ଜନତାର ମତାମତ ଦ୍ୱାରା ପ୍ରଭାବିତ ହୁଅନ୍ତି । କେଉଁ ନାଟକାଭିନୟ ବେଳେ କେତେ ତାଳିମାଡ଼ ହେଲା ସେଇଥିରୁ ଦେଖି ବିଚାରକମାନେ ରାୟ ଦିଅନ୍ତି ବୋଲି ପ୍ଲେଟୋଙ୍କର ଅଭିଯୋଗ । କହିବା ବାହୁଲ୍ୟ, ଏହି 'ଥିଏଟରକ୍ରେସି' ସବୁ କ୍ଷେତ୍ରରେ ପଶିଯାଉଥିବା ଦର୍ଶାଇ ପ୍ଲେଟୋ ଗ୍ରୀକ୍‌ମାନଙ୍କୁ ସତର୍କ କରି ଦେଇଥିଲେ ।

କଳା, ସାହିତ୍ୟ ଓ ଦର୍ଶନର ଜଣେ ବଡ଼ ପୃଷ୍ଠପୋଷକ ପେରିକ୍ଲିଜ୍‌ଙ୍କ ଅମଳରେ ନାଟକ ପ୍ରତିଯୋଗିତା ଅତ୍ୟନ୍ତ ଜୀବନ୍ତ ଓ ସରଗରମ୍ ହେଉଥିଲା । ନଗରର ଆର୍କନ୍ ଓ ମାଜିଷ୍ଟ୍ରେଟ୍‌ଙ୍କ ଗହଣରେ ପେରିକ୍ଲିଜ୍ ପ୍ରେକ୍ଷାଳୟରେ ପ୍ରବେଶ କରି ପ୍ରଥମ ଧାଡ଼ିରେ ଆସନ ଗ୍ରହଣ କରୁଥିଲେ । ସତର ହଜାର ଦର୍ଶକଙ୍କର ଆସନ ପୂରିଯିବା ପରେ ଭିତରେ ଛିଡ଼ା ହେବାକୁ ଜାଗା ପାଉ ନ ଥିବା ଲୋକେ ଆଖପାଖର ଘରଛାତ ଓ ଗଛ ଉପରକୁ ଚଢ଼ି ଯାଉଥିଲେ । ନାଟକ ଦେଖିବା ପାଇଁ ଦାସମାନଙ୍କ ଉପରେ କୌଣସି କଟକଣା ନ ଥିଲା ଓ ସେମାନଙ୍କୁ କାମରୁ ଛୁଟି ମିଳୁଥିଲା । ଦର୍ଶକମାନେ ଟିକେଟ୍ କରୁଥିଲେ । କିନ୍ତୁ ଗରିବମାନଙ୍କୁ ଯେ କେବଳ ଟିକେଟ୍ ଛାଡ଼ ଥିଲା ସେତିକି ନୁହେଁ, ନାଟକ ଦେଖୁଥିବା ଦିନଗୁଡ଼ିକର ମଜୁରି ସେମାନଙ୍କୁ ମିଳୁଥିଲା । ପେରିକ୍ଲିଜ୍ ଏ ବ୍ୟବସ୍ଥା ପ୍ରଚଳନ କରିଥିଲେ । ତାଙ୍କର ଯୁକ୍ତି ହେଉଛି, ଗରିବ ଲୋକଟି ଦିନକର ମଜୁରି ନ ପାଇଲେ ଚଳିବ କିପରି ? କଳା ଓ ସାହିତ୍ୟ

ଉପଭୋଗ କରିବାରେ ଦାରିଦ୍ର୍ୟ ପ୍ରତିବନ୍ଧକ ହେବ କାହିଁକି ? ନାଟକ ଦେଖିବା ପାଇଁ ମଜୁରି ଦେବା ବ୍ୟବସ୍ଥା ପ୍ରଚଳନ କରି ପେରିକ୍ଲିସ୍ ଲୋକଙ୍କୁ ଠକ ଓ ଅଳସୁଆ କରି ଦେଉଛନ୍ତି ବୋଲି ଗୋଟାଏ ସ୍ୱର ଉଠିଥିଲା । ଏହାର ସପକ୍ଷ ଓ ବିପକ୍ଷରେ ଯାହା ଯୁକ୍ତି ଥାଉ ନା କାହିଁକି, ସେ କାଳରେ ଜଣେ ଯେ ଏ କଥା ଚିନ୍ତାକଲା ଓ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରିଲା ତାହା ବିସ୍ମୟଜନକ ।

ଭଲ ଘରର ସ୍ତ୍ରୀ ଲୋକମାନେ ପଦାକୁ ବାହାରିବା ପାଇଁ ନାଟକୋତ୍ସବ ଥିଲା ଏକ ବଡ଼ ସୁଯୋଗ । ପର୍ଦ୍ଦାସୀନ ହୋଇ ସେମାନେ ନାଟକ ଦେଖିବାକୁ ଯାଉଥିଲେ ଓ ସେହି ଅବସରରେ ବାନ୍ଧବୀ ଓ ସମ୍ପର୍କୀୟମାନଙ୍କୁ ସନ୍ଧୋଳିବାର ସୁଯୋଗ ପାଉଥିଲେ । ନାରୀ-ମାନଙ୍କର ବସିବା ପାଇଁ ସ୍ୱତନ୍ତ୍ର ସ୍ଥାନ ଥିଲା ।

ମୋଟ ଉପରେ ନାଟକୋତ୍ସବ ଥିଲା ଏଥେନ୍ସର ଏକ ଜାତୀୟ ପର୍ବ । ତିନ ଦିନର ଉତ୍ସବ ଭିତରେ ମଞ୍ଚ ଉପରେ ଅବତୀର୍ଣ୍ଣ ହେଉଥିବା କୋରସ୍‌ର ଗାୟକ ଓ ଅଭିନେତାଙ୍କ ସଂଖ୍ୟା ସାତ ଶହରୁ କମ୍ ନୁହେଁ । ଗୋଟିଏ ନାଟକ ମଞ୍ଚସ୍ଥ କରିବାର ଖର୍ଚ୍ଚ ଜଣେ ଧନୀ ବ୍ୟକ୍ତି ଆଗ୍ରହରେ ତୁଲାଉଥିଲେ । କୋରସ୍‌ର 'ନିର୍ଦ୍ଦେଶକ' ହୋଇ ସେ ଯଥେଷ୍ଟ ଆତ୍ମସନ୍ତୋଷ ଲାଭ କରୁଥିଲେ । ପୁଣି ନାଟକଟି ଯେପରି ସଫଳ ଭାବେ ମଞ୍ଚସ୍ଥ ହୁଏ, ସେ ଚିନ୍ତା କେବଳ ଖର୍ଚ୍ଚ ତୁଳାଉଥିବା ବ୍ୟକ୍ତିଙ୍କର ନୁହେଁ, ତାଙ୍କର ଜାତିଭାଇ ସମସ୍ତଙ୍କର । ବିଭିନ୍ନ ଭୂମିକାରେ, କିଛି ନ ହେଲେ ଜଣେ ସହିଷ୍ଣୁ ଦର୍ଶକ ଭୂମିକାରେ ଅବତୀର୍ଣ୍ଣ ହୋଇ ପ୍ରତ୍ୟେକ ଏଥେନ୍ସୀୟ ନାଟକୋତ୍ସବରେ ଅଂଶଗ୍ରହଣ କରୁଥିଲା ।

ଏସ୍କିଲସ୍ (Aeschylus) —ଏସ୍କିଲସ୍ ( ଖ୍ରୀ. ପୂ ୫୨୫—୪୫୬ ) ଅର୍ଦ୍ଧଶତାବ୍ଦୀ କାଳ ଏଥେନ୍ସୀୟ ରଙ୍ଗମଞ୍ଚର କେନ୍ଦ୍ରବିନ୍ଦୁ ହୋଇ ରହିଥିଲେ । ଏସ୍କିଲସ୍ କେବଳ ମହାନ୍ ନାଟ୍ୟକାର ନୁହନ୍ତି, ସେ ଜଣେ ଦେଶଭକ୍ତ ଯୋଦ୍ଧା । ଜୀବଦ୍ଦଶାରେ ଗ୍ରୀସ୍‌ର ଅପ୍ରତି-ଦ୍ୱନ୍ଦୀ ନାଟ୍ୟକାର ହୋଇଥିବା ଅପେକ୍ଷା ଦେଶ ପାଇଁ ବିଭିନ୍ନ ଯୁଦ୍ଧକ୍ଷେତ୍ରରେ ପ୍ରାଣପଣେ ଲଢ଼ିଥିବା ସାଧାରଣ ସୈନିକଟିଏ ଭାବେ ଏସ୍କିଲସ୍ ଅଧିକ ଗୌରବାନ୍ୱିତ ବୋଧ କରୁଥିଲେ । ମାରାଥନ୍ ଯୁଦ୍ଧକ୍ଷେତ୍ରରେ ବୀରତ୍ୱ ପ୍ରଦର୍ଶନ ପାଇଁ ଏସ୍କିଲସ୍‌ଙ୍କୁ ନାଗରିକ ସମ୍ବର୍ଦ୍ଧନା ଦିଆଯାଇଥିଲା । ପରେ ସାଲାମିସ୍ ଓ ପ୍ଲାଟିଆ ଯୁଦ୍ଧକ୍ଷେତ୍ରରେ ଯୋଦ୍ଧା ହିସାବରେ ତାଙ୍କର ସୁନାମ ସେ ବଜାୟ ରଖିଥିଲେ ।

ଖ୍ରୀ. ପୂ ୪୮୪ରେ ଡାଇଓନସସ୍ ନାଟକୋତ୍ସବରେ ଏସ୍କିଲସ୍ ପ୍ରଥମ କରି ପୁରସ୍କାର ପାଇଲେ । ଏହାପରେ କ୍ରମାଗତ ଭାବେ ଅନେକ ବର୍ଷ ସେ ଏହି ଗୌରବର ଅଧିକାରୀ ହୋଇଛନ୍ତି । ଖ୍ରୀ. ପୂ ୪୬୭ରେ ତରୁଣ ସୋଫୋକ୍ଲିଜ୍‌ଙ୍କ ଠାରୁ ସେ ପ୍ରତିଯୋଗିତାରେ ହାରିଗଲେ । ଦଶବର୍ଷ ପରେ ତାଙ୍କର ଓରେଷ୍ଟିଆ ନାଟକତ୍ରୟୀ ( trilogy ) ପୁଣି ପୁରସ୍କୃତ ହୋଇଥିଲା । ସତୁରି ବର୍ଷ ବୟସ୍କ କବିଙ୍କ ପୋଖତ ଲେଖନୀରୁ ରୂପ ପାଇଥିବା ଏହି ନାଟକ ତ୍ରୟୀ ଅନେକଙ୍କ ମତରେ ପ୍ରାଚୀନ କାଳର ସର୍ବମହାନ୍ ନାଟକ ।

ସ୍ତୁତି-ଗୀତିକୁ ନାଟକ ପର୍ଯ୍ୟାୟକୁ ଉଠାଇ ନେବାରେ ଏସ୍କିଲସ୍‌ଙ୍କ ଭୂମିକା ଅତୁଳନୀୟ । କୋରସ୍ ସହିତ ସେ ଦ୍ୱିତୀୟ ଅଭିନେତା ଯୋଗ କଲେ । ଫଳରେ ମଞ୍ଚ ଉପରେ ଏକକାଳୀନ ଦୁଇଜଣ ଚରିତ୍ର ଦେଖିବାକୁ ମିଳିଲା । ଅନେକ ସମୟରେ କୋରସ୍-ନେତା ଜଣେ ଚରିତ୍ର ରୂପେ କାମ କରୁଥିଲେ । ଭୃତ୍ୟ, ସୈନିକ ପ୍ରଭୃତି ଗୌଣ ଚରିତ୍ର ଅବଶ୍ୟ ଅଭିନେତା ରୂପେ ଗଣାଯାଉ ନ ଥିଲେ ।

ଏସ୍କିଲସ୍ ନବେଟି ଟ୍ରାଜେଡ଼ିର ରଚୟିତା । ଏମାନଙ୍କ ମଧ୍ୟରୁ ମାତ୍ର ସାତୋଟି କାଳ-ମୁହଁରୁ ବଞ୍ଚି ରହିଛି । ଏହି ସାତୋଟିରୁ ଚାରି ପାଞ୍ଚୋଟି ସାଧାରଣ ସ୍ତରର । କିନ୍ତୁ ତାଙ୍କର Prometheus Bound ଓ ଓରେଷ୍ଟିଆ ତ୍ରୟୀ ଯେ କୌଣସି ମାନଦଣ୍ଡରେ ମହାନ୍ । ବସ୍ତୁତଃ ଏହି ଦୁଇଟି ନାଟକ ହଜି ଯାଇଥିଲେ ଏସ୍କିଲସ୍‌ଙ୍କୁ ଜଣେ ବିରାଟ ନାଟ୍ୟକାର ଭାବେ ଗଣନା କରିବାର କୌଣସି କାରଣ ନ ଥାନ୍ତା । ତାଙ୍କର ହଜି ଯାଇଥିବା ନାଟକଙ୍କ ଭିତରେ କେତେକ ଉତ୍କୃଷ୍ଟ ନାଟକ ରହିଥିବାର ଅନୁମାନ କରିବା ଯଥାର୍ଥ ।

ମଣିଷଙ୍କୁ ଅଗ୍ନି ଚୋରି କରି ଦେଇଥିବା ଦୋଷରେ ଜିଅସ୍ ପ୍ରୋମିଥିଅସ୍‌ଙ୍କୁ ଦଣ୍ଡ ଦେଇଥିଲେ । ପ୍ରୋମିଥିଅସ୍ ନାଟକରେ ନାଟ୍ୟକାରଙ୍କର ପ୍ରୋମିଥିଅସ୍‌ଙ୍କ ପ୍ରତି ସହାନୁଭୂତି ଓ ଜିଅସ୍‌ଙ୍କ ପ୍ରତି ତୀର୍ଯ୍ୟକ ଆକ୍ଷେପ ସହଜରେ ଧରିହୁଏ । ସବୁ ଦିଗରୁ ବିଚାର କଲେ ଧର୍ମୋତ୍ସବରେ ଦେବରାଜ ଜିଅସ୍‌ଙ୍କୁ ସମାଲୋଚନା କରି ଗୋଟିଏ ନାଟକ ପରିବେଷଣ କରିବା କିଛି କମ୍ କଥା ନୁହେଁ ।

ନାଟକ ଆରମ୍ଭରେ ହିଫେଷ୍ଟାସ୍ ପ୍ରୋମିଥିଅସ୍‌ଙ୍କୁ ପାହାଡ଼ ଉପର ଗୋଟିଏ ଶିଳାରେ ବାନ୍ଧି ଛନ୍ତି । ଜନମାନବଶୂନ୍ୟ ସେହି ନିର୍ଜନ ପାହାଡ଼ରୁ ତାଙ୍କୁ କେହି ମୁକୁଳେଇ ପାରିବେ

ନାହିଁ । ମଣିଷକୁ ଭଲ ପାଇବାର ଏଇ ପୁରସ୍କାର ! ହ୍ୱିଫେଷ୍ଟାସ୍ କହୁଛନ୍ତି,

…Such fruit is plucked
From love of man ! …For Zeus is stern
And new made kings are cruel.

ବନ୍ଧନରେ ପଡ଼ି ମଧ୍ୟ ମଣିଷକୁ ପଶୁ ସ୍ତରରୁ ସଭ୍ୟତାର ଆଲୋକକୁ ନେବା କ୍ଷେତ୍ରରେ ତାଙ୍କର ଅବଦାନକୁ ପ୍ରୋମିଥିଅସ୍ ଗର୍ବ ଓ ସନ୍ତୋଷର ସହିତ ସ୍ମରଣ କରୁଛନ୍ତି । ମଣିଷକୁ ଆକାଶର ଗ୍ରହ ନକ୍ଷତ୍ରଙ୍କ ସହିତ ପରିଚିତ କରାଇବା, ସଂଖ୍ୟା ଓ ଗଣନା ଶିଖାଇବା; ଭାଷା, ସଙ୍ଗୀତ ଠାରୁ ଆରମ୍ଭ କରି ଜାହାଜ ନିର୍ମାଣ ପର୍ଯ୍ୟନ୍ତ ବିଭିନ୍ନ ବିଷୟରେ ମଣିଷକୁ ଜ୍ଞାନ ଦେବା ପ୍ରୋମିଥିଅସ୍‌ଙ୍କର ଅବଦାନ । ନିଜ ଦଶାରେ ଖେଦୋକ୍ତି ପ୍ରକାଶ କରି ସେ କହୁଛନ୍ତି,

And I
Who did devise for mortals all these arts
Have no device left now to save myself.

ପ୍ରକୃତି ଓ ବିଭିନ୍ନ ଦେଶ ପ୍ରୋମିଥିଅସ୍‌ଙ୍କ ପ୍ରତି ସହାନୁଭୂତିଶୀଳ । କିନ୍ତୁ ସମସ୍ତେ ନିରୁପାୟ । ଜିଅସ୍‌ଙ୍କ ବିଧାନକୁ ବଦଳାଇବ କିଏ ? ତାଙ୍କ ପାଖରେ ଆତ୍ମସମର୍ପଣ କଲେ ଅବା ରକ୍ଷା ମିଳିପାରେ । ପ୍ରୋମିଥିଅସ୍‌ଙ୍କର ବନ୍ଧୁ ସାଗର ତାଙ୍କୁ ଏହି ଉପଦେଶ ଦେଇଛନ୍ତି । ଦେବରାଜଙ୍କ ଦୃଷ୍ଟିରେ ଅଗ୍ନି ଚୋରି କରିବା ପ୍ରୋମିଥିଅସ୍‌ଙ୍କର ଏକମାତ୍ର ଦୋଷ ନୁହେଁ । ସେ ଉଦ୍ଧତ ଓ ବିଦ୍ରୋହୀ । ବନ୍ଦୀ ପ୍ରୋମିଥିଅସ୍‌ଙ୍କର ବିଦ୍ରୋହର ସ୍ୱର ନାଟକଟିରେ ସ୍ପଷ୍ଟ । ତେଣୁ ସାଗରଙ୍କର ଉପଦେଶ,

Learn now to know thyself,
Change your old ways for new.
A new lord rules in heaven now.

ଜିଅସ୍ ହେଉଛନ୍ତି ସେହି ନୂତନ ବିଧାତା । ଟାଇଟାନସ୍‌ଙ୍କୁ ବିତାଡ଼ିତ କରି ସେ ହୋଇଛନ୍ତି ଦେବରାଜ । ସେ ଯାହାକୁ ଯାରେ ତାକୁ ବାନ୍ଧି ପାରନ୍ତି, ଯେ କୌଣସି ଦଣ୍ଡ ଦେଇପାରନ୍ତି ।

ଦେବତାମାନେ ତାଙ୍କର ଆଜ୍ଞାବହ । ତଥାପି ପ୍ରୋମିଥିଅସ୍ ଜିଅସ୍‌ଙ୍କ ବିରୁଦ୍ଧରେ ବିଦ୍ରୋହ କରନ୍ତି । ଜିଅସ୍ ଦେବରାଜ କିନ୍ତୁ ସର୍ବଶକ୍ତିବାନ୍ ନୁହନ୍ତି, ସର୍ବଜ୍ଞ ନୁହନ୍ତି । ନାଟକରେ ଏହି କଥାଟି ସ୍ପଷ୍ଟ ଭାବେ ଫୁଟିଛି । ତେଣୁ ପ୍ରୋମିଥିଅସ୍‌ଙ୍କର ବିଦ୍ରୋହ କ୍ଷମ୍ୟ । ଜିଅସ୍ ଦେବରାଜ ପଦ ହରାଇ ପାରନ୍ତି । କାହିଁକି ? ଏ ରହସ୍ୟ କେବଳ ପ୍ରୋମିଥିଅସ୍‌ଙ୍କୁ ଜଣା । ଏହାର ଅର୍ଥ ଈଶ୍ୱର (ଜିଅସ୍‌ଙ୍କୁ ଦେବତା ବା ଦେବରାଜ କହିବା ସମୀଚୀନ) ଓ ବିଦ୍ରୋହୀ ମଧ୍ୟରେ ଅକଳନ ବ୍ୟବଧାନ ଏସ୍କିଲସ୍‌ଙ୍କ ନାଟକରେ ନାହିଁ । ମିଲ୍‌ଟନ୍‌ଙ୍କର 'ପାରାଡ଼ାଇଜ୍ ଲଷ୍ଟ'ରେ ସର୍ବବ୍ୟାପୀ ପରମେଶ୍ୱରଙ୍କ ବିରୁଦ୍ଧରେ ସଇତାନ୍ ବିଦ୍ରୋହ କରନ୍ତି । ଏପରି ବିଦ୍ରୋହ (ସର୍ବଜ୍ଞାତା, ସର୍ବମୟଙ୍କ ବିରୁଦ୍ଧରେ) ନିରର୍ଥକ ଓ ଫମ୍ପା । କିନ୍ତୁ ଏସ୍କିଲସ୍‌ଙ୍କ ନାଟକରେ ପ୍ରୋମିଥିଅସ୍‌ଙ୍କ ବିଦ୍ରୋହ କ୍ଷମ୍ୟ ଓ ନାଟକୀୟ । ବନ୍ଦୀ ପ୍ରୋମିଥିଅସ୍ କହିପାରନ୍ତି,

> Yet Zeus, I say, for all his stubbornness
> Hereafter shall be humbled……
> And no God lives, But I
> with power to tell this son of Cronus
> what can avert his doom

ଜିଅସ୍ ମଧ୍ୟ ସଚେତନ ଥିଲେ ଯେ ପ୍ରୋମିଥିଅସ୍‌ଙ୍କୁ କିଛି ଗୁପ୍ତ ରହସ୍ୟ ଜଣା । ସେ ଜଳପରୀ ଥେଟିସ୍‌ଙ୍କୁ ବିବାହ କରିବାକୁ ଇଚ୍ଛା କରନ୍ତି । ସେଥିରେ କ'ଣ କିଛି ବିପଦର ଆଶଙ୍କା ଅଛି ? ଯଦି ଅଛି, ପ୍ରୋମିଥିଅସ୍ ସ୍ପଷ୍ଟ ଭାବେ ତାହା ପ୍ରକାଶ କରୁନାହାନ୍ତି କାହିଁକି ? ଜିଅସ୍‌ଙ୍କର ନିର୍ଦ୍ଦେଶ, ପ୍ରୋମିଥିଅସ୍ ସ୍ପଷ୍ଟ ଭାଷାରେ ସତ୍ୟ ପ୍ରକାଶ କରନ୍ତୁ । ବନ୍ଦୀ ପ୍ରୋମିଥିଅସ୍‌ଙ୍କୁ ଦେବଦୂତ ହର୍ମିଜ୍ ଧମକ ଦେଇଛନ୍ତି ଯେ ଦେବରାଜଙ୍କ ଆଦେଶ ଅମାନ୍ୟ କଲେ ତାଙ୍କୁ ଭୟଙ୍କର ଦଣ୍ଡ ଭୋଗିବାକୁ ପଡ଼ିବ । ଆଦେଶ, ଧମକ ଇତ୍ୟାଦି ଶୁଣି ପ୍ରୋମିଥିଅସ୍‌ଙ୍କ କ୍ରୋଧ ଫାଟି ପଡ଼ିଛି । ହର୍ମିଜ୍‌ଙ୍କୁ ସେ କହିଛନ୍ତି,

> What solemn pomp, what arrogance of speech ?
> As well befits a varlet of the Gods,
> New ye are new to power, and fondly dream

No sorrow scales your ramparts.
Yet from thence
Have I not seen two Lords of Heaven fall ?
Yes, and shall see this third that thrones here, follow

ଜିଅସ୍‌ଙ୍କ ପୂର୍ବରୁ ଆଉ ଦୁଇଜଣ ବ୍ରହ୍ମାଣ୍ଡପତି ସେହି ଆସନରୁ ଖସି ପଡ଼ିଥିଲେ ଓ ଜିଅସ୍ ସେ ଦୁହିଁଙ୍କ ଦଶା ଲଭିବେ । ଏପରି ଆସ୍ପର୍ଦ୍ଧାକୁ ବା କେଉଁ ବିଧାତା ସହିପାରେ ? ପ୍ରୋମିଥିଅସ୍‌ଙ୍କୁ କଠୋର ଦଣ୍ଡ (ପାତାଳପୁରରେ ବନ୍ଦୀ) ଦିଆଯାଇଛି ।

ପ୍ରୋମିଥିଅସ୍ ବିଦ୍ରୋହୀ ମଣିଷଙ୍କର ପ୍ରତିନିଧି । ନିଷ୍ଠୁର, ଅନ୍ଧ ନିୟତିକୁ ପୂର୍ବରୁ ମାନି ନେଇଥିବା ଗ୍ରୀକ୍ ଖ୍ରୀ. ପୂ ପଞ୍ଚମ ଶତାବ୍ଦୀରେ ବିଦ୍ରୋହ କଲା । Prometheus Boundରେ ତାହା ପ୍ରତିଫଳିତ । ଏସ୍କିଲସ୍ ଏହାର ଉତ୍ତରଭାଗ Prometheus Unbound ରଚନା କରିଥିଲେ । ତାହା ହଜି ଯାଇଥିଲେ ମଧ୍ୟ ଏହି ନାଟକର ମୋଟାମୋଟି ବିଷୟବସ୍ତୁ ଜଣା । ପ୍ରୋମିଥିଅସ୍‌ଙ୍କୁ ପାତାଳପୁରରୁ ପୁଣି ପର୍ବତ ଉପରକୁ ନେଇ ତାଙ୍କ ପାଇଁ ଅତି ଭୟଙ୍କର ଦଣ୍ଡ (ଅତିକାୟ ଶାଗୁଣା ଝୁମ୍ପି ଖାଇବା)ର ବ୍ୟବସ୍ଥା କରାଯାଇଛି । କିଛିକାଳ ବିତିଗଲା ପରେ ଜିଅସ୍ ଥଣ୍ଡା ପଡ଼ିଛନ୍ତି । ତାଙ୍କର କ୍ରୋଧ କମିଛି । ପ୍ରୋମିଥିଅସ୍‌ଙ୍କର ବିଦ୍ରୋହର ତୀବ୍ରତା ମଧ୍ୟ କମିଯାଇଛି । ସେ ନରମ ହୋଇଯାଇଛନ୍ତି । ଅର୍ଥାତ୍ ଜିଅସ୍ ଓ ପ୍ରୋମିଥିଅସ୍ ଉଭୟେ ପରସ୍ପର ଆଡ଼କୁ କେତେ ପାଦ ଆଗେଇ ଆସିଛନ୍ତି । ଶେଷରେ ଥେଟିସ୍‌ଙ୍କୁ ବିବାହ ନ କରିବାକୁ ଠିକ୍ ସମୟରେ ପ୍ରୋମିଥିଅସ୍ ଜିଅସ୍‌ଙ୍କ ପାଖକୁ ଖବର ପଠାଇଛନ୍ତି । କାରଣ ତାଙ୍କ ଔରସରୁ ଜାତ ଥେଟିସ୍‌ଙ୍କ ପୁତ୍ର ଶକ୍ତିରେ ତାଙ୍କୁ ଟପିଯାଇ ଦିନେ ଜିଅସ୍‌ଙ୍କ ସିଂହାସନ ମାଡ଼ି ବସିବ । ଏହାପରେ ଜିଅସ୍‌ଙ୍କ ଅନୁମତି କ୍ରମେ ହେରାକ୍ଲିଜ୍ ଅତିକାୟ ଶାଗୁଣାକୁ ମାରି ପ୍ରୋମିଥିଅସ୍‌ଙ୍କୁ ଉଦ୍ଧାର କରିଛନ୍ତି ।

ହେଗେଲ୍‌ଙ୍କ ବ୍ୟାଖ୍ୟା ଅନୁସାରେ ଦୁଇ ପକ୍ଷର ଦ୍ୱନ୍ଦ୍ୱ ଟ୍ରାଜେଡ଼ିର ମୂଳ କାରଣ । ଉଭୟ ପକ୍ଷ ମଧ୍ୟରୁ କେହି ସମ୍ପୂର୍ଣ୍ଣ ଶୁଦ୍ଧ ନୁହେଁ । ଦୋଷ ଉଭୟ ପଟେ ଥାଏ । ଟ୍ରାଜିକ୍ କ୍ଳେଶ ଭୋଗର ମୂଳ କାରଣ ଦ୍ୱନ୍ଦ୍ୱ । ତେବେ ଥେସିସ୍ ଓ ଆଣ୍ଟିଥେସିସ୍‌ର ସିନ୍‌ଥେସିସ୍‌ରେ ଯେପରି

ଜଚଚର ସତ୍ୟର ଉଦୟ ହୁଏ, ସେହିପରି ଟ୍ରାଜେଡ଼ିରେ ଉଭୟ ପକ୍ଷ ଦ୍ୱନ୍ଦ୍ୱର ସିନ୍‌ଥେସିସ୍ ଫଳରେ ଟ୍ରାଜିକ୍ କ୍ଲେଶଭୋଗ ଲାଘବ ହେବା ସମ୍ଭବ । ହେଗେଲ୍‌ଙ୍କର ଏହି ମତବାଦ ଅଧିକାଂଶ ଟ୍ରାଜିକ ନାଟକ ପ୍ରତି ପ୍ରଯୋଜ୍ୟ ନୁହେଁ । ତେବେ ପ୍ରୋମିଥିଅସ୍ ନାଟକ ପ୍ରତି ଏହା ପ୍ରଯୋଜ୍ୟ । ଜିଅସ୍‌ଙ୍କର କିଛି ଭୁଲ୍ ରହିଛି, କିଛି ଭୁଲ୍ ପ୍ରୋମିଥିଅସ୍‌ଙ୍କର (ଦେବରାଜଙ୍କ ପ୍ରତି ଅବମାନନା ମନୋଭାବ) । ଉଭୟେ ଆପଣାକୁ ସୁଧାରି ନେବା ଫଳରେ ସଙ୍କଟର ଅବସାନ ଘଟିଛି ।

ମହାନ୍ କମ୍ୱଦନ୍ତୀ ମାନେ ଜୀବନର ଅନେକ ସତ୍ୟ, ଅନେକ ଅନୁଭବର ଏକ ଆର୍‌କେଷ୍ଟ୍ରା । ଜ୍ଞାନ-ବୃକ୍ଷରେ ଦୁଃଖର ଫଳ ଫଳିଥାଏ, ସ୍ୱାଧୀନ ହେବା ଆମ୍ଭେ କେବଳ ଦୃଢ଼ ଭାଗ୍ୟଲିପି, ସଂସାରରେ ବଞ୍ଚି ରହିବାକୁ ସାଲିସ୍ କରିବାକୁ ହୁଏ ଇତ୍ୟାଦି ସତ୍ୟାନୁଭବଗୁଡ଼ିକ ଏସ୍କିଲସ୍‌ଙ୍କର ଚମତ୍କାର

ଗ୍ରୀକ୍ ଥିଏଟରରେ ଯେଉଁ ସ୍ଥାନରେ କୋରସ୍ ନୃତ୍ୟ କରୁଥିଲା ତାର ନାମ ଆର୍‌କେଷ୍ଟ୍ରା ।

ଭାଷାବିନ୍ୟାସ ଓ ନାଟକୀୟ ପରିବେଶ ଭିତରେ ଫୁଟି ପାରିଛି । ମିଲ୍‌ଟନ୍, ଗେଟେ ଓ ବାଇରନ୍‌ଙ୍କ ପରି ମହାନ୍ କବିମାନେ ପ୍ରୋମିଥିଅସ୍ ନାଟକ ଦ୍ୱାରା ପ୍ରଭାବିତ ଓ ଅନୁପ୍ରାଣିତ । ଏସ୍କିଲସ୍‌ଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ସେଲି ଲେଖିଲେ, Prometheus Unbounded— ଯେଉଁଥିରେ ଚିର ବିଦ୍ରୋହୀ ଶେଷ ପର୍ଯ୍ୟନ୍ତ ଶିର ଉନ୍ନତ ରଖି ଛିଡ଼ା ହୋଇଛି ।

ଓରେଷ୍ଟିଆ ନାଟକ ସ୍ୱସ୍ତିର ଆସନ ଆହ୍ବାନ ଉପରେ । ଅନେକେ ଏହାକୁ ସର୍ବ ମହାନ୍ ଗ୍ରୀକ୍ ନାଟକର ଆସନ ଦିଅନ୍ତି । ପୃଥିବୀର ଶ୍ରେଷ୍ଠ ନାଟକ କେତୋଟି ମଧ୍ୟରେ ଓରେଷ୍ଟିଆ ଗଣ୍ୟ । କବିଙ୍କ ମୃତ୍ୟୁର ଦୁଇବର୍ଷ ପୂର୍ବରୁ ଏହି ନାଟକ ମଞ୍ଚସ୍ଥ ହୋଇଥିଲା । ଓରେଷ୍ଟିଆର କାହାଣୀ ଆମ ପାଇଁ କମ୍ୱଦନ୍ତୀ କିନ୍ତୁ ଗ୍ରୀକ୍‌ମାନେ ଏହାକୁ ଇତିହାସ ରୂପେ ଗ୍ରହଣ କରିଥିଲେ । ହୁଏତ ଏଥିରେ ଯଥେଷ୍ଟ ଐତିହାସିକ ଉପାଦାନ ଅଛି ।

ବୁଦ୍ଧିର ଅହଙ୍କାର ଯୋଗୁ ଗର୍ବୋନ୍ମତ୍ତ ଟାଣ୍ଟାଲସ୍ ଦେବତାଙ୍କ ପାଖରେ ଦ୍ରୋହୀ ହେଲେ । ତାଙ୍କର ବଂଶଧରମାନେ ମଧ୍ୟ ପାପକର୍ମରୁ ନିବୃତ୍ତ ହେଲେ ନାହିଁ । ଟାଣ୍ଟାଲସ୍‌ଙ୍କ ପୁତ୍ର ଫିଲପ୍‌ସ ଚକ୍ରାନ୍ତ କରି ଶ୍ୱଶୁରଙ୍କୁ ରଥଦୌଡ଼ ପ୍ରତିଯୋଗିତାରେ ମାରିଲେ ଓ ଏଲିସ୍‌ର

ସିଂହାସନ ଅଧିକାର କଲେ । ଫିଲପ୍‌ସଙ୍କର ଦୁଇପୁଅ ଥାଏଜ୍‌ଟିଜ୍ ଓ ଆଟ୍ରିଅସ୍ ଏବଂ ଗୋଟିଏ କନ୍ୟା ଏରୋପ୍ । ଥାଏଜ୍‌ଟିଜ୍ ଆଟ୍ରିଅସ୍‌ଙ୍କ ସ୍ତ୍ରୀ ସହିତ ପାପ-ପ୍ରଣୟରେ ଲିପ୍ତ ହୋଇଗଲ । ଏହାର ପ୍ରତିଶୋଧ ସ୍ୱରୂପ ଆଟ୍ରିଅସ୍ ଗୋଟିଏ ଭୋଜିରେ ଥାଏଜ୍‌ଟିଜ୍‌ଙ୍କ ନିଜ ସନ୍ତାନକୁ ରାନ୍ଧି ତାଙ୍କୁ ପରିବେଷଣ କରିଥିଲେ । ଏହା ଫଳରେ ଦୁଇଭାଇଙ୍କ ମଧ୍ୟରେ ଶତ୍ରୁତା ବଢ଼ି ଉଠିଲା । ଆଟ୍ରିଅସ୍‌ଙ୍କ ଉପରେ ପ୍ରତିଶୋଧ ନେବାକୁ ଥାଏଜ୍‌ଟିଜ୍‌ଙ୍କ ପୁତ୍ର ଏଗିସ୍ଥସ୍ ପ୍ରତିଜ୍ଞା କଲେ ।

ଆଗାମେମନନ୍ ଓ ମେନଲଉସ୍ ଆଟ୍ରିଅସ୍‌ଙ୍କର ଦୁଇଜଣ ସୁଯୋଗ୍ୟ ସନ୍ତାନ । ମେନଲଉସ୍‌ଙ୍କର ଭୁବନମୋହିନୀ ସ୍ତ୍ରୀ ହେଲେନ୍‌ଙ୍କୁ ଟ୍ରୟ ରାଜପୁତ୍ର ନେଇ ପଳାଇବାରୁ ସମଗ୍ର ଗ୍ରୀସ୍ ଏକଜୁଟ ହୋଇ ଟ୍ରୟ ଆକ୍ରମଣ କରିଥିଲେ । ଯାର ଆଗାମେମନନ୍ ହେଉଛନ୍ତି ଗ୍ରୀକ୍ ପକ୍ଷର ନେତା । କ୍ଲାଇଟେମ୍‌ନେଷ୍ଟ୍ରା ଆଗାମେମନନ୍‌ଙ୍କର ସ୍ତ୍ରୀ । ଦୁହିଁଙ୍କର ଗୋଟିଏ ପୁଅ ଓରେଷ୍ଟିଜ୍ ଏବଂ ଦୁଇଟି ଝିଅ—ଇଫିଜିନିଆ ଓ ଇଲେକ୍ଟ୍ରା । ଟ୍ରୟ ଅଭିମୁଖେ ବାହାରିଥିବା ଗ୍ରୀକ୍ ଜାହାଜଗୁଡ଼ିକ ଅନୁକୂଳ ବାୟୁ ଅଭାବରୁ ସମୁଦ୍ର ଭିତରେ ଅଟକିଲେ । ଭବିଷ୍ୟବକ୍ତା କହିଲେ, ଇଫିଜିନିଆକୁ ବଳି ଦେଲେ ଯାଇ ଦେବତା ସନ୍ତୁଷ୍ଟ ହେବେ ଓ ଅନୁକୂଳ ବାୟୁ ବହିବ । ତାଙ୍କ କଥା ମାନି ଆଗାମେମନନ୍ ନିଜ ଝିଅକୁ ବଳି ଦେବା ପାଇଁ ସମ୍ମତ ହୋଇଥିଲେ । ଏଇ କଥା ନେଇ କ୍ଲାଇଟେମ୍‌ନେଷ୍ଟ୍ରାଙ୍କ ମନରେ ସ୍ୱାମୀଙ୍କ ପ୍ରତି ଘୋର ଘୃଣା ଓ କ୍ରୋଧ ଜାତ ହେଲା ।

ଦଶବର୍ଷ ପରେ ଆଗାମେମନନ୍ ଟ୍ରୟ ଧ୍ୱଂସ କରି ଫେରିଛନ୍ତି । ଏହିଠାରେ ନାଟକର ଆରମ୍ଭ । ବିଜୟୀ ରାଜା ଦେଶକୁ ଫେରୁଛନ୍ତି । ତାଙ୍କର ଦୀର୍ଘ ଅନୁପସ୍ଥିତି ଭିତରେ ଗୋଟିଏ ବଡ଼ ପରିବର୍ତ୍ତନ ଘଟିଯାଇଛି । ରାଣୀ କ୍ଲାଇଟେମ୍‌ନେଷ୍ଟ୍ରା ଦିଅର ଏଗିସ୍ଥସ୍ ପ୍ରେମରେ ପଡ଼ିଛନ୍ତି । ଏ ପ୍ରେମ ସ୍ୱାମୀ ପ୍ରତି ଅବିଶ୍ୱସ୍ତ ଅସତୀ ନାରୀର ସାଧାରଣ ଦୈହିକ ପ୍ରଣୟ ନୁହେଁ । ସ୍ୱାମୀ ପ୍ରତି ପ୍ରଚଣ୍ଡ ଘୃଣା ଓ ପ୍ରତିଶୋଧ ପରାୟଣତାରୁ ରାଣୀ ପରପୁରୁଷକୁ ପ୍ରେମ କଲେ । ନାଟକରେ ତାଙ୍କର ଜଟିଳ ମନଃସ୍ତତ୍ତ୍ୱ ସୂକ୍ଷ୍ମ ରୂପ ନେଇ ଚମତ୍କାର ଭାବେ ଫୁଟି ପାରିଛି ।

ଟ୍ରୟର ଲୁଣ୍ଠନ ଦ୍ରବ୍ୟ ଭିତରୁ ବିଜୟୀ ନେତାଙ୍କ ଭାଗରେ ପଡ଼ିଥାଏ ଟ୍ରୟର ରାଜ-ଜେମା କାସାଣ୍ଡ୍ରା । କନ୍ୟାହନ୍ତା ସ୍ୱାମୀ ଜଣେ ସଉତୁଣୀକୁ ସାଙ୍ଗରେ ଧରି ଫେରୁଛି—ଏହା ଦେଖି ରାଣୀଙ୍କ ମନରେ କି ଭାବନା ଆସିଥିବ ? ଲକ୍ଷ ପ୍ରଶ୍ନଟିଏ । କାରଣ ଆଗାମେମନନ୍‌ଙ୍କୁ

ହତ୍ୟା କରିବାକୁ ରାଣୀ ଓ ଏଗିସ୍ଥସ୍ ସୁଚକ୍ରାନ୍ତ ଯୋଜନା ପ୍ରସ୍ତୁତ କରି ରଖିଥାନ୍ତି ।

କାସାଣ୍ଡ୍ରାଙ୍କ ଭବିଷ୍ୟବାଣୀ ନିଭୁଲ । ମାତ୍ର କେହି ତାଙ୍କ କଥା ବିଶ୍ୱାସ କରିବେ ନାହିଁ ବୋଲି ତାଙ୍କୁ ଅଭିଶାପ ଥାଏ । ତାଙ୍କର ପିତା ଟ୍ରୟ ରାଜା ତାଙ୍କ କଥା ନ ମାନି ଧ୍ୱଂସ ହେଲେ । ପୁଣି ତାଙ୍କ ସ୍ୱାମୀ ଓ ଗ୍ରୀକ୍ ପକ୍ଷର ନେତା ଆଗାମେମନନ୍ ତାଙ୍କ କଥା ବିଶ୍ୱାସ ନ କରିବାରୁ ମଲେ ।

କାସାଣ୍ଡ୍ରାଙ୍କ ଉପସ୍ଥିତି ରାଣୀଙ୍କ ମନୋବଳ ଦୃଢ଼ କରିଥିବ ମାତ୍ର । କାସାଣ୍ଡ୍ରା କେବଳ ଅନିନ୍ଦ୍ୟ ସୁନ୍ଦରୀ ନୁହନ୍ତି, ସେ ଭବିଷ୍ୟଦ୍ରଷ୍ଟା । ଆଗାମେମନନ୍ଙ୍କ ସହିତ ତାଙ୍କୁ ରାଜପ୍ରାସାଦ ଭିତରେ ମୃତ୍ୟୁ ଅପେକ୍ଷା କରିଛି ବୋଲି ସେ ଜାଣିଥିଲେ । ତେଣୁ ମହା ଆଡ଼ମ୍ବରରେ ଆଗାମେମନନ୍ଙ୍କୁ ରାଜପ୍ରାସାଦ ଭିତରକୁ ପାଛୋଟି ନିଆଯାଉଥିବା ବେଳେ ସେ ବିଳାପ କରିଛନ୍ତି । ରାଜାଙ୍କୁ ପଦେ ଚେତେଇ ବାହୁନି ଉଠିଛନ୍ତି । ରାଜ୍ୟ, ପିତାମାତା ଓ ପ୍ରିୟ ଆତ୍ମୀୟସ୍ୱଜନଙ୍କୁ ହରେଇଥିବା ସୁକୁମାରୀ ରାଜଜେମାଙ୍କ ବାହୁନାର କି ମୂଲ୍ୟ ? ତାଙ୍କ ବାହୁନା ତ ଟ୍ରୟ ଠାରୁ ସମସ୍ତେ ଦେଖି ଆସୁଛନ୍ତି !

ଯୁଦ୍ଧ ବିଜୟୀ ରାଜାଙ୍କୁ ପାଛୋଟି ନେବା ପାଇଁ ରାଣୀ ବିପୁଳ ଆୟୋଜନ କରିଥାନ୍ତି । ଦଶବର୍ଷ କାଳ ଅମିତ ପରାକ୍ରମୀ ଶତ୍ରୁ ସହିତ ଲଢ଼ି ବିଜୟ ଟୀକା ପିନ୍ଧି ଫେରିଥିବା ରାଜାଙ୍କୁ ଯେପରି ଭାବେ ଅଭ୍ୟର୍ଥନା କରିବା କଥା, ତା ଠାରୁ ବଳି ଆଡ଼ମ୍ବର ପୂର୍ଣ୍ଣ ଆୟୋଜନ ! ରାଣୀଙ୍କର ଚଞ୍ଚଳ ଢଙ୍ଗରଙ୍ଗ, ବିହ୍ୱଳିତ ଭାବ ଓ ଅତିଶୟ ଆବେଗ ଆଗାମେମନନ୍ଙ୍କୁ ଖାପ୍ ଛଡ଼ା ଲାଗିଛି । ସନ୍ଦେହ ଓ ଅଜଣା ଆଶଙ୍କା ତାଙ୍କ ମନକୁ ଛୁଇଁ ଉଭେଇ ଯାଇଛି । ରାଣୀଙ୍କର ଯାଦୃଶ ଆବେଗ ଗଦ୍‌ଗଦ୍ ଭାଷଣରେ ଆଗାମେମନନ୍ ବିରକ୍ତି ପ୍ରକାଶ କରିଛନ୍ତି । କିନ୍ତୁ ପର ମୁହୂର୍ତ୍ତରେ ତାଙ୍କୁ ସବୁ ସ୍ୱାଭାବିକ୍ ମନେ ହୋଇଛି, ସବୁ ଠିକ୍ ଅଛି ବୋଲି ସେ ଭାବିଛନ୍ତି । ଟ୍ରାଜେଡ଼ିର ଧାରା ଏହିପରି । ପାଦେ ଘୁଞ୍ଚି ଯାଇଥିଲେ ମଣିଷ ଖଣ୍ଡା ଉପରେ ପଡ଼ନ୍ତା ନାହିଁ । ମାତ୍ର ସେଇ ପାଦକ ସେ ଘୁଞ୍ଚି ପାରେନା ବୋଲି ଟ୍ରାଜେଡ଼ି ଘଟିଯାଏ ।

ଘୃଣ୍ୟ ସ୍ୱାମୀଙ୍କୁ କ୍ଲାଇଟେମ୍‌ନେଷ୍ଟ୍ରାଙ୍କର ଆବେଗଜଡ଼ିତ ସ୍ୱାଗତ ଭାଷଣ ସମସ୍ତ ଗ୍ରୀକ୍ ନାଟକ ଭିତରେ ଅତୁଳନୀୟ । ଦଶବର୍ଷ ଭିତରେ ଆଗାମେମନନ୍ଙ୍କ ମୃତ୍ୟୁ ସମ୍ବାଦ ବହୁବାର ପାଇ ପଥର ପାଲଟି ଯାଇଥିବା ତାଙ୍କର ରାଣୀ ସ୍ୱହସ୍ତରେ ସ୍ୱାମୀଙ୍କୁ ହତ୍ୟା କରିବାକୁ ପ୍ରସ୍ତୁତ ଥିଲାବେଳେ କହୁଛନ୍ତି,

the torrents of my tears
Have flowed to their last drop, and these poor eyes
Smart still with watching, weeping, through the midnight



[ ମଞ୍ଚ ଅନ୍ତରାଳରେ 'ଗ୍ରୀନ୍‌ରୁମ୍'ର ଦୃଶ୍ୟ । ଉପର ଧାଡ଼ିରେ ବେଶ ହୋଇ ଅଭିନେତାମାନେ ମୁଖା ଧରି ଅପେକ୍ଷା କରୁଛନ୍ତି । ତଳେ ସଙ୍ଗୀତଜ୍ଞ ଓ ସାଟୀର୍‌ଙ୍କର ସମାବେଶ । ଖ୍ରୀ: ପୂ ୫ମ ଶତାବ୍ଦୀର ଗୋଟିଏ ମଦ୍ୟପାତ୍ରରେ ଅଙ୍କିତ ଚିତ୍ର । ]

ଅଭିନୟ ? କିନ୍ତୁ ନିଖୁଣ ! ଦଶବର୍ଷ ପରେ ସ୍ୱାମୀକୁ ଭେଟୁଥିବା ସ୍ତ୍ରୀ କାନ୍ଦ ପକେଇବା ସ୍ୱାଭାବିକ୍ । ସବୁ ଲୁହ ଶୁଖି ଯାଇଥିବାରୁ ନ କାନ୍ଦିବା ଆହୁରି ସ୍ୱାଭାବିକ୍ ! କେବଳ ଆବେଗ ଜଡ଼ିତ ନୁହେଁ, ବହୁ ଅର୍ଥର ବ୍ୟଞ୍ଜନା ଫୁଟିଥିବା ରାଣୀଙ୍କର ସ୍ୱାଗତ ଭାଷଣ ଅତ୍ୟନ୍ତ ନାଟକୀୟ ପରିବେଶ ସୃଷ୍ଟି କରୁଛି । ଏବଂ କିଛି ନ ଜାଣି ନିର୍ବୋଧ ଛେଳଟିଏ କଂସେଇ-ଶାଳରେ ପଶିଲା ପରି ଆଗାମେମନନ୍ ଆଗେଇ ଚାଲିଛନ୍ତି ସାକ୍ଷାତ ମୃତ୍ୟୁ ପାଖକୁ । କିଏ ଶୁଣୁଛି କାସାଣ୍ଡ୍ରାଙ୍କର ବିଳାପ—

he that led the slips, that Conquered Troy,
knows not what doom the lustful bitch that fawned
with smiling mood and long protracted welcome .

ଭବିଷ୍ୟଦ୍ରଷ୍ଟାର ଚେତାବନୀକୁ କେହି ଭ୍ରୂକ୍ଷେପ କରନ୍ତି ନାହିଁ । ସେ ଦୁଃଖ ତାର କେତେ ଗଭୀର, କେତେ ବ୍ୟକ୍ତିଗତ— ଭ୍ରୂପର !

ଆଗାମେମନ୍ ଓ କାସାଣ୍ଡ୍ରାଙ୍କୁ ମାରିସାରି କ୍ଲାଇଟେମ୍‌ନେଷ୍ଟ୍ରା ଯେଉଁ ସନ୍ତୋଷ ଓ ଉଲ୍ଲାସ ପ୍ରକାଶ କରିଛନ୍ତି ତାହା ବଡ଼ ଭୟଙ୍କର ଲାଗେ । ସ୍ୱାମୀଙ୍କର ରକ୍ତରେ ସ୍ନାନ କରି ତାଙ୍କର ପ୍ରତିହିଂସାର ଜ୍ୱାଳା ଶୀତଳ ହୋଇଛି ।

a third time yet I hewed him……
And from his lips burst forth a gush of blood .
That splashed me, like flower of dark red rain;
And I rejoiced in it, as wheat grows glad
with heaven's moisture……

ଜଟିଳ ମନଃସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ ଭିତରେ ପାକ ହୋଇ କ୍ଲାଇଟେମ୍‌ନେଷ୍ଟ୍ରା ଏକ ଅଦ୍ଭୁତ ଓ ଜୀବନ୍ତ ଚରିତ୍ର ରୂପେ ଆବିର୍ଭୂତା । କାସାଣ୍ଡ୍ରାଙ୍କ ବ୍ୟକ୍ତିତ୍ୱକୁ ମଧ୍ୟ ଏସ୍କିଲସ୍ ସୁନ୍ଦର ଭାବେ ରୂପଦାନ ଦେଇଛନ୍ତି । ଚରିତ୍ର ଚିତ୍ରଣକୁ ବାଦ୍ ଦେଲେ ଦର୍ଶକ ହୃଦୟରେ ଲାଗିଯିବା ଭଳି ଦୃଶ୍ୟ ଗଢ଼ିବାରେ ଏସ୍କିଲସ୍ ସିଦ୍ଧହସ୍ତ । ରାଜପ୍ରାସାଦ ଉପରେ ବିନିଦ୍ର ଜାଗି ରହିଥିବା ଏକୁଟିଆ ଜଗୁଆଳ, ଛାତ ଉପରେ ଛିଡ଼ା ହୋଇ ଟ୍ରୟ୍ ଧ୍ୱଂସ ହେବାର ଅଗ୍ନିସଙ୍କେତ ନିରୀକ୍ଷଣ କରୁଥିବା କ୍ଲାଇଟେମ୍‌ନେଷ୍ଟ୍ରା, ମହା ଆଡ଼ମ୍ବରରେ ପ୍ରବେଶ କରୁଥିବା ଆଗାମେମନ୍ ପ୍ରଭୃତି ଦୃଶ୍ୟଗୁଡ଼ିକ ହୃଦୟରେ ଗଭୀର ରେଖାପାତ କରେ ।

ଟ୍ରୟ୍ ଧ୍ୱଂସ ହେବାର ଅଗ୍ନିସଙ୍କେତ ଦେଖିବା ପାଇଁ ରାଣୀ ଜଣେ ଜଗୁଆଳ ନିଯୁକ୍ତ କରିଥିଲେ । ନାଟକ ଆରମ୍ଭରେ ଆମେ ତାକୁ ଦେଖୁ ମାତ୍ର ଥରକ ପାଇଁ । ତାର ଭୂମିକାଟି ଏତେ ସଂକ୍ଷିପ୍ତ ଅଥଚ ଅତି ବଳିଷ୍ଠ । ଦଶବର୍ଷକାଳ ବିନିଦ୍ର ଛାତର ଗୋଟିଏ କୋଣରେ ପଡ଼ି ରହିଥିବା ଏହି ଜଗୁଆଳ ଚରିତ୍ରଟି ଏକ ପ୍ରତୀକ ପର୍ଯ୍ୟାୟକୁ ଉନ୍ନୀତ ହୋଇଛି ।

Now Heaven send relief from all my labour !
This year-long watch that keep me lying here
... ... ...
on this couch of mine, dew-drenched, uneasy
That no dreams haunt (for how dare I close eyelid,
when Fear, not Sleep stands always at my side ?)

ଜଗୁଆଳର ଅପରନ୍ତ ପ୍ରତୀକ୍ଷାଜନିତ ଭୟ ଓ ଉତ୍କଣ୍ଠାର ଅବସାନ ଘଟିଛି ଯେଉଁ ରାତ୍ରରେ ସେ ଈପ୍‌ସିତ ଅଗ୍ନିସଙ୍କେତ ଦେଖିପାରିଛି—

All hail, thou splendour turning night today.

ଟ୍ରୟ କାହିଁ କେତେ ଦୂରରେ । ସେଠାରୁ ସିଧାସଳଖ କୌଣସି ସଙ୍କେତ ଆସିବା ଅସମ୍ଭବ । ତେବେ ଟ୍ରୟ ଧ୍ୱଂସ ହେଲା ବୋଲି ରାଣୀ ଜାଣିଲେ କପରି ? କି ସଙ୍କେତ କେଉଁଠୁ ପାଇଲେ ? କୋରସ୍ ନେତା ରାଣୀଙ୍କୁ ଏହି ପ୍ରଶ୍ନ ପଚାରିଛନ୍ତି । ଖୁବ୍ ନାଟକୀୟ ତାର ଉତ୍ତର ।

ନେତା—ଆପଣ ଏତେ ନିଶ୍ଚିତ କପରି ? ( ଟ୍ରୟ ଧ୍ୱଂସ ହୋଇଛି ବୋଲି ) କିଛି ପ୍ରମାଣ ପାଇଛନ୍ତି ।

ରାଣୀ—ପାଇଛି । ପାଇଛି । ଯଦି ଈଶ୍ୱର ମୋତେ ଠକି ନ ଥାନ୍ତି ।

ନେତା—କ'ଣ ଆପଣଙ୍କୁ ସ୍ୱପ୍ନରେ ସେହିପରି ଦିଶିଲା ?

ରାଣୀ—ସୁପ୍ତ ମସ୍ତିଷ୍କକୁ ମୁଁ ବିଶ୍ୱାସ କରେନା ।

... ... ...

ନେତା—କେବେ ଟ୍ରୟର ପତନ ହେଲା ?

ରାଣୀ—ଯେଉଁ ରାତ୍ର ଏଇ ସକାଳକୁ ପ୍ରସବ କରିଛି ସେଇ ରାତ୍ରରେ ।

ନେତା—କେଉଁ ଦୂତ ଏତେ ଦ୍ରୁତଗାମୀ ?

ରାଣୀ—Hephaestus !—that sped his flame from Ida's top ,
Whence beacon after beacon hath relayed

This message—fire to Argos—first Mount Ida
To Herme's Crag on Lemnos, then from
Lemnos, Athos····· ···

ଇଦା ପର୍ବତ ଶୃଙ୍ଗରୁ ଲେମ୍‌ନସ୍‌, ଲେମ୍‌ନସ୍‌ରୁ ଆଥସ୍‌, ଆଥସ୍‌ରୁ ମାସିଷ୍ଟସ୍‌, ମାସିଷ୍ଟସ୍‌ରୁ ମେସାପିଅନ୍‌ ··ଶୃଙ୍ଗରୁ ଶୃଙ୍ଗ ଡେଇଁ ଯାଉଥିବା ଅଗ୍ନିଶିଖାର ଏହ୍ୱ ରଲେ ଦୌଡ଼ ଦର୍ଶକର କଳ୍ପନାକୁ ଉଦ୍ଘାଟିତ କରେ । ତା'ର କଳ୍ପନାରେ ଏ ଦୃଶ୍ୟ ଆଙ୍କି ହୋଇଯାଏ ।

ଦ୍ୱିତୀୟ ନାଟକ Liberation Bearers ରେ ପିତୃହତ୍ୟାର ପ୍ରତିଶୋଧ ସ୍ୱରୂପ ଓରେଷ୍ଟିଜ୍‌ ତାର ମାତା ଓ ପିତୃବ୍ୟଙ୍କୁ ହତ୍ୟା କରନ୍ତି । ଓରେଷ୍ଟିଜ୍‌ ଯେପରି ପିତାର ମୃତ୍ୟୁ ଦେଖିବ ନାହିଁ ଓ ସେ ଘଟଣାଟିକୁ ଭୁଲିଯିବ ସେଥିପାଇଁ କ୍ଲାଇଟେମ୍‌ନେଷ୍ଟ୍ରା ଓରେଷ୍ଟିଜ୍‌କୁ ଶତ୍ରୁଙ୍କ ହାତରୁ ରକ୍ଷା କରିବା ଆଳରେ ଦୂର ବିଦେଶକୁ ପଠାଇ ଦେଇଥିଲେ । ମାତ୍ର ସେଇ ଦୂର ଦେଶରେ ବାଳକ ଓରେଷ୍ଟିଜ୍‌ ହୃଦୟରେ କେତେଜଣ ପ୍ରତିହିଂସାର ନିଆଁ ଜାଳି ଦେଇଛନ୍ତି । ବଡ଼ ହେଲା ପରେ ଓରେଷ୍ଟିଜ୍‌ ଛଦ୍ମବେଶରେ ଆର୍‌ଗୋସ୍‌ ଫେରନ୍ତି । ମାତୃହନ୍ତାର ମାନସିକ ଅବସ୍ଥାକୁ ନାଟ୍ୟକାର ସୁନ୍ଦର ଭାବେ ରୂପ ଦେଇଛନ୍ତି । ମାଆକୁ ମାରି ସାରି ଅର୍ଦ୍ଧ ପାଗଳ ଓରେଷ୍ଟିଜ୍‌ ଘୋଷଣା କରନ୍ତି,

While I am still not mad I here declare
To all who love me, and confess that I
Have slaiv my mother.

ତୃତୀୟ ନାଟକର ନାମ Eumenides ବା Well-wishers । ମାତୃହନ୍ତା ଓରେଷ୍ଟିଜ୍‌କୁ ସମସ୍ତେ ଘୃଣା କରନ୍ତି । ସେ ଯୁଆଡ଼େ ଯାଆନ୍ତି ଫ୍ୟୁରି ଦେବୀମାନେ ( Furies ) ତା ପଛରେ ଧାଇଁଛନ୍ତି । ମାତୃହନ୍ତାକୁ କଲବଲ କରି ମାରିବା ସେମାନଙ୍କର ଉଦ୍ଦେଶ୍ୟ । ଡେଲ୍‌ଫାଇରେ ଓରେଷ୍ଟିଜ୍‌ ଆପୋଲୋ ଦେବଙ୍କ ଆଶ୍ରୟ ନେଉଛନ୍ତି । ଆପୋଲୋ ତାଙ୍କୁ ଆଶ୍ୱାସନା ଦେଇଛନ୍ତି । ତଥାପି ଫ୍ୟୁରି ଦେବୀଗଣ ତା ପିଛା ଛାଡ଼ ନାହାନ୍ତି । ଓରେଷ୍ଟିଜ୍‌ ଏଥେନ୍‌ସ ଆସି ଦେବୀ ଏଥେନାଙ୍କ ଶରଣ ପଶନ୍ତି । ଏଥେନାଙ୍କ କୃପାରୁ ଫ୍ୟୁରି ଦେବୀଙ୍କର କୋପ ଶାନ୍ତ ହୋଇଛି ଓ ସେମାନେ ଓରେଷ୍ଟିଜ୍‌କୁ ଛାଡ଼ ଦେଇଛନ୍ତି ।

ପ୍ରୋମିଥିଅସ୍ ସହିତ ତୁଳନା କଲେ ଓରେଷ୍ଟିଆର ନାଟ୍ୟକାର ଉନ୍ନତଶୀଳ । ତଥାପି ମାତୃହନ୍ତାକୁ କ୍ଷମା ଦେବା ପାଇଁ ନାଟ୍ୟକାରଙ୍କର ଯୁକ୍ତି ଆବେଗପୂର୍ଣ୍ଣ ଓ ମର୍ମସ୍ପର୍ଶୀ । ଏଥେନାଙ୍କ କଥା ମାନିନେଇ ଫୁରି-ନେବୀ ଘୋଷଣା କରନ୍ତି, "From this day a new order is born" । ନିୟମର ଖଣ୍ଡାରେ ମଣିଷକୁ ହାଣିବା ପାଇଁ ଉଦ୍ୟତ ଧର୍ମ ପରିବର୍ତ୍ତେ ମଣିଷ ପ୍ରତି ସମ୍ବେଦନଶୀଳ ଓ କ୍ଷମାଶୀଳ ଏକ ନୂତନ ଧର୍ମର ଆବାହନ କରିଛନ୍ତି ଏସ୍କିଲସ୍ । ତେବେ ନୂତନତ୍ୱ ନାମରେ ଏସ୍କିଲସ୍ ଦେବତାଙ୍କୁ ଅସ୍ୱୀକାର କରି ନାହାନ୍ତି । ଗୋଟିଏ ନୂଆ ନୈତିକ ମୂଲ୍ୟ ଦେବତାଙ୍କ ସମର୍ଥନ ପାଉଥିବା ଉଚିତ ।

କଥିତ ଅଛି, ଏସ୍କିଲସ୍‌ଙ୍କ ଚନ୍ଦାମୁଣ୍ଡକୁ ପଥର ଭାବି ଈଗଲ୍ ତାଙ୍କ ମୁଣ୍ଡ ଉପରେ ଗୋଟିଏ କଇଁଚ ଖସେଇ ଦେବାରୁ ଏସ୍କିଲସ୍‌ଙ୍କର ମୃତ୍ୟୁ ଘଟିଲା । ଟ୍ରାଜେଡ଼ି କମେଡ଼ିର ସମ୍ମିଶ୍ରଣରେ ଏକ ଡାଇଓନିସସୀୟ ନାଟକୋଚିତ !

## ସୋଫୋକ୍ଲିଜ୍ (ଖ୍ରୀ· ପୂ ୪୯୬-୪୦୬)

ଏସ୍କିଲସ୍‌ଙ୍କ ନାଟକ ସବୁ ଅବିଶ୍ୱାସର ତରଙ୍ଗ ଉଠୁଥିବା ବିଶ୍ୱାସର ସ୍ଥିର ସମୁଦ୍ର ପରି । ଏ ସମୁଦ୍ର ଜୁଆରିଆ କିନ୍ତୁ କୂଳ ଲଙ୍ଘନ କରେନା । ବିଶ୍ୱାସର ପାରେଶରେ ଅବିଶ୍ୱାସର ଧକ୍କାକୁ ସମ୍ଭାଳି ନିଏ । ଖ୍ରୀ. ପୂ ପଞ୍ଚମ ଶତାବ୍ଦୀର ବୁଦ୍ଧିମାନ୍ ଓ ସ୍ୱର୍ଣ୍ଣକାତର ଗ୍ରୀକ୍ ଅନ୍ତରରେ ଯେଉଁ ଅବିଶ୍ୱାସ ଓ ବିଦ୍ରୋହ ଦେଖା ଦେଇଥିଲା, ତାର ସ୍ପୃହ ଏସ୍କିଲସ୍‌ଙ୍କ ନାଟକରେ ରହିଛି । କିନ୍ତୁ ସେ ନିଜେ ବିଶ୍ୱାସ ପକ୍ଷର ଯୋଦ୍ଧା । ଏସ୍କିଲସ୍‌ଙ୍କ ପାଇଁ ଜିଅସ୍ ହେଉଛନ୍ତି ଜଗତରେ ନୈତିକ ଶୃଙ୍ଖଳା ବଜାୟ ରଖିଥିବା ବିଧାତା । ମଣିଷ ଅଲଙ୍ଘିତ ନୈତିକ ନିୟମର ଅଧୀନ । ଓରେଷ୍ଟିଜ୍ ଗୋଟିଏ ନୈତିକ ନିୟମ ଭଙ୍ଗ କରି (ମାତୃହତ୍ୟା) ବଞ୍ଚିଯାଇଛି—କାରଣ ତା କାର୍ଯ୍ୟ ଦେବତାଙ୍କର ସମର୍ଥନ ପାଇଛି ।

ସୋଫୋକ୍ଲିଜ୍‌ଙ୍କ ବେଳକୁ ବିଶ୍ୱାସର ବନ୍ଧ ଦୁର୍ବଳ । ବନ୍ଧରେ ଘାଇ ଫିଟିଛି । ସମୁଦ୍ର ଅଧିକ ଜୁଆରିଆ ହୋଇ ସ୍ଥାନେ ସ୍ଥାନେ ଅଳ୍ପ କୂଳ ଲଙ୍ଘନ କରିଛି । ବନ୍ଧକୁ ଅତୁଟ ରଖିବା ପାଇଁ ସୋଫୋକ୍ଲିଜ୍ ଅଧିକ ବ୍ୟାକୁଳ ! ଯଦିଓ ଅସନ୍ତର୍କ ମୁହୂର୍ତ୍ତରେ ସୋଫୋକ୍ଲିଜ୍‌ଙ୍କ ଠାରୁ ବିଶ୍ୱାସର ଭଙ୍ଗା ଦର୍ପଣରେ ମଣିଷର ପ୍ରତିବିମ୍ବ ଆମେ ଦେଖିବାକୁ ପାଉ ।

ୟୁରିପିଡ଼ିଜ୍‌ଙ୍କ ନାଟକରେ ସମୁଦ୍ର ଠାଏ ଠାଏ କୂଳ ଲଙ୍ଘନ କରି ମାଡ଼ି ଯାଇଛି । ବିଶ୍ୱାସର ବନ୍ଧ ଭଙ୍ଗା ।

ତେବେ ମନେରଖିବାକୁ ହେବ ଯେ ସମସାମୟିକ ତିନିଜଣ ମହାନ୍ ନାଟ୍ୟକାରଙ୍କ ସମ୍ପର୍କରେ ଏହା ଏକ ମୋଟାମୋଟି ତୁଳନାତ୍ମକ ବିଚାର । ଏହି ତିନିଜଣଙ୍କ ମଧ୍ୟରୁ କେହି ଧର୍ମଗୁରୁ ନୁହନ୍ତି ! କିମ୍ବା ବିଶ୍ୱାସର ପକ୍ଷରେ ଥିବାରୁ କାହା ସୃଷ୍ଟିର କଳାତ୍ମକ ମୂଲ୍ୟହାନି ଘଟିନାହିଁ । ମଣିଷ ପ୍ରତି ପ୍ରତ୍ୟେକେ ସହାନୁଭୂତିଶୀଳ ଥିଲେ ବୋଲି କହିବା ବାହୁଲ୍ୟ ମାତ୍ର । ପୁଣି ବିଶ୍ୱାସରୁ ଅବିଶ୍ୱାସ ଆଡ଼କୁ ଗୋଟାଏ ସିଧା ଗଡ଼ାଣିରେ ତିନି ନାଟ୍ୟକାର ଉପର ତଳ ହୋଇ ଅବସ୍ଥିତ ବୋଲି ମନେ କରିବା ପିଲାଳିଆ ବିଚାର । ପ୍ରତ୍ୟେକ ନାଟ୍ୟକାରର ନାଟକ ଏପରି ଗମ୍ଭୀର ଓ ଜଟିଳ ଯେ ସେମାନଙ୍କ ମଧ୍ୟରେ ଏକ ସରଳ ସମ୍ପର୍କ ସ୍ଥାପନ କରିବାରେ ଅନେକ ବିପଦ ରହିଛି । ଉପରୋକ୍ତ ତୁଳନାତ୍ମକ ବିଚାର କଲାବେଳେ ଏହିକଥା ମନେ ରଖିବାକୁ ହେବ ।

ତିନି ନାଟ୍ୟକାରଙ୍କ ମଧ୍ୟରେ ସୋଫୋକ୍ଲିଜ୍ ନିଃସନ୍ଦେହ ଭାବେ ସବୁଠାରୁ ଅଧିକ ନିରାଶାବାଦୀ । ତାଙ୍କର ଗଭୀର ନୈରାଶ୍ୟବୋଧ ତାଙ୍କ ନାଟକଗୁଡ଼ିକରେ ପ୍ରତିଫଳିତ । ସୋଫୋକ୍ଲିଜ୍‌ଙ୍କ ମନୋଭାବ ହେଉଛି, "ଯେଉଁ ବ୍ୟକ୍ତି ଆଦୌ ଜନ୍ମ ହୋଇ ନାହିଁ ସେ ସବୁଠାରୁ ଭାଗ୍ୟବାନ ! ଜନ୍ମ ହୋଇ ଶୈଶବରୁ ମରୁଥିବା ଲୋକର ଆସନ ତା ତଳକୁ !!" ଏପରି ପରମ ନିରାଶାବାଦୀଙ୍କ ପ୍ରତି ଭାଗ୍ୟଦେବୀ ସବୁ ଦିଗରୁ ପ୍ରସନ୍ନ ଥିଲେ । ଏଥେନ୍ସର ଏକ ଧନୀ ପରିବାରରେ ସୋଫୋକ୍ଲିଜ୍‌ଙ୍କ ଜନ୍ମ । ତାଙ୍କ ପିତାଙ୍କର ଖଣ୍ଡା ତଲୁଆର୍ କାରଖାନା ଥିଲା । ପାରସ୍ୟଯୁଦ୍ଧ ସମୟରେ ସେ ଭଲ ପଇସା କରିଗଲେ । ବିଧାତା ସୋଫୋକ୍ଲିଜଙ୍କୁ ଯେଉଁ ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟର ସମ୍ପଦ ଦେଇଥିଲା, ତାହା ତାଙ୍କର ପାର୍ଥିବ ସମ୍ପଦଠାରୁ ଆହୁରି ବିରଳ । ନାଟ୍ୟକାର ହିସାବରେ ସୁନାମ ଅର୍ଜନ କରିବା ପୂର୍ବରୁ କୁସ୍ତି ଓ ସଙ୍ଗୀତ ପ୍ରତିଯୋଗିତାରେ ସେ ପୁରସ୍କୃତ ହୋଇଥିଲେ । ସାଲାମିସ୍ ଯୁଦ୍ଧକ୍ଷେତ୍ରରେ ଏଥେନ୍ସ ଜିଣିବା ପରେ ବିଜୟୋତ୍ସବ ପାଳନ କରିବା ପାଇଁ ତରୁଣମାନଙ୍କର ଏକ ବିରାଟ ଶୋଭାଯାତ୍ରା ନଗର ପରିକ୍ରମା କରିଥିଲା । ଏହାର ନେତୃତ୍ୱ ନେଇଥିଲେ ନୃତ୍ୟଗୀତ ପ୍ରବୀଣ ଓ ସୁଦର୍ଶନ ସୋଫୋକ୍ଲିଜ୍ । ତାଙ୍କର ପ୍ରତିମୂର୍ତ୍ତିମାନଙ୍କରୁ ଜଣାଯାଏ ଯେ ବୃଦ୍ଧକାଳ ପର୍ଯ୍ୟନ୍ତ ସୋଫୋକ୍ଲିଜ୍‌ଙ୍କ ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ଅତୁଟ ଥିଲା । ମୃତ୍ୟୁ ପର୍ଯ୍ୟନ୍ତ ସେ କର୍ମଠ ଥିଲେ । ଯମରାଜାଙ୍କ କୃପାରୁ ନିରୋଗ ଓ ସୁସ୍ଥ ଶରୀରରେ ସେ ଦୀର୍ଘ କାଳ ବଞ୍ଚିଥିଲେ ।

କହିବା ବାହୁଲ୍ୟ, ଧନ ଓ ସ୍ୱାସ୍ଥ୍ୟ ତୁଳନାରେ ବିଧାତା ତାଙ୍କୁ ଅନେକ ବେଶୀ ପ୍ରତିଭା ଦେଇ ପୃଥିବୀକୁ ପଠାଇଥିଲା । ଅଠେଇଶ ବର୍ଷ ବୟସରେ ସୋଫୋକ୍ଲିଜ୍ ପ୍ରଥମ କରି ନାଟକୋତ୍ସବରେ ପ୍ରଥମ ପୁରସ୍କାର ପାଇଲେ । ଏଥିପାଇଁ ଏସ୍କିଲସ୍‌ଙ୍କୁ ଏକଚାଳିଶ ଓ ୟୁରିପିଡ଼ିଜ୍‌ଙ୍କୁ ଚଉରାଳିଶ ବର୍ଷ ବୟସ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଥିଲା । ଏସ୍କିଲସ୍ ତେରଥର ଓ ୟୁରିପିଡ଼ିଜ୍ ପାଞ୍ଚଥର ପ୍ରଥମ ପୁରସ୍କାର ପାଇଥିବା ସ୍ଥଳେ ସୋଫୋକ୍ଲିଜ୍ ଚବିଶ ଥର ଏହି ଗୌରବର ଅଧିକାରୀ ହୋଇଥିଲେ । ସୋଫୋକ୍ଲିଜ୍ ଥିଲେ ପେରିକ୍ଲିଜ୍‌ଙ୍କର ବ୍ୟକ୍ତିଗତ ବନ୍ଧୁ । କୌଣସି ବିଶେଷ ଗୁଣ ଯୋଗୁ ନୁହେଁ, କବି ହିସାବରେ ତାଙ୍କର ଯଶସମ୍ମାନ ଯୋଗୁ ସୋଫୋକ୍ଲିଜ୍ କେତେକ ଉଚ୍ଚ ପଦରେ ଅଧିଷ୍ଠିତ ହୋଇଥିଲେ । ଏମାନଙ୍କ ମଧ୍ୟରୁ ଏଥେନ୍‌ସ ସାମ୍ରାଜ୍ୟର କୋଷାଧ୍ୟକ୍ଷ ଓ ସାମୋସ୍ ବିରୁଦ୍ଧରେ ଯୁଦ୍ଧ ଅଭିଯାନ କରିଥିବା ସେନା-ବାହିନୀର ସେନାଧ୍ୟକ୍ଷ ( ଏସ୍କିଲସ୍‌ଙ୍କ ପରି ଯୋଦ୍ଧା ହିସାବରେ ତାଙ୍କର ସୁନାମ ନ ଥାଇ ମଧ୍ୟ ) ଭାବେ ନିଯୁକ୍ତି ଉଲ୍ଲେଖଯୋଗ୍ୟ ।

ସୋଫୋକ୍ଲିଜ୍ ଥିଲେ ଏଥେନ୍‌ସର ସବୁଠାରୁ ଲୋକପ୍ରିୟ ନାଟ୍ୟକାର । ତାଙ୍କର ଗମ୍ଭୀର ବିଷାଦଭରା ନାଟକଗୁଡ଼ିକ କିପରି ଏତେ ଲୋକପ୍ରିୟ ହେଲା ତାହା ଏକ ବିସ୍ମୟ ।

ସୋଫୋକ୍ଲିଜ୍ ଶହେ କୋଡ଼ିଏଟି ନାଟକର ରଚୟିତା । ଏକକାଳୀନ ରଙ୍ଗମଞ୍ଚ ଉପରେ ଉପସ୍ଥିତ ଅଭିନେତାଙ୍କ ସଂଖ୍ୟା ସେ ଦୁଇରୁ ତିନିକୁ ବଢ଼ାଇଥିଲେ ଓ ତାଙ୍କର ସ୍ୱର ପଡ଼ିଯିବା ପର୍ଯ୍ୟନ୍ତ ବହୁବର୍ଷ ଧରି ନିଜେ ଅଭିନୟ କରୁଥିଲେ । ସୋଫୋକ୍ଲିଜ୍‌ଙ୍କର ଏତେ-ଗୁଡ଼ିଏ ନାଟକ ଭିତରୁ ମାତ୍ର ସାତୋଟି କାଳମୁଖରୁ ବଞ୍ଚି ରହିଛନ୍ତି । ପ୍ରତିଯୋଗିତାର ନିୟମ ଦୃଷ୍ଟିରୁ ଏସ୍କିଲସ୍ ନାଟକତ୍ରୟୀ ( Trilogy ) ରଚନା କରୁଥିଲେ । ସୋଫୋକ୍ଲିଜ୍ ଏହି ପରମ୍ପରା ଭାଙ୍ଗି ପ୍ରତିଯୋଗିତାରେ ତିନୋଟି ସ୍ୱତନ୍ତ୍ର ନାଟକ ଦାଖଲ କଲେ ।

ସୋଫୋକ୍ଲିଜ୍‌ଙ୍କ ନାଟକଗୁଡ଼ିକରେ ଚରିତ୍ରଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣକୁ ଗୁରୁତ୍ୱ ଦିଆଯାଇଛି । ଏ ଦୃଷ୍ଟିରୁ ସୋଫୋକ୍ଲିଜ୍‌ଙ୍କ ନାଟକରେ ଆମେ ଆଧୁନିକତାର ଗନ୍ଧ ପାଉ । ରାଜା ଅଡ଼ିପସ୍ (Oediphus the king) ନାଟକରେ ଗୋଟିଏ ବିଖ୍ୟାତ ଉକ୍ତି ହେଉଛି,

Many wonders there be, but naught more wonderous than man.

ସୋଫୋକ୍ଲିଜ୍‌ଙ୍କର ଦୁଇଟି ନାଟକର ଦୁଇଜଣ ଚରିତ୍ର ଅଡ଼ିପସ୍ ଓ ଇଲେକ୍‌ଟ୍ରାଙ୍କ ନାମରେ ମନୋବିଜ୍ଞାନର ଦୁଇପ୍ରକାର 'ନ୍ୟୁରୋସିସ୍' ନାମିତ ହୋଇଛି । ଏସ୍କିଲସ୍ (ଲିବରେସନ୍ ବିଅରର୍ସ ନାଟକରେ) ଓ ସୋଫୋକ୍ଲିଜ୍ ଉଭୟେ ଇଲେକ୍‌ଟ୍ରା ଚରିତ୍ରକୁ ରୂପ ଦେଇଛନ୍ତି । ମାତ୍ର ଏସ୍କିଲସ୍ ନୈତିକ ସମସ୍ୟାର (ପିତୃହତ୍ୟାର ପ୍ରତିଶୋଧ ନେବା ପାଇଁ ମାତୃହତ୍ୟା) ଉନ୍ମୋଚନ ପ୍ରତି ଗୁରୁତ୍ୱ ଦେଇଥିବା ସ୍ଥଳେ ସୋଫୋକ୍ଲିଜ୍ (ଇଲେକ୍‌ଟ୍ରା ନାଟକରେ) ମାଆ ପ୍ରତି ଘୃଣାରେ ବିଷାକ୍ତ ଇଲେକ୍‌ଟ୍ରାର ମନକୁ ବିଶ୍ଳେଷଣ କରିଛନ୍ତି ।

ଚରିତ୍ରକୁ ଫୁଟାଇବା ପ୍ରତି ଗୁରୁତ୍ୱ ଦେବା ସହିତ ନାଟକର ପ୍ଲଟ ପ୍ରତି ସୋଫୋକ୍ଲିଜ୍ ବିଶେଷ ଧ୍ୟାନ ଦେଇଥିଲେ । ଆରିଷ୍ଟୋଟଲ୍ କହନ୍ତି, ପ୍ଲଟ୍ ଟ୍ରାଜେଡ଼ିର ମୁଖ୍ୟବସ୍ତୁ ଓ ସୋଫୋକ୍ଲିଜ୍ ହେଉଛନ୍ତି ସର୍ବଶ୍ରେଷ୍ଠ ଟ୍ରାଜିକ୍ କବି । ମହାନ୍ ଟ୍ରାଜେଡ଼ିର ଦୃଷ୍ଟାନ୍ତ ଦେବାକୁ ଯାଇ ଆରିଷ୍ଟୋଟଲ୍ ସର୍ବଦା Oedipus the king ଓ Oedipus at Colonus ନାଟକ ଦ୍ୱୟ ଉଲ୍ଲେଖ କରନ୍ତି । ସୋଫୋକ୍ଲିଜ୍ ଟ୍ରାଜେଡ଼ି ରଚନାର ଶୈଳୀ ଓ ଟେକ୍‌ନିକ୍‌ରେ ଉଚ୍ଚମାନ ପ୍ରତିଷ୍ଠା କରିଗଲେ । ସୋଫୋକ୍ଲିଜ୍‌ଙ୍କ ରଚନାର କଳାତ୍ମକ ସୌକୁମାର୍ଯ୍ୟ ସହଜେ ଧରାପଡ଼େ । ସ୍ଥାପତ୍ୟରେ ଫିଡ଼ିଆସ୍ ଯେଉଁ ସୂକ୍ଷ୍ମତା ଓ ନିଖୁଣତା ଆଣିଲେ, ଟ୍ରାଜିକ୍ କବିତାକୁ ତାହା ନେଇ ଆସିବା ସୋଫୋକ୍ଲିଜ୍‌ଙ୍କ କୃତିତ୍ୱ ।

ବିଶ୍ୱବିଧାନ ଏଡ଼େ ସୂକ୍ଷ୍ମ ଯେ ତାହା ମଣିଷର ବୋଧଗମ୍ୟତାର ସୀମା ବାହାରେ । ଈଶ୍ୱରଙ୍କର ଅଲିଖିତ ନିୟମଗୁଡ଼ିକୁ ଜାଣି ନ ପାରି ମଣିଷ ଦୁଃଖ ଭୋଗେ । ଦୁଃଖ ପାଇବା ଦାମ୍ଭିକ, ଅମିତାଚାରୀ ଓ ସ୍ୱେଚ୍ଛାଚାରୀଙ୍କର ଭାଗ୍ୟଲିପି । ମଣିଷକୁ ନମ୍ର, ସଂଯତ ଓ ମିତାଚାରୀ ରହିବା ପାଇଁ ଗ୍ରୀକ୍ ସାହିତ୍ୟରେ ମାତ୍ରାଧିକ ଉପଦେଶ ଶୁଣିବାକୁ ମିଳେ ! ସୋଫୋକ୍ଲିଜ୍‌ଙ୍କ ନାଟକରେ ଆମେ ଏହି ସ୍ୱର ଶୁଣିପାରୁ । ବୀର ଆଜାକ୍‌ସଙ୍କ ଜୀବନର କରୁଣ ପରିସମାପ୍ତି ପାଇଁ ତାଙ୍କର ଦାମ୍ଭିକତା ଓ ଔଦ୍ଧତ୍ୟ ଦାୟୀ ବୋଲି ସେ ତାଙ୍କର 'ଆଜାକ୍‌ସ' ନାଟକରେ ସୂଚନା ଦେଇଛନ୍ତି ।

ଟ୍ରୟ୍ ଯୁଦ୍ଧରେ ଆଜାକ୍‌ସ ଥିଲେ ଗ୍ରୀକ୍ ପକ୍ଷର ମହାନ୍ ବୀର । ଆକିଲ୍‌ସଙ୍କ ମୃତ୍ୟୁପରେ ଗ୍ରୀକ୍‌ମାନେ ତାଙ୍କୁ ସେନାପତି ରୂପେ ବାଛିବେ ବୋଲି ସେ ଆଶା କରୁଥିଲେ । ମାତ୍ର

ଗ୍ରୀକ୍‌ମାନେ ଅଡ଼ିସିଅସ୍‌ଙ୍କୁ ସେନାପତି ଭାବେ ବାଛି ତାଙ୍କୁ ଆକିଲିସ୍‌ଙ୍କ ଅସ୍ତ୍ରଶସ୍ତ୍ର ପ୍ରଦାନ କରିବା ଘଟଣା ଆଜାକ୍‌ସଙ୍କୁ ବଡ଼ ଧକ୍‌କା ଦେଲା । ସେ କ୍ରୋଧରେ ପାଗଳ ହୋଇଯାଇ ପ୍ରଧାନ ଗ୍ରୀକ୍‌ବୀରଙ୍କୁ ମାରି-ପକେଇବାକୁ ସ୍ଥିର କଲେ । ମାତ୍ର ଦେବୀ ଏଥେନାଙ୍କ କପଟ ଯୋଗୁ ଆଜାକ୍‌ସ ପଲେ ମେଣ୍ଢାଙ୍କୁ ମାରି ଗ୍ରୀକ୍‌-ବୀରଙ୍କୁ ହତ୍ୟା କରିଛନ୍ତି ବୋଲି ମନେ କଲେ । କ୍ରୋଧ ଶାନ୍ତ ହୋଇଯିବାରୁ ଘନିଷ୍ଠ ବନ୍ଧୁମାନଙ୍କୁ ହତ୍ୟା କରିଛନ୍ତି ଭାବି ଆଜାକ୍‌ସଙ୍କ ମନରେ ଗଭୀର ଅନୁତାପ ସୃଷ୍ଟି ହେଲା ଓ ନିଜ ଖଣ୍ଡାରେ ଭୁଷି ହୋଇ ସେ ମଲେ ।

ଅତି ସର୍ବତ୍ର ବର୍ଜୟେତ୍ ଗ୍ରୀକ୍‌ଙ୍କର ପ୍ରାତଃ ସ୍ମରଣୀୟ ନୀତିବାକ୍ୟ । ଅଥଚ ସେମାନେ ଥିଲେ ଲଗାମ-ଛଡ଼ା ! ରାତି ରାତି ମଦ୍ୟପାନରେ ମାତାଲ ହୋଇ ସେମାନେ ଡାଇଓନିସସ୍‌ଙ୍କ ପୂଜା କରୁଥିଲେ । ନଗର ସାରା ଲୋକେ ତାମସାରେ ମାତିବା ସେମାନଙ୍କ ସଂଯମର ନମୁନା !

ଥରେ ଆଜାକ୍‌ସ ଯୁଦ୍ଧକ୍ଷେତ୍ରରେ ଦେବୀ ଏଥେନାଙ୍କୁ କହିଥିଲେ ଯେ ଦେବୀ ଅନ୍ୟ ଗ୍ରୀକ୍‌ବୀରଙ୍କୁ ସାହାଯ୍ୟ କରନ୍ତୁ । ନିଜ ବାହୁ ବଳରେ ସେ ଟ୍ରୟ୍‌ବୀରଙ୍କର ମୁକାବିଲା କରିପାରିବେ । ଏହି ଗର୍ବ ତାଙ୍କ ପତନର ମୂଳ । ଆଜାକ୍‌ସଙ୍କ ଶବକୁ ବେଢ଼ି ବିଳାପ କରୁଥିବା ଅଡ଼ିସିଅସ୍‌ଙ୍କୁ ଏଥେନା ଏହି ଚେତାବନୀ ଶୁଣାଇଥିଲେ—

From such a sight as this, learn not to utter
Proud words thyself against the Gods in Heaven;
Nor swell in arrogance if hand of thine
Prone weighty .... ...
One day can sink, one day can raise again
The scales of human fortune.

ଦାମ୍ଭିକତାର ଯଥାର୍ଥ ଦଣ୍ଡ ଭୋଗିଲା—ଏହିପରି ଏକ ନିଷ୍ଠୁର ମନୋଭାବ ଜଣେ ବଡ଼ କବିଙ୍କ ଠାରୁ ଆଶା କରାଯାଏନା । ଆଜାକ୍‌ସଙ୍କର କରୁଣ ପରିଣତିର ବର୍ଣ୍ଣନା ପାଠକ/ଦର୍ଶକର ହୃଦୟକୁ ବିଗଳିତ କରେ । କେଉଁ ଅଲିଖିତ ନିୟମକୁ ପଢ଼ି ନ ପାରିବା କିମ୍ବା ଦୋଷ ବାଛିବାକୁ ଛକିଥିବା କ୍ରୂର ଦେବୀଙ୍କର ଖିଆଲ୍ ଫଳରେ ଦଣ୍ଡ ଭୋଗୁଥିବା ମଣିଷ ପ୍ରତି କବିର ବା ଦରଦ ପ୍ରକାଶ ନ ପାଇବ କିପରି ? ନିଜ ଛୁରୀରେ ଭୁଷି ହୋଇ

ମରିବା ପୂର୍ବରୁ ପୃଥିବୀର ଆଲୋକ, ପ୍ରିୟ ଜନ୍ମଭୂମି, ଦେଶବାସୀ ଓ ପିତାମାତାଙ୍କ ଠାରୁ ଆଜାକ୍ସ ଚିରବିଦାୟ ନେଇଛନ୍ତି । ବଡ଼ ମର୍ମସ୍ପର୍ଶୀ ତାର ବର୍ଣ୍ଣନା ।

...to thee O Light of day,
To thee, O glittering chariot of the Sun.
Farewell, dear Light, farewell my native land
Of Sacred Salamis *—and my father's hearth,
And glorious race of Athens, neighbours once;
And you, ye springs and rivers of this land,
Ye plains of Troy, a second home to me.
Farewell ..

ଟ୍ରୟରେ ଆଜାକ୍ସ ଜୀବନର ଆଠବର୍ଷ ବିତାଇଲେ । ମରଣ ବେଳାରେ ଶତ୍ରୁ-ନଗର ଟ୍ରୟର ନଦନଦୀ, ପ୍ରକୃତି ପ୍ରତି ତାଙ୍କର ଯେଉଁ ଗଭୀର ମମତା ପ୍ରକାଶ ପାଇଛି ତାହା ପାଠକ ହୃଦୟକୁ ଆନ୍ଦୋଳିତ କରେ ।

'ରାଜା ଇଡିପସ୍' ସୋଫୋକ୍ଲିଜ୍‌ଙ୍କର ସୁବିଖ୍ୟାତ ନାଟକ । ଇଡିପସ୍ ଥିବାଜ୍‌ର ରାଜା ଲେଅସ୍‌ଙ୍କର ପୁତ୍ର । ଲେଅସ୍‌ଙ୍କ ରାଣୀଙ୍କର ନାମ ଜୋକାଷ୍ଟା । ଭବିଷ୍ୟବାଣୀ ହୋଇଥାଏ ଯେ ନିଜ ପୁଅ ହାତରେ ଲେଅସ୍‌ଙ୍କ ପ୍ରାଣ ଯିବ । ତେଣୁ ଇଡିପସ୍ ଜନ୍ମ ହେଲା ପରେ ରାଜାଙ୍କ ଆଦେଶରେ ଜଣେ ନେଇ ତାଙ୍କ ନିର୍ଜନ ପାହାଡ଼ରେ ଛାଡ଼ି ଦେଇ ଆସିଲା । ଉଦ୍ଦେଶ୍ୟ, ଖାଦ୍ୟ ଓ ଯତ୍ନ ଅଭାବରେ ଛୁଆଟା ମରିଯାଉ । ମାତ୍ର ବିଧିର ବିଧାନ ଅନ୍ୟପ୍ରକାର । ଜଣେ ମେଷ-ପାଳକ ସେହି ସୁନ୍ଦରିଆ ପିଲାକୁ ପାଇ କରିନ୍ଥର ରାଜାଙ୍କୁ ଦେଲା । ରାଜାଙ୍କର ପିଲାଛୁଆ ନଥାଏ । ଅତି ଯତ୍ନରେ ରାଜା ରାଣୀ ପୁଅଟିକୁ ପାଳିଲେ ।

ଇଡିପସ୍ ବଡ଼ ହେଲା ପରେ ଦିନେ ଡେଲ୍‌ଫାଇର ଭବିଷ୍ୟବକ୍ତାଙ୍କ ଠାରୁ ଜାଣିଲେ ଯେ ନିଜ ପିତାଙ୍କୁ ହତ୍ୟା କରି ମାତାଙ୍କୁ ବିବାହ କରିବା ତାଙ୍କର ଭାଗ୍ୟଲିପି । ଏ ଭୟଙ୍କର ଦୁର୍ଭାଗ୍ୟକୁ ଏଡ଼ାଇବାକୁ ଇଡିପସ୍ କରିନ୍ଥ ଛାଡ଼ି ପଳାଇଲେ । ବାଟରେ ଜଣେ ବୃଦ୍ଧଙ୍କ

* ଆଜାକ୍ସଙ୍କ ଜନ୍ମସ୍ଥାନ । ଏଥେନ୍ସର ଅନେକ ବୀର ଓ ରାଷ୍ଟ୍ରନାୟକ ଆଜାକ୍ସଙ୍କ ବଂଶଧର ।

ସବୁଡ ତାଙ୍କର ସାମାନ୍ୟ ଜଙ୍ଘାରୁ କଳ ହେଲା । କ୍ରୋଧରେ ଅଡ଼ିପସ୍ ସେହି ବୃଦ୍ଧ ଓ ତାଙ୍କର ତିନିଜଣ ଭୃତ୍ୟଙ୍କୁ ହତ୍ୟା କଲେ । ଏହିପରି ଭବେ ଅଡ଼ିପସ୍‌ଙ୍କ ଅଜ୍ଞାତସାରରେ ଦୈବବାଣୀର ଅଧେ ପୂରଣ ହୋଇଗଲା । କାରଣ ପ୍ରାଣନାଶ ହୋଇଥିବା ବୃଦ୍ଧ ହେଉଛନ୍ତି ଥିବାଜ୍‌ର ରାଜା ଲେଅସ୍ ।



[ସ୍ଫିଙ୍କ୍ସ ଓ ଅଡ଼ିପସ୍ ମଧ୍ୟରେ ପ୍ରଶ୍ନୋତ୍ତର ସମ୍ବାଦ । ଚିତ୍ରଟି ଖ୍ରୀ·ପୂ ୫ମ ଶତାବ୍ଦୀର ଏଥେନ୍‌ସରୁ ମିଳିଥିବା ଗୋଟିଏ ପାତ୍ରରୁ ଉଦ୍ଧାର କରାଯାଇଛି । ]

ସେତେବେଳେ ଥିବାଜ୍ ନଗରରେ ଏକ ଭୟଙ୍କର ରାକ୍ଷସୁଣୀ ସ୍ଫିଙ୍କ୍‌ସର ଆବିର୍ଭାବ ହୋଇଥାଏ । ସ୍ଫିଙ୍କ୍‌ସର ଅର୍ଦ୍ଧାଙ୍ଗ ସିଂହ ଓ ବାକି ଅର୍ଦ୍ଧାଙ୍ଗ ନାରୀ ପରି । ଏହି ସିଂହଦାନବୀ ପ୍ରତ୍ୟେକ ପଥିକକୁ ଅଟକାଇ ଗୋଟିଏ ପ୍ରଶ୍ନ ପଚାରୁଥିଲା । ପ୍ରଶ୍ନଟି ହେଉଛି, "କେଉଁ ପ୍ରାଣୀ ଭିନ୍ନ ଭିନ୍ନ ସମୟରେ ଚାରୋଟି, ତିନୋଟି ଓ ଦୁଇଟି ଗୋଡ଼ରେ ଚାଲେ ? ଏବଂ ଗୋଡ଼ ବଢ଼ିବା ସହିତ ତାର ବଳ କମିଯାଏ ?" କୌଣସି ପଥିକ ଏହି ପ୍ରଶ୍ନର ଉତ୍ତର ଦେଇପାରନ୍ତି ନାହିଁ । ଫଳରେ ସ୍ଫିଙ୍କ୍‌ସ ହାତରେ ମରନ୍ତି । ସର୍ତ୍ତଥାଏ, ପ୍ରଶ୍ନର ଠିକ୍ ଉତ୍ତର ପାଇଲେ ରାକ୍ଷସୁଣୀ ନିଜେ ପ୍ରାଣ ବିସର୍ଜନ କରିବ ।

ବହୁ ପଥିକ ରାକ୍ଷସୁଣୀ ଦ୍ୱାରା ନାଶ ଯିବାରୁ ଥିବାଜ୍‌ର ନାଗରିକମାନେ ସ୍ଥିର କରିଥାନ୍ତି ଯେ ଯେଉଁ ବ୍ୟକ୍ତି ଅସୁରୁଣୀ ପ୍ରଶ୍ନର ଉତ୍ତର ଦେଇପାରିବ, ସେ ହେବ ଥିବାଜ୍‌ର ରାଜା । ଲେଅସ୍‌ଙ୍କର ବିଧବା ପତ୍ନୀ ଜୋକାଷ୍ଟା ହେବେ ତାଙ୍କର ରାଣୀ ।

ଦୈବାତ୍ ଅଡ଼ିପସ୍ ସିଂହବାହିନୀ ଜଗିଥିବା ବାଟରେ ଯାଉଥିଲେ । ଦାନବୀ ତାଙ୍କୁ ସବୁ ପଥିକଙ୍କୁ ପଚାରୁଥିବା ପ୍ରଶ୍ନ ପଚାରିଲା । ଟିକିଏ ଭାବି ଅଡ଼ିପସ୍ ଉତ୍ତର ଦେଲେ, ସେହି

ଅଦ୍ଭୁତ ପ୍ରାଣୀଟି ହେଉଛି ସ୍ୱୟଂ ମଣିଷ । ଜନ୍ମ ହେବା ପରେ ଶିଶୁ ଗୁରୁଣ୍ଡି ଗୁରୁଣ୍ଡି ଚାରି-ଗୋଡ଼ରେ ଚାଲେ, ବଡ଼ ହେଲେ ଦୁଇଗୋଡ଼ରେ ଓ ବୁଢ଼ାକାଳକୁ ଖଣ୍ଡେ ଆଶାବାଡ଼ି ଦରକାର ପଡ଼େ । ଅଡିପସ୍‌ଙ୍କ ଉତ୍ତର ଶୁଣି ସ୍ଫିଂକ୍‌ସ ପାହାଡ଼ ଉପରୁ ଡେଇଁପଡ଼ି ପ୍ରାଣତ୍ୟାଗ କଲା ।

ଅଡିପସ୍ ହେଲେ ଥିବାଜ୍‌ର ଅଧିପତି । ଜୋକାଷ୍ଟା ତାଙ୍କର ରାଣୀ । ଭାଗ୍ୟଲିପିକୁ ବା କିଏ ଅନ୍ୟଥା କରିବ ?

ବାରବର୍ଷ ପରେ ଥିବାଜ୍‌ରେ ଭୟଙ୍କର ପ୍ଲେଗ ବ୍ୟାପିଗଲା । ପୋକମାଛି ପରି ମଣିଷମାନେ ମଲେ । ଏଠିକି ଠାରୁ ନାଟକର ଆରମ୍ଭ । ଅଡିପସ୍ ବଡ଼ ଚିନ୍ତିତ ହୋଇପଡ଼ିଲେ । ଦେବତାଙ୍କ କୋପ କାହିଁକି ନଗର ଉପରେ ପଡ଼ିଲା ? କିପରି ତାଙ୍କ କୋପ ଶାନ୍ତ ହେବ ? ଦେବପୀଠରୁ ଖବର ଆସିଲା, ଲେଅସ୍‌ଙ୍କ ହତ୍ୟାକାରୀ ଦଣ୍ଡ ନ ପାଇବା ପର୍ଯ୍ୟନ୍ତ ଥିବାଜ୍‌ର ରକ୍ଷା ନାହିଁ । ହତ୍ୟାକାରୀକୁ ବାହାର କରିବାକୁ ଅଡିପସ୍ ଲାଗିପଡ଼ିଲେ ।

ଇତି ମଧ୍ୟରେ କରିନ୍‌ଥ ରାଜାଙ୍କର ମୃତ୍ୟୁ ହେଲା । ତାଙ୍କର ମୃତ୍ୟୁସମ୍ବାଦ ଧରି ଦୂତ ଅଡିପସ୍‌ଙ୍କ ପାଖରେ ପହଞ୍ଚିଲା । ପିତାଙ୍କ ମୃତ୍ୟୁରେ ଅଡିପସ୍ ଶୋକ କଲେ । କିନ୍ତୁ ତାଙ୍କୁ ଆଶ୍ୱସ୍ତ ମଧ୍ୟ ଲାଗିଲା । କାରଣ ସେ ପିତୃହନ୍ତା ହେବାର ସମ୍ଭାବନା ଆଉ ନାହିଁ । ବୃଦ୍ଧ ଦୂତଙ୍କୁ ଅଡିପସ୍ ନିଜର ମନୋଭାବ ଜଣାଇଲେ । ରାଜ ପରିବାରର ଅତି ଅନ୍ତରଙ୍ଗ ଦୂତ ବହୁକାଳର ରହସ୍ୟଟି ଖୋଲି ଦେଲେ—ଅଡିପସ୍ କରିନ୍‌ଥ ରାଜାଙ୍କର ପାଳିତ ପୁତ୍ର !

ତେବେ କିଏ ତାଙ୍କର ପିତା ? ପିତୃ ପରିଚୟ ପାଇବାକୁ ଅଡିପସ୍ ବ୍ୟାକୁଳ ହୋଇ ପଡ଼ିଛନ୍ତି । ସେ କ'ଣ ମେଷପାଳକର ପୁଅ ? କିମ୍ବା କେଉଁ ସାଧାରଣ ଲୋକର ? ସତେ କ'ଣ ନିଜ ପିତାଙ୍କୁ ହତ୍ୟାକରି ସେ ଜନନୀଙ୍କୁ ବିବାହ କରିବେ ? ଜୋକାଷ୍ଟା ଅଡିପସ୍‌ଙ୍କୁ ବୃଥାରେ ହନ୍ତସନ୍ତ ନ ହେବାକୁ ବୁଝାଉଛନ୍ତି । ମାଆକୁ ବିବାହ କରିବା କଥା କେତେଲୋକ ସ୍ୱପ୍ନରେ ଦେଖନ୍ତି । ସ୍ୱପ୍ନ ଆଉ ବାସ୍ତବ ଅଲଗା ଅଲଗା । ଜୋକାଷ୍ଟା ସାନ୍ତ୍ୱନା ଦେଇ କହିଛନ୍ତି —

> Cease from your fears of wedding her that bore you.
> In dreams, likewise, many a men ere now

Lay with his mother. But he lives easiest
Who takes no thought for all such fantasies.

ସୋଫୋକ୍ଲିଜ୍ଙ୍କର ଉପରୋକ୍ତ ଧାଡ଼ି କେତୋଟି ମନୋବୈଜ୍ଞାନିକ ଫ୍ରଏଡ଼ଙ୍କୁ ଆକୃଷ୍ଟ କରିଥିବା ସମ୍ଭବ । ଅଡିପସ୍ ଅଜ୍ଞାତସାରରେ ମାଆଙ୍କୁ ବିବାହ କରିବା ଏକ ଦୁର୍ଭାଗ୍ୟଜନକ ଆକସ୍ମିକ ଘଟଣା । ଏଥିରେ ମନୋବିଜ୍ଞାନ ପାଇଁ କିଛି ଖୋରାକ୍ ନାହିଁ । କିନ୍ତୁ ସ୍ୱପ୍ନରେ ମାଆ ସହିତ ମିଳିତ ହେବା ବ୍ୟାପାରଟି ମାଧ୍ୟମରେ ମନୋବିଜ୍ଞାନ ମଣିଷ ମନଗହନର ଅନ୍ଧାରିଆ ମୂଳକକୁ ଦେଖିପାରେ ।

ଜୋକାଷ୍ଟାଙ୍କ ସାନ୍ତ୍ୱନାବାଣୀ ସତ୍ୟର ଗତିରୋଧ କରିନାହିଁ । ସବୁକଥା ସ୍ପଷ୍ଟ ଜଣା ପଡ଼ିଯିବା ପରେ ଜୋକାଷ୍ଟା ଆତ୍ମହତ୍ୟା କରିଛନ୍ତି । ଅଡିପସ୍ ପାଗଳ ପରି ହୋଇ ନିଜ ହାତରେ ତାଙ୍କର ଦୁଇ ଆଖିକୁ ତାଡ଼ି ପକାଇଛନ୍ତି । ଅନ୍ଧ ପିତାଙ୍କ ହାତ ଧରି ଅଡିପସ୍ଙ୍କ କନ୍ୟା ଆଣ୍ଟିଗନ୍ ତାଙ୍କୁ ବାଟ କଢ଼ାଇ ନେଇଛନ୍ତି ଥିବାଜ୍ ନଗରର ସୀମା ବାହାରକୁ । ଏଇ ଶେଷ ଦୃଶ୍ୟରେ କୋରସ୍‌ର ସ୍ୱର ଶୁଭିଛି,

Dwellers in Thebes, behold this Oediphus
The man who solved the riddle marvellous.
A Prince of men
Whose lot what citizen
Did not with envy see!
How deep the billows of calamity
  Above him roll!
Watch therefore and consider that last day,
And of no mortal say
"That man is happy!" till
Vexed by no grievous ill
  He pass life's goal.

ଯେଉଁ ବିଚକ୍ଷଣ ଅଡିପସ୍ ସ୍ଫିଂକ୍ସ ପ୍ରଶ୍ନର ସମାଧାନ କରିଥିଲେ, ତାଙ୍କ ଜୀବନର ଶେଷ ପରିଣତି ଏହିଭଳି କରୁଣ । ନିୟତିର ଜାଲରୁ ଆପଣାକୁ ମୁକୁଳାଇବାରେ ସେ ଶୋଚନୀୟ ଭାବେ ବ୍ୟର୍ଥ ହୋଇଛନ୍ତି । ତେଣୁ ମଣିଷ ତାର ଶେଷ ଦିନଟି ନ ବିତାଇବା ପର୍ଯ୍ୟନ୍ତ ତାକୁ ସୁଖୀ ବୋଲି ଧରି ନଅନା । ଏତିକି ନାଟକର ବାର୍ତ୍ତା ।

ଅଡିପସ୍ ନାଟକ ସମ୍ବନ୍ଧରେ ଅନେକ ମନ୍ତବ୍ୟ ରହିଛି । ଏହି ନାଟକକୁ ନାନା ଦିଗରୁ ବ୍ୟାଖ୍ୟା କରାଯାଇଛି । ଗୋଟିଏ ଦୁର୍ବଳ ଓ ବିଭ୍ରମ କାହାଣୀକୁ ନେଇ ଦର୍ଶକ/-ପାଠକଙ୍କୁ ମନ୍ତ୍ରମୁଗ୍ଧ କରି ରଖିବା ଭଳି ନାଟକଟିଏ ସୃଷ୍ଟି କରିବା ସୋଫୋକ୍ଲିଜ୍‌ଙ୍କର ଅଦ୍ଭୁତ ଦକ୍ଷତାର ପରିଚୟ ଦିଏ । ଯଦି ଭବିଷ୍ୟବାଣୀରେ ଅଡିପସ୍‌ଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଥିଲି (ଯାହା ଘଟିବାର କଥା ନିଶ୍ଚୟ ଘଟିବ) ତେବେ ସେ କରିନ୍ଥ ତ୍ୟାଗ କରିବା ନିରର୍ଥକ । ଯଦି ଭବିଷ୍ୟବାଣୀରେ ସେ ଆଂଶିକ ଭାବେ ବିଶ୍ୱାସ କରୁଥିଲେ ତେବେ ତାଙ୍କ ଠାରୁ ବଡ଼ କୌଣସି ପୁରୁଷକୁ ହତ୍ୟା କରିବା ବା କୌଣସି ନାରୀକୁ ବିବାହ କରିବା ଅଯୌକ୍ତିକ । ଅଡିପସ୍‌ଙ୍କ ପରି ବୁଦ୍ଧିମାନ୍ ବ୍ୟକ୍ତି ବାରବର୍ଷ ପର୍ଯ୍ୟନ୍ତ ତାଙ୍କ ନିଜର ବା ତାଙ୍କର ରାଣୀ ଜୋକାଷ୍ଟାଙ୍କର ଅତୀତ ସମ୍ବନ୍ଧରେ କୌଣସି ଖବର ରଖିଲେ ନାହିଁ । କାହାଣୀର ଏଇସବୁ ଦୁର୍ବଳତା ବିଷୟରେ ଆମେ ଆଲୋଚନା କରିବାକୁ ଯାଉନାହୁଁ । କେବଳ ଏତିକି କହିବୁ ଯେ ସବୁକଥା ସତ୍ତ୍ୱେ ଅଡିପସ୍ ନାଟକରେ ଏକ ମହାନ୍ ପ୍ରତିଭାର ସ୍ୱାକ୍ଷର ସ୍ପଷ୍ଟ ।

ଅଡ଼ିପସ୍‌ଙ୍କ ଜୀବନର କରୁଣ ପରିଣତି ଓ ତାଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ନାନା ଚିନ୍ତା ଆଧୁନିକ ପାଠକର ମନରେ ଆସେ । ଅଡ଼ିପସ୍ କୌଣସି ପାପ କରି ନାହାନ୍ତି । ନିୟତିର ଶିକାର ହୋଇଛନ୍ତି ମାତ୍ର । ସତେ କି ମଜା ଦେଖିବା ପାଇଁ ନିୟତି ତାଙ୍କ ସହିତ ଖେଳିଛି । ନିୟତି ତାଙ୍କ ସହିତ ଯେଉଁ ମଜା ଖେଳିଲା ସେଥିରେ ଯେ କୌଣସି ମଣିଷ ଭାଙ୍ଗିଯିବ । ମାତ୍ର ମହାକବି ହୋମର୍‌ଙ୍କ ମୂଳ କାବ୍ୟରେ ଆମେ ଅଡିପସ୍‌ଙ୍କର ଏକ ଭିନ୍ନ ରୂପ ଦେଖିବାକୁ ପାଉ । ହୋମର୍‌ଙ୍କ କାବ୍ୟରେ ଲେଅସ୍ ତାଙ୍କର ପିତା ଓ ଜୋକାଷ୍ଟା ମାତା ବୋଲି ଜଣା ପଡ଼ିଯିବା ପରେ ଜୋକାଷ୍ଟା ଆତ୍ମହତ୍ୟା କରିଛନ୍ତି ମାତ୍ର ଅଡ଼ିପସ୍ ଆହୁରି ଅନେକ ବର୍ଷ ସୁଖରେ ରାଜୁତି କରିଛନ୍ତି । ମନେହୁଏ, ନିୟତିର ପରିହାସରେ ଭାଙ୍ଗି ପଡ଼ି ନ ଥିବା ସେ ଏକ ବୀର ପୁରୁଷ ।

ଏ ପ୍ରସଙ୍ଗରେ ଆଉ ଗୋଟିଏ କଥା ମନକୁ ଆସେ । ଜଣେ ରାଜା ତାର ପିତାଙ୍କୁ ହତ୍ୟା କରି ମାତାଙ୍କୁ ବିବାହ କରିବା ହୁଏତ ହୋମର୍‌ଙ୍କ ସମୟରେ ଏକ କଳ୍ପନାତୀତ ପାପ ନ ଥିଲା । କାରଣ ହୋମର୍‌ଙ୍କର ପାଞ୍ଚସାତ ଶତାବ୍ଦୀ ପୂର୍ବରୁ ନାରୀପ୍ରଧାନ ସମାଜରେ ସମ୍ପତ୍ତିର ଉତ୍ତରାଧିକାରିଣୀ ଥିଲା ନାରୀ । ତେଣୁ ଜଣେ ରାଜପୁତ୍ର ସିଂହାସନ ପାଇବା ପାଇଁ ପିତା ( ରାଣୀଙ୍କର ସ୍ୱାମୀ ) ଙ୍କୁ ହତ୍ୟା କରି ମାତା ( ରାଣୀ )ଙ୍କୁ ବିବାହ କରିବା ଘଟଣା ଆଦୌ ବିରଳ ନ ଥିଲା । ସୋଫୋକ୍ଲିଜ୍‌ଙ୍କ ବେଳକୁ ସମାଜ ବଦଳିଛି ଓ ନୈତିକ ନିୟମ ସବୁ ଭିନ୍ନ ରୂପ ଧରିଛି ।

'ରାଜା ଅଡ଼ିପସ୍' ଲେଖିବାର ଅନେକ ବର୍ଷ ପରେ ସୋଫୋକ୍ଲିଜ୍ Oediphus at Colonus ନାମକ ଆଉ ଗୋଟିଏ ନାଟକ ଲେଖିଥିଲେ । ଏହି ନାଟକରେ ଅନ୍ଧ ଅଡ଼ିପସ୍ ଝିଅ ସହିତ ବିଭିନ୍ନ ସ୍ଥାନ ବୁଲି ବୁଲି ଏଥେନ୍‌ସର କୋଲୋନସ୍ ନାମକ ସ୍ଥାନରେ ଆସି ପହଞ୍ଚିଛନ୍ତି । ଏଥେନ୍‌ସୀୟମାନେ ଅଡ଼ିପସ୍‌ଙ୍କୁ ତଡ଼ିଛନ୍ତି, ଥିବାଜ୍‌ର ନୂଆ ରାଜା ତାଙ୍କୁ ଧରି-ନେବାକୁ ଆସିଛନ୍ତି । ଏଥେନ୍‌ସର ଦୟାଳୁ ରାଜା ଥିସିଅସ୍ ଅଡ଼ିପସ୍‌ଙ୍କୁ ଆଶ୍ରୟ ଦେଇଛନ୍ତି । ଏହିପରି ନାନା ଘଟଣା ଭିତରେ ତାଙ୍କ ଜୀବନର ଅବସାନ ହୋଇଛି ।

## ୟୁରୀପିଡ଼ୀଜ୍ (ଖ୍ରୀ· ପୂ ୪୮୪—୪୦୬)

ୟୁରିପିଡୀଜ୍ ଗ୍ରୀସ୍‌ର ତୃତୀୟ ମହାନ୍ ଟ୍ରାଜେଡ଼ିକାର । ପ୍ରତ୍ୟେକ ମହାନ୍ ଲେଖକ ଭିତରେ ଜଣେ ଦାର୍ଶନିକ ଥାଏ । ମାତ୍ର ୟୁରିପିଡୀଜ୍‌ଙ୍କ ସମ୍ପର୍କରେ ଏତିକି କହିବା ଯଥେଷ୍ଟ ହେବ ନାହିଁ । ସେ ନାଟ୍ୟକାର ପାଲଟିଥିବା ଜଣେ ଦାର୍ଶନିକ । ଯେପରିକି ତାଙ୍କର ସମସାମୟିକ ପ୍ଲେଟୋ ଦାର୍ଶନିକ ପାଲଟିଥିବା ଜଣେ ନାଟ୍ୟକାର ।

ୟୁରିପିଡ଼ୀଜ୍ ଦାର୍ଶନିକ ସୁଲଭ ନିଃସଙ୍ଗ ଜୀବନ ବଞ୍ଚିଥିଲେ । ଦାର୍ଶନିକ ଅଧ୍ୟୟନ ଓ ଦାର୍ଶନିକ ଚିନ୍ତା କରିବାରେ ତାଙ୍କର ଅନେକ ସମୟ ଅତିବାହିତ ହେଉଥିଲା । ସକ୍ରେଟିସ୍‌ଙ୍କ ସହିତ ୟୁରିପିଡୀଜ୍‌ଙ୍କର ସମ୍ପର୍କ ବଡ଼ ଘନିଷ୍ଠ । ତାଙ୍କ ବ୍ୟକ୍ତିତ ଆନାକ୍‌ସଗୋରସ୍‌ଙ୍କ ସହିତ ୟୁରିପିଡୀଜ୍‌ଙ୍କର ବନ୍ଧୁତ୍ୱ ଥିଲା । ଜଣେ ଦାର୍ଶନିକ ନାଟ୍ୟକାର ଭାବେ ୟୁରିପିଡୀଜ୍‌ଙ୍କୁ ବୁଝିବା ଓ ତାଙ୍କର ମୂଲ୍ୟାୟନ କରିବା ବଡ଼ ଗହନ ବ୍ୟାପାର । କାରଣ ଗମ୍ଭୀର ସ୍ତରରେ

କବି ଓ ଦାର୍ଶନିକ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱକୁ ସମ୍ଭାଳିଥିବା ସେ ଏକ ଜଟିଳ ବ୍ୟକ୍ତିତ୍ୱ । ଉଦାହରଣ ସ୍ୱରୂପ, କବି ଭାବେ ସେ ଯେଉଁ ମିଥ୍ ଓ କିମ୍ବଦନ୍ତୀ ଦ୍ୱାରା ଆକୃଷ୍ଟ ହୁଅନ୍ତି, ତାଙ୍କର ବିଚାରଶୀଳ ମନ ସେଗୁଡ଼ିକର ଅଯୌକ୍ତିକତା ଦେଖି ବିରକ୍ତ ହୋଇ ଉଠେ । ୟୁରିପିଡ଼ୀଜ୍‌ଙ୍କ ରଚନାରେ ଦେବତାଙ୍କ ପ୍ରତି ଅବିଶ୍ୱାସ ଓ ଅନାସ୍ଥା ପ୍ରକାଶ ପାଇଥିବା ପରେ ପରେ ପଦେ ପ୍ରାର୍ଥନାକୁ ଝୁଣ୍ଟିବା ବିରଳ ନୁହେଁ । ତାଙ୍କ ନାଟକରେ ଆମେ ବିଭକ୍ତ ମନର ଦ୍ୱିଧା ଓ ଦ୍ୱନ୍ଦ୍ୱ ଦେଖିବାକୁ ପାଉ । ଏପରି ଚରିତ୍ର (ଯଥା ମିଡ଼ିଆ ଓ ଫିଡ୍ରା) ଗଢ଼ିବାରେ ସେ ପ୍ରଥମ ୟୁରୋପୀୟ ।

ସୋଫୋକ୍ଲିଜ୍ ଓ ଏସ୍କିଲସ୍‌ଙ୍କ ନାଟକରେ ନିୟତିର କ୍ରୀଡ଼ନକ ଭାବେ ଆମେ ମଣିଷକୁ ଦେଖୁ । ଖିଆଲି ନିୟତି ହାତରେ ଅସହାୟ ମଣିଷ କିପରି ଅଯଥା ଦଣ୍ଡପାଏ ତାହା ସେମାନେ ଦେଖାଇଛନ୍ତି । କିନ୍ତୁ ନିରୀହ ବ୍ୟକ୍ତିକୁ ପେଷି ଦେଉଥିବା ନିଷ୍ଠୁର ସଂସାର ଓ କ୍ରୂର ନିୟତି ବିରୁଦ୍ଧରେ ବିଦ୍ରୋହର ସ୍ପଷ୍ଟ ସ୍ୱର ଆମେ ୟୁରିପିଡ଼ୀଜ୍‌ଙ୍କ ଠାରୁ ଶୁଣିବାକୁ ପାଉ । ମଣିଷର ଦୁଃଖ ଯନ୍ତ୍ରଣାକୁ ସେ ଆବେଗର ସହିତ ବ୍ୟକ୍ତ କରନ୍ତି । ଅନ୍ୟ ଦୁଇ ଟ୍ରାଜେଡ଼ିକାର ମଣିଷର ଚିରନ୍ତନ ଓ ସାର୍ବଜନୀନ ଦୁଃଖ ଆଡ଼କୁ ଡାକିଥିବା ସ୍ଥଳେ ୟୁରିପିଡ଼ୀଜ୍ ପ୍ରତ୍ୟେକ ଚରିତ୍ରର ବ୍ୟକ୍ତିଗତ ଦୁଃଖ ଓ ସଙ୍କଟକୁ ଖୋଲି ଧରନ୍ତି ।

ମୁକ୍ତ ଚିନ୍ତା ଓ ଦାର୍ଶନିକ ଅନୁସନ୍ଧାନର ବାତାବରଣ ଭିତରୁ ଯେଉଁ ବିପ୍ଳବୀ ଓ ପ୍ରଗତିବାଦୀ ଗ୍ରୀକ୍ ତରୁଣମାନେ ଜନ୍ମ ନେଇଥିଲେ, ୟୁରିପିଡ଼ୀଜ୍ ହେଲେ ସେମାନଙ୍କର ପ୍ରତିନିଧି । ସେ ଗ୍ରୀକ୍ ଏନ୍‌ଲାଇଟିନ୍‌ମେଣ୍ଟର କବି—ପ୍ରାଚୀନ ଗ୍ରୀସ୍‌ର ଭୋଲ୍‌ଟାୟାର୍ ! ପୌରାଣିକ କାହାଣୀକୁ ନେଇ ରଚିତ ତାଙ୍କର ନାଟକ ଭିତରେ ବିଦ୍ରୂପ ଓ ଅବିଶ୍ୱାସର ଅନ୍ତଃସ୍ରୋତ ପ୍ରବାହିତ । ତାଙ୍କର ମୁକ୍ତ ଭାବନା ଅନେକ ସ୍ଥାନରେ ସୂକ୍ଷ୍ମ ଓ ପ୍ରଚ୍ଛନ୍ନ—ଠାଏ ଠାଏ କିନ୍ତୁ ବଡ଼ ଝାଙ୍କଟୋକ୍ । ଲୁପ୍ତ ମେଲାନିପି ନାଟକର ଆରମ୍ଭ ଚମକପ୍ରଦ—

> O Zeus, if there be a Zeus
> For I know of him only by report

ଦେବତାଙ୍କର ଅନୈତିକ କାର୍ଯ୍ୟକଳାପର ସମାଲୋଚନା, ପୌରାଣିକ କାହାଣୀ ପ୍ରତି ସଂଶୟ, ଏପରିକି ଦେବତାଙ୍କର ଅସ୍ତିତ୍ୱରେ ସନ୍ଦେହ ପ୍ରକାଶ ୟୁରିପିଡ଼ୀଜ୍‌ଙ୍କ ନାଟକମାନଙ୍କରେ

ଦେଖିବାକୁ ମିଳେ । ୟୁରିପିଡ଼ୀଜ୍ ନାରୀ ଜାଗରଣରେ ସମର୍ଥକ । ସମାଜରେ ଉପଯୁକ୍ତ ମର୍ଯ୍ୟାଦା ପାଇ ନ ଥିବା ନାରୀଜାତି ପ୍ରତି ସେ ସହାନୁଭୂତିଶୀଳ । ୟୁରିପିଡ଼ୀଜ୍ ଯୁଦ୍ଧ ବିରୋଧୀ । ଯୁଦ୍ଧର ନାରକୀୟ ପରିଣତିର ବର୍ଣ୍ଣନା ଓ ଶାନ୍ତିର ବନ୍ଦନା ତାଙ୍କ ନାଟକରେ ଦେଖିବାକୁ ମିଳେ । ଯୁଦ୍ଧର ଘୋର ନିନ୍ଦା କରି ସେ The Trojan Women ନାଟକ ରଚନା କରିଛନ୍ତି । ଯେଉଁ ବର୍ଷ ଏ ନାଟକ ଅଭିନୀତ ହେଲା, ତା ପୂର୍ବ ବର୍ଷ ଏଥେନ୍ସୀୟମାନେ ଯୁଦ୍ଧରେ ମିଲୋସ୍ ଦ୍ୱୀପ ଧ୍ୱଂସ କରିଥିଲେ । ମିଲୋସ୍‌ର ପୁରୁଷଙ୍କୁ ହତ୍ୟାକରି ନାରୀ ଓ ଶିଶୁଙ୍କୁ ଦାସ କରି ଆଣିଲେ । ମିଲୋସ୍ ପ୍ରତି ଅକଥନୀୟ ଅତ୍ୟାଚାର ବିଷୟ ଉପରୋକ୍ତ ନାଟକରେ ଟ୍ରୟର ବୃଦ୍ଧା ରାଣୀ ହେକୁବା ଓ ତାଙ୍କର ବୋହୂ, କନ୍ୟାଙ୍କ ପ୍ରତି ଅମାନୁଷିକ ଆଚରଣର ବର୍ଣ୍ଣନା ଭିତରେ ପରୋକ୍ଷରେ ପ୍ରକାଶ ପାଇଛି ।

ହେକୁବାଙ୍କ କନ୍ୟାମାନେ ଗ୍ରୀକ୍‌ବୀରଙ୍କର ରକ୍ଷିତା ହୋଇଛନ୍ତି । ଜଣେ ବଳି ପାଇଛି (ଆକିଲିସ୍ ସମାଧି ପାଖରେ) । ରାଜପୁତ୍ରଙ୍କୁ ହତ୍ୟା କରାଯାଇଛି । ଏପରିକି, କାଳେ ହେକୁବାଙ୍କର ଶିଶୁ ନାତି ବଡ଼ ହୋଇ ଗ୍ରୀସ୍ ଆକ୍ରମଣ କରିପାରେ ତାହା ଆଶଙ୍କା କରି ଗ୍ରୀକ୍‌ମାନେ ସେହି ଶିଶୁକୁ ମାଆ କୋଳରୁ ଛଡ଼ାଇ ଆଣି ହତ୍ୟା କରିଛନ୍ତି । ଏହି ଘଟଣାକୁ ୟୁରିପିଡୀଜ୍ ଯେପରି ବର୍ଣ୍ଣନା କରିଛନ୍ତି ତାହା ହୃଦୟ ବିଦାରକ । ମାଆ କୋଳରୁ ପୁଅକୁ ଛଡ଼ାଇ ନେଲାବେଳେ ପାଗଳିଣୀ ମାଆ କହୁଛି—

> Go, die, my best beloved, my cherished one,
> In fierce men's hands, leaving me here alone.
>
> × × ×
>
> × × ×
>
> Kiss me this one time,
> Not ever again. Put up thine arms and climb
> About my neck, now kiss me, lips to lips······
> Oh, ye have found an anguish that outstrips
> All tortures of the East, Ye gentle Greeks !
> Quick, take him, drag him, cast him from the wall,

If Cast you will ! Tear him, ye beasts, be swift !
God hath undone me, and I cannot lift
One hand, One hand to save my child from death.·

ୟୁରିପିଡିଜ୍ ପ୍ରାୟ ବୟାନବେ ଖଣ୍ଡ ନାଟକ ଲେଖିଥିଲେ । ସେମାନଙ୍କ ମଧ୍ୟରୁ ଊଣେଇଶଟିକୁ ବାଦ୍ ଦେଲେ ଅନ୍ୟଗୁଡ଼ିକ ନଷ୍ଟ ହୋଇଯାଇଛି । ତାଙ୍କର ବିଶେଷତ୍ୱ ହେଉଛି, ନାଟକ ପାଇଁ ସେ ବହୁ ପ୍ରକାର ବିଷୟବସ୍ତୁ ବାଛିଛନ୍ତି । ସ୍ଥାନେ ସ୍ଥାନେ ତତ୍ତ୍ୱ ବା ଚିନ୍ତାର ଅନୁପ୍ରବେଶ ଫଳରେ ୟୁରିପିଡିଜ୍‌ଙ୍କ ନାଟକର କଳାଗତ ଐକ୍ୟ ନଷ୍ଟ ହୋଇଛି । କଳାଗତ ବିଶୁଦ୍ଧତା ଦୃଷ୍ଟିରୁ ହୁଏତ ୟୁରିପିଡିଜ୍‌ଙ୍କ ନାଟକସବୁ ତାଙ୍କର ଦୁଇ ପ୍ରତିଦ୍ୱନ୍ଦ୍ୱୀଙ୍କ ନାଟକ ସହିତ ସମକକ୍ଷ ନୁହନ୍ତି । କିନ୍ତୁ ବହୁ ପ୍ରକାର ନରନାରୀ (ବିଶେଷତଃ ନାରୀ)ଙ୍କୁ ଚିତ୍ରଣ କରିବାରେ, ସେମାନଙ୍କର ଆଶା, ଆକାଂକ୍ଷା ଓ ସମସ୍ୟାକୁ ବିଶ୍ଳେଷଣ କରିବାରେ ୟୁରିପିଡିଜ୍ ଅନ୍ୟ ଦୁଇ ନାଟ୍ୟକାରଙ୍କୁ ବଳି ଯାଇଛନ୍ତି ।

ତାଙ୍କର ହିପୋଲିଟସ୍ ନାଟକର ସୌନ୍ଦର୍ଯ୍ୟ ଓ ଲାଳିତ୍ୟ ଉଚ୍ଚକୋଟୀର । ପ୍ରେମର ଟ୍ରାଜେଡ଼ି ଭାବେ ଏହା ବିଖ୍ୟାତ । ଏହା ପୂର୍ବରୁ କୌଣସି ପ୍ରେମଜନିତ ଟ୍ରାଜେଡ଼ି ଲେଖାଯାଇ ନ ଥିଲା । ନାଟକର କାହାଣୀ ଏହିପରି—ଅଧିକ ବୟସରେ ଥିସିଅସ୍ କ୍ରିଟ୍‌ର ରଜା ମାଇନୋସ୍‌ଙ୍କ କନ୍ୟା ଫିଡ୍ରାଙ୍କୁ ବିବାହ କରିଥିଲେ । ପୂର୍ବରୁ ସେ ଆମାଜନ୍‌ର ରାଣୀଙ୍କୁ ବିବାହ କରିଥିଲେ । ଥିସିଅସ୍‌ଙ୍କ ଔରସରୁ ଜାତ ଏହି ରାଣୀଙ୍କର ଗୋଟିଏ ପୁଅ ଥିଲା । ତାଙ୍କର ନାମ ହିପୋଲିଟସ୍ । ହିପୋଲିଟସ୍ ଦେବୀ ଆର୍ଟିମିଜ୍‌ଙ୍କ ଭକ୍ତ । ବ୍ରହ୍ମଚର୍ଯ୍ୟ ତାଙ୍କର ଆଦର୍ଶ । ତାଙ୍କର ବ୍ରହ୍ମଚାରୀ ରହିବାର ଔଦ୍ଧତ୍ୟକୁ ଦେବୀ ଆଫ୍ରୋଡାଇଟ୍ ସହି ପାରିଲେ ନାହିଁ । ହିପୋଲିଟସ୍‌ଙ୍କୁ ଉଚିତ୍ ଶିକ୍ଷା ଦେବା ପାଇଁ ଦେବୀ ଫିଡ୍ରାଙ୍କ ମନରେ ହିପୋଲିଟସ୍‌ଙ୍କ ପ୍ରତି କାମନା ଜାଗ୍ରତ କରାଇଲେ । ହିପୋଲିଟସ୍‌ଙ୍କ ପ୍ରେମରେ ପାଗଳିଣୀ ଫିଡ୍ରାଙ୍କର ଅବସ୍ଥାର ସୁନ୍ଦର ବର୍ଣ୍ଣନା କବି କରିଛନ୍ତି । ପରିଚାରିକାମାନଙ୍କୁ ଫିଡ୍ରା କହୁଛନ୍ତି—

ଫିଡ୍ରାଙ୍କ ବଡ଼ ଭଉଣୀ ମିନାଟୋର୍‌କୁ ମାରିବା ପାଇଁ ଥିସିଅସ୍‌ଙ୍କୁ ଅନେକ ସାହାଯ୍ୟ କରିଥିଲେ । ମାତ୍ର ଥିସିଅସ୍ ତାଙ୍କୁ ସାଙ୍ଗରେ ଏଥେନ୍ସ ନ ଆଣି ଗୋଟିଏ ଦ୍ୱୀପରେ ଛାଡ଼ି ଆସି-ଥିଲେ ।

Raise up my body, Lift my head,
My women, Take there hands still fair—
The strength that knit·my limps is fled,
Un bind my coif-it aches to wear;
And over my shoulders loose my hair.

ବିରହିଣୀର ଅବସ୍ଥା ଓ ଜ୍ୱାଳା ଶାନ୍ତ କରିବା ପାଇଁ ଆମ କାବ୍ୟ ମାନଙ୍କରେ ଅନେକ ଉପଚାରର ବର୍ଣ୍ଣନା ରହିଛି । ସେ ତୁଳନାରେ ପ୍ରାଚୀନ ଗ୍ରୀକ୍ ବିରହିଣୀର ଏ ଚିତ୍ର ଅବଶ୍ୟ ମ୍ଳାନ ।

ଫିଡ୍ରା କାମନା ଜର୍ଜରିତ ଅଥଚ ସଚେତନ ଯେ ସଉତୁଣୀର ପୁଅ ପ୍ରତି ଆସକ୍ତି ମିଛ ଓ ଘୃଣ୍ୟ । ତେଣୁ ଭିତରେ ଭିତରେ ସେ ଦ୍ୱିଖଣ୍ଡିତ । କର୍ତ୍ତବ୍ୟ ଓ କାମନାର ଟଣାଓଟରାରେ କଲବଲ ହେବା ତାଙ୍କର ଟ୍ରାଜେଡ଼ି । ହିପୋଲିଟସ୍ ଫିଡ୍ରାଙ୍କ ଆମନ୍ତ୍ରଣକୁ ଅଗ୍ରାହ୍ୟ କରିଛନ୍ତି । ଏହି ବ୍ୟର୍ଥତା ଯୋଗୁ ନୁହେଁ, କାମନାର ଜ୍ୱାଳା ଓ ଭ୍ରଷ୍ଟ ହୋଇଯିବାର ଆଶଙ୍କାରୁ ରକ୍ଷା ପାଇବାକୁ ଫିଡ୍ରା ଆତ୍ମହତ୍ୟା କରିଛନ୍ତି । ତାଙ୍କର ଭାଷାରେ—

When first love wounded me, I asked myself
How best I might endure. In the beginning
My choice was silence……

× × ×

Next I resolved that I would bear my madness
Nobly, and crush it out by self control.
Lastly, when both these remedies proved vain
Against Love's violence, I vowed to die

ଫିଡ୍ରା ତ ମଲେ କିନ୍ତୁ ହିପୋଲିଟସ୍‌ଙ୍କୁ ଉଚିତ ଶିକ୍ଷା ମିଳିଲା କିପରି ? ମରିବା ପୂର୍ବରୁ ସେ ଲେଖି ଦେଇଗଲେ ଯେ ହିପୋଲିଟସ୍ ତାଙ୍କ ପ୍ରତି ଦୁର୍ବ୍ୟବହାର କରିଛନ୍ତି ! ଆଫ୍ରୋଡାଇଟ୍ ତାଙ୍କ କଣ୍ଠରେ ବିଜେ କରିବା ଯୋଗୁ ହେଉ, ବା ନାରୀମନରେ କୁଟିଳତା ଯୋଗୁ ହେଉ, ଫିଡ୍ରାଙ୍କର ଏଇ ଲେଖାଟି ଆବିଷ୍କାର କରି ଥିସିଅସ୍ କ୍ରୋଧାନ୍ଧ ହୋଇ ପଡ଼ିଲେ । ତାଙ୍କୁ ରାଜ୍ୟରୁ ବହିଷ୍କାର କରାଗଲା । ହିପୋଲିଟସ୍‌ଙ୍କୁ ମାରିଦେବାକୁ ରାଜା

ପୋସିଡନ୍‌ଙ୍କୁ ଜଣାଇଲେ । ସମୁଦ୍ର କୂଳରେ ହିପୋଲାଇଟସଙ୍କ ରଥକୁ ଗୋଟାଏ ସମୁଦ୍ର ସିଂହ ଗୋଡ଼ାଇଲା ଓ ଗାଡ଼ି ଭାଙ୍ଗିଯିବାରୁ ସେ ଗୁରୁତର ଭାବେ ଆହତ ହେଲେ ।

ହିପୋଲାଇଟସ୍‌ଙ୍କ କଳଙ୍କ ଦୂର କରିବାକୁ ଅନ୍ତିମ ଦୃଶ୍ୟରେ ଦେବୀ ଆର୍ଟିମିଜ୍‌ଙ୍କର ଆବିର୍ଭାବ ହୋଇଛି । "ଦେବୀ ! ମୋର ଦୁର୍ଦ୍ଦଶା ଦେଖୁଛନ୍ତି ?" ବୋଲି ମୃତପ୍ରାୟ ହିପୋଲାଇଟସ୍ ପଚାରୁଛନ୍ତି । ଗୋଟିଏ ଧାଡ଼ିରେ ତାର ମର୍ମସ୍ପର୍ଶୀ ଉତ୍ତର ଦେଇଛନ୍ତି ଦେବୀ—

I see, yet eyes immortal may not weep

ହିପୋଲାଇଟସ୍‌ଙ୍କ ମୃତ୍ୟୁ ପୂର୍ବରୁ ଅନୁତାପ-ଦଗ୍ଧ ପିତା ଓ ପୁତ୍ରଙ୍କର ମିଳନ ବଡ଼ କରୁଣ ।

ଅନେକଙ୍କ ମତରେ ପ୍ରାୟ ଅଶୀ ବର୍ଷ ବୟସରେ ଲିଖିତ The Bacchae ୟୁରିପିଡୀଜ୍‌ଙ୍କର ଶ୍ରେଷ୍ଠ କୃତି । ଏଥେନ୍‌ସରୁ ବିଦାୟ ନେଇ ମାସିଡନ୍ ରାଜାଙ୍କ ଦରବାରରେ ଥିବାବେଳେ କବି ଏହି ନାଟକ ରଚନା କଲେ । ଏହି ନାଟକରେ ସ୍ୱୟଂ ଦ୍ୟାକସ ବା ଡାଇଓନସସ୍‌ଙ୍କର ବନ୍ଦନା କରାଯାଇଛି । ତର୍କ ବିଚାରନିଷ୍ଠ ଓ ଯୁକ୍ତିବାଦୀ ୟୁରିପିଡୀଜ୍ ଶେଷ-କାଳରେ ଆବେଗ ପ୍ରବେଗ ଓ ଅଣବିଚାରର ପ୍ରଚଣ୍ଡ ଶକ୍ତିକୁ ସମ୍ମାନ ଦେଖାଇଥିବା ଗୁରୁତ୍ୱ-ପୂର୍ଣ୍ଣ ନିଶ୍ଚୟ । ମାତ୍ର ଏହି ଘଟଣାରୁ ସେ ତାଙ୍କର ବିଚାରନିଷ୍ଠ ଚିନ୍ତାଧାରାକୁ ପରିତ୍ୟାଗ କରିଥିଲେ ବୋଲି ଧରିନେବା ଠିକ୍ ହୁହେଁ । ବରଂ ଜଣେ ଆପୋଲୋ ଭକ୍ତ ଜୀବନ ଉପରେ ଡାଇଓନସସ୍‌ଙ୍କ ପ୍ରଭାବ ଦର୍ଶାଇଥିବାରୁ ନାଟକଟି ଏତେ ବଳିଷ୍ଠ, ଜୀବନ୍ତ ଓ ରସୋତ୍ତୀର୍ଣ୍ଣ ହୋଇପାରିଛି । ଜ୍ଞାନ ଓ ବିଚାରର ପ୍ରଭାବ ଥିବା ଏଥେନ୍‌ସରୁ ଅର୍ଦ୍ଧବର୍ବର ମାସିଡନ ନଗରକୁ ଯାଇ ୟୁରିପିଡୀଜ୍ ମଣିଷର ଆବେଗ, ପ୍ରବୃତ୍ତି ଓ ଉନ୍ମାଦତାର ମୂଲ୍ୟ ଅଧିକ ଭଲ ଭାବେ ହୃଦୟଙ୍ଗମ କରିଥିବା ସମ୍ଭବ ।

ୟୁରିପିଡୀଜ୍ ସ୍ୱଭାବତଃ ଗମ୍ଭୀର, ଏପରିକି ବିଷଣ୍ଣ ମଣିଷ ଥିଲେ ବୋଲି କୁହାଯାଇ-ପାରେ । ତରୁଣମାନେ ତାଙ୍କୁ ଆଗାମୀ ଯୁଗର କବି ଦାର୍ଶନିକ ଭାବେ ଶ୍ରଦ୍ଧା କରୁଥିଲେ । କିନ୍ତୁ ମିତ୍ରଙ୍କ ଅପେକ୍ଷା 'ତାଙ୍କର ଶତ୍ରୁସଂଖ୍ୟା ନିଶ୍ଚିତ ଭାବେ ଅଧିକ । ରକ୍ଷଣଶୀଳମାନେ ୟୁରିପିଡୀଜ୍‌ଙ୍କୁ ସହ୍ୟ କରୁ ନ ଥିଲେ । ବିଶେଷତଃ ଟ୍ରୋଜାନ୍ ଓମେନ୍ ନାଟକ ଅଭିମାତ

ହେବା ପରେ ତାଙ୍କର ଶବ୍ଦସଂଖ୍ୟା ବହୁଗୁଣିତ ହେଲା । ତାଙ୍କ ପରି ଏତେ ଶବ୍ଦ ସୃଷ୍ଟି କରିଥିବା ଗ୍ରୀକ୍ ଲେଖକ ନାହାନ୍ତି । ସଫୋକ୍ଲିସ୍‌ଙ୍କ ସମ୍ବନ୍ଧରେ ଏଇକଥା କୁହାଯାଇପାରେ । ଅବଶ୍ୟ ସଫୋକ୍ଲିସ୍ ଗୋଟିଏ ଧାଡ଼ି ଲେଖି ନ ଥିଲେ ! ସଫୋକ୍ଲିସ୍ ଓ ୟୁରିପିଡ଼ୀଜ୍ କେବଳ ଘନିଷ୍ଠ ବନ୍ଧୁ ନୁହନ୍ତି, ଦୁହିଁଙ୍କର ଐତିହାସିକ ଭୂମିକାରେ ସାମଞ୍ଜସ୍ୟ ରହିଛି । ଅନ୍ୟ ନାଟ୍ୟକାରମାନଙ୍କୁ ସଫୋକ୍ଲିସ୍ କୌଣସି ଗୁରୁତ୍ୱ ଦେଉ ନ ଥିଲେ । ମାତ୍ର ୟୁରିପିଡ଼ୀଜ୍‌ଙ୍କ ନାଟକ ଦେଖିବା ପାଇଁ ତାଙ୍କର ଖୁବ୍ ଆଗ୍ରହ ଥିଲା । ସଫୋକ୍ଲିସ୍ ଓ ୟୁରିପିଡ଼ୀଜ୍ ଉଭୟଙ୍କ ବିରୁଦ୍ଧରେ ଗୋଟିଏ ଅଭିଯୋଗ ହେଉଥିଲା—ଦୁହେଁ ଯୁବକମାନଙ୍କୁ ବିପଥଗାମୀ କରୁଛନ୍ତି । ବିଖ୍ୟାତ କମେଡ଼ିଆନ୍ ଆରିଷ୍ଟୋଫେନ୍‌ସ ସଫୋକ୍ଲିସ୍ ଓ ୟୁରିପିଡ଼ୀଜ୍ ଦୁହିଁଙ୍କୁ ପ୍ରବଳ ଆକ୍ରମଣ କରିଥିଲେ ।

ଉଚିତର ଜୀବନ ବଞ୍ଚିବା ପାଇଁ ସଫୋକ୍ଲିସ୍ ଗ୍ରୀକ୍‌ମାନଙ୍କୁ କପରି ଉଦ୍‌ବୁଦ୍ଧ କରିଛନ୍ତି ସେ ବିଷୟରେ ଗ୍ରୀକ୍ ଜାତି ତାଙ୍କର ମୃତ୍ୟୁ ପରେ ସଚେତନ ହେଲା । ସଫୋକ୍ଲିସ୍ ଗ୍ଭଲିଗଲା ପରେ ଗ୍ରୀକ୍ ଜାତି ତାଙ୍କ ପ୍ରତି ଅକୁଣ୍ଠ ଶ୍ରଦ୍ଧା ଓ ସମ୍ମାନ ଢାଳି ଦେଇଛି । ୟୁରିପିଡ଼ୀଜ୍‌ଙ୍କ ମୃତ୍ୟୁ ପରେ ପ୍ରାୟ ଏହିପରି ଘଟିଲା । ତାଙ୍କର ଚିନ୍ତା ଓ ମତବାଦର ଗୁରୁତ୍ୱ ଗ୍ରୀକ୍‌ମାନେ କ୍ରମଶଃ ଉପଲବ୍ଧି କଲେ । ପ୍ରାଚୀନ କାହାଣୀ ବର୍ଣ୍ଣନା କରିବା ପରିବର୍ତ୍ତେ ୟୁରିପିଡ଼ୀଜ୍ ସମକାଳୀନ ଜୀଅନ୍ତା ମଣିଷଙ୍କ ସମସ୍ୟା ଉତ୍‌ଥାପନ କରିଛନ୍ତି ବୋଲି ଲୋକେ ବୁଝିଲେ । ତେଣୁ ପରବର୍ତ୍ତୀ କାଳରେ ଅନ୍ୟାନ୍ୟ ନାଟ୍ୟକାରଙ୍କ ନାଟକ ଯୋଡ଼େଇ ହୋଇଯାଇ ୟୁରିପିଡ଼ୀଜ୍‌ଙ୍କ ନାଟକ ବାରମ୍ବାର ଅଭିନୀତ ହୋଇଛି ।

ୟୁରିପିଡ଼ୀଜ୍‌ଙ୍କ ସମସାମୟିକ ଆରିଷ୍ଟୋଫେନ୍‌ସ ତାଙ୍କୁ ଉପହାସ କରିଥିଲେ । ମାତ୍ର ପରବର୍ତ୍ତୀ ଯୁଗର ଜଣେ ଅଗ୍ରଣୀ ଗ୍ରୀକ୍ କମେଡ଼ିଆନ୍ କହିଥିଲେ, "ଯଦି ମୃତ୍ୟୁ ପରେ ମଣିଷର ଚେତନା ରହେ ବୋଲି ମୁଁ ନିଶ୍ଚିତ ହୁଅନ୍ତି, ତେବେ ୟୁରିପିଡ଼ୀଜ୍‌ଙ୍କୁ ଭେଟିବା ପାଇଁ ଆତ୍ମହତ୍ୟା କରନ୍ତି ।" ସିରାକ୍ୟୁଜ୍ ଆକ୍ରମଣ କରି ଏଥେନ୍‌ସୀୟମାନେ ଶୋଚନୀୟ ଭାବେ ପରାସ୍ତ ହେଲେ । ସେମାନଙ୍କ ପାଇଁ ମୁକ୍ତିର ଗୋଟିଏ ବାଟ ଥିଲା । ୟୁରିପିଡ଼ୀଜ୍‌ଙ୍କ ରଚନାରୁ କିଛି ଆବୃତ୍ତି କରିପାରିବା ! ଯିଏ ପାରିଲା ସିଏ ଖଲାସ୍ ! ଏଥେନ୍‌ସ ବାହାରେ ୟୁରିପିଡ଼ୀଜ୍‌ଙ୍କର ଏପରି ସମ୍ମାନ ଥିଲା ।

ଅଷ୍ଟାଦଶ ଊନବିଂଶ ଶତାବ୍ଦୀ ଠାରୁ ୟୁରିପିଡିଜ୍‌ଙ୍କ ପ୍ରତି ଶ୍ରଦ୍ଧା ଓ ଆଦର ଖୁବ୍ ବଢ଼ିଯାଇଛି । ୟୁରୋପର ମୁକ୍ତ ବାତାବରଣରେ ଉଦାର ଚିନ୍ତା, ମାନବତାବାଦ ଓ ସଂଶୟ-ବାଦର ପ୍ରସାର ହେବା ଫଳରେ ୟୁରିପିଡିଜ୍‌ଙ୍କୁ ବୁଝିବାର ଅନୁକୂଳ ବାତାବରଣ ଆସିଲା । ସେ ସୁଦୂର ଅତୀତର ଗର୍ଭରୁ ଫେରି ଆସି ଅଷ୍ଟାଦଶ ଊନବିଂଶ ଶତାବ୍ଦୀର ୟୁରୋପୀୟଙ୍କ ସମସାମୟିକ ପ୍ରିୟ କବି ହେଲେ । ଏପରିକି ସେ ସେକ୍ସପିୟର୍‌ଙ୍କ ଠାରୁ ଅଧିକ ଆଧୁନିକ । ଗେଟେଙ୍କ ମତରେ ୟୁରିପିଡିଜ୍ ପୃଥିବୀର ଅଦ୍ୱିତୀୟ ନାଟ୍ୟକାର । ତାଙ୍କ ଭାଷାରେ, "Have all the nations of the world since Euripides produced one dramatist worthy to hand him his slippers ?"

## କମେଡି :

ଗ୍ରୀସ୍‌ରେ କମେଡ଼ି କେବେହେଲେ ଟ୍ରାଜେଡ଼ି ପରି ମର୍ଯ୍ୟାଦା ପାଇ ନ ଥିଲା । କିଛି ହାସ୍ୟରସ ପରିବେଷଣ କରି ଟ୍ରାଜେଡ଼ି ଦେଖି ସାରିଥିବା ଦର୍ଶକଙ୍କର ଭାବାବେଗକୁ ଉଶ୍ୱାସ କରିବା ଥିଲା କମେଡିର ଲକ୍ଷ୍ୟ । କାଳକ୍ରମେ କମେଡ଼ିର କିଛି ନିଜସ୍ୱ ମହିମା ସୃଷ୍ଟି ହେଲା । ଡାଇଓନିସସୀୟ ନାଟକୋତ୍ସବରେ କମେଡ଼ି ଅଭିନୟ ପାଇଁ ପୂରା ଗୋଟିଏ ଦିନ ନିର୍ଦ୍ଧିଷ୍ଟ କରାଗଲା । ସେହି ଦିନ ବିଭିନ୍ନ ନାଟ୍ୟକାରଙ୍କର ତିନି ବା ଚାରୋଟି କମେଡ଼ି ଅଭିନୀତ ହେଉଥିଲା । କମେଡ଼ି ପାଇଁ ସ୍ୱତନ୍ତ୍ର ପୁରସ୍କାର ମିଳିଲା ।

ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ କମେଡ଼ିର ଜନ୍ମ । କମେଡ଼ିର ଜନ୍ମ ଇତିହାସ ଟ୍ରାଜେଡ଼ି ଠାରୁ ଅଧିକ ରହସ୍ୟାବୃତ । ଏହାର ମୂଳ ଜନ୍ମଭୂମି ସିସିଲି । ସିସିଲିରୁ ଏହା ଏଥେନ୍‌ସ ଆସିଲା ବା ଏଥେନ୍‌ସରେ ସ୍ୱତନ୍ତ୍ର ଭାବେ ଜନ୍ମ ନେଲା ସେ ବିଷୟରେ ମତଭେଦ ରହିଛି । ତେବେ ସିସିଲି ପରି ଏଥେନ୍‌ସରେ କମେଡ଼ି କେବଳ ହାସ୍ୟରସ ପରିବେଷଣ କରୁଥିବା ସୁଆଙ୍ଗ ହୋଇ ରହିଲା ନାହିଁ । ଗଣତାନ୍ତ୍ରିକ ଏଥେନ୍‌ସର ମୁକ୍ତ ବାତାବରଣରେ କମେଡ଼ି ରାଜନୀତିବାଳଙ୍କୁ ଛିଗୁଲେଇବା ଓ ନୂତନ ମୂଲ୍ୟବୋଧକୁ ବିଦ୍ରୂପ କରିବାର ଅସ୍ତ୍ର ହେଲା ।

ଆରିଷ୍ଟୋଫେନ୍‌ସ (ଖ୍ରୀ· ପୂ ୪୫୦— ୩୮୫) ଏଥେନ୍‌ସ ତଥା ଗ୍ରୀସ୍‌ର ସର୍ବଶ୍ରେଷ୍ଠ କମେଡ଼ିଆନ୍ । ଗଣତନ୍ତ୍ରକୁ ଖତେଇ ହେବାର ଯେଉଁ ପରମ୍ପରା କମେଡିଆନ୍‌ମାନେ ସୃଷ୍ଟି

କରିଥିଲେ, ଆରିଷ୍ଟୋଫେନ୍ସ ତାହା ଅବ୍ୟାହତ ରଖିଲେ । ସେମାନେ ଗଣତନ୍ତ୍ରକୁ ବିଦ୍ରୂପ କରିବାର କାରଣ ଦ୍ୱିବିଧ । ପ୍ରଥମତଃ, ଏଥିପାଇଁ ଗଣତନ୍ତ୍ରବିରୋଧୀ ଅଭିଜାତଙ୍କ ଠାରୁ ସାହାଯ୍ୟ, ସମର୍ଥନ ମିଳୁଥିଲା । ମାତ୍ର ମୁଖ୍ୟ କାରଣ ହେଉଛି, ଶାସକଦଳ ଓ ଶାସନକଳର ସମାଲୋଚନା ଦର୍ଶକମାନଙ୍କୁ ଆମୋଦିତ କରୁଥିଲା । ଶାସକଙ୍କୁ ନେଇ ଥଟ୍ଟା ପରିହାସ କରିବା ଗଣତନ୍ତ୍ରର ଗୋଟିଏ ଧର୍ମ ! ଦର୍ଶନ କ୍ଷେତ୍ରରେ ପେରିକ୍ଲିଜ୍ ନୂତନ ଚିନ୍ତାକୁ ଉତ୍ସାହିତ କରୁଥିଲେ । ସାମାଜିକ ପରିବର୍ତ୍ତନ ପାଇଁ ନାରୀ ଜାଗରଣ ଓ ସେହିପରି ପ୍ରଗତିମୂଳକ ଭାବ-ଧାରାକୁ ସମର୍ଥନ କରୁଥିଲେ । ଆରିଷ୍ଟୋଫେନ୍ସ ଥିଲେ ରକ୍ଷଣଶୀଳ । ଏଥେନ୍ସର ଗୌରବ-ମୟ ପରମ୍ପରାକୁ ଜଗିବା ନାଆଁରେ ସେ ପ୍ରତିକ୍ରିୟାଶୀଳ ଓ ରକ୍ଷଣଶୀଳ ଜନତାକୁ ସମର୍ଥନ କଲେ ।

ଜନତାକୁ ତୋଷାମଦ କରି ଲୋକପ୍ରିୟ ହେବା ଅବଶ୍ୟ ଆରିଷ୍ଟୋଫେନ୍ସଙ୍କ ମତଲବ ନ ଥିଲା । ତା ହୋଇଥିଲେ ସ୍ପାର୍ଟା ସହିତ ଏଥେନ୍ସର ଯୁଦ୍ଧ ଲାଗିଥିବା ବେଳେ ଯୁଦ୍ଧକୁ ନିନ୍ଦା କରି ସେ ଲେଖି ନ ଥାନ୍ତେ । ୟୁରିପିଡିଜ୍ଙ୍କ ପରି ଆରିଷ୍ଟୋଫେନ୍ସ ଶାନ୍ତିପ୍ରିୟ । ପେରିକ୍ଲିଜ୍ଙ୍କ ପରେ ଏଥେନ୍ସର ଶାସନଭାର ଗ୍ରହଣ କରିଥିବା କ୍ଲିଅନ୍ଙ୍କୁ ସେ ଯେଉଁଭଳି ତୀବ୍ର ଭାବେ ବିଦ୍ରୂପ କରିଥିଲେ ତାହା ଆମକୁ ଆଶ୍ଚର୍ଯ୍ୟ କରେ । ଏହି ଘଟଣାରୁ ଏଥେନ୍ସର ଗଣତନ୍ତ୍ର କେତେ ପାକଳ ହୋଇଥିଲା ତାହା ଅନୁମେୟ ।

ଆରିଷ୍ଟୋଫେନ୍ସଙ୍କ ବ୍ୟଙ୍ଗ ବିଦ୍ରୂପ ଖୁବ୍ ତୀକ୍ଷ୍ଣ ଓ ଶକ୍ତିଶାଳୀ । ନାଟକରେ ଯଥା ସ୍ଥାନରେ ତାଙ୍କର କବିତ୍ୱପୂର୍ଣ୍ଣ କ୍ଲାସିକାଲ୍ ଭାଷା ଗ୍ରୀକ୍ ସାହିତ୍ୟର ଅମୂଲ୍ୟ ସମ୍ପଦ । ଏହା ସତ୍ତ୍ୱେ ତାଙ୍କର ହାସ୍ୟ ପରିହାସ କେତେକ ସ୍ଥାନରେ ଅରୁଚିକର ଓ ନିମ୍ନମାନର । ନାଟକ ପାଇଁ ଭଲ ପ୍ଲଟ ବାଛିବାରେ ଆରିଷ୍ଟୋଫେନ୍ସ ଆଦୌ ଦକ୍ଷ ନୁହନ୍ତି । ନାଟକ ଅଧାରେ ତାଙ୍କର ଥିମ୍ ସରିଆସେ ଓ ଅପ୍ରାସଙ୍ଗିକ ଲଘୁ ସୁଆଙ୍ଗରେ ବାକି ଅଧା ପୂରଣ ହୁଏ । ଆରିଷ୍ଟୋଫେନ୍ସଙ୍କ ନାଟକର ସାହିତ୍ୟିକ ମୂଲ୍ୟ ଯାହା ହେଉ ନା କାହିଁକି, ସେଗୁଡ଼ିକର ଐତିହାସିକ ମୂଲ୍ୟ ଯଥେଷ୍ଟ । ସେ କାଳର ସାଧାରଣ ଏଥେନ୍ସୀୟ ଲୋକଙ୍କର କଥାବାର୍ତ୍ତା ଓ ଚାଲିଚଳଣର ସର୍ବୋତ୍କୃଷ୍ଟ ଚିତ୍ର ତାଙ୍କ ନାଟକଗୁଡ଼ିକରୁ ମିଳିଥାଏ । ଟ୍ରାଜେଡ଼ିର ପୌରାଣିକ କାହାଣୀ ଓ ମିଥିକାଲ୍ ଚରିତ୍ରଙ୍କ ଭିତରୁ ସମାଜର ବାସ୍ତବ ଚିତ୍ର ପ୍ରାୟ ମିଳେ ନାହିଁ । ପ୍ଲେଟୋଙ୍କ ଡାଏଲଗ୍‌ଗୁଡ଼ିକରୁ ମାର୍ଜିତ ରୁଚିସମ୍ପନ୍ନ ଓ ଜ୍ଞାନ ପିପାସୁ ଶିକ୍ଷିତ ଏଥେନ୍ସୀୟଙ୍କର

ଢଙ୍ଗ ଓ କଥାବାର୍ତ୍ତାର ଏକ ଚିତ୍ର ଆମେ ପାଉ । ମାତ୍ର ଏଥେନ୍‌ସୀୟଙ୍କର ବାସ୍ତବ ଚିତ୍ର ପ୍ରଦାନ କରିବାରେ ଆରିଷ୍ଟୋଫେନ୍‌ସଙ୍କ ନାଟକ ସବୁର ମୂଲ୍ୟ ସୂଚନ୍ତି ।

ସଂସ୍କୃତିସମ୍ପନ୍ନ, ଉଚ୍ଚ ଶିକ୍ଷିତ ଗ୍ରୀକ୍‌ମାନଙ୍କର ବ୍ୟବହାର ଓ କଥାବାର୍ତ୍ତା କେତେ ଶାଳୀନ ଓ ମାର୍ଜିତ ତାର ଦୃଷ୍ଟାନ୍ତ ପ୍ଲେଟୋଙ୍କ ଡାଏଲଗ୍‌ମାନଙ୍କରୁ ମିଳେ ।

ସକ୍ରେଟିସ୍ ଓ ୟୁରିପିଡୀଜ୍‌ଙ୍କୁ ବୁଝି ନ ପାରି ସେ ଦୁଇ ମହାନ୍ ଚିନ୍ତାନାୟକଙ୍କୁ କୁତ୍ସିତ ଭାବେ ଚିତ୍ରଣ କରିବା ଆରିଷ୍ଟୋଫେନ୍‌ସଙ୍କର ସଙ୍କୀର୍ଣ୍ଣ ଦୃଷ୍ଟିକୋଣର ପରିଚୟ ଦିଏ । ଏ ଦୁହିଁଙ୍କ ମଧ୍ୟରୁ କାହାପ୍ରତି ତାଙ୍କର ବ୍ୟକ୍ତିଗତ ଅସୂୟା ନ ଥିଲା । ବଡ଼ ମଣିଷଙ୍କୁ ଥଟ୍ଟା ପରିହାସ କରିବା ଗୋଟାଏ କଥା, ମାତ୍ର ସେମାନଙ୍କର ବିକୃତ ଚିତ୍ର ଆଙ୍କିବା ଖୁବ୍ ଭିନ୍ନ କଥା The Cloud ନାଟକରେ ଆରିଷ୍ଟୋଫେନ୍‌ସ ସକ୍ରେଟିସ୍‌ଙ୍କୁ ବିକୃତ ଭାବେ ଚିତ୍ରଣ କରି ତାଙ୍କ ପ୍ରତି ଯଥେଷ୍ଟ ଅନ୍ୟାୟ କରିଛନ୍ତି । ଏପରିକି ସକ୍ରେଟିସ୍‌ଙ୍କୁ ଅପନିନ୍ଦିତ କରି ତାଙ୍କୁ ମୃତ୍ୟୁ ଦଣ୍ଡ ଦିଆଇବାରେ ଏହି ନାଟକର କିଛି ଅବଦାନ ରହିଛି । 'କ୍ଲାଉଡ୍' ଅଭିନୀତ ହେବାର ପଚିଶ ବର୍ଷ ପରେ ସକ୍ରେଟିସ୍ ପ୍ରାଣଦଣ୍ଡ ପାଇଲେ । ହୁଏତ କ୍ଲାଉଡ୍ ଆଦୌ ଲେଖା ଯାଇ ନ ଥିଲେ ମଧ୍ୟ ସେଇୟା ଘଟିଥାଆନ୍ତା । ସକ୍ରେଟିସ୍‌ଙ୍କୁ ପ୍ରାଣଦଣ୍ଡ ଦିଆଇବାରେ ଏ ନାଟକର କୌଣସି ଭୂମିକା ରହିବ ବୋଲି କ୍ଲାଉଡ୍ ଅଭିନୀତ ହେବା ସମୟରେ ସ୍ୱୟଂ ସକ୍ରେଟିସ୍, ପ୍ଲେଟୋ ବା ତାଙ୍କର କେହି ଶୁଭେଚ୍ଛୁ ଦେଖିପାରି ନ ଥିଲେ । ଅଭିନୟ ସମୟରେ 'ସକ୍ରେଟିସ୍ ଲୋକଟି କିଏ ?' ବୋଲି କେତେଜଣ ଦର୍ଶକ କଥାବାର୍ତ୍ତା ହେବାରୁ ଦର୍ଶକ ଗ୍ୟାଲେରୀରେ ସକ୍ରେଟିସ୍ କିଛି ସମୟ ଛିଡ଼ା ହୋଇ ରହିଥିଲେ । ସକ୍ରେଟିସ୍‌ଙ୍କୁ ବିକୃତ ଭାବେ ଚିତ୍ରଣ କରି (ଏହା ମଧ୍ୟ ଏକ ଅପରାଧ) ଜନତାକୁ ହସେଇବା ଭିତରେ ଏ ନାଟକର ପ୍ରଭାବ କିନ୍ତୁ ସୀମାବଦ୍ଧ ରହିଲା ନାହିଁ । ବିଚାରାଳୟରେ ପ୍ରାଣଦଣ୍ଡ ପାଇବା ପରେ ଯେଉଁସବୁ କାରଣରୁ ଅକାରଣେ ତାଙ୍କର ଦୁର୍ନାମ ବ୍ୟାପିଲା, ସେଗୁଡ଼ିକ ସକ୍ରେଟିସ୍ ବୁଝାଇଛନ୍ତି । ଏହି କାରଣମାନଙ୍କ ଭିତରେ ସେ କ୍ଲାଉଡ୍ ନାଟକକୁ ଅନ୍ତର୍ଭୁକ୍ତ କରିଛନ୍ତି । ଏଥିରୁ ଆମେ ଅନୁମାନ କରିବା ସ୍ୱାଭାବିକ୍ ଯେ ପ୍ରଥମ ଅଭିନୟ ଦିନରୁ ପଚିଶ ବର୍ଷ ଭିତରେ ବହୁ ଲୋକ ଏ ନାଟକ ପଢ଼ି ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ଅନ୍ଧବିଶ୍ୱାସ ପୋଷଣ କରିଥିଲେ ।

କ୍ଲାଉଡ୍‌କୁ ଆରିଷ୍ଟୋଫେନ୍‌ସ ତାଙ୍କ ସର୍ବଶ୍ରେଷ୍ଠ ନାଟକ ମନେକରନ୍ତି । ମାତ୍ର ଅଢ଼େଇ ହଜାର ବର୍ଷ ପରେ ଆମକୁ ଆକୃଷ୍ଟ କଲା ପରି ସାହିତ୍ୟିକ ମୂଲ୍ୟ ଏ ନାଟକରେ ନାହିଁ । ଆମେ

କିନ୍ତୁ ସକ୍ରେଟିସ୍‌ଙ୍କୁ ସମ୍ମାନ କରୁ ଓ ତାଙ୍କ ବିଷୟରେ ଜାଣିବାକୁ ଆଗ୍ରହୀ । ଜଣେ ଅଧା ପଣ୍ଡିତ କିପରି ବିଜ୍ଞ ବ୍ୟକ୍ତିଙ୍କ ଚିନ୍ତାଧାରା ଓ ବ୍ୟକ୍ତିତ୍ୱକୁ ବୁଝି ନ ପାରି କଦର୍ଥ କରନ୍ତି କ୍ଲାଉଡ୍ସ ତାହାର ଏକ ନମୁନା ମାତ୍ର । ଜ୍ଞାନୀ ଓ ଯୁଗପୁରୁଷମାନେ ସକ୍ରେଟିସ୍‌ଙ୍କ ସମୟରୁ ଆଜି ପର୍ଯ୍ୟନ୍ତ ଅଧାପଣ୍ଡିତଙ୍କ ଶରବ୍ୟ ହୋଇ ଆସିଛନ୍ତି । ବିଜ୍ଞମନ୍ୟ ସବ୍‌ଜାନ୍ତା ସକ୍ରେଟିସ୍‌ଙ୍କର ନୂତନ ଚିନ୍ତା ଜନସାଧାରଣଙ୍କର ନୈତିକ ଅଧୋଗତି ପାଇଁ ଦାୟୀ ବୋଲି ଆରିଷ୍ଟୋଫେନସ୍ ଅଭିଯୋଗ କରିଥିଲେ । ବିଜ୍ଞମନ୍ୟ ସବ୍‌ଜାନ୍ତା ନୈତିକତା କ୍ଷେତ୍ରରେ ବିଶୃଙ୍ଖଳା ସୃଷ୍ଟି କରନ୍ତି କିନ୍ତୁ ସକ୍ରେଟିସ୍ (ଯେ ନିଜକୁ ଅଜ୍ଞ ମଣୁଥିଲେ ଓ ସତ୍ୟନିଷ୍ଠ ଜୀବନଯାପନର ଆଲୋକସ୍ତମ୍ଭ ହୋଇ ରହିଛନ୍ତି)ଙ୍କୁ ସେମାନଙ୍କର ନେତା ଭାବେ ଚିତ୍ରଣ କରି କମେଡ଼ି ଲେଖିବା ଇତିହାସର ନିଷ୍ଠୁର ଟ୍ରାଜେଡି । ସବୁ ନୂତନ ଚିନ୍ତା ଓ ଜୀବନଦର୍ଶନକୁ ଛୁଗୁଲେଇ ଫାଶିରେ ପରିଣତ କରିବାକୁ ବିଦ୍ରୂପର ଖଣ୍ଡା ଧରି ବାହାରିଥିବା ସମାଜ ରକ୍ଷକ ବିଜ୍ଞ (ଏ କାଳରେ ବିଜ୍ଞ କେହି ବାହାରିବା ଅସମ୍ଭବ ବୋଲି ତାଙ୍କ ମନ ଭିତରେ ଥାଏ) ଓ ବିଜ୍ଞମନ୍ୟ ମଧ୍ୟରେ ତଫାତ୍ ଦେଖି ନ ପାରିବା ଏକ ଭିନ୍ନ ରଙ୍ଗମଞ୍ଚରେ ବିଧାତାପୁରୁଷଙ୍କ ପାଇଁ ବଡ଼ ମଜାଦାର୍ ସୁଆଙ୍ଗ ।

କ୍ଲାଉଡ୍ସ୍ ନାଟକରେ ସକ୍ରେଟିସ୍ ସଫିଷ୍ଟସ୍‌ଙ୍କ ନେତା । ଏହା ସତ୍ୟ ଠାରୁ ବହୁ ଦୂରରେ । ସକ୍ରେଟିସ୍ ଶିଷ୍ୟ ଗ୍ରହଣ କରୁ ନ ଥିଲେ ବା ଅର୍ଥ ବିନିମୟରେ କାହାକୁ ଶିକ୍ଷା ଦେଉ ନ ଥିଲେ । ଯେ କୌଣସି ବ୍ୟକ୍ତି ଇଚ୍ଛା କଲେ ତାଙ୍କ ସହିତ ବିଚାର ପରାମର୍ଶ କରୁଥିଲି । ମାତ୍ର କ୍ଲାଉଡ୍‌ସ୍‌ରେ ସକ୍ରେଟିସ୍ ହୋଇଛନ୍ତି ଗୋଟିଏ ଚିନ୍ତା ବିଦ୍ୟାଳୟ (Thinking shop)ର ମାଷ୍ଟର୍ ! ଯୁବକମାନେ ମାଷ୍ଟର୍‌ଙ୍କ ପାଉଣା ଧରି ଚିନ୍ତା ବିଦ୍ୟାଳୟରୁ ଜ୍ଞାନ କିଣିବା ପାଇଁ ଆସନ୍ତି । କିପରି ଜ୍ଞାନ ? କଳାକୁ ଧଳା ଓ ଧଳାକୁ କଳା ବୋଲି ବିତଣ୍ଡା ଯୁକ୍ତି ବଳରେ ପ୍ରମାଣ କରିବାର ତର୍କଜ୍ଞାନ । ସତ୍ୟ ଦର୍ଶନ ଯେ ଜଣକର ଚରମ ଲକ୍ଷ୍ୟ ହୋଇପାରେ ଓ ସେହି ଲକ୍ଷ୍ୟରେ ପହଞ୍ଚିବା ପାଇଁ ସେ ତର୍କଶୈଳୀକର ସାହାଯ୍ୟ ନିଏ, ସେ କଥା ସକ୍ରେଟିସ୍‌ଙ୍କୁ ଦେଖି ମଧ୍ୟ ଲୋକେ ବିଶ୍ୱାସ କରିପାରୁ ନ ଥିଲେ ।

ସଫିଷ୍ଟ ଯେ ଖରାପ ଲୋକ ତା ନୁହେଁ । ଗ୍ରୀସ୍‌କୁ ସେମାନଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ତେବେ ସକ୍ରେଟିସ୍‌ଙ୍କୁ ସଫିଷ୍ଟ କହିବା ଠିକ୍ ହେବ ନାହିଁ ।

ଆଦ୍ୟ ଯୌବନରେ ସକ୍ରେଟିସ୍ ଜ୍ୟୋତିର୍ବିଜ୍ଞାନ ପ୍ରତି ଆକୃଷ୍ଟ ହୋଇଥିଲେ । କ୍ଲାଉଡ୍ସ୍ ନାଟକରେ ଜ୍ୟୋତିର୍ବିଜ୍ଞାନ ପ୍ରତି ଆଗ୍ରହୀ ସକ୍ରେଟିସ୍‌ଙ୍କୁ ଚିତ୍ରଣ କରାଯାଇଛି । ଏଥିରୁ ମନେହୁଏ,

କମ୍ ବୟସର ସକ୍ରେଟିସ୍ ଏବଂ ନାଟକର ଚରିତ୍ର ବା ପରବର୍ତ୍ତୀ କାଳରେ ସକ୍ରେଟିସ୍‌ଙ୍କର ଅନ୍ୟାନ୍ୟ କଂଶ ସବୁ ବିକାଶ ହୋଇଛି ସେ ଖବର ଆରିଷ୍ଟୋଫେନ୍‌ସ ରଖି ନାହାନ୍ତି ।

ଷ୍ଟ୍ରେପ୍‌ସିଏଡୀଜ୍ ନାମକ ଜଣେ ବୃଦ୍ଧ ଜୋକର୍ ( ନାଟକର ଘଟଣାରୁ ଜଣାଯାଏ ସକ୍ରେଟିସ୍ ଜଣେ ବୃଦ୍ଧ ଜୋକର୍ ବୋଲି ଦେଖାଇ ଦେବାପରି ବୁଦ୍ଧି ତାର ଥିଲା ) ଥିଙ୍କିଂ ସପ୍‌କୁ ଆସିଛି କିଛି ବୁଦ୍ଧି କିଣିବା ଉଦ୍ଦେଶ୍ୟରେ । କରଜ ସୁଝି ନ ପାରି ସେ ବଡ ବ୍ୟସ୍ତ । କି ବୁଦ୍ଧି କଲେ ସେ କାବୁଲିବାଲାଙ୍କ ଠାରୁ ରକ୍ଷା ପାଇଯିବ, ସେତିକି ତାର ଦରକାର । ଥିଙ୍କିଂ ସପ୍ ଭିତରକୁ ପଶିଲା ମାତ୍ରେ 'ଷ୍ଟ୍ରେପ୍' ଦୁଇଟି ମୂର୍ତ୍ତି ଦେଖିଛି । ଗୋଟିଏ ଜ୍ୟୋତିର୍ବିଜ୍ଞାନ ଓ ଅନ୍ୟଟି ଜ୍ୟାମିତିର । ଜ୍ୟାମିତିଟା କି ଜିନିଷ ? ଜ୍ୟାମିତିର ଗୁରୁତ୍ୱ ବୁଝାଇ ଦେବାକୁ ଜ୍ୟାମିତି ସାହାଯ୍ୟରେ ଅଙ୍କା ଯାଇଥିବା ପୃଥିବୀ ମାନଚିତ୍ରଟିଏ ଦେଖାଇ ଦେଇ ଜଣେ ଶିଷ୍ୟ କହୁଛି—

Disc—And here do you see ? — is a map
of all the earth·
Look, here is Athens.

Streps—Athens ? I don't believe you !
I can see no Juries sitting.

Disc—But I assure you, it is Attica

Streps—Then where are my fellow—demesmen of Cicynna ?

Disc—Oh somewhere here·········

× × ×
× × ×

Streps—···But where is Sparta ?

Disc—Sparta ? why, here·

Streps—But that's most terribly close !
Turn your great minds to move her far away.

ଷ୍ଟ୍ରେପ୍‌ସ ପୃଥିବୀ ମାନଚିତ୍ରରେ ଏଥେନ୍‌ସକୁ ଦେଖି ବିସ୍ମିତ ହୋଇଛି । ଯଦି ସେଇଟା ଏଥେନ୍‌ସ, ତେବେ ଜୁରି ସବୁ ବସିଛନ୍ତି କେଉଁଠି ? ତା ଗାଁ ବାଲା କେହି ଦିଶୁ ନାହାନ୍ତି ? ସ୍ପାର୍ଟା, ଯଦି ଏତେ ଲଗି କରି ଅଛି ( ମାନଚିତ୍ରରେ ) ତେବେ ବଡ଼ ବିପଦରେ ବାବା ! ଥିଙ୍କିଂ ସପ୍‌ର ବୁଦ୍ଧିଆ ବଡ଼ ମୁଣ୍ଡି ଆମାନେ ସ୍ପାର୍ଟାକୁ ଆଉ ଦୂରକୁ ଘୁଞ୍ଚେଇ ଦେଇ ପାରୁ ନାହାନ୍ତି ? ଏହିପରି ହାସ୍ୟୋଦ୍ଦୀପକ କଥାବାର୍ତ୍ତା ଭିତରେ ସକ୍ରେଟିସ୍‌ଙ୍କ ବିରୁଦ୍ଧରେ ଗୁରୁତର ଅଭିଯୋଗ ଲୁଚି ରହିଛି । ଜୀବନର ବାସ୍ତବ ସମସ୍ୟା ସହିତ ସକ୍ରେଟିସ୍‌ଙ୍କର ପରିଚୟ ବା ସମ୍ପର୍କ ନାହିଁ । ସେ ଅମୂର୍ତ୍ତ ଜ୍ଞାନକୁ ନେଇ ମାତିଥାନ୍ତି । ନିଜ ଗାଁ ବାଲାଙ୍କୁ ଦେଖିବାକୁ ଚାହୁଁଥିବା ଷ୍ଟ୍ରେପ୍‌ସକୁ ସକ୍ରେଟିସ୍ ପୃଥିବୀ ମାନଚିତ୍ରରେ ଏଥେନ୍‌ସର ସ୍ଥାନ ଦେଖାନ୍ତି ।

ଏ ପ୍ରଚ୍ଛନ୍ନ ଅଭିଯୋଗ ଆଉ ଟିକିଏ ପରେ ସ୍ପଷ୍ଟ ହୋଇଯାଇଛି । ଥିଙ୍କିଂ ସପ୍‌ରେ ପାର୍ଥିବ ବ୍ୟାପାରରୁ ସମ୍ପୂର୍ଣ୍ଣ ଭାବେ ଛିନ୍ନ ସକ୍ରେଟିସ୍ ଛାତରୁ ଝୁଲୁଥିବା ଗୋଟିଏ ଟୋକେଇରେ ବସିଛନ୍ତି । ସେଠାରୁ ସେ ଆକାଶକୁ ନିରୀକ୍ଷଣ କରୁଛନ୍ତି । ତାଙ୍କୁ ଏହି ଅବସ୍ଥାରେ ଷ୍ଟ୍ରେପ୍‌ସ ଦେଖିଛି । ଆଉ ଡାକି ପକେଇଛି—

Come down to earth n›w, Socrates my pet,
And tell me the things I have come to ask about.

ସକ୍ରେଟିସ୍ ! ପବନରେ ଦୋଳି ଖେଳିବା ବନ୍ଦ କର ଟିକିଏ ମାଟିରେ ପାଦ ପକାଅ । ଷ୍ଟ୍ରେପ୍‌ସ ପରି ଲୋକ ମୁହଁରେ ସକ୍ରେଟିସ୍‌ଙ୍କୁ ଏପରି ଉପଦେଶ କୁତ୍ସିତ ରୁଚି ଠାରୁ ଆଉ କିଛି ଅଧିକ । କାରଣ ମଣିଷର ସବୁଠାରୁ ସମସ୍ୟା, ବିଶେଷତଃ ନୈତିକ ସମସ୍ୟା ସକ୍ରେଟିସ୍‌ଙ୍କର ପ୍ରଧାନ ଚିନ୍ତାର ବିଷୟ ଥିଲା । ଆୟୋନୀୟ ଦାର୍ଶନିକମାନେ ବିଶ୍ୱର ମୂଳବସ୍ତୁ ଅନୁସନ୍ଧାନ କରୁଥିଲେ । ଆୟୋନିଆରୁ ଦର୍ଶନକୁ ଏଥେନ୍‌ସ ଆଣିଥିବା ଆନାକ୍‌ସଗୋରସ୍ ଘୋଷଣା କରିଥିଲେ ଯେ ବିଶ୍ୱର ମୂଳତତ୍ତ୍ୱ କୌଣସି ବସ୍ତୁ ନୁହେଁ—ବୁଦ୍ଧି । ସୃଷ୍ଟିର ଆଦି କାରଣ ଜାଣିବା ପାଇଁ ପୂର୍ବର ଦାର୍ଶନିକମାନେ ବ୍ୟସ୍ତ ଥିବା ସ୍ଥଳେ ସଫିଷ୍ଟସ୍ ଅନ୍ୟ ଦିଗକୁ ଧ୍ୟାନ ଦେଲେ । ମଣିଷ, ମଣିଷର ସମସ୍ୟା ଓ ତାର ସମାଧାନ ସଫିଷ୍ଟସ୍‌ଙ୍କ ଦୃଷ୍ଟି ଆକର୍ଷଣ କଲା । ସୃଷ୍ଟିର କାରଣ, ପରମ ସତ୍ୟ ସନ୍ଧାନ ଓ ମଣିଷ ଜୀବନର ସମସ୍ୟାବଳୀ—ଏ ଉଭୟଙ୍କ

ମଧ୍ୟରୁ କେତେ ସାମାନ୍ୟ ଭିନ୍ନ । ମାତ୍ର ସକ୍ରେଟିସ୍ ମଣିଷ ଜୀବନର ରହସ୍ୟ ଜାଣିବାରେ ସମସ୍ତ ଶକ୍ତି ବିନିଯୋଗ କଲେ । ସେ ଲୋକଙ୍କ ସହିତ ସବୁ ପ୍ରକାର ସାମାଜିକ ଓ ନୈତିକ ସମସ୍ୟା ଆଲୋଚନା କରୁଥିଲେ । 'ଜଗତର ମୂଳତତ୍ତ୍ୱ ସନ୍ଧାନ କର' ପରିବର୍ତ୍ତେ 'ଆପଣାକୁ ଚିହ୍ନ' (Know thyself) ତାଙ୍କ ଦର୍ଶନର ମୁଖ୍ୟ ବିଷୟବସ୍ତୁ ହେଲା । ଜଣେ ତତ୍ତ୍ୱ ସନ୍ଧାନୀକୁ ଉପହାସ କରିବାକୁ ତାଙ୍କୁ ଶୂନ୍ୟରେ ଝୁଲୁଥିବା ଚରିତ୍ରରୂପେ ଚିତ୍ରଣ କରାଯାଇ-ପାରେ । ମାତ୍ର ସକ୍ରେଟିସ୍‌ଙ୍କୁ ଏହିପରି ଚିତ୍ରଣ କରିବାର ଅର୍ଥ ତାଙ୍କୁ ବିକୃତ କରିବା ।

ପାରମ୍ପରିକ ନୈତିକତାକୁ ମାନି ନ ନେଇ ନୈତିକତା କ୍ଷେତ୍ରରେ ବିଚାରର ଅନୁପ୍ରବେଶ କରାଇ ସକ୍ରେଟିସ୍ ଘୋର ବିଶୃଙ୍ଖଳା ସୃଷ୍ଟି କରୁଛନ୍ତି—ଆରିଷ୍ଟୋଫେନିସ୍ ସକ୍ରେଟିସ୍‌ଙ୍କୁ ଏହିପରି ବୁଝିଥିଲେ । ତାଙ୍କର ଏହିପରି ବୁଝାମଣାରୁ କ୍ଲାଉଡ୍ ନାଟକର ସୃଷ୍ଟି ।

କମ୍ ବୟସରୁ ଆରିଷ୍ଟୋଫେନିସ୍ ନାଟକ କ୍ଷେତ୍ରକୁ ଆସିଥିଲେ ଓ ପ୍ରାୟ ଚାଳିଶ ବର୍ଷ ଧରି ନାଟକ ଲେଖିଥିଲେ । ତାଙ୍କ ଦ୍ୱାରା ରଚିତ ଚାଳିଶ ଖଣ୍ଡ ନାଟକ ମଧ୍ୟରୁ ଏଗାରଟି ମାତ୍ର ମିଳିଛି ।

## ପରିଶିଷ୍ଟ

ଟ୍ରାଜିକ୍ କବିତାର ବିପୁଳ ସୃଷ୍ଟି ଭିତରେ ଗଦ୍ୟ ରଚନା ବିସ୍ମୃତ ହୋଇ ନ ଥିଲା । ପେରିକ୍ଲିଜ୍‌ଙ୍କ ଯୁଗରେ ଗଦ୍ୟର ପରିପ୍ରକାଶ ଘଟିଥିଲା ଐତିହାସିକ ରଚନା ମାଧ୍ୟମରେ । ଖ୍ରୀ. ପୂ ପଞ୍ଚମ ଶତାବ୍ଦୀର ଗ୍ରୀସ୍‌ରେ ଦୁଇଜଣ ମହାନ୍ ଐତିହାସିକ ଜନ୍ମଗ୍ରହଣ କରିଥିଲେ । ହିରୋଡୋଟସ୍ (୪୮୪—୪୨୫ ଖ୍ରୀ. ପୂ) ଓ ଥୁସିଡିଡୀଜ୍ (୪୭୧—୩୯୯ ଖ୍ରୀ. ପୂ) ।

ହିରୋଡୋଟସ୍ ବହୁ ଦେଶ ଭ୍ରମଣ କରିଥିଲେ । ସେ କାଳରେ ଭ୍ରମଣ କରିବାର ସମସ୍ତ ପ୍ରତିବନ୍ଧକ ତାଙ୍କର ଅଦମ୍ୟ ଉତ୍ସାହ ନିକଟରେ ହାର୍ ମାନିଥିଲା । ଶିଶୁର କୌତୂହଳ ଓ ବୈଜ୍ଞାନିକର ନିରପେକ୍ଷ ମନ ନେଇ ହିରୋଡୋଟସ୍ ବିଭିନ୍ନ ଦେଶର ମଣିଷଙ୍କ ଚାଲିଚଳଣି

ଲକ୍ଷ୍ୟ କରିଥିଲେ । ପ୍ରାଚୀନ କାଳର କିମ୍ବଦନ୍ତୀ ସୃଷ୍ଟି ବେଳରୁ ଆରମ୍ଭ କରି ତାଙ୍କର ସମସାମୟିକ ପାରସ୍ୟ ଯୁଦ୍ଧର ଶେଷ ପର୍ଯ୍ୟନ୍ତ ମିଶର ଓ ଗ୍ରୀସ୍‌ର ଇତିହାସ ରଚନା ହିରୋଡୋଟସ୍‌ଙ୍କର ମହାନ୍ ଅବଦାନ । ସର୍ବସାଧାରଣଙ୍କ ସଭାରେ ତାଙ୍କ ରଚନାର କିଛି ଅଂଶ ସେ ଏଥେନ୍‌ସବାସୀଙ୍କୁ ପଢ଼ି ଶୁଣାଇଥିଲେ । ହିରୋଡୋଟସ୍‌ଙ୍କର ପାରସ୍ୟ ଯୁଦ୍ଧର ବିବରଣୀ ଶୁଣି ଲୋକେ ଏପରି ପ୍ରୀତ ହୋଇଥିଲେ ଯେ, ଐତିହାସିକଙ୍କୁ ରାଜକୋଷରୁ ଷାଠିଏ ହଜାର ଡଲାର୍ ପୁରସ୍କାର ଦେବାର ବ୍ୟବସ୍ଥା ହୋଇ ଯାଇଥିଲା ।

ହିରୋଡୋଟସ୍ ଯେଉଁସବୁ ଦେଶ ଭ୍ରମଣ କରିଥିଲେ ସେଠାକାର ଲୋକଙ୍କର ଚଳଣି, ଢଙ୍ଗରଙ୍ଗ, ପୋଷାକ, ବିଶ୍ୱାସ ଅବିଶ୍ୱାସ ସମ୍ପର୍କରେ ନାନା ଚିତ୍ତାକର୍ଷକ କଥା ଉଲ୍ଲେଖ କରି ଯାଇଛନ୍ତି । ଏଥିରେ କିଛି ଭୁଲ ଭ୍ରାନ୍ତି ଥିବା ସତ୍ତ୍ୱେ ତାଙ୍କର ବର୍ଣ୍ଣନା ଅତ୍ୟନ୍ତ ରସାଳ । ଅବଶ୍ୟ କେବଳ ଏହିସବୁ ବର୍ଣ୍ଣନା ହିରୋଡୋଟସ୍‌ଙ୍କୁ ଜଣେ ବଡ଼ ଐତିହାସିକର ପ୍ରତିଷ୍ଠା ଦେଇ ନ ଥାନ୍ତା । ହିରୋଡୋଟସ୍ ଦର୍ଶାଇ ଥିଲେ ଯେ ଗ୍ରୀସ୍ ଓ ପାରସ୍ୟ ମଧ୍ୟରେ ଯୁଦ୍ଧ ସାଧାରଣ ଯୁଦ୍ଧ ନୁହେଁ । ଦୁଇଟି ଆଦର୍ଶ (ଗଣତନ୍ତ୍ର ଓ ବାଦଶାହିତନ୍ତ୍ର) ମଧ୍ୟରେ ବୈଷମ୍ୟ ଏହି ଯୁଦ୍ଧର ଅସଲ କାରଣ ।

ହିରୋଡୋଟସ୍ ପ୍ରଥମ ଐତିହାସିକ ଯାହାଙ୍କର ଲେଖା କାଳ ମୁହଁରୁ ବର୍ତ୍ତି ଆମ ପାଖରେ ପହଞ୍ଚି ପାରିଛି । ସେ 'ଇତିହାସର ଜନକ' ଭାବେ ସମ୍ମାନିତ । ତତ୍କାଳୀନ ଅନେକ ଅନ୍ଧବିଶ୍ୱାସକୁ ହିରୋଡୋଟସ ମାନି ଯାଇଛନ୍ତି । ଅନେକ ଅଲୌକିକ ବ୍ୟାପାର ଓ ମାଳିକାକୁ ସତ୍ୟ ଭାବେ ବିଶ୍ୱାସ କରି ଇତିହାସ ଗ୍ରନ୍ଥରେ ସ୍ଥାନ ଦେଇଛନ୍ତି । ସେ କଳାଙ୍କର ସୌନ୍ଦର୍ଯ୍ୟ କିନ୍ତୁ ସ୍ୱତନ୍ତ୍ର ! ଏହାରି ଫଳରେ ଅଢ଼େଇ ହଜାର ବର୍ଷ ତଳର ଲେଖା ସରସ ଓ ଜୀବନ୍ତ ହୋଇ ରହିଛି ।

ଏଥେନ୍‌ସର ଏକ ଧନୀ ପରିବାରରେ ଥ୍ୟୁସିଡିଡ଼ୀଜ୍‌ଙ୍କର ଜନ୍ମ । ପିଲୋପୋନେସୀୟ ଯୁଦ୍ଧ ଆରମ୍ଭ ଦିନରୁ ସେ ଏହି ଯୁଦ୍ଧର ଦୈନିକ ବିବରଣୀ ଟିପି ରଖୁଥିଲେ । ଜଣେ ସେନାଧ୍ୟକ୍ଷ ଭାବେ ନିର୍ବାଚିତ ହୋଇ ଠିକ୍ ସମୟରେ ଯୁଦ୍ଧଯାତ୍ରା କରି ନ ପାରିବାରୁ ତାଙ୍କୁ ଏଥେନ୍‌ସରୁ ନିର୍ବାସିତ ହେବାକୁ ପଡ଼ିଥିଲା । ଏହା ଫଳରେ ଯୁଦ୍ଧର ଗତିବିଧି ଠିକ୍‌ଭାବେ ପର୍ଯ୍ୟବେକ୍ଷଣ କରିବାରେ ଥ୍ୟୁସିଡିଡ଼ୀଜ୍ ତାଙ୍କର ସମସ୍ତ ଶକ୍ତି ବିନିଯୋଗ କଲେ । ଦୀର୍ଘ କୋଡ଼ିଏ ବର୍ଷ

ଅକ୍ଲାନ୍ତ ପରିଶ୍ରମ କରି ସେ 'ପିଲୋପୋନେସୀୟ ଯୁଦ୍ଧର ଇତିହାସ' ରଚନା କରି ଯାଇଛନ୍ତି । ଏ ଗ୍ରନ୍ଥଟି ଅସମ୍ପୂର୍ଣ୍ଣ ।

ଥୁସିଡିଡୀଜ୍‌ଙ୍କ ଲେଖାରେ ଆମେ ଚିତ୍ତାକର୍ଷକ କାହାଣୀ ବା କିମ୍ବଦନ୍ତୀର ବର୍ଣ୍ଣନା ପାଉନା । ଯୁଦ୍ଧର ନିଖୁଣ ଚିତ୍ର ପ୍ରଦାନ କରିବାରେ ସେ ଆପଣାକୁ ସୀମାବଦ୍ଧ କରିଛନ୍ତି । ତଥାପି ସ୍ୱୀକାର କରିବାକୁ ହେବ ଯେ ତାଙ୍କର ପର୍ଯ୍ୟବେକ୍ଷଣ ଯେପରି ତୀକ୍ଷ୍ଣ, ଲେଖିବାର ଶୈଳୀ ସେହିପରି ଶକ୍ତିଶାଳୀ । ଏଥେନ୍‌ସ ଓ ସ୍ପାର୍ଟା ମଧ୍ୟରେ ଯୁଦ୍ଧର ମୂଳ କାରଣ ହେଉଛି—ସମ୍ପତ୍ତି ଓ ଶକ୍ତି ପାଇଁ ଲୋଭ । ଆଗାମୀ ଯୁଗର ମଣିଷଙ୍କ ପାଇଁ ଲେଖାଯାଇଥିବା ଯୁଦ୍ଧ ଇତିହାସରେ ଥୁସିଡିଡୀଜ୍ ସ୍ପଷ୍ଟ ଭାବେ ଚେତାଇ ଦେଇଛନ୍ତି ଯେ ଯେଉଁ କାରଣରୁ ସ୍ପାର୍ଟା ଓ ଏଥେନ୍‌ସ ଯୁଦ୍ଧ କରୁଛନ୍ତି, ସେହି କାରଣରୁ ଭବିଷ୍ୟତରେ ମଧ୍ୟ ଦେଶ ଦେଶ ମଧ୍ୟରେ ଯୁଦ୍ଧ ଲାଗୁଥିବ । ମଣିଷର ପ୍ରକୃତି ନ ବଦଳିବା ପର୍ଯ୍ୟନ୍ତ ସଂଘର୍ଷର ଶେଷ ନାହିଁ ।



# ଦାର୍ଶନିକ ଗଣ

※ ଅନେକ ମହାନ୍ ଗ୍ରୀକ୍ ଦାର୍ଶନିକ ଏଥେନ୍ସ ବାହାରେ ଜନ୍ମଗ୍ରହଣ କରିଥିଲେ ।

※ ଦର୍ଶନ ଗ୍ରୀସ୍‌ର ଜାତୀୟ ଜୀବନ ସହିତ ମିଶି ଯାଇଥିଲା ।

※ ପାଶ୍ଚାତ୍ୟ ଦର୍ଶନ ଉପରେ ସକ୍ରେଟିସ୍, ପ୍ଲେଟୋ ଓ ଆରିଷ୍ଟୋଟଲ୍‌ଙ୍କ ପ୍ରଭାବ ଅକଳନୀୟ ।

ଏଥେନ୍ସକୁ ଗ୍ରୀସ୍ ମନେ କରିବା ଏକ ସ୍ୱାଭାବିକ ଭୁଲ୍ । ମନ ଭିତରେ ଏ ଧାରଣା ପୋଷିତ ହେବାର କାରଣ ବିଭିନ୍ନ କ୍ଷେତ୍ରରେ ଅନେକ ବଡ ମଣିଷ ଏଥେନ୍ସରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ଏଥେନ୍ସ ବାହାରେ ମଧ୍ୟ ଅନେକେ ଗ୍ରୀକ୍ ମନୀଷୀ ଜନ୍ମ ହୋଇଥିଲେ । ଦର୍ଶନ କ୍ଷେତ୍ରକୁ ଚାହିଁଲେ ଆମେ ଦେଖୁ, ସକ୍ରେଟିସ୍‌ଙ୍କ ପର୍ଯ୍ୟନ୍ତ କୌଣସି ବିଶିଷ୍ଟ ଦାର୍ଶନିକଙ୍କୁ ଏଥେନ୍ସ ଜନ୍ମ ଦେଇ ନ ଥିଲା । ଆନାକ୍ସାଗୋରସ୍ ଏଥେନ୍ସରେ ତିରିଶ ବର୍ଷ ବାସ କରିଥିଲେ ମଧ୍ୟ ତାଙ୍କର ଜନ୍ମଭୂମି ଆୟୋନିଆ । ଆୟୋନିଆ ତ ଗ୍ରୀକ୍ ଦର୍ଶନର ଏନୁଡଶାଳା । ଏହି ଉପନିବେଶର ଆଦ୍ୟ ଦାର୍ଶନିକତ୍ରୟଙ୍କ ସମେତ ଅନେକ ମହାନ୍ ଦାର୍ଶନିକ ସକ୍ରେଟିସ୍‌ଙ୍କ ପୂର୍ବରୁ ଗ୍ରୀସ୍‌ର ଅନ୍ୟାନ୍ୟ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ ।

ପିଥାଗୋରସ୍, ହେରାକ୍ଲିଟସ୍, ପାର୍‌ମେନ୍‌ଇଡୀଜ୍ ଜେନୋଫେନ୍ସ, ଏମ୍ପିଡୋକ୍ଲସ୍, ଡିମୋକ୍ରିଟସ୍ ଓ ପ୍ରୋଟାଗୋରସ୍‌ଙ୍କ ପରି ସକ୍ରେଟିସ୍‌ଙ୍କ ପୂର୍ବର ଦାର୍ଶନିକଗଣ ଆଟିକା

ବାହାରେ ଜନ୍ମଗ୍ରହଣ କରିଥିଲେ । ମାତ୍ର ପେରିକ୍ଲିଜ୍‌ଙ୍କ ସମୟରେ ଏଥେନ୍‌ସ ଦର୍ଶନ-ଚର୍ଚ୍ଚାର ପ୍ରଧାନ ପୀଠ ହୋଇ ଉଠିଲା । ଏଥେନ୍‌ସ ପେରିକ୍ଲିଜ୍‌ଙ୍କ ସମସାମୟିକ ଅନେକ ଦାର୍ଶନିକଙ୍କର ଜନ୍ମଭୂମି ହୋଇ ନ ଥିଲେ ମଧ୍ୟ ଜନ୍ମଭୂମିରୁ ଅଧିକ ତୀର୍ଥଭୂମି ସ୍ୱରୂପ ଥିଲା । ଏଥେନ୍‌ସର ସ୍ୱର୍ଣ୍ଣଯୁଗରେ ସାଧାରଣ ନାଗରିକମାନେ ଯେପରି ଦର୍ଶନର ବିଭିନ୍ନ ମତବାଦକୁ ନେଇ ଆଲୋଚନା ଓ ବାଦାନୁବାଦରେ ମାତୁଥିଲେ ପୃଥିବୀର ଅନ୍ୟ କୌଣସି ସ୍ଥାନରେ ତାହା ପରବର୍ତ୍ତୀ କାଳରେ ସମ୍ଭବ ହୋଇଛି କି ନା ସନ୍ଦେହ । ଧର୍ମ ମତ ବା ଧର୍ମ ସମ୍ପର୍କିତ ଦର୍ଶନତତ୍ତ୍ୱ ସାଧାରଣ ଲୋକଙ୍କ ମଧ୍ୟରେ ଆଲୋଡ଼ନ ସୃଷ୍ଟି କରିବା ମାନବ ଇତିହାସରେ ଅସାଧାରଣ ନୁହେଁ । ମାତ୍ର ଧର୍ମ ନିରପେକ୍ଷ ନାନା ତତ୍ତ୍ୱର ଆଲୋଚନାରେ ଗୋଟାଏ ଜଗତ କମ୍ପମାନ ହେବା ଏକ ଅସାଧାରଣ ବ୍ୟାପାର ।

କୁହାଯାଏ ଯେ ଏଯାବତ୍ ଏପରି କୌଣସି ଭାବନା ପାଶ୍ଚାତ୍ୟବାସୀଙ୍କୁ ଉଦ୍‌ବେଳିତ କରିନାହିଁ ଯାହାର ପ୍ରଥମ ତରଙ୍ଗ ଏଥେନ୍‌ସରେ ଉଠି ନ ଥିଲା । ପେରିକ୍ଲିଜ୍‌ଙ୍କ ଏଥେନ୍‌ସରେ ଏତେ ବେଶୀ ମୁକ୍ତ ଚିନ୍ତା, ଦର୍ଶନ-ତତ୍ତ୍ୱକୁ ନେଇ ଏତେ ବେଶୀ ଘାଣ୍ଟାଘାଣ୍ଟି ଦେଖି ସାରା ଗ୍ରୀସ୍ ଚକିତ ହୋଇ ପଡ଼ିଥିଲା । ଏ ଅବ୍ୟାପାରର ଶେଷ ପରିଣତି କ'ଣ ବୋଲି ରକ୍ଷଣଶୀଳ ବୟସ୍କମାନେ ଆତଙ୍କିତ ହୋଇ ଉଠିଲେ । ସଂକ୍ରମିତ ହୋଇ ପଡ଼ିବା ଆଶଙ୍କାରେ ସର୍ବ ସାଧାରଣରେ ଦର୍ଶନ ଆଲୋଚନା ଉପରେ କେତେକ ନଗର କଟକଣା ଜାରି କଲେ । ବିଶେଷତଃ ସ୍ପାର୍ଟାରେ ଈର୍ଷା ଓ ଦ୍ୱନ୍ଦ୍ୱ ସୃଷ୍ଟି କରୁଥିବା ମୂଲ୍ୟହୀନ ଦର୍ଶନ-ଚର୍ଚ୍ଚାକୁ ବନ୍ଦ କରାଯାଇଥିଲା । ଏଥେନ୍‌ସର ସାଧାରଣ ଲୋକେ କିନ୍ତୁ ତାତ୍ତ୍ୱିକ ତର୍କ ଆଲୋଚନାକୁ ଉପଭୋଗ କରୁଥିଲେ । ଧନୀ ନାଗରିକମାନେ ଅର୍ଥ ବ୍ୟୟ କରି ତର୍କର ବାଦୀପାଲା ଆୟୋଜନ କରୁଥିଲେ । ଅଲମ୍ପିକ୍ ପ୍ରତିଯୋଗିତାରେ ଜଣେ ମୁଷ୍ଟିଯୋଦ୍ଧା ପ୍ରତିଦ୍ୱନ୍ଦ୍ୱୀକୁ ଚୌକସ୍ ମାଡ଼ଟାଏ ଚଢ଼ାଇଲେ ଯେପରି ଦର୍ଶକମାନେ କରତାଳି ଦେଇ ତାର ତାରିଫ୍ କରୁଥିଲେ ( ଉପମାଟି ପ୍ଲେଟୋଙ୍କର ), ସେହିପରି ତର୍କ ଆଲୋଚନାରେ ଜଣେ ପଣ୍ଡିତ ଗୋଟିଏ ତୀକ୍ଷ୍ଣ ଯୁକ୍ତିବାଣ ଛାଡ଼ି ପ୍ରତିପକ୍ଷକୁ ଘାଏଲ କଲେ ଦର୍ଶକଙ୍କ ତରଫରୁ ତାଳିମାଡ଼ ହେଉଥିଲା । ଏପରିକି ପିଲୋପୋନେସିଆନ୍ ଯୁଦ୍ଧ ଆରମ୍ଭ ହୋଇଯିବା ପରେ ଏଥେନ୍‌ସୀୟ ସୈନିକଙ୍କର ରଣବେଳ ତର୍କଦ୍ୱନ୍ଦ୍ୱର ଉନ୍ମାଦତାକୁ କମାଇ ପାରି ନ ଥିଲା । କେବଳ ସକ୍ରେଟିସ୍‌ଙ୍କର ଅପ୍ରତ୍ୟାଶିତ ମୃତ୍ୟୁଦଣ୍ଡ ଫଳରେ ଏ ଉନ୍ମାଦନା ଥମିଗଲା । ସକ୍ରେଟିସ୍ ଥିଲେ

ଗପୁଡ଼, ଆଲୋଚନାପ୍ରିୟ ଗ୍ରୀକ୍‌ଜାତିର ପ୍ରକୃତ ପ୍ରତିନିଧି । ତାଙ୍କର ମୃତ୍ୟୁଦଣ୍ଡ ଏଥେନ୍‌ସୀୟଙ୍କୁ ସ୍ତବ୍ଧ କରିଦେଲା । ପିଲୋପୋନେସିଆନ୍ ଯୁଦ୍ଧରେ ସ୍ପାର୍ଟା ଠାରୁ ପରାଜିତ ହୋଇ ଆତ୍ମ-ବିଶ୍ୱାସ ହରାଇଥିବା ଏଥେନ୍‌ସବାସୀ ଭାବିଲେ, ଗୁଡ଼ାଏ ଜ୍ଞାନଚର୍ଚ୍ଚାରେ ମାତିବା, ମତ-ପ୍ରକାଶ ପାଇଁ ଏତେ ବେଶୀ ସ୍ୱାଧୀନତା ଦେବା ବୋଧହୁଏ ଗୋଟିଏ ନଗର ପକ୍ଷରେ ଠିକ୍ ପନ୍ଥା ନୁହେଁ । ଏଥେନ୍‌ସର ବାଟଘାଟରୁ ଦର୍ଶନର ଧ୍ୱଜା ଉଠେଇ ନେଇ ପ୍ଲେଟୋ ତାଙ୍କର ଆକାଡେମି ଉପରେ ତାକୁ ଉଡ଼ାଇଲେ । ସକ୍ରେଟିସ୍‌ଙ୍କର ବନ୍ଦନା କରି ଅନେକ ଡାଏଲଗ୍ ରଚନା କଲେ । ସେଗୁଡ଼ିକ ବିଶ୍ୱସାହିତ୍ୟର ଅମୂଲ୍ୟ ସମ୍ପଦ । ଜ୍ଞାନ-ଗିରିର ଶୃଙ୍ଗଦେଶରେ ଷାଠିଏ ବର୍ଷ କାଳ ବାସ କରି ଜ୍ଞାନ ସାଧନାର ସ୍ୱାଦ ଓ ସଙ୍କଟକୁ ଅଙ୍ଗେ ନିଭାଇଥିବା ପ୍ଲେଟୋ ମଧ୍ୟ ଶେଷ ଜୀବନରେ ଗ୍ରୀକ୍ ଆଦର୍ଶରୁ ମୁହଁ ଫେରାଇ ମିଶର ଆଡ଼କୁ ଚାହିଁଲେ । ମିଶରର ସୁଦୃଢ଼ ପରମ୍ପରା, ଶତାବ୍ଦୀ ଶତାବ୍ଦୀ ଧରି ଅପରିବର୍ତ୍ତିତ ଚିନ୍ତା ଓ ମୂଲ୍ୟବୋଧ, ଗିରିଶୃଙ୍ଗରେ ଦୀର୍ଘ କାଳ ଛିଡ଼ା କାକର ସହିଥିବା ଅବସନ୍ନ ପ୍ଲେଟୋଙ୍କୁ ଆକୃଷ୍ଟ କରିଥିଲା । ( ତାଙ୍କର ଶେଷ ଡାଏଲଗ୍ ଲଅଜ୍‌ରେ ଏହି ମନୋଭାବର ପରିଚୟ ମିଳେ ) ।

ଗ୍ରୀକ୍ ଦର୍ଶନର ଆଲୋଚନା ନୁହେଁ, ଗ୍ରୀକ୍ ଜୀବନର କାହାଣୀ କହିବା ଆମର ଉଦ୍ଦେଶ୍ୟ । ମାତ୍ର ଗ୍ରୀକ୍ ଦର୍ଶନ ଗ୍ରୀକ୍ ଜୀବନ ସହିତ ଓତଃପ୍ରୋତ ଭାବେ ଜଡ଼ିତ ହୋଇ-ଥିବାରୁ ଆମେ ଦର୍ଶନକୁ ବାଦ୍ ଦେଇପାରିବୁ କିପରି ? ଥିଙ୍କିଂ ସପ୍‌ରେ ଶୂନ୍ୟରେ ଝୁଲୁଥିବା ଟୋକେଇ ସକ୍ରେଟିସ୍ କାହିଁକି, କୌଣସି ଗ୍ରୀକ୍ ଦାର୍ଶନିକର ଯୋଗ୍ୟ ଆସନ ନୁହେଁ । ହାୟ ଆରିଷ୍ଟୋଫେନ୍‌ସ ! କେଉଁ ଦିବ୍ୟ ଦୃଷ୍ଟି ବଳରେ ଆପଣ ଆଧୁନିକ କାଳର ବଡ଼ ବଡ଼ ଦର୍ଶନ ପ୍ରଫେସର୍‌ଙ୍କ ପାଇଁ ଉପଯୁକ୍ତ ଆସନଟିଏ ପ୍ରସ୍ତୁତ କରିଗଲେ ! ଗ୍ରୀକ୍ ଦାର୍ଶନିକ ଯେ ଆସନର ଯୋଗ୍ୟ ନୁହେଁ ବୋଲି ସବୁ ଗ୍ରୀକ୍ ଦାର୍ଶନିକଙ୍କ ଜନକ ଥେଲିଜ୍ ଯେଉଁ ପ୍ରମାଣ ଦେଇ ଯାଇଛନ୍ତି, ଆପଣ ତାହା ସ୍ମରଣ କରିପାରିଲେ ନାହିଁ ? ଗ୍ରହନକ୍ଷତ୍ରଙ୍କର ଗତିବିଧି ଲକ୍ଷ୍ୟ କରିବାକୁ ସବୁବେଳେ ଆକାଶକୁ ଚାହିଁଥିବା ଥେଲିଜ୍‌ଙ୍କୁ ଲୋକମାନେ ପରିହାସ କରୁଥିଲେ । ଥରେ ଗ୍ରହତାରାଙ୍କର ଗତିବିଧି ଲକ୍ଷ୍ୟ କରି ଥେଲିଜ୍ ଜାଣିପାରିଲେ ଯେ ସେ ବର୍ଷର ପାଗ ଅଲିଭ୍ ଚାଷ ପାଇଁ ଅନୁକୂଳ ହେବ । ଥେଲିଜ୍ ମିଲେଟସ୍‌ର ସବୁ ଅଲିଭ୍ ଘଣାଗୁଡ଼ିକ ଆଗତୁରା ଭଡ଼ା ନେଇଗଲେ । ଯଥା ସମୟରେ ଆଶାତୀତ ଅଲିଭ୍ ଉତ୍ପାଦନ ହେଲା । ଥେଲିଜ୍ ଅଲିଭ୍ ପେଡ଼ିବା ଦର ମନଇଚ୍ଛା ବଢ଼େଇ ପ୍ରଚୁର ଅର୍ଥ ଉପାର୍ଜନ କଲେ ।

ଦାର୍ଶନିକ ଗୋଟାଏ ଅପଦାର୍ଥ— ଏହି ଧାରଣା ପୋଷଣ କରୁଥିବା ଲୋକଙ୍କୁ ଉଚିତ ଶିକ୍ଷା ଦେବା ଥିଲା ଥେଲିଜ୍‌ଙ୍କର ଉଦ୍ଦେଶ୍ୟ ।

ଜୀବନର ସମସ୍ୟା ସମାଧାନ ପ୍ରତି ସଦା ଜାଗ୍ରତ ଓ ସାଧାରଣ ଲୋକଙ୍କ ସହିତ ଘନିଷ୍ଠ ଭାବେ ମିଶୁଥିବା ସଫିଷ୍ଟ ଦାର୍ଶନିକବର୍ଗ ବା ସକ୍ରେଟିସ୍ କାହିଁକି, ଥେଲିଜ୍‌ଙ୍କ ପରି ସୃଷ୍ଟି ରହସ୍ୟ ସନ୍ଧାନୀ ବା ପାର୍‌ମେନ୍‌ଇଡୀଜ୍‌ଙ୍କ ପରି ଭାବାଦର୍ଶବାଦୀଙ୍କର ପାଦ ମାଟି ଉପରେ ଦୃଢ଼ ଥିଲା । ଆୟୋନୀୟ ନଗରଗୁଡ଼ିକ ଏକତାବଦ୍ଧ କରିବା ପାଇଁ ଥେଲିଜ୍ ସବୁ ପ୍ରକାର ଯତ୍ନ କରିଥିଲେ । ପାର୍‌ମେନ୍‌ଇଡୀଜ୍‌ଙ୍କ ଜନ୍ମଭୂମି ଏଲିଆର ଅଧିବାସୀଗଣ ଗୋଟିଏ ଆଇନ୍ କୋଡ୍ ପ୍ରସ୍ତୁତ କରିବାକୁ ତାଙ୍କୁ ଅନୁରୋଧ କରିଥିଲେ । ପାର୍‌ମେନ୍‌ଇଡୀଜ୍‌ଙ୍କ କୋଡ୍ ନଗରର ବସ୍ତିବାସୀଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହେଲା ଓ ସମସ୍ତେ ଏହି କୋଡ୍‌କୁ ଆଗ୍ରହରେ ମାନିନେଲେ । ଜେନୋ ପାର୍‌ମେନ୍‌ଇଡୀଜ୍‌ଙ୍କର ପଟ୍ଟଶିଷ୍ୟ । ଗୁରୁଙ୍କ ଦର୍ଶନବାଦ ପ୍ରଚାର ଓ ଅକାଟ୍ୟ ତର୍କବାଣ ଦ୍ୱାରା ସମସ୍ତ ଆକ୍ରମଣରୁ ଗୁରୁଙ୍କୁ ରକ୍ଷା କରିବା ଜେନୋଙ୍କ ଜୀବନର ବ୍ରତ ଥିଲା । ଜୀବନବ୍ୟାପି ଦର୍ଶନକୁ ନେଇ ବଞ୍ଚିଥିବା ଜେନୋ ଶେଷ କାଳରେ ନଗରର ଅତ୍ୟାଚାରୀ ଶାସକଙ୍କୁ ଗାଦିଚ୍ୟୁତ କରିବା ଷଡ଼ଯନ୍ତ୍ରରେ ଲିପ୍ତ ହୋଇ ଧରାପଡ଼ିଲେ ଓ କଠୋର ଯନ୍ତ୍ରଣା ପାଇ ମଲେ ।

ଗ୍ରୀକ୍ ଦାର୍ଶନିକଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱ ଦ୍ୱାରା ମନ ମୁଗ୍ଧ ନ ହୋଇ ରହି ହୁଏ ନାହିଁ । ଜଣେ ଗ୍ରୀକ୍ ଦାର୍ଶନିକର ନିଜ ଦର୍ଶନ ତାଙ୍କ ଜୀବନରେ ରୂପାୟିତ ହେଉଥିଲା । ତାଙ୍କର ଏହି ଗୋଟିଏ ଗୁଣ ଆମକୁ କିଣିନେବା ପାଇଁ ଯଥେଷ୍ଟ । 'ମଣିଷ ପ୍ରକୃତିର ସନ୍ତାନ ଓ କୃତ୍ରିମ ସଭ୍ୟତାର ଗୃହକର୍ମରେ ନ ଭୁଲି ତେଲଲୁଣର ସଂସାରକୁ ଯଥାସମ୍ଭବ କମାଇବା ଉଚିତ୍'—ମୋଟାମୋଟି ଭାବେ ଏହିପରି ଚିନ୍ତାର ସମର୍ଥନକାରୀ ଦାର୍ଶନିକ ଆଧୁନିକ ଯୁଗରେ କମ୍ ବାହାରି ନାହାନ୍ତି । ମାତ୍ର ସେମାନଙ୍କ ମଧ୍ୟରୁ କ୍ୱଚିତ କେଏ ନିଜ ଜୀବନରେ ଏହି ଆଦର୍ଶକୁ ଗ୍ରହଣ କରିଛନ୍ତି । ଆଉ ଆମର ବଡ଼ ବଡ଼ ଦର୍ଶନ ପଣ୍ଡିତମାନେ ବିନା ମୋଟା ଅଙ୍କର ଦରମା ନ ପାଇଲେ ତ 'ଅଳ୍ପକେ ବଞ୍ଚି ଉଚ୍ଚ ଚିନ୍ତାରେ ଜୀବନ କଟାଅ' ମନ୍ତ୍ରଟି ଶିକ୍ଷା ଦେବାକୁ ନାରାଜ ! ଚିନ୍ତା ଓ ଜୀବନ ମଧ୍ୟରେ ଏପରି ବ୍ୟବଧାନ ବଡ଼ ଗ୍ଲାନିକର । ପ୍ରାଚୀନ ଗ୍ରୀସ୍ ଆଡ଼କୁ ଚାହିଁଲେ ଆମର ଏହି ଗ୍ଲାନି ଦୂର ହୋଇଯାଏ । ପ୍ରାଚୀନ ଗ୍ରୀସ୍‌ର ସିନିକ୍‌ମାନେ ଜୀବନ ଧାରଣ ପାଇଁ ଆବଶ୍ୟକୀୟ ସରଞ୍ଜାମକୁ ଯତ୍‌ସାମାନ୍ୟ କମାଇବା ପାଇଁ କେବଳ

ଉତ୍ସୃଦଣ୍ଡ ଦେଉ ନ ଥିଲେ, ନିଜେ ସ୍ୱେଚ୍ଛାଭଳି ବଞ୍ଚୁଥିଲେ । ସିନିକ୍‌ବାଦରେ କେତେ ବିଜ୍ଞତା ନିହିତ ତାହା ଏକ ଭିନ୍ନ ପ୍ରଶ୍ନ । ସିନିକ୍‌ମାନେ ଯେପରି ସ୍ୱେଚ୍ଛାରେ ଦାରିଦ୍ର୍ୟକୁ ବରଣ କରି ନେଉଥିଲେ ତାହା ଆମକୁ ଗଭୀର ଭାବେ ଆନ୍ଦୋଳିତ କରେ । ବିଖ୍ୟାତ ସିନିକ୍ ଡାଇଓଜିନିଜ୍ (ଖ୍ରୀ. ପୂ. ୪୧୨—୩୨୩) ଦରିଦ୍ର ଭିକ୍ଷୁକ ରୂପେ ଜନ୍ମ ହୋଇ ନ ଥିଲେ । ସେ ଜଣେ ଧନୀ ମହାଜନ । କରଜ ଦେଇ ଦେଇ ଦେବାଳିଆ ହୋଇ ବାଧ୍ୟରେ ଭିକ୍ଷା ମାଗିଲେ । ମାତ୍ର ଅଳ୍ପ ଦିନ ପରେ ଅନୁଭବ କଲେ ଯେ ଅଜାଣତରେ ସେ ଜ୍ଞାନଲାଭର ପ୍ରଥମ ପଦକ୍ଷେପ ନେଇଛନ୍ତି ! ଏହାପରେ ଘରଦ୍ୱାର ଛାଡ଼ି ଡାଇଓଜିନିଜ୍ ପ୍ରକୃତ ଭିକ୍ଷୁକ ହୋଇ ବାହାରିଗଲେ ଓ ସିନିକ୍ ଗୁରୁ ଆଣ୍ଟିସ୍ଥେନିଜଙ୍କ ଶିଷ୍ୟତ୍ୱ ଗ୍ରହଣ କରିବାକୁ ତାଙ୍କ ପାଖରେ ପହଞ୍ଚିଲେ । ଗୁରୁ ଡାଇଓଜିନିଜଙ୍କୁ ଠେଙ୍ଗା ଧରି ଗୋଡ଼ାଇଲେ ଓ ବାରମ୍ବାର ଅପମାନ ଦେଲେ । ତାଙ୍କର ଶିଷ୍ୟ ଗ୍ରହଣ କରିବାର ଢଙ୍ଗ ଏହିପରି ! ଆଣ୍ଟିସ୍ଥେନିଜଙ୍କ ଢଙ୍ଗ ପାଶ୍ଚାତ୍ତ୍ୟବାସୀଙ୍କୁ ବଡ଼ କୌତୁକିଆ ମନେହୁଏ । ମାତ୍ର ଶିଷ୍ୟଙ୍କୁ ଏମିତି ପରୀକ୍ଷା କରୁଥିବାରୁ ତାଙ୍କୁ ଅସଲ ଗୁରୁ ଭାବେ ସମ୍ମାନ କରି ମୁଣ୍ଡିଆ ମାରିବାକୁ ଅନେକ ବ୍ୟକ୍ତି ଭାରତବର୍ଷରେ ଏବେ ମଧ୍ୟ ଅଛନ୍ତି ।

ସିନିକ୍ ଡାଇଓଜିନିଜ୍ ଓ ଐତିହାସିକ ଡାଇଓଜିନିଜ୍ ଦୁଇଜଣ ଭିନ୍ନ ବ୍ୟକ୍ତି । ଐତିହାସିକ ଡାଇଓଜିନିଜ୍ ଖ୍ରୀଷ୍ଟପର ତୃତୀୟ ଶତାବ୍ଦୀର ମଣିଷ । ସିନିକ୍ ଶବ୍ଦଟି ଡାଇଓଜିନିଜଙ୍କ ଜନ୍ମସ୍ଥାନ ସିନୋପ୍ ଶବ୍ଦରୁ ସୃଷ୍ଟି ।

କୃତ୍ରିମ ସଭ୍ୟତାକୁ ପରିତ୍ୟାଗ କରି ପ୍ରକୃତି କୋଳରେ ପ୍ରାଣୀମାନେ ବଞ୍ଚିଲା ପରି ବଞ୍ଚିବା ପାଇଁ ଡାଇଓଜିନିଜ୍ ନିଷ୍ଠାର ସହିତ ସାଧନା କରିଥିଲେ । ଏଥେନ୍‌ସର ଗୋଟିଏ ମନ୍ଦିର ଅଗଣାରେ ଥିବା କୁଣ୍ଡ ଭିତରେ ସେ ଶୋଉଥିଲେ । ସେଇ ଥିଲା ତାଙ୍କର ଘର । ସେ ତଳେ ଶୋଉଥିଲେ, ଯାହା ମିଳୁଥିଲା ଖାଉଥିଲେ । ଥରେ ଗୋଟିଏ ଶିଶୁ ଆଞ୍ଜୁଳାରେ ପାଣି ପିଉଥିବାର ଦେଖି ସେହିଦିନ ତାଙ୍କର ଭଙ୍ଗା ମଗଟି ଫିଙ୍ଗି ଦେଇଥିଲେ । ଧନୀ ମାନୀଙ୍କ ପ୍ରତି ନୁହେଁ, କୁକୁରଙ୍କ ପ୍ରତି ଡାଇଓଜିନିଜଙ୍କର ଈର୍ଷା ହେଉଥିଲା । 'ମୁଁ ଧନୀ' ବା 'ମୁଁ ମାନୀ' ବୋଲି ସାଧାରଣ ଲୋକେ ଗର୍ବ କଲା ପରି ଡାଇଓଜିନିଜ୍ ଗର୍ବରେ କହୁଥିଲେ, "ମୁଁ କୁକୁର" । ତାଙ୍କର ସମାଧି ଉପରେ ଥିବାଜ୍‌ବାସୀ ମାର୍ବଲ୍‌ର ଗୋଟିଏ କୁକୁର ଗଢ଼ି ଦେଇଥିଲେ ।

କହିବା ବାହୁଲ୍ୟ, ଡାଇଓଜେନୀଜ୍ ଜଣେ ବରିଷ୍ଠ ଜ୍ଞାନୀ ପୁରୁଷ । ଦିନବେଳେ ହସ୍ତରେ ଲଣ୍ଠନ ଧରି 'ମୁଁ ମଣିଷ ଖୋଜୁଛି' ବୋଲି ପାଟି କରୁଥିଲେ । ସେ କାଳରୁ ଡାଇଓଜେନୀଜ୍ ନିଜକୁ କସ୍‌ମୋପଲିଟନ୍ ( ଏଇଟି ଗ୍ରୀକ୍ ଶବ୍ଦ ) ଅର୍ଥାତ୍ ପୃଥିବୀର ନାଗରିକ ବୋଲି ଘୋଷଣା କରିଥିଲେ । ବାକ୍ ସ୍ୱାଧୀନତାର ସେ ଥିଲେ ଜଣେ ବଡ଼ ସମର୍ଥକ । ଯୁକ୍ତି ତର୍କରେ କେହି ତାଙ୍କ ଆଗରେ ତିଷ୍ଠି ପାରୁ ନ ଥିଲେ । ଡାଇଓଜେନୀଜ୍ ନାରୀ ବିଦ୍ୱେଷୀ । ଥରେ ଜଣେ ଧନୀ ଯୁବକ ଡାଇଓଜେନୀଜ୍‌ଙ୍କୁ ଗୋଟିଏ ପ୍ରଶ୍ନ ପଚାରିଲା । ତାର ବେଶ ପୋଷାକ ଦେଖି ଡାଇଓଜେନୀଜ୍ ଉତ୍ତର ଦେଇଥିଲେ, "ତମେ ନାରୀ କି ପୁରୁଷ ନ କହିବା ପର୍ଯ୍ୟନ୍ତ ମୁଁ ତମ ସହିତ କଥାବାର୍ତ୍ତା କରିବି ନାହିଁ ।" ଜଣେ ଦୁଃଶ୍ଚରିତ୍ରା ନାରୀର ଦୁଷ୍ଟ ପୁଅ ଲୋକଙ୍କ ଉପରକୁ ଢେଲା ଫୋପାଡ଼ୁଥାଏ । ତାକୁ ସତର୍କ କରିଦେଇ ଡାଇଓଜେନୀଜ୍ କହିଥିଲେ, "ହୁସିଆର୍ ! ତୋ ବାପା ଦେହରେ ବାଜି ଯାଇପାରେ !"

ଡାଇଓଜେନୀଜ୍‌ଙ୍କର ବିଜ୍ଞତା ଏବଂ ସରଳ, ସହଜ ଜୀବନ ବଞ୍ଚିବା ପାଇଁ ତାଙ୍କର ନିରବଚ୍ଛିନ୍ନ ସାଧନା ଯୋଗୁ ସେ ଥିଲେ ସାରା ଗ୍ରୀସ୍‌ରେ ସୁପରିଚିତ । ତତ୍କାଳୀନ ଗ୍ରୀସ୍‌ରେ ଡାଇଓଜେନୀଜ୍‌ଙ୍କ ଖ୍ୟାତି ଥିଲା ଆଲେକ୍‌ଜାଣ୍ଡର୍‌ଙ୍କର ସମକକ୍ଷ । ଥରେ ଆଲେକ୍‌ଜାଣ୍ଡର୍ ଓ ଡାଇଓଜେନୀଜ୍‌ଙ୍କର ଦୈବାତ୍ ଭେଟ ହୋଇଗଲା । ଥିବାଜ୍ ନଗରର ଗୋଟିଏ ସ୍ଥାନରେ ବସି ଡାଇଓଜେନୀଜ୍ ଖରା ପୁଉଁଥାନ୍ତି । ତାଙ୍କ ପାଖରେ ଜଣେ ତେଜୀଆନ୍ ପୁରୁଷ ଆସି ଘୋଡ଼ା ଅଟକାଇଲେ । ନିଜର ପରିଚୟ ଦେଇ କହିଲେ,

"ମୁଁ ହେଉଛି ସମ୍ରାଟ ଆଲେକ୍‌ଜାଣ୍ଡର୍ ।"

'ମୁଁ କୁକୁର ଡାଇଓଜେନୀଜ୍', ଉତ୍ତର ଆସିଲା ।

ପରିଚୟ ପାଇ ଆଲେକ୍‌ଜାଣ୍ଡର୍ କହିଲେ, "ଆପଣଙ୍କ ଯାହା ଇଚ୍ଛା ମାଗନ୍ତୁ ।"

"ମୋ ଉପରେ ଛାଇ ପଡ଼ୁଛି । ଦୟାକରି ଟିକଏ ଘୁଞ୍ଚିଯିବେ ?" ସେତିକି ଥିଲା ତାଙ୍କର ମାଗୁଣି ।

ଏହି ଦୁଇ ମହାନ୍ ବ୍ୟକ୍ତିଙ୍କ ମଧ୍ୟରେ ଆଉ କି କଥାବାର୍ତ୍ତା ହୋଇଥିଲା ଜଣାନାହିଁ । ମାତ୍ର ଡାଇଓଜେନୀଜ୍‌ଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ଆଲେକ୍‌ଜାଣ୍ଡର୍ କହିଥିଲେ, "ଯଦି ମୁଁ

ଆଲେକ୍‌ଜାଣ୍ଡର୍‌ ହୋଇ ନ ଥାନ୍ତି, ତେବେ ଡାଇଓଜିନାଜ୍‌ ହୁଅନ୍ତି ।" ଏକାଦିନ ଆଲେକ୍‌ଜାଣ୍ଡର୍‌ ଓ ଡାଇଓଜିନାଜ୍‌ଙ୍କର ମୃତ୍ୟୁ ହୋଇଥିଲା । ସତେକି ଜଣେ ସମ୍ରାଟର ବିଦାୟରେ ପୃଥିବୀ ଆଉଜଣଙ୍କ ପାଇଁ ବଞ୍ଚିବାର ଅଯୋଗ୍ୟ ହୋଇପଡ଼ିଲା !

ସକ୍ରେଟିସ୍‌ଙ୍କ ଶେଷ କାଳରେ ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ଦୁଇଟି ପ୍ରତିଦ୍ୱନ୍ଦ୍ୱୀ ଦର୍ଶନ 'ସ୍କୁଲ୍‌' ଆରମ୍ଭ ହୋଇଥିଲା । ସିନିକ୍‌ ଓ ସିରେନିକ୍‌ । ଅବଶ୍ୟ ବାଦ ନିର୍ବିଶେଷରେ ଗ୍ରୀକ୍‌ ଦାର୍ଶନିକମାନେ ଥିଲେ ମରମୀ, ଜୀବନନିଷ୍ଠ ଓ ଉଦମସ୍ତ ପୁରୁଷ । ଯଦି ଜଣେ ଦୁଇଟି ପରସ୍ପର ବିରୋଧୀ ଚିନ୍ତାରୁ ଗୋଟିକୁ ଗ୍ରହଣ କରେ ତେବେ ଅନ୍ୟଟି ଆପେ କଟିଯାଏ । ମାତ୍ର ଦୁଇଟି ବିରୋଧୀ, ଏପରିକି ବିପରୀତ ଚିନ୍ତାକୁ ଜୀବନ୍ୟାସ ଦେଇଥିବା ଦୁଇଜଣ ଦାର୍ଶନିକ ଆମକୁ ସମାନ ଭାବେ ଆକର୍ଷଣ ଓ ଉଦ୍‌ବୁଦ୍ଧ କରନ୍ତି । ସିନିକ୍‌ଙ୍କର ପରିଚୟ ଆମେ ପାଇଲୁ । ସିନିକ୍‌ ଜୀବନଧାରଣର ସର୍ବନିମ୍ନ ଆବଶ୍ୟକତା ଠାରୁ ଅଧିକ ନ ଚାହୁଁଥିବା ସ୍ଥଳେ ସିରେନିକ୍‌ କହିଲା ଯେ ସୁଖ ଜୀବନର ଲକ୍ଷ୍ୟ । ସୁଖ କହିଲେ ସେ ଦୈହିକ ଆମୋଦ ବୋଲି ବୁଝୁଥିଲା । ସିନିକ୍‌ ଗ୍ରୀସ୍‌ର ଫକୀର । ଅବଧୂତଧର୍ମୀ ତା'ର ସହୋଦର । ସେ ଲୋକମେଳକୁ ଭଲପାଏନା । ସିରେନିକ୍‌ର କିନ୍ତୁ ମଉଜ ମଜଲିସ୍‌ ନ ହେଲେ ଚଳେନା । ସେ ବନ୍ଧୁ ସାଙ୍ଗ-ସୁଖ ପ୍ରିୟ । ଲୋକଙ୍କ ସହିତ ମିଶିବାକୁ ସେ ଭଲପାଏ । ତା'ର ବ୍ୟକ୍ତିତ୍ୱ ଲୋକଙ୍କୁ ଆକୃଷ୍ଟ କରି ଭଳି । ଆରିଷ୍ଟିପସ୍‌ ସିରେନିକ୍‌ବାଦର ପ୍ରତିଷ୍ଠାତା ।

ସମୁଦ୍ରରେ ଦୁର୍ଘଟଣା ଘଟି ଆରିଷ୍ଟିପସ୍‌ଙ୍କ ଜାହାଜ ବୁଡ଼ିଗଲା । ନିଃସ୍ୱ ଭାବେ ସେ ରୋଡ଼ସ୍‌ ଦ୍ୱୀପରେ ଓହ୍ଲାଇ ଗୋଟିଏ ବ୍ୟାୟାମଶାଳାକୁ ଗଲେ । ସେଠାରେ ତାଙ୍କର ଭଦ୍ର ବ୍ୟବହାର, ମାର୍ଜିତ ରୁଚି, ମଧୁର ବଚନ ଓ ସୁନ୍ଦର ଚେହେରା ଦେଖି ଲୋକମାନେ ମୁଗ୍‌ଧ । ଆରିଷ୍ଟିପସ୍‌ ଓ ତାଙ୍କର ସଙ୍ଗୀଙ୍କୁ ଆଦର ଅଭ୍ୟର୍ଥନା କରି ସେମାନେ ରାଜକୀୟ ଆଡ଼ମ୍ବରରେ ରଖିଲେ ।

ସିରେନିକ୍‌ ଅର୍ଥଲୋଭୀ ନୁହେଁ, କିନ୍ତୁ ମଉଜ ପାଇଁ ତ ଅର୍ଥ ଦରକାର । ଆରିଷ୍ଟିପସ୍‌ ସିରାକ୍ୟୁଜ୍‌ର ଏକାଙ୍ଗ ଚକ୍ରବର୍ତ୍ତୀ ପ୍ରଥମ ଡାଇଓନିସସ୍‌ଙ୍କ ଦରବାରରେ କିଛି କାଳ କଟାଇ-ଥିଲେ । ଅନୁନୟ ଓ ତୋଷାମଦ ବିନା ରାଜାଙ୍କର କୃପାଲାଭ କରିବା ସମ୍ଭବ ନୁହେଁ । ଥରେ ଆରିଷ୍ଟିପସ୍‌ ରାଜାଙ୍କ ପାଖରେ ଆଣ୍ଠୁମାଡ଼ି ବସିଥିବାର ଦେଖି ଜଣେ ବନ୍ଧୁ ପରେ ତାଙ୍କୁ

ଭର୍ତ୍ସନା କଲେ । 'ମୋର ଦୋଷ କଅଣ ?' ଆରଷ୍ଟିପସ୍ କୈଫିୟତ୍ ଦେଇଥିଲେ, 'ରାଜାଙ୍କ କାନ ତ ତାଙ୍କ ପାଦ ପାଖରେ ଅଛି' । ଯାହା କାନ ଯେଉଁଠି ଥାଉ, କେଉଁ ଧନୀ, ମହାଜନ ତ ଦାର୍ଶନିକଙ୍କ ଦୁଆରମୁହଁ ମାଡ଼ନ୍ତି ନାହିଁ, ଦାର୍ଶନିକ ସେମାନଙ୍କ ପାଖକୁ ଦୌଡ଼ନ୍ତି କାହିଁକି ? ଏ ପ୍ରଶ୍ନର ଉତ୍ତରରେ ଆରଷ୍ଟିପସ୍ କହିଥିଲେ—ନିଜର କ'ଣ ଦରକାର ସେ କଥା ଦାର୍ଶନିକ ଜାଣେ, ଧନକୁବେରଙ୍କୁ ସେତକ ଜଣା ନ ଥାଏ ।

ଏଠି ଆଲେକ୍‌ଜାଣ୍ଡରଙ୍କ ସହିତ ଡାଇଓଜିନୀଜ୍‌ଙ୍କର ସାକ୍ଷାତ ଘଟଣାଟି ମନକୁ ଆସେ ।

ଆରଷ୍ଟିପସ୍ ଯଥେଷ୍ଟ ଉପାର୍ଜନ କରୁଥିଲେ ଓ ସବୁ ଉତ୍ତମ ଖାଦ୍ୟବସ୍ତୁ ଓ ଉତ୍ତମା ସୁନ୍ଦରୀ ନାରୀଙ୍କ ପିଛା ଯାଉଥିଲା । ତାଙ୍କ ପକ୍ଷରେ ଏହାହିଁ ଥିଲା ଧନର ମୂଲ୍ୟ । ଥରେ ଜଣେ ଧନୀ ବ୍ୟକ୍ତି ତାଙ୍କର ନୂଆଘର ବୁଲାଇ ଆରଷ୍ଟିପସ୍‌ଙ୍କୁ ଦେଖାଉଥିଲେ । ଶଙ୍ଖ ମଲ୍‌ମଲ୍ ପଥରରେ ନିର୍ମିତ ରାଜପ୍ରାସାଦ ପରି ଘର । ଧନୀ ବ୍ୟକ୍ତି ଭାବିଥିଲେ ଆରଷ୍ଟିପସ୍ ଘରର ଖୁବ୍ ତାରିଫ କରିବେ । ମାତ୍ର ହଠାତ୍ ଗୃହକର୍ତ୍ତାଙ୍କ ମୁହଁରେ ଲଣ୍ଡାଏ ଛେପ ପଡ଼ିବାରୁ ସେ ରାଗିମାଗି ମୁଷ୍ଟିଲ୍ । ଆରଷ୍ଟିପସ୍ ଶାନ୍ତ ଭାବେ ଦୋଷ କରିବା ସ୍ୱରରେ କହିଲେ, "ତମର ଏଡ଼େ ସୁନ୍ଦର ଚକ୍ ଚକ ଘରେ ଆଉ କେଉଁଠି ଛେପ ପକାଇଥାନ୍ତି କହିଲ ?"

ପର ଶତାବ୍ଦୀରେ ସିନିକ୍‌ବାଦର ମୂଳଦୁଆ ଉପରେ ଷ୍ଟୋଇକ୍ ଦର୍ଶନ ଗଢ଼ି ଉଠିଲା । ସେହିପରି ସିରେନିକ୍‌ବାଦ ବିକଶିତ ହୋଇ ଏପିକୁରିଆନ୍ ଆମୋଦବାଦରେ ପରିଣତ ହେଲା । ପରବର୍ତ୍ତୀ ଯୁଗରେ ଏହି ଦୁଇ ଦର୍ଶନବାଦ ଅଧିକ ପ୍ରଭାବଶାଳୀ । ସିନିକ୍‌ବାଦର ପ୍ରତିଷ୍ଠାତା ଜିନୋ ଓ ଆମୋଦବାଦୀ ଏପିକୁରସ୍ ସକ୍ରେଟିସ୍‌ଙ୍କ ପାଖରେ ଋଣ ସ୍ୱୀକାର କରନ୍ତି ।

ସବୁ ଦୃଷ୍ଟିରୁ ବିଚାର କଲେ ସକ୍ରେଟିସ୍ ଗ୍ରୀକ୍ ଦର୍ଶନର କେନ୍ଦ୍ରବିନ୍ଦୁରେ ଅବସ୍ଥିତ । ତାଙ୍କର ସମସାମୟିକ ଓ ପରବର୍ତ୍ତୀ ପ୍ରତ୍ୟେକ ଦାର୍ଶନିକଙ୍କୁ ସେ କୌଣସି ପ୍ରକାରେ ପ୍ରଭାବିତ ବା ଅନୁପ୍ରାଣିତ କରିଛନ୍ତି । ସକ୍ରେଟିସ୍ ଦର୍ଶନକୁ ସାଧାରଣ ଲୋକଙ୍କ ଭିତରକୁ ନେଇ ଆସିଲେ । ତାଙ୍କ ବେଳକୁ କେତେଜଣ ମହାନ୍ ଦାର୍ଶନିକ ଆସି ସାରିଥିଲେ ଓ ଦର୍ଶନର ଗୋଟିଏ ଦୃଢ଼ ଭିତ୍ତି ପଡ଼ି ସାରିଥିଲା । ମାତ୍ର ଦର୍ଶନ ଜନସାଧାରଣଙ୍କ ଜୀବନ-ପରିଧି

ଭିତରକୁ ପଶିପାରି ନ ଥିଲା । ସକ୍ରେଟିସ୍‌ଙ୍କ ଆବିର୍ଭାବ ପରେ ଗ୍ରୀସ୍‌ର ଦର୍ଶନ-ମଞ୍ଚ ଗଢ଼ ଗଢ଼ କର୍ମିଲା ଏବଂ ସୋଫୋକ୍ଲିଜ୍—ୟୁରିପିଡ଼ୀଜ୍—ଆରିଷ୍ଟୋଫେନ୍‌ସ ଗଢ଼ିଥିବା ଚାରୁକର୍ଷିକ ରଙ୍ଗମଞ୍ଚରୁ ମୁହଁ ଫେରାଇ କେଳାର ପଦ୍ମତୋଳାରେ ନାଗ ଆକୃଷ୍ଟ ହୋଇ ଆସିଲା ପରି ଅଭିଜାତ ନାଟ୍ୟ ପ୍ରତିଭାର ଅଧିକାରୀ ଯୁବକ ପ୍ଲେଟୋ ଦର୍ଶନ ମଞ୍ଚରେ ଯାଇ ପହଞ୍ଚିଲେ ।

ସକ୍ରେଟିସ୍ ଏଥେନ୍‌ସର ସ୍ୱର୍ଣ୍ଣଯୁଗର ଦାର୍ଶନିକ । ତାଙ୍କର ଚିନ୍ତା ଓ ଭୂମିକାର ଯଥାର୍ଥ ମୂଲ୍ୟାଙ୍କନ ପାଇଁ ତାଙ୍କ ପୂର୍ବବର୍ତ୍ତୀ କେତେଜଣ ବିଶିଷ୍ଟ ଦାର୍ଶନିକଙ୍କ ଦର୍ଶନ ସମ୍ବନ୍ଧରେ ଆମେ ପ୍ରଥମେ ସଂକ୍ଷେପରେ କିଛି ଆଲୋଚନା କରିବୁ ।

ପାର୍‌ମେନ୍ଇଡ଼ୀଜ୍ (ଖ୍ରୀ· ପୂ ୫୪୦—୪୭୦) ପରିବର୍ତ୍ତନଶୀଳ ଜଗତରେ ସ୍ଥିର ବା ସତ୍ୟ କ'ଣ ତାହା ସନ୍ଧାନ କରିବାକୁ ସବୁକାଳରେ ଦାର୍ଶନିକମାନେ ଆକୃଷ୍ଟ ହୋଇଛନ୍ତି । ଆୟୋନୀୟଙ୍କର ବିଶ୍ୱର ମୂଳବସ୍ତୁ ଅନୁସନ୍ଧାନରୁ ଗ୍ରୀକ୍ ଦର୍ଶନର ଆରମ୍ଭ । ଦାର୍ଶନିକଙ୍କର ସ୍ୱାଭାବିକ ଆକର୍ଷଣରୁ ମୁକୁଳି ଯାଇ ଦର୍ଶନର ଆଦ୍ୟ ଯୁଗରେ ଗୋଟିଏ ବ୍ୟତିକ୍ରମ ହୋଇଥିବା ହେରାକ୍ଲିଟସ୍ ଏକ ବିସ୍ମୟ । ହେରାକ୍ଲିଟସ୍‌ଙ୍କ ଅସଲ ଚିନ୍ତା (ପରିବର୍ତ୍ତନ ହିଁ ସତ୍ୟ) ବହୁ ଶତାବ୍ଦୀ ଧରି ଚପି ଧରିଲା ।

ସତ୍ ଅସତ୍ ପ୍ରଶ୍ନ ବହୁ ପୂର୍ବରୁ ବ୍ରହ୍ମଙ୍କର ଚିନ୍ତାକୁ ଅଧିକାର କରିଥିଲା । ବ୍ରହ୍ମଙ୍କ ପରି ନିଃସଂଶୟ ଭାବବାଦୀ ପୃଥିବୀରେ ଦୁର୍ଲଭ । ଉଇଲ୍‌ଡୁରାଣ୍ଟ ଅନୁମାନ କରନ୍ତି ଯେ ଇନ୍ଦ୍ରିୟାତୀତ ସତ୍ୟର ପୂଜାରୀ ଭାରତୀୟ ଦାର୍ଶନିକଙ୍କ ଚିନ୍ତା ଆୟୋନିଆ ବାଟ ଦେଇ ପାର୍‌ମେନ୍ଇଡ଼ୀଜ୍‌ଙ୍କ ପାଖରେ ପହଞ୍ଚିଥିଲା ।

ସତ୍ ସନ୍ଧାନୀ ଦାର୍ଶନିକଗଣ ଦୁଇ ଶ୍ରେଣୀରେ ବିଭକ୍ତ । ବସ୍ତୁବାଦୀ (materialist) ଓ ଭାବବାଦୀ (Idealist) । ସତ୍ ଅଦୃଶ୍ୟ ଓ ଦୃଶ୍ୟମାନ ଅସତ୍ କମ୍ବା ଦୃଶ୍ୟାତୀତ ଭୁଚ୍ଛା କଳ୍ପନା ଓ ମନୁଷ୍ୟର ଭ୍ରମ—ଏହି ଦୁଇ ମତକୁ ନେଇ ଦର୍ଶନର ବିବାଦ ଆଦ୍ୟ ଯୁଗରୁ ଆଜ ପର୍ଯ୍ୟନ୍ତ ଗଡ଼ି ଆସିଛି । ପାର୍‌ମେନ୍ଇଡ଼ୀଜ୍ ପାଶ୍ଚାତ୍ୟ ଜଗତର ପ୍ରଥମ ଭାବବାଦୀ ବା ଆଦର୍ଶବାଦୀ ଦାର୍ଶନିକ ।

ଆୟୋନୀୟ ଦାର୍ଶନିକ କହିଥିଲେ, ଜଳ ବା ବାୟୁ ନିତ୍ୟବସ୍ତୁ ଓ ଏହାର ରୂପାନ୍ତରରେ ବସ୍ତୁଜଗତର ସୃଷ୍ଟି । ପାର୍‌ମେନ୍ଇଡ଼ୀଜ୍ କହିଲେ—ଏହା ଅସମ୍ଭବ ।

ଯାହା ନିତ୍ୟ, ଯାହା 'ଅଛି' ତାହା ସର୍ବଦା ସେହିପରି ଅଛି । ଯାହା ବଦଳୁଛି ତାକୁ 'ଅଛି' ବୋଲି କହିବା ଅସଙ୍ଗତ ।

ସତ୍ ଚିନ୍ତାର ଗମ୍ୟ, ଇନ୍ଦ୍ରିୟର ଅଗମ୍ୟ । ଯାହା ଚିନ୍ତନୀୟ, ଚିନ୍ତାର ଗମ୍ୟ ତାହା ଅଛି । ପାର୍ମେନିଡ଼ିଜଙ୍କର ଏହି ଚିନ୍ତା ହେଗେଲ୍‌ଙ୍କର ବିଖ୍ୟାତ ଉକ୍ତି, "The Real is Rational and the Rational is Real"—କୁ ସ୍ମରଣ କରାଇଦିଏ ।

ଅସତ୍‌କୁ ଚିନ୍ତା କରାଯାଇ ପାରିବ ନାହିଁ । ଚଳମାନ ଜଗତ ଅସତ୍ । ତେଣୁ ଜଗତ ସମ୍ବନ୍ଧରେ ସତ୍ୟୋକ୍ତି ଏକ ଅବାନ୍ତର କଥା ।

ସତ୍ ଅଚଳ, ଅପରିବର୍ତ୍ତିତ ଓ ଶାଶ୍ୱତ । ସତ୍‌ର ସୃଷ୍ଟି ନାହିଁ ବା ବିଲୟ ନାହିଁ । ସତ୍ ନିତ୍ୟ ବିଦ୍ୟମାନ । ସତ୍ ଏକ ଓ ନିର୍ଗୁଣ । ଏହା ଏକ ବର୍ତ୍ତୁଳାକାର ଗୋଲକ । ଗୋଲକରୂପୀ ହେବାର କାରଣ ଗୋଲକ ସବୁ ଦିଗରୁ ସମାନ । ଗୋଲକାକାର ସତ୍‌ର ପ୍ରତ୍ୟେକ ଅଂଶ ସମପ୍ରକୃତି ଓ ସମସାନ୍ଦ୍ରତା ବିଶିଷ୍ଟ ।

ହେରାକ୍ଲିଟସ୍ କହିଥିଲେ, ସକଳ ବସ୍ତୁ ବଦଳି ଚାଲିଛନ୍ତି । ପାର୍ମେନିଡ଼ିଜ୍ କହିଲେ, ସକଳ ବସ୍ତୁ ଅଭିନ୍ନ ଓ ଏକ । ସେହି ଏକ ସ୍ଥିର ଓ ଅପରିବର୍ତ୍ତିତ । ବିଭିନ୍ନତା, ପରିବର୍ତ୍ତନ, ଗତି ଇତ୍ୟାଦି ଅସତ୍ ଓ ଇନ୍ଦ୍ରିୟଙ୍କର ଦୁଃସ୍ୱପ୍ନ ମାତ୍ର ।

ଅବଶୋଷର ବିଷୟ, ପାର୍ମେନିଡ଼ିଜ୍ ତାଙ୍କର ଦର୍ଶନକୁ କବିତା ଆକାରରେ ଲେଖିଥିଲେ । ଚିନ୍ତାର ଗୋଳମାଳକୁ ଢାଙ୍କି ଦେବା ପାଇଁ କବିତାରେ ଅନେକ ସୁଯୋଗ । ତାଙ୍କର ଗ୍ରନ୍ଥ ଆରମ୍ଭରେ ପାର୍ମେନିଡ଼ିଜ୍ କହିଛନ୍ତି, ଜଣେ ଦେବୀ ଦୟା କରି ତାଙ୍କୁ ଯେଉଁ ଦିବ୍ୟଜ୍ଞାନ ପ୍ରଦାନ କଲେ ସେ ତାହା ଲିପିବଦ୍ଧ କରିଛନ୍ତି ମାତ୍ର ।

ଅବଶୋଷର ବିଷୟ, ପାର୍ମେନିଡ଼ିଜ୍ ତାଙ୍କର ଦର୍ଶନକୁ କବିତା ଆକାରରେ ଲେଖିଥିଲେ । ଚିନ୍ତାର ଗୋଳମାଳକୁ ଢାଙ୍କି ଦେବା ପାଇଁ କବିତାରେ ଅନେକ ସୁଯୋଗ । ତାଙ୍କର ଗ୍ରନ୍ଥ ଆରମ୍ଭରେ ପାର୍ମେନିଡ଼ିଜ୍ କହିଛନ୍ତି, ଜଣେ ଦେବୀ ଦୟା କରି ତାଙ୍କୁ ଯେଉଁ ଦିବ୍ୟଜ୍ଞାନ ପ୍ରଦାନ କଲେ ସେ ତାହା ଲିପିବଦ୍ଧ କରିଛନ୍ତି ମାତ୍ର ।

ଜେନୋ ପାର୍‌ମେନ୍‌ଇଡ଼ୀଜ୍‌ଙ୍କର ପ୍ରିୟଶିଷ୍ୟ । ତାଙ୍କ ସହିତ ଜେନୋ ଖ୍ରୀ. ପୂ ୪୫୦ରେ ଏଥେନ୍‌ସ ଆସିଥିଲେ । ଜେନୋଙ୍କର ତର୍କବୁଦ୍ଧିର ପରିଚୟ ପାଇ ଏଥେନ୍‌ସବାସୀ ଚମତ୍କୃତ ହେଲେ । ଯେ କୌଣସି ଦର୍ଶନ ତତ୍ତ୍ୱରୁ ନାନା ଉଦ୍ଭଟ ସିଦ୍ଧାନ୍ତମାନ ବାହାର କରିବାରେ ତାଙ୍କର ତର୍କ କୌଶଳ ଲୋକଙ୍କୁ ସ୍ତମ୍ଭୀଭୂତ କରୁଥିଲା । ପାର୍‌ମେନ୍‌ଇଡ଼ୀଜ୍‌ଙ୍କ ଦର୍ଶନର ସତ୍ୟତା ସପକ୍ଷରେ ସେ ଯେଉଁ ଯୁକ୍ତିସବୁ ବାଢ଼ିଲେ, ତାକୁ କାଟି ନ ପାରି ବୁଦ୍ଧିମାନ ଲୋକଙ୍କର ମୁଣ୍ଡ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଘୂରିଇ ଯାଉଛି ।

ପାର୍‌ମେନ୍‌ଇଡ଼ୀଜ୍‌ଙ୍କ ଦର୍ଶନ ଅନୁସାରେ ଗତି ଓ ବହୁଧତ୍ୱ ଭ୍ରମ ବା ମାୟା । ମାତ୍ର ଅନୁଭୂତି ଏହା ସ୍ୱୀକାର କରି ପାରେନା । ଜେନୋ ପଚାରିଲେ, ଗତି ଓ ବହୁଧତ୍ୱକୁ ବୁଦ୍ଧି ସ୍ୱୀକାର କରି ପାରୁଛି କି ? ଏହାର ମର୍ମ, ଯଦି ବୁଦ୍ଧି ଓ ଇନ୍ଦ୍ରିୟର ସାକ୍ଷ୍ୟ ମଧ୍ୟରେ ବିରୋଧ ହୁଏ; ତେବେ କାହାର ସାକ୍ଷ୍ୟକୁ ଆମେ ଗ୍ରହଣ କରିବା ? ବୁଦ୍ଧିର ନିଷ୍ପତ୍ତି । ବୁଦ୍ଧିର ଦୃଷ୍ଟିରେ ଗତି ଓ ବହୁଧତ୍ୱ କିପରି ଉଦ୍ଭଟ ତାହା ଦେଖାଇବାକୁ ଜେନୋ ଚାଳିଶଟି ଦୃଷ୍ଟାନ୍ତ ଦେଇଥିଲେ । ଏଗୁଡ଼ିକ 'ଜେନୋଙ୍କ ପ୍ରହେଳିକା' ନାମରେ ପରିଚିତ । ଅନେକ ପ୍ରହେଳିକା ନଷ୍ଟ ହୋଇ ମାତ୍ର ନଅଟି ବଞ୍ଚି ରହିଛି । ଗୋଟିଏ ଏହିପରି—

ମନେକର ଗୋଟିଏ ବସ୍ତୁ 'କ' ବିନ୍ଦୁରୁ 'ଖ' ବିନ୍ଦୁ ପର୍ଯ୍ୟନ୍ତ ଯିବ । କ—ଖର ମଧ୍ୟବିନ୍ଦୁ (ମନେକର ଗ)କୁ ନ ଟପିଲେ 'ଖ'ରେ ପହଞ୍ଚିବା ଅସମ୍ଭବ । 'ଗ'ରେ ପହଞ୍ଚିବା ପୂର୍ବରୁ କ—ଗର ମଧ୍ୟବିନ୍ଦୁ 'ଘ' ପହଞ୍ଚିବା ଦରକାର । ତା ପୂର୍ବରୁ···ଏ ପ୍ରକ୍ରିୟା ଅଣ୍ଟିଛି । କାରଣ ଯେ କୌଣସି ଦୁଇଟି ବିନ୍ଦୁ ମଧ୍ୟରେ ଅସଂଖ୍ୟ ବିନ୍ଦୁ ଅବସ୍ଥିତ । ତେଣୁ ବସ୍ତୁଟି କଦାପି 'ଖ' ଠାରେ ପହଞ୍ଚି ପାରିବ ନାହିଁ ।

ଜେନୋଙ୍କର ଏହିପରି ଯୁକ୍ତିକୁ କାଟି ନ ପାରି ବୁଦ୍ଧିମାନ ଲୋକେ କାନମୁଣ୍ଡ ଆଉଁଷି ରହୁଥିଲେ ।

## ଡିମୋକ୍ରିଟସ୍ (ଖ୍ରୀ·ପୂ ୪୬୦—୩୭୦)

ଏଲିଆର ଅଧିବାସୀ ପାର୍‌ମେନ୍‌ଇଡ଼ୀଜ୍‌ଙ୍କ ଦର୍ଶନ ଏଲିଆଟିକ୍ ଦର୍ଶନ ନାମରେ ଖ୍ୟାତ । ଏଲିଆଟିକ୍ ଦର୍ଶନ ୟୁରୋପର ପ୍ରଥମ ଅଦ୍ୱୈତବାଦ (monism) । ସେହିପରି

ଡେମୋକ୍ରିଟସ୍‌ଙ୍କ ଦର୍ଶନ ୟୁରୋପର ପ୍ରଥମ ବସ୍ତୁବାଦ । ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ଡେମୋକ୍ରିଟସ୍‌ଙ୍କ ପ୍ରତିଭାର ଉପଯୁକ୍ତ ସମ୍ମାନ ମିଳି ନ ଥିଲା । ଆଧୁନିକ ବିଜ୍ଞାନର ଉଷାକାଳରେ ବିଜ୍ଞାନ ଯୁଗର ଆବାହକ ଫ୍ରାନ୍‌ସିସ୍ ବେକନ୍ ଘୋଷଣା କରିଥିଲେ ଯେ ପ୍ଲେଟୋ ବା ଆରିଷ୍ଟୋଟ୍‌ଲ୍ ନୁହନ୍ତି, ଡେମୋକ୍ରିଟସ୍ ଗ୍ରୀସ୍‌ର ସର୍ବଶ୍ରେଷ୍ଠ ଦାର୍ଶନିକ ।

ଡେମୋକ୍ରିଟସ୍ ମିଲେଟସ୍‌ର ଅଧିବାସୀ ଲିଉସିପ୍‌ପସ୍‌ଙ୍କ ଶିଷ୍ୟ । ଲିଉସିପ୍‌ପସ୍ ଆଟମ୍-ବାଦୀ । ତେବେ ଦର୍ଶନକୁ ତାଙ୍କର ଅବଦାନ କ'ଣ ଥିଲା ତାହା ଠିକ୍ ଜଣା ନାହିଁ । ଇତିହାସ ତାଙ୍କୁ ଡେମୋକ୍ରିଟସ୍‌ଙ୍କ ଗୁରୁ ଭାବେ ସ୍ମରଣ ରଖିଛି ।

ଥ୍ରେସ୍‌ର ଆବ୍‌ଡେରା ଠାରେ ଡେମୋକ୍ରିଟସ୍‌ଙ୍କ ଜନ୍ମ । ତାଙ୍କର ପିତା ଜଣେ ବଡ଼ ଧନୀ । ଡେମୋକ୍ରିଟସ୍ ତାଙ୍କ ପୈତୃକ ସମ୍ପତ୍ତିର ମୋଟା ଅଂଶ ଭ୍ରମଣରେ ଖର୍ଚ୍ଚ କରିଥିଲେ । ସେ ଭ୍ରମଣ କରିଥିବା ଦେଶମାନଙ୍କ ଭିତରେ ମିଶର, ଇଥିଓପିଆ, ବେବିଲୋନ୍ ଓ ପାରସ୍ୟ ଅନ୍ତର୍ଗତ । ଡେମୋକ୍ରିଟସ୍ ଭାରତକୁ ଆସିଥିଲେ ବୋଲି ଅନୁମାନ କରାଯାଏ । ସେ ନିଜେ କହନ୍ତି ଯେ ତାଙ୍କର ସମସାମୟିକ କୌଣସି ବ୍ୟକ୍ତି ପୃଥିବୀର ଏତେ ସ୍ଥାନ ଦେଖି ନ ଥିଲେ । ଡେମୋକ୍ରିଟସ୍ ବିଦେଶର ବହୁ ଜ୍ଞାନୀ ପଣ୍ଡିତଙ୍କୁ ଭେଟିଥିଲେ । ସେ କହିଛନ୍ତି, "ସମଗ୍ର ପୃଥିବୀ ବିଜ୍ଞ ବ୍ୟକ୍ତିର ଜନ୍ମଭୂମି" ।

ଡେମୋକ୍ରିଟସ୍ ବସ୍ତୁବାଦୀ । ମାତ୍ର 'ଋଣଂ କୃତ୍ୱା ଘୃତଂ ପିବେତ୍' ତାଙ୍କ ଜୀବନର ନୀତି ନ ଥିଲା । ଅଧ୍ୟୟନ ଓ ଜ୍ଞାନର ସାଧନାରେ ସେ ବୁଡ଼ି ରହିଥିଲେ । "ପାରସ୍ୟର ରାଜ ସିଂହାସନ ପାଇବା ଅପେକ୍ଷା ଜ୍ୟାମିତିର ଏକ ନୂଆ ଉପପାଦ୍ୟ ଆବିଷ୍କାର କରିବାକୁ ମୁଁ ଉଚିତର ସ୍ଥାନ ଦିଏ" ବୋଲି ସେ ଥରେ କହିଥିଲେ । ଲୋକଙ୍କ ସହିତ ମିଶିବା ଓ ଯୁକ୍ତି-ତର୍କରେ ପଶିବାକୁ ଡେମୋକ୍ରିଟସ୍ ଭଲ ପାଉ ନ ଥିଲେ ।

ଗଣିତ, ବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ଭୂଗୋଳ, ଶରୀରତତ୍ତ୍ୱ, ଜୀବତତ୍ତ୍ୱ, ମନୋ-ବିଜ୍ଞାନ, ଚିକିତ୍ସା, ସଙ୍ଗୀତ, କଳା ଓ ଦର୍ଶନ ପ୍ରଭୃତି ଜ୍ଞାନର ଅନେକ ବିଭାଗ ଡେମୋକ୍ରିଟସ୍‌ଙ୍କ ମୌଳିକ ଅବଦାନରେ ସମୃଦ୍ଧ ହୋଇଥିଲା । ଜ୍ଞାନ ରାଜ୍ୟର ବିସ୍ତୃତି ଦୃଷ୍ଟିରୁ ସେ ଆରିଷ୍ଟୋଟ୍‌ଲ୍‌ଙ୍କର ସମକକ୍ଷ । ଲେଖିବାର ଶୈଳୀ ପ୍ଲେଟୋଙ୍କ ସହିତ ତୁଳନୀୟ । ଏତେବଡ଼

ପ୍ରକୃତ ଯେ କାଳରେ ବିଶାଳମଣ୍ଡଳୀ ପର ମଣ୍ଡଳ ଯାଇଥିଲା । ଏହାର କାରଣ, ତାଙ୍କର ଚିନ୍ତାକୁ ଗ୍ରହଣ କଲା ପରି କାଳ ଅନୁକୂଳ ନ ଥିଲା ।

ଇନ୍ଦ୍ରିୟଙ୍କ ସାକ୍ଷ୍ୟ ଉପରେ ଡିମୋକ୍ରିଟସ୍ ଆସ୍ଥା ସ୍ଥାପନ କରୁ ନ ଥିଲେ । ଏ ବିଷୟରେ ପାର୍ମେନାଇଡିଜ୍‌ଙ୍କ ସହିତ ସେ ଏକମତ । ଇନ୍ଦ୍ରିୟଙ୍କ ମାଧ୍ୟମରେ ଆମେ ଜଗତର ନାନା ରଙ୍ଗ ଦେଖୁ, ବିଚିତ୍ର ବାସ୍ନା ପାଉ, ବହୁ ସ୍ୱାଦ ଚାଖୁ । ବସ୍ତୁ ଜଗତରେ କିନ୍ତୁ ରୂପ, ରଙ୍ଗ, ସ୍ୱାଦ, ବାସ୍ନା ବା ଶବ୍ଦର ଅସ୍ତିତ୍ୱ ନାହିଁ । ଇନ୍ଦ୍ରିୟରୂପୀ ଚଷମା ଖୋଲି ଦେଇ ପାରିଲେ ଏ ସବୁ ଉଭେଇ ଯିବେ । ଅନୁସନ୍ଧାନ ଓ ଚିନ୍ତା ବଳରେ କେବଳ ମଣିଷ ପ୍ରକୃତ ଜ୍ଞାନ ପାଇପାରିବ ।

ବସ୍ତୁଜଗତ ଅସଂଖ୍ୟ ଆଟମ୍ ଓ ଶୂନ୍ୟ ସ୍ଥାନକୁ ନେଇ ଗଢ଼ା । ଆଟମ୍ ଶବ୍ଦଟି ଗ୍ରୀସ୍‌ରୁ ଉତ୍ପତ୍ତି । ଡିମୋକ୍ରିଟସ୍‌ଙ୍କ ଆଟମ୍ ଅତି କ୍ଷୁଦ୍ର ଓ ଦୃଷ୍ଟିର ଅଗୋଚର । ଏହା ଅନାଦି, ଅବିନାଶୀ, ଅବିଭାଜ୍ୟ ଓ ଅପରିବର୍ତ୍ତନୀୟ । ମୋଟ ଉପରେ ଆଟମ୍ 'ପାର୍ମେନାଇଡିଜୀୟ ଏକ' ସହିତ ସମାନ । ଏତିକି ପ୍ରଭେଦ ଯେ, ଆଟମ୍ ଗତିଶୀଳ ଓ ଏମାନଙ୍କର ସଂଖ୍ୟା ଅଗଣିତ । ଆଟମ୍‌ମାନଙ୍କର ଆକାର ଓ ଓଜନ ସମାନ ନୁହେଁ । ବିଶ୍ୱ ଜଗତରେ ବସ୍ତୁର ପରିମାଣ ସର୍ବଦା ସମାନ । ବସ୍ତୁର ସୃଷ୍ଟି ନାହିଁ କି ଧ୍ୱଂସ ନାହିଁ । କେବଳ ଆଟମ୍‌ମାନଙ୍କର ଯୋଗ ବିଯୋଗ ବଦଳୁଛି । ଏହାର ଫଳରେ ଜଗତର ପରିବର୍ତ୍ତନ ଘଟୁଥାଏ । ଏପରିକି ଏ ବ୍ରହ୍ମାଣ୍ଡ ଅସଂଖ୍ୟ ସମ୍ଭବ-ବ୍ରହ୍ମାଣ୍ଡଙ୍କ ମଧ୍ୟରୁ ଗୋଟିଏ । ଗୋଟିଏ ବ୍ରହ୍ମାଣ୍ଡର ପ୍ରଳୟ ଘଟି ଆଉ ଗୋଟିଏ ବ୍ରହ୍ମାଣ୍ଡ ସୃଷ୍ଟିହୁଏ ।

ଜଗତ ମୂଳରେ କୌଣସି ବୁଦ୍ଧି ନାହିଁ । ଡିମୋକ୍ରିଟସ୍‌ଙ୍କର ଏହି ମତ ଆନାକ୍ସଗୋରସ୍‌ଙ୍କ ଚିନ୍ତା ବିରୋଧୀ । ପ୍ରାକୃତିକ ନିୟମ ଦ୍ୱାରା ଚାଳିତ ହୋଇ ଆଟମ୍‌ଙ୍କର ମିଶାମିଶି ଓ ବସ୍ତୁଙ୍କର ସୃଷ୍ଟି ହୋଇଛି । ବସ୍ତୁଙ୍କ ଠାରୁ ବିଚ୍ଛୁରିତ ହେଉଥିବା ଆଟମ୍‌ମାନେ ମଣିଷ ଦେହରେ ବାଡ଼େଇ ହେବା ଫଳରେ ଇନ୍ଦ୍ରିୟାନୁଭୂତିର ସୃଷ୍ଟି । ଡିମୋକ୍ରିଟସ୍ ସମ୍ପୂର୍ଣ୍ଣ ବସ୍ତୁବାଦୀ । କାରଣ ଆଟମ୍ ବ୍ୟତୀତ ଅନ୍ୟ କୌଣସି ଅପାର୍ଥିବ ସତ୍ ବସ୍ତୁରେ ସେ ବିଶ୍ୱାସ କରନ୍ତି ନାହିଁ । ତାଙ୍କ ମତରେ ଆତ୍ମା ସବୁଠାରୁ ବର୍ତ୍ତୁଳାକାର, ଚଞ୍ଚଳ, ଜ୍ୱଳନ୍ତ ଓ ସୂକ୍ଷ୍ମ ଅଣୁମାନଙ୍କୁ ନେଇ ଗଠିତ ।

ଡିମୋକ୍ରିଟସ୍‌ଙ୍କ ଆଟମ୍‌ବାଦ ବିଶ୍ୱ ଜଗତର ଏକ ସ୍ୱୟଂ ସମ୍ପୂର୍ଣ୍ଣ ଯାନ୍ତ୍ରିକ ବ୍ୟାଖ୍ୟା । ପ୍ରଥମେ ଶୂନ୍ୟସ୍ଥାନର ଧାରଣା କରି ପାରିଥିବା ତାଙ୍କ ପ୍ରତିଭାର ପରିଚୟ ଦିଏ । ଶୂନ୍ୟ-ସ୍ଥାନ କ'ଣ ଓ ଏହା ଅଛି କି ନାହିଁ, ଏ ବିଷୟରେ ଅନେକ ପରେ ମଣିଷ ଚିନ୍ତା କରିବାକୁ ଆରମ୍ଭ କଲା । ଏହି ବିଷୟକୁ ନେଇ ଲାଇବ୍‌ନିଜ୍ ଓ ନିଉଟନ୍‌ଙ୍କ ମଧ୍ୟରେ ବିବାଦ ବିଜ୍ଞାନ ଇତିହାସର ଏକ ବିଶିଷ୍ଟ ଘଟଣା ।

ଡିମୋକ୍ରିଟସଙ୍କର ବସ୍ତୁବାଦୀ ମେଟ ଫିଜିକସ ଠାରୁ ତାଙ୍କର ନୈତିକତା ଭିନ୍ନ । ସେ କହୁଥିଲେ, ବିଷୟ ଭୋଗ ଓ ଧନ ପଛରେ ଧାଇଁଲେ ସୁଖ ମିଳେ ନାହିଁ । ମଣିଷ ତା ଅନ୍ତର ଭିତରେ ସୁଖର ସନ୍ଧାନ କରିବା ଉଚିତ୍ । ନ୍ୟାୟପରାୟଣତା ଓ ବଦାନ୍ୟତା ମଣିଷର ଉତ୍କୃଷ୍ଟ ଗୁଣ ଏବଂ ସନ୍ତୋଷର କାରଣ । ସଂଯମହୀନ ଇନ୍ଦ୍ରିୟ ଭୋଗରୁ ମଣିଷ ଦୁଃଖ ପାଏ ।

ଆନାକ୍‌ସଗୋରସ୍ (ଖ୍ରୀ· ପୂ ୫୦୦—୪୨୮) ଆନାକସଗୋରସ୍‌ଙ୍କୁ ଏଥେନ୍‌ସୀୟ କହିଲେ ଚଳେ । ଏଥେନ୍‌ସର ଚିନ୍ତାଶୀଳ ବାତାବରଣକୁ ହଟାଇବାରେ ଆନାକ୍‌ସଗୋରସ୍‌ଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏଥେନ୍‌ସୀୟ ଆଇନ୍ ଅନୁଯାୟୀ ଜ୍ୟୋତି-ର୍ବିଜ୍ଞାନରେ ଗବେଷଣା ଏକ ଅପରାଧ ଥିଲା । ପେରିକ୍ଲିଜ୍‌ଙ୍କ ବନ୍ଧୁତ୍ୱ ଓ ଉତ୍ସାହ ପାଇ ଆନାକ୍‌ସଗୋରସ୍ ଏଥେନ୍‌ସରେ ବାସ କଲେ । ଜ୍ୟୋତିର୍ବିଜ୍ଞାନ ଅଧ୍ୟୟନ ପ୍ରତି ତାଙ୍କର ଗଭୀର ଆକର୍ଷଣ ଥିଲା । ସୂର୍ଯ୍ୟଙ୍କୁ ଏକ ଜ୍ୱଳନ୍ତ ଅଗ୍ନିପିଣ୍ଡ କହିବା ଦ୍ୱାରା ସେ ଦେବତାଙ୍କୁ ଅପମାନିତ କରୁଛନ୍ତି ବୋଲି ତାଙ୍କ ନାମରେ ଅଭିଯୋଗ ହେଲା । ଏଥେନ୍‌ସବାସୀ ତାଙ୍କୁ ମୃତ୍ୟୁଦଣ୍ଡ ଦେବାକୁ ଯାଉଛନ୍ତି ଖବର ପାଇ ଆନାକ୍‌ସଗୋରସ୍ କହିଥିଲେ, "ବିଧାତା ଅନେକ ପୂର୍ବରୁ ସେମାନଙ୍କୁ ଓ ମୋତେ ଦଣ୍ଡ ଦେଇ ସାରିଛି ।" ବୋଧହୁଏ ଏଥେନ୍‌ସରେ ଜ୍ଞାନ ଗବେଷଣା ପାଇଁ ଆବଶ୍ୟକ ସ୍ୱାଧୀନ ବାତାବରଣରେ ଅଭାବ ଲକ୍ଷ୍ୟ କରି ଆନାକ୍‌ସଗୋରସ୍ ଏ କଥା କହିଥିଲେ ।

ଏପରି ମନେ କରିବାର କାରଣ ଗ୍ରୀସ୍‌ର ପ୍ରାନ୍ତୀୟ ନଗର ତଥା ଉପନିବେଶ-ଗୁଡ଼ିକରେ ଏଥେନ୍‌ସ ତୁଳନାରେ ଅଧିକ ସହନଶୀଳତା ଥିଲା । ଏଲିଆରେ ପାର୍ମେନାଇଡିଜ୍ କହିଲେ, ପୃଥିବୀ ବର୍ତ୍ତୁଳାକାର ଏବଂ ଚନ୍ଦ୍ରର ଆଲୋକିତ ଅଂଶଟି ସର୍ବଦା ସୂର୍ଯ୍ୟଙ୍କ ଆଡ଼କୁ

ମୁହାଁଇଥାଏ । ଆକ୍ରାଗାସ୍‌ର ବାସିନ୍ଦା ଦାର୍ଶନିକ ଏମ୍ପିଡୋକ୍ଲସ୍ ମତ ଦେଲେ ଯେ ଆଲୋକ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯିବା ପାଇଁ ସମୟ ନିଏ । ଯେଉଁ ମତ ଯୋଗୁ ଆଧୁନିକ ବିଜ୍ଞାନର ଆରମ୍ଭ କାଳରେ କୋପର୍ନିକସ୍ ଓ ଗାଲିଲିଓଙ୍କୁ ଲାଞ୍ଛିତ ହେବାକୁ ପଡ଼ିଥିଲା, ଥିବାନ୍‌ର ପିଥାଗୋରସୀୟ ଦାର୍ଶନିକ ଫିଲୋଲାଉସ୍ (ଜନ୍ମ ଖ୍ରୀ. ପୂ. ୪୮୦) ତାହା ସ୍ୱଚ୍ଛନ୍ଦରେ ପ୍ରକାଶ କରିଥିଲେ । ଫିଲୋଲାଉସ୍ ଘୋଷଣା କଲେ, ପୃଥିବୀ ବିଶ୍ୱ ବ୍ରହ୍ମାଣ୍ଡର କେନ୍ଦ୍ରରେ ନାହିଁ । ପୃଥିବୀ ଗୋଟିଏ ଗ୍ରହ ଓ ଅନ୍ୟ ଗ୍ରହମାନଙ୍କ ସହିତ ସୂର୍ଯ୍ୟଙ୍କୁ ପରିକ୍ରମଣ କରୁଛି । ଡିମୋକ୍ରିଟସ୍ କହିଲେ, ଛାୟାପଥ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ତାରାଙ୍କର ଏକ ସମାବେଶ । କୌଣସି ବୈଜ୍ଞାନିକ ଯନ୍ତ୍ରପାତି ନ ଥାଇ ଉପରୋକ୍ତ ଦାର୍ଶନିକମାନେ ନଭୋମଣ୍ଡଳର ଯେତେଗୁଡ଼ିଏ ସତ୍ୟ ଦର୍ଶନ କରିଥିଲେ ତାହା ବିସ୍ମୟଜନକ ।

ଗ୍ରୀସ୍‌ର ଅର୍ଦ୍ଧାଧିକାଂଶ ବିଶିଷ୍ଟ ଦାର୍ଶନିକଙ୍କର ବିଜ୍ଞାନର କୌଣସି ନା କୌଣସି ବିଭାଗକୁ ମୌଳିକ ଅବଦାନ ରହିଛି । ଜଣେ ଦାର୍ଶନିକ ବିଜ୍ଞାନର କୌଣସି ଏକ ବିଭାଗରେ ସିଦ୍ଧି ଅର୍ଜନ କରିବା ଉଚିତ ବୋଲି ବର୍ଟ୍ରାଣ୍ଡ ରସେଲ୍ କହନ୍ତି ।

କୋଡ଼ିଏ ବର୍ଷ ବୟସରେ ଏଥେନ୍ସ ଆସି ଆନାକ୍ସଗୋରସ୍ ଜ୍ୟୋତିର୍ବିଜ୍ଞାନ ଗବେଷଣାରେ ମଜ୍ଜିଗଲେ । ପୈତୃକ ସମ୍ପତ୍ତିର ଯତ୍ନ ନ ନେବା ଫଳରେ ତାଙ୍କୁ ଦାରିଦ୍ର୍ୟ ଭୋଗିବାକୁ ପଡ଼ିଥିଲା । ଅନ୍ୟ ପକ୍ଷରେ ତାଙ୍କର ଜ୍ୟୋତିର୍ବିଜ୍ଞାନ ତଥ୍ୟ ସମ୍ବଳିତ ଗ୍ରନ୍ଥକୁ ଏଥେନ୍ସର ଜ୍ଞାନୀ ପଣ୍ଡିତମାନେ ସେ ଶତାବ୍ଦୀର ଶ୍ରେଷ୍ଠ ବିଜ୍ଞାନ ଗ୍ରନ୍ଥ ଭାବେ ସ୍ୱାଗତ ଜଣାଇଲେ ।

ଆନାକ୍ସଗୋରସ୍‌ଙ୍କ ତତ୍ତ୍ୱ ଅନୁସାରେ ଆଦ୍ୟରୁ ବିଭିନ୍ନ ବୀଜମାନ ବିଶୃଙ୍ଖଳ ଅବସ୍ଥାରେ ଥିଲେ । ବୀଜମାନଙ୍କ ସହିତ ଗୋଟିଏ ନୋଅସ୍ ବା ମାନସ ମଧ୍ୟ ଆଦ୍ୟରୁ ବିଦ୍ୟମାନ । ବିଶୃଙ୍ଖଳ ବୀଜମାନଙ୍କୁ ଶୃଙ୍ଖଳିତ ବିଶ୍ୱଜଗତ ରୂପେ ଗଢ଼ିବା ନୋଅସ୍‌ର କାମ । ଯେପରି ମଣିଷର ବିଶୃଙ୍ଖଳ କାର୍ଯ୍ୟକଳାପକୁ ମାନସ ଶୃଙ୍ଖଳିତ କରେ, ନୋଅସ୍ ବା ବିଶ୍ୱମାନସର କାର୍ଯ୍ୟ ସେହିପରି । ନୋଅସ୍ ଗୋଟିଏ ଘୂର୍ଣ୍ଣି ସୃଷ୍ଟି କଲା । ଏହା ଫଳରେ ପ୍ରକାରଭେଦରେ ବୀଜମାନେ ଏକାଠି ହୋଇ ଚାରୋଟି ମୌଳିକ ଉପାଦାନ ସୃଷ୍ଟି କଲେ— ଅଗ୍ନି, ବାୟୁ, ଜଳ ଓ କ୍ଷିତି (ଅର୍ଥାତ୍ ପଞ୍ଚଭୂତରୁ ବ୍ୟୋମକୁ ବାଦ୍ ଦେଇ) । ଆହୁରି ମଧ୍ୟ

ଦୁଇଟି ଘୂର୍ଣ୍ଣାୟମାନ ସ୍ତର, ଯଥା—ଇଥର ସ୍ତର ଓ ତଳକୁ ବାୟୁ ସ୍ତର ଏଇ ଘର୍ଷଣର ଫଳ । ଇଥର ସ୍ତରର ପ୍ରଚଣ୍ଡ ଘୂର୍ଣ୍ଣନ ଯୋଗୁ ପୃଥିବୀରୁ ପ୍ରକାଣ୍ଡ ଶିଳାମାନ ଉଡ଼ି ଆକାଶରେ ନକ୍ଷତ୍ର ହୋଇ ଜଳଲେ । ସୂର୍ଯ୍ୟ ଓ ନକ୍ଷତ୍ରମାନେ ଜ୍ୱଳନ୍ତ ଶିଳାପିଣ୍ଡ । "ସୂର୍ଯ୍ୟ ଗୋଟିଏ ଲାଲ ଟକ୍‌ଟକ୍ ଉତ୍ତପ୍ତ ପିଣ୍ଡ ଯାହାର ଆକାର ପିଲୋପୋନେସିଅସ୍ ଠାରୁ ବହୁ ଗୁଣରେ ବଡ଼ ।" ଚନ୍ଦ୍ର ସୂର୍ଯ୍ୟ ଠାରୁ ଆଲୋକ ପାଏ ଓ ପୃଥିବୀର ନିକଟତମ ଜ୍ୟୋତିଷ୍କ । ଚନ୍ଦ୍ର, ଗ୍ରହଣ ଓ ସୂର୍ଯ୍ୟ ପରାଗର କାରଣ ଆନାକ୍‌ସଗୋରସ୍ ଠିକ୍ ଭାବେ ନିର୍ଣ୍ଣୟ କରିପାରିଥିବା ଆଜି ଏକ ବିସ୍ମୟ ।

ଆନାକ୍‌ସଗୋରସ୍ Spermata ଶବ୍ଦ ବ୍ୟବହାର କରିଥିଲେ । ଏହାର ଅନୁବାଦ ବୀଜ କରିବା ସମୀଚୀନ । ସେ ଏହି ଶବ୍ଦ ବ୍ୟବହାର କରିବାର କାରଣ, ତାଙ୍କ ମତରେ ବୀଜରୁ ବସ୍ତୁମାନେ ସୃଷ୍ଟି ହୋଇଛନ୍ତି ।

ଘଡ଼ଘଡ଼ି କପରି ମାରେ, ବିଜୁଳି କପରି ଚମକେ, ମେଘ କପରି ସୃଷ୍ଟି ହୁଏ ପ୍ରଭୃତି ଅନେକ ପ୍ରାକୃତିକ ଘଟଣାର ବିଜ୍ଞାନ ସମ୍ମତ କାରଣ ଆନାକ୍‌ସଗୋରସ୍ ଅନୁସନ୍ଧାନ କରିଥିଲେ । ଥରେ ପେରିକ୍ଲିଜ୍‌ଙ୍କ ପାଖକୁ ଗୋଟିଏ ବିଚିତ୍ର ମେଣ୍ଢା ଅଣାଗଲା । ମୁଣ୍ଡର ଦୁଇପଟେ ଦୁଇଟି ଶିଙ୍ଘ ପରିବର୍ତ୍ତେ ଏହି ମେଣ୍ଢାର ମୁଣ୍ଡ ମଝିରେ ମାତ୍ର ଗୋଟିଏ ଶିଙ୍ଘ । ମେଣ୍ଢାଟିକୁ ଦେଖି ଶୁଭାଶୁଭ ଗଣନାକାରୀମାନେ ନାନା କଥା କହିଲେ । ଆନାକ୍‌ସଗୋରସ୍ ମେଣ୍ଢା ମୁଣ୍ଡକୁ ଫଟେଇ, ଖପୁରି ଭାଙ୍ଗି ତା ମସ୍ତିଷ୍କ ଗଠନରେ କି ବ୍ୟତିକ୍ରମ ଯୋଗୁ ସେ ଏକଶିଙ୍ଘିଆ ହୋଇଛି ତାହା ବୁଝାଇ ଦେଇଥିଲେ । ଗ୍ରୀସ୍‌ରେ ଖସିପଡ଼ିଥିବା ଗୋଟିଏ ଉଲ୍‌କାକୁ ଦେଖି ଆକାଶର ଜ୍ୟୋତିଷ୍କଗଣ ଶିଳାରେ ଗଢ଼ା ବୋଲି ସେ ସିଦ୍ଧାନ୍ତ କରିଥିଲେ ।

ଆନାକ୍‌ସଗୋରସ୍‌ଙ୍କୁ ଅଭିଯୁକ୍ତ କରିବା ପଛରେ ଅବଶ୍ୟ ରାଜନୈତିକ ମତଲବ ଥିଲା । ଏଥେନ୍‌ସ କାରାଗାରରେ ବନ୍ଦୀ ଥାଇ ସକ୍ରେଟିସ୍‌ଙ୍କ ଦଶା ଭୋଗିବାକୁ ଅପେକ୍ଷା କରୁଥିବା ବେଳେ ପେରିକ୍ଲିଜ୍ ତାଙ୍କୁ ଜେଲ୍‌ରୁ ବେଢ଼ିଇ ଆଣି ଏଥେନ୍‌ସ ବାହାରକୁ ପଠାଇ ଦେଇଥିଲେ । ଆଉ ଗୋଟିଏ ମତ ହେଉଛି, ବନ୍ଦୀ ହେବା ପୂର୍ବରୁ ପେରିକ୍ଲିଜ୍ ତାଙ୍କୁ ଏଥେନ୍‌ସର ସୀମା ପାର କରାଇ ଦେଲେ ।

ଧର୍ମାନ୍ଧତା ଓ ମୁକ୍ତଚିନ୍ତା ମଧ୍ୟରେ ଯେଉଁ ବିବାଦ ଖ୍ରୀ. ପୂ ପଞ୍ଚମ ଶତାବ୍ଦୀରେ ଜମି ଉଠିଲା, ସେହି ବିବାଦରେ ଆନାକ୍‌ସଗୋରସ୍ ମୁକ୍ତଚିନ୍ତା ପକ୍ଷର ଜଣେ ପ୍ରଧାନ ଯୋଦ୍ଧା ।

ଏଥେନ୍‌ସରେ ତାଙ୍କର କାର୍ଯ୍ୟକଳାପ ଓ ତାଙ୍କୁ କେନ୍ଦ୍ର କରି ପେରିକ୍ଲିଜ୍‌ବିରୋଧୀ ରାଜନୈତିକ ଶକ୍ତିର ପେରିକ୍ଲିଜ୍‌ଙ୍କ ସହିତ ବଳ କଷାକଷି ନଗରରେ ଗୋଟାଏ ଆନ୍ଦୋଳନ ସୃଷ୍ଟି କରିବା ସ୍ୱାଭାବିକ୍ । ଏହିପରି ଆନ୍ଦୋଳନ ଯୁଗ ଯୁଗର ଚିନ୍ତା ସ୍ଥବିରତା ଓ ରକ୍ଷଣଶୀଳତାକୁ ଭାଙ୍ଗିପାରେ ।

**ସଫିଷ୍ଟଗଣ** —

ବାଣିଜ୍ୟ ସମ୍ପର୍କରେ ଏଥେନ୍ସବାସୀଙ୍କର ବିଦେଶ ଗମନ ଓ ଧନଧାନ୍ୟ ଭରା ଏଥେନ୍‌ସ ପ୍ରତି ବିଦେଶୀଙ୍କ ଆକର୍ଷଣ ଫଳରେ ଏଥେନ୍‌ସବାସୀଙ୍କ ଦୃଷ୍ଟିକୋଣ ପ୍ରସାରିତ ହେଲା । ବିଦେଶର ଜ୍ଞାନୀ ଗୁଣୀଙ୍କୁ ଏଥେନ୍‌ସ୍ ଆସିବା ପାଇଁ ପେରିକ୍ଲିଜ୍‌ଙ୍କ ପରି ଜଣେ ନେତା ଉତ୍ସାହିତ କରିବା ଫଳରେ କେବଳ ଅସାଧାରଣ ଦାର୍ଶନିକ ନୁହନ୍ତି, ଅନେକ ଜ୍ଞାନୀ ମାନୀ ବ୍ୟକ୍ତି ଏଥେନ୍‌ସ ଆସିଲେ । ଏମାନଙ୍କ ମଧ୍ୟରେ ସଫିଷ୍ଟମାନେ ଅନ୍ତର୍ଗତ ।

ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀର ଗ୍ରୀସ୍‌ରେ ଗୋଟିଏ ପେଷାଦାର ପଣ୍ଡିତଗୋଷ୍ଠୀ ବାହାରିଲେ । ସେମାନଙ୍କୁ ଭ୍ରମଣକାରୀ ଅଧ୍ୟାପକ କହିବା ଯଥାର୍ଥ ହେବ । ଏମାନେ ବୁଲି ବୁଲି ଅର୍ଥ ବିନିମୟରେ ବିଭିନ୍ନ ବିଷୟ ଶିକ୍ଷା ଦେଉଥିଲେ । ବିଖ୍ୟାତ ସଫିଷ୍ଟ ପ୍ରୋଟାଗୋରସ୍ ନିଜକୁ Sophistai (ଗ୍ରୀକ୍ ଶବ୍ଦ—ଇଂରାଜୀରେ Sophist) ଅର୍ଥାତ୍ ପ୍ରଜ୍ଞାର ଶିକ୍ଷକ ବୋଲି ପରିଚୟ ଦେଉଥିଲେ । ପ୍ରଥମେ ତାଙ୍କର ଭୁଣ୍ଡରୁ ବାହାରି ସଫିଷ୍ଟ ନାମଟି ଚଳିଥିବା ସମ୍ଭବ ।

ସଫିଷ୍ଟମାନଙ୍କ ପୂର୍ବରୁ ଗ୍ରୀସ୍‌ରେ ଶିକ୍ଷା ସାଧାରଣ ଭାବେ ପଢ଼ାଲେଖା, ହିସାବକିତାବ ଓ ବ୍ୟାୟାମ ମଧ୍ୟରେ ସୀମାବଦ୍ଧ ଥିଲା । ଏତିକ ଶିକ୍ଷା ଯୁଗର ଦାବୀକୁ ଆଉ ମେଣ୍ଟାଇ ପାରିଲା ନାହିଁ । ଆସେମ୍ବ୍ଲିରେ ଲୋକଙ୍କୁ ପ୍ରଭାବିତ କରିବା ପରି ବକ୍ତୃତା ଦେବା ପାଇଁ ଭାବିବା ଓ କଥା କହିବାର ଦକ୍ଷତା ବଢ଼ାଇବାକୁ ଲୋକେ ଆଗ୍ରହୀ ହେଲେ । ବିଚାରାଳୟରେ ମଧ୍ୟ ଆଇନ୍‌କାନୁନ୍ ଜ୍ଞାନ ଓ ନିଜ କଥାକୁ ଯୁକ୍ତିସଙ୍ଗତ ଭାବେ ପରିବେଷଣ କରିବାର ଗୁରୁତ୍ୱ ବଢ଼ିଲା । ସାହିତ୍ୟ, ବ୍ୟାକରଣ, ବାଗ୍ମିତା, ଦର୍ଶନ ଓ ବିଜ୍ଞାନରେ ଜ୍ଞାନ ଅର୍ଜନ କରିଥିବା ବ୍ୟକ୍ତି ସମାଜରେ ସମ୍ମାନ ପାଇଲା । ଉଚ୍ଚାଭିଳାଷୀ ଯୁବକମାନେ

ଜାଣିପାରିଲେ ସେ ବିଦ୍ୟାର୍ଜନ ବ୍ୟତୀତ କୌଣସି କ୍ଷେତ୍ରରେ ଉଚ୍ଚପଦ ଲାଭ କରିବା ସମ୍ଭବ ନୁହେଁ । ସଫିଷ୍ଟଙ୍କ ଠାରୁ ଶିକ୍ଷା ଲାଭ କରିବା ପାଇଁ ଏଥେନ୍ସରେ ପ୍ରବଳ ଆଗ୍ରହ ପ୍ରକାଶ ପାଇଲା । ଜଣେ ସଫିଷ୍ଟ ବାଗ୍ମିତା, ବ୍ୟାକରଣ ବା କୌଣସି ଏକ ଦର୍ଶନତତ୍ତ୍ୱ ସମ୍ବନ୍ଧରେ କେତୋଟି ନିର୍ଦ୍ଦିଷ୍ଟ ସଂଖ୍ୟକ 'ଲେକ୍ଚର' ଦେଉଥିଲେ । ଛାତ୍ରମାନେ ତାଙ୍କର ନିର୍ଦ୍ଧାରିତ 'ଫି' ଦାଖଲ କରି ଲେକ୍ଚର କୋର୍ସରେ ଯୋଗ ଦେଉଥିଲେ ।

ପ୍ରୋଟାଗୋରସ୍, ଗର୍ଜିଆସ୍ ( Gorgias —ଖ୍ରୀ. ପୂ ୪୮୫-୩୮୦ ) ବା ହିପିଆସ୍‌ଙ୍କ ପରି ବିଶିଷ୍ଟ ସଫିଷ୍ଟଙ୍କର ଭ୍ରାମ୍ୟମାଣ କଲେଜରେ ସିଟ୍‌ଟିଏ ପାଇବା ସହଜ ନ ଥିଲା । ଜଣେ ଛାତ୍ରର ଉଚ୍ଚଶିକ୍ଷା ଦାୟିତ୍ୱ ସମ୍ପୂର୍ଣ୍ଣ ଭାବେ ବହନ କରିବାକୁ ପ୍ରୋଟାଗୋରସ୍ ଓ ଗର୍ଜିଆସ୍ ଦଶହଜାର ଡଲାର୍ ଦାବୀ କରୁଥିଲେ । ଏ ଅର୍ଥ ପରିମାଣ ଆମକୁ ଚମ୍କିତ କରେ । ଏହି ଦୁଇ ମହାନ୍ ସଫିଷ୍ଟଙ୍କୁ ଅର୍ଥଲୋଭୀ ବୋଲି କୁହାଯାଇ ପାରିବ ନାହିଁ । ଯେଉଁ ଛାତ୍ରର ଅବସ୍ଥା ସ୍ୱଚ୍ଛଳ ନୁହେଁ ତାକୁ ରିହାତି ମିଳୁଥିଲା । ପ୍ରୋଡ଼ିକସ ନାମକ ସଫିଷ୍ଟ ସାରା ଗ୍ରୀସ୍‌ରେ ବିଖ୍ୟାତ ଥିଲେ । ଛାତ୍ରର ଅବସ୍ଥାକୁ ଚାହିଁ ସେ ଲେକ୍ଚର୍ କୋର୍ସ ପିଚ୍ଛା ଏକରୁ ପଚାଶ ଡଲାର୍ ପର୍ଯ୍ୟନ୍ତ ଗୁରୁଦକ୍ଷିଣା ନେଉଥିଲେ ।

କେବଳ ଏଥେନ୍ସ କାହିଁକି, ଗ୍ରୀସ୍‌ରେ ଯେ କୌଣସି ନଗରରେ ଜଣେ ବିଶିଷ୍ଟ ସଫିଷ୍ଟ ପହଞ୍ଚିଗଲେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ମିଳୁଥିଲା । ପ୍ରବୀଣ ଛାତ୍ରମାନଙ୍କର ଗୁରୁଗୁଣ କୀର୍ତ୍ତନରେ ସେ ସ୍ଥାନ ମୁଖରିତ ହେଉଥିଲା । ଯେଉଁ ଗୁରୁଙ୍କୁ ଛାତ୍ରମାନେ ଶ୍ରଦ୍ଧା ଓ ଭକ୍ତି କରନ୍ତି ସେ କପରି ମନ୍ଦ ମଣିଷ ହେବେ ? ସଫିଷ୍ଟ ନିନ୍ଦକମାନଙ୍କୁ ସକ୍ରେଟିସ୍ ଏହି ପ୍ରଶ୍ନ କରନ୍ତି । ପରବର୍ତ୍ତୀ କାଳର ଅନେକ ଅର୍ଥଲୋଭୀ ସଫିଷ୍ଟ ଛାତ୍ରଙ୍କୁ କେବଳ ଧଳାକୁ କଳା ଓ କଳାକୁ ଧଳା କରିବାର ଟାଉଟେସା ବୁଦ୍ଧି ଶିଖାଇଲେ । ଏଇମାନଙ୍କ ପାଇଁ ସଫିଷ୍ଟ ଶ୍ରେଣୀ ନିନ୍ଦିତ ହେଲା । ସକ୍ରେଟିସ୍ ଓ ପ୍ଲେଟୋ ଏମାନଙ୍କୁ କଠୋର ସମାଲୋଚନା କରିଛନ୍ତି । ସକ୍ରେଟିସ୍ ପରବର୍ତ୍ତୀ କାଳର ସଫିଷ୍ଟଙ୍କୁ ପଚାରନ୍ତି, ଅତୀତର ଜଣେ ସଫିଷ୍ଟଙ୍କ ପ୍ରତି ତାଙ୍କ ଛାତ୍ରମାନେ ଆଜୀବନ କୃତଜ୍ଞ ରହୁଥିବା ସ୍ଥଳେ ତମ ଛାତ୍ରମାନେ ତମକୁ ଦକ୍ଷିଣା ନ ଦେଇ ଫାଙ୍କିଲେ କାହିଁକି ? ପରବର୍ତ୍ତୀ ଯୁଗରେ ଏହିପରି ଘଟଣାମାନ ଘଟିଲା । ଯେଉଁ ଗୁରୁ ଶିଷ୍ୟକୁ ଉତ୍କୃଷ୍ଟ ମଣିଷ କରି ଗଢ଼ିବେ ବୋଲି ବିଜ୍ଞାପନ ଦଅନ୍ତି, ସେହି ଗୁରୁଙ୍କ ଠାରୁ ଶିକ୍ଷା ପାଇ ସାରି ସେ

ଶିଷ୍ୟ ତାଙ୍କୁ ଠକେ ତେବେ ଗୁରୁଙ୍କ ଶିକ୍ଷାଦାନ ସଫଳ ହୋଇଛି ବୋଲି ଆମେ କହିପାରିବା ?

ପରବର୍ତ୍ତୀ ସଫିଷ୍ଟଙ୍କ ଗୁମର ଏହିପରି ଫିଟାଉଥିବା ପ୍ଲେଟୋ ପ୍ରୋଟାଗୋରସ୍ ଓ ଗର୍ଜିଆସ୍‌ଙ୍କର ଭଳି ବ୍ୟକ୍ତିତ୍ୱକୁ ଶୋଭନୀୟଭାବେ ରୂପ ଦେବାରେ କାର୍ପଣ୍ୟ କରିନାହାନ୍ତି । ପ୍ଲେଟୋଙ୍କର 'ପ୍ରୋଟାଗୋରସ୍' ଡାଏଲଗ୍‌ରେ ତରୁଣ ସକ୍ରେଟିସ୍ ଓ ତାଙ୍କ ଠାରୁ ବୟସରେ ବାର ବର୍ଷ ବଡ଼ ପ୍ରାଜ୍ଞ ପ୍ରୋଟାଗୋରସ୍‌ଙ୍କର ଭେଟ ହୋଇଛି । ନାନା ବିଷୟରେ ଦୁହିଁଙ୍କର ଘମାଘୋଟ ଆଲୋଚନା ଶୁଣିବାକୁ ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ସମେତ ବହୁ ଶ୍ରୋତା ରୁଣ୍ଡ ହୋଇଛନ୍ତି । ମାତ୍ର ପ୍ଲେଟୋ ତାଙ୍କ ଗୁରୁଙ୍କ ପାଖରେ ପ୍ରୋଟାଗୋରସ୍‌ଙ୍କୁ ମଳିନ କରି ଛିଡ଼ା କରାଇ ନାହାନ୍ତି । ପ୍ରୋଟାଗୋରସ୍ କହୁଛନ୍ତି, ଘରସଂସାର ଓ ନାଗରିକ ଦାୟିତ୍ୱ ସୁରୁଖୁରୁ-ରୂପେ ତୁଲାଇବାକୁ ସେ ଶିକ୍ଷା ଦିଅନ୍ତି । ତାଙ୍କ ଶିଷ୍ୟମାନେ ରାଷ୍ଟ୍ର ପରିଚାଳନା ବିଷୟରେ ଜ୍ଞାନଲାଭ କରି ଶାସନ ଦାୟିତ୍ୱ ବହନ କରିବାକୁ ଯୋଗ୍ୟ ହୁଅନ୍ତି । ବାଗ୍ମିତା ଓ ପ୍ରବର୍ତ୍ତନା କଳା ତାଙ୍କ ଶିକ୍ଷାର ଅଙ୍ଗ । ପ୍ରୋଟାଗୋରସ୍ ତାଙ୍କର ମୋଟା ଅଙ୍କର ଗୁରୁଦକ୍ଷିଣାକୁ ସମର୍ଥନ କରିଛନ୍ତି । ତେବେ ପୂର୍ଣ୍ଣ ଦକ୍ଷିଣା ଦେବାକୁ ଅକ୍ଷମ ବୋଲି କୌଣସି ଦେବତାଙ୍କ ପାଖରେ ଶପଥ କରୁଥିବା ଶିଷ୍ୟ ଯେତିକି ଦିଏ, ସେ ସେତିକି ଗ୍ରହଣ କରନ୍ତି ।

ସଫିଷ୍ଟମାନେ ଦାର୍ଶନିକ ନୁହନ୍ତି (ପ୍ରୋଟାଗୋରସ୍‌ଙ୍କ ବ୍ୟତୀତ) ମାତ୍ର ପରବର୍ତ୍ତୀ ଦର୍ଶନର ଗତିପଥ ନିୟନ୍ତ୍ରଣ କରିବାରେ ସେମାନଙ୍କର ଭୂମିକା ରହିଛି । ବହୁ ଦୃଷ୍ଟିରୁ ବିଚାର କଲେ ସକ୍ରେଟିସ୍ ଜଣେ ସଫିଷ୍ଟ । ସଫିଷ୍ଟମାନେ ମେଟାଫିଜିକ୍‌ସକୁ ସମାଲୋଚନା କଲେ । ମଣିଷର ସୀମିତ ବୁଦ୍ଧି ସୃଷ୍ଟି ରହସ୍ୟକୁ ଉଦ୍‌ଘାଟନ କରିବା କିମ୍ବା ବିଶ୍ୱଜଗତକୁ ବ୍ୟାଖ୍ୟା କରିବାକୁ ସମର୍ଥ ନୁହେଁ । ତେଣୁ ମେଟାଫିଜିକାଲ୍ ପ୍ରଶ୍ନ ସବୁ ପରିବର୍ତ୍ତେ ସମସ୍ତ ଜ୍ଞାନ-ସାଧନାର କେନ୍ଦ୍ରରେ ସ୍ୱୟଂ ମଣିଷ ରହିବା ଉଚିତ ନୁହେଁ କି ? ଯେଉଁ ଜ୍ଞାନ ଦ୍ୱାରା ମଣିଷ ପ୍ରତ୍ୟକ୍ଷ ଭାବେ ଉପକୃତ ନ ହେବ ସେ ଜ୍ଞାନର ମୂଲ୍ୟ କ'ଣ ? ସେମାନେ ଏହିପରି ପ୍ରଶ୍ନ ଉତ୍ଥାପନ କରି ଜ୍ଞାନର ନୂଆ ନୂଆ ବିଭାଗ ପ୍ରତି ଦୃଷ୍ଟି ଆକର୍ଷଣ କଲେ । ବ୍ୟାକରଣ ଓ ଲଜିକ୍‌ର ସୃଷ୍ଟି ସୂତ୍ରପାତକୁ ସଫିଷ୍ଟଙ୍କର ମୌଳିକ ଅବଦାନ । ପ୍ରୋଟାଗୋରସ୍ ଭାଷାତତ୍ତ୍ୱ ଓ ବ୍ୟାକରଣର ପ୍ରତିଷ୍ଠାତା । ଶବ୍ଦଙ୍କର ଯଥାର୍ଥ ବ୍ୟବହାର ଉପରେ ସେ ଗୁରୁତ୍ୱ ଦେଲେ ।

ଉଭୟ ପକ୍ଷର ଯୁକ୍ତି ଶୁଣି ସତ୍ୟ ସନ୍ଧାନ ଢଙ୍ଗରେ ଅଗ୍ରସର ହେବାର ଡାଇଲେକ୍ଟିକାଲ୍ ଆଲୋଚନା ପ୍ରଣାଳୀର ପ୍ରଥମ ପ୍ରବର୍ତ୍ତକ ହେଉଛନ୍ତି ପ୍ରୋଟାଗୋରସ୍ । ପରେ ସକ୍ରେଟିସ୍ ଓ ପ୍ଲେଟୋ ଡାଇଲେକ୍ଟିକ୍‌ର ବହୁ ଉନ୍ନତି ସାଧିତ କରିଥିଲେ । ସଫିଷ୍ଟମାନେ ଲଜିକ୍‌ର ଭିତ୍ତି-ସ୍ଥାପନକାରୀ । ସେମାନଙ୍କ ପ୍ରଭାବରେ ସାଧାରଣ ଶିକ୍ଷିତ ଗ୍ରୀକ୍‌ଙ୍କର ବକ୍ତୃତା ଶକ୍ତି ବଢ଼ିଲା । ଲୋକେ ସବୁ କଥା ବିଶ୍ଳେଷଣ କଲେ । ନୂତନ ସତ୍ୟକୁ ଗ୍ରହଣ କରିବାରେ ପରମ୍ପରା ଓ ଧର୍ମର ପ୍ରତିବନ୍ଧକ କମିଗଲା ।

**ପ୍ରୋଟାଗୋରସ୍** (ଖ୍ରୀ. ପୂ ୪୮୧—୪୧୧) ପ୍ରୋଟାଗୋରସ୍ ଗ୍ରୀସ୍‌ର ପ୍ରଥମ ଓ ଶ୍ରେଷ୍ଠ ସଫିଷ୍ଟ । ଡିମୋକ୍ରିଟସ୍ ଓ ସେ ଗୋଟିଏ ସ୍ଥାନରେ ଜନ୍ମ ହୋଇଥିଲେ । ଦୁହିଁଙ୍କ ଚିନ୍ତାରେ ବିଶେଷ ସାମଞ୍ଜସ୍ୟ ନ ଥିଲେ ମଧ୍ୟ ପ୍ରୋଟାଗୋରସ୍ ପାର୍‌ମେନ୍‌ଇଡୀଜ୍‌ଙ୍କ ଅପେକ୍ଷା ଡିମୋକ୍ରିଟସ୍‌ଙ୍କର ନିକଟତର । ପାର୍‌ମେନ୍‌ଇଡୀଜ୍ ଇନ୍ଦ୍ରିୟାନୁଭବ ଉପରେ ଆସ୍ଥାବାନ୍ ନ ଥିଲେ । ପ୍ରୋଟାଗୋରସ୍ କହିଲେ, ଅନୁଭବ ଜ୍ଞାନର ଏକମାତ୍ର ଉପାୟ । ଅତୀନ୍ଦ୍ରିୟ ସତ୍ୟ କିଛି ନାହିଁ । ପରମ ସତ୍ୟ ସନ୍ଧାନ ମଣିଷର ବୃଥା ଚେଷ୍ଟା । ସତ୍ୟର ଭିତ୍ତି ମଣିଷ । ଦୁଇ ଜଣ ମଣିଷଙ୍କର ଦୁଇ ବିପରୀତ ଉକ୍ତି ସତ୍ୟ ହୋଇପାରେ । ଏପରିକି ଜଣେ ମଣିଷର ଆଜିକାର 'ସତ୍ୟ' ଠାରୁ ଆସନ୍ତା କାଲର 'ସତ୍ୟ' ଭିନ୍ନ ହେବା ସମ୍ଭବ ।

ପ୍ରୋଟାଗୋରସ୍‌ଙ୍କ ଦର୍ଶନର ସାରତତ୍ତ୍ୱ ତାଙ୍କର ଗୋଟିଏ ଉକ୍ତିରେ ନିହିତ । ସେଇଟି ହେଉଛି, "Man is the measure of all things—of these that are, that they are, and of these that are not, that the yare not." ବହୁ ଅର୍ଥ ବ୍ୟଞ୍ଜକ ଏହି ମନ୍ତବ୍ୟଟିରୁ ସମୁଦାୟ ପାଶ୍ଚାତ୍ୟ ସଭ୍ୟତାର ଉଦ୍‌ଭବ ବୋଲି ମନେହୁଏ । ପ୍ରଥମ କଥା, ଉକ୍ତିଟିରେ ଆତ୍ମନିଷ୍ଠ (Subjective) ଜ୍ଞାନ ସ୍ୱୀକୃତ । ଆତ୍ମନିଷ୍ଠ ଜ୍ଞାନକୁ ସ୍ୱୀକାର କରିବାରେ ପ୍ରୋଟାଗୋରସ୍ ପ୍ରଥମ ୟୁରୋପୀୟ । ତାଙ୍କ ପରେ ଅନ୍ତର୍ଦୃଷ୍ଟି ବଳରେ ନିଜ ଭିତରୁ ସତ୍ୟକୁ ଆବିଷ୍କାର କରାଯାଏ ବୋଲି ସକ୍ରେଟିସ୍ ସ୍ପଷ୍ଟଭାବେ କହିଲେ ।

ପ୍ରୋଟାଗୋରସ୍‌ଙ୍କ ଉକ୍ତିର ଅର୍ଥ ହେଉଛି—ମଣିଷ ସବୁ ବିଷୟର ମାପକାଠି । ସେ ଯାହା ଅନୁଭବ କରେ ତାହା ଅଛି, ଯାହା ଅନୁଭବ କରେନା ତାହା ନାହିଁ । ଏପରି ଉକ୍ତିରେ ଆତ୍ମନିଷ୍ଠ ଜ୍ଞାନ ସ୍ୱୀକୃତ । ପୁଣି ସତ୍ୟ ବ୍ୟକ୍ତିକେନ୍ଦ୍ରିକ ବୋଲି ମଧ୍ୟ ଏହାର ଅର୍ଥ

କହାଯାଇପାରେ । ବସ୍ତୁତଃ ସଫିଷ୍ଟମାନେ ପ୍ରୋଟାଗୋରସ୍‌ଙ୍କ ଉକ୍ତିକୁ ଏହିପରି ପ୍ରଚାର କରିଥିଲେ । ପ୍ରତ୍ୟେକ ବ୍ୟକ୍ତି ତା ହାତରେ ଚଢ଼ଦ ଯା । ସୁନ୍ଦର-ଅସୁନ୍ଦର, ନ୍ୟାୟ-ଅନ୍ୟାୟ ଇତ୍ୟାଦି ବିଷୟରେ ବ୍ୟକ୍ତି ଯାହା ଅନୁଭବ କରେ, ସେଇ ତାର ସତ୍ୟ ।

ପ୍ଲେଟୋ ତାଙ୍କର ଥେଇଟିଟସ୍ ଡାଏଲଗ୍‌ରେ ପ୍ରୋଟାଗୋରସ୍‌ଙ୍କ ଉକ୍ତିର ଚମତ୍କାର ବିଶ୍ଳେଷଣ କରିଛନ୍ତି । ସେ ଦର୍ଶାଇଛନ୍ତି, ଇନ୍ଦ୍ରିୟଗ୍ରାହ୍ୟ ଜଗତର ପରିସୀମା ଭିତରେ ପ୍ରୋଟାଗୋରସ୍ ଠିକ୍ । ଯେଉଁ ପାଗ ମୋତେ ଥଣ୍ଡା ଲାଗୁଛି ତାହା ଆଉ ଜଣକୁ ଗରମ ଲାଗିପାରେ । ମାତ୍ର ଉକ୍ତିଟିରେ "all things" ବାକ୍ୟାଂଶଟି ଆପତ୍ତିଜନକ । ଉକ୍ତିଟି ସର୍ବବ୍ୟାପୀ ହୋଇଥିବାରୁ ବୁଝିବାକୁ ହେବ, ମତେ ଯାହା ନ୍ୟାୟୋଚିତ ବୋଧ ହେଉଛି ତାହା ମୋ ପାଇଁ ନ୍ୟାୟ ଓ ତୁମକୁ ଯାହା ନ୍ୟାୟୋଚିତ ବୋଧ ହେଉଛି ତାହା ତୁମ ପାଇଁ ନ୍ୟାୟ । ଏପରି ମନୋଭାବ ଫଳରେ ନୈତିକ ଅରାଜକତା ସୃଷ୍ଟି ହେବ । ତତ୍କାଳୀନ ସମାଜର ନୈତିକ ବିଶୃଙ୍ଖଳା ପ୍ରତି ସଫିଷ୍ଟଙ୍କର ଅବଦାନ ରହିଛି । ପ୍ଲେଟୋ ଯଥାର୍ଥରେ ଦର୍ଶାଇଲେ ଯେ ନ୍ୟାୟ ଅନ୍ୟାୟ ଅନୁଭବ ବଳରେ ନୁହେଁ, ଜ୍ଞାନ ବଳରେ ଦୃଶ୍ୟ ହୁଏ ।

ମଣିଷ ସକଳ ବସ୍ତୁର ମାପକାଠି—ଉକ୍ତିର ଗୋଟିଏ ମର୍ମ ହେଉଛି—ମନୁଷ୍ୟୋତ୍ତର ତତ୍ତ୍ୱ କିଛି ନାହିଁ । ମଣିଷ ମୂଳଭିତ୍ତି, ଅନ୍ତିମ ସତ୍ୟ । ପାଶ୍ଚାତ୍ୟ ଜଗତ ମୋଟାମୋଟି ଭାବେ 'ମଣିଷ ସକଳ ବସ୍ତୁର ମାପକାଠି'କୁ ଏଇ ଅର୍ଥରେ ଗ୍ରହଣ କରି ନେଇଛି । ଏହା ପାଶ୍ଚାତ୍ୟର ଶକ୍ତି, ସାଫଲ୍ୟର ଗୁପ୍ତକାଠି । "ଯାହା କରିବି ମୁଁ କରିବି, ମୁଁ କର୍ତ୍ତା, ମୁଁ ବିଧାତା, ମୁଁ ମାପକାଠି", ଏହିପରି ଆତ୍ମବିଶ୍ୱାସୀ ( ଦାମ୍ଭିକ ? ) ପାଶ୍ଚାତ୍ୟ ମଣିଷ ଅନେକ ଦୂର ଆଗେଇ ଯାଇଛି । ମାତ୍ର ଯେଉଁଟି ତାର ସାଫଲ୍ୟର ଗୁପ୍ତକାଠି ସେହି ପୁଣି ତାର ସଙ୍କଟ ! "ମୁଁ, ମୁଁ, ମୁଁ,···ମୋ ଉପରେ କେହି ନାହିଁ" ଭିତ୍ତିରେ ଥିବା ପାଶ୍ଚାତ୍ୟ ସଭ୍ୟତା ଆଜି ଟଳମଳ ।

ପ୍ଲେଟୋ ସେ କାଳରୁ ଚେତାଇଥିଲେ, ମଣିଷ ସକଳ ବସ୍ତୁର ମାପକାଠି—ନା ଈଶ୍ୱର ? ଈଶ୍ୱର ସକଳ ବସ୍ତୁର ମାପକାଠି । ମଣିଷ ନିଜକୁ ସକଳ ବସ୍ତୁର ମାପକାଠି ମନେକରିବା କି ଆସ୍ପର୍ଦ୍ଧା !

ଜ୍ଞାନୀମାନଙ୍କ ପାଇଁ ଏ ଦ୍ୱନ୍ଦ୍ୱ ନାହିଁ ନାହିଁ । ଆତ୍ମନ୍ ଓ ବ୍ରହ୍ମନ୍ ଏକ ।

ପ୍ରୋଟାଗୋରସ୍ ଈଶ୍ୱରଙ୍କ ଅସ୍ତିତ୍ୱରେ ସନ୍ଦେହ କରୁଥିଲେ । ୟୁରିପିଡ଼ିଜ୍‌ଙ୍କ ଘରେ ଥରେ ଏଥେନ୍‌ସର ବିଶିଷ୍ଟ ଚିନ୍ତାଶୀଳ ବ୍ୟକ୍ତିଙ୍କର ଗୋଟିଏ ବୈଠକ ବସିଥିଲା । ଏହି ବୈଠକରେ ୟୁରିପିଡ଼ିଜ୍‌ଙ୍କର ପ୍ରଧାନ ଅତିଥି ପ୍ରୋଟାଗୋରସ୍ ଗୋଟିଏ ପ୍ରବନ୍ଧ ପାଠ କରିଥିଲେ । ପ୍ରବନ୍ଧର ପ୍ରଥମ ବାକ୍ୟଟି ଏହିପରି—"ଦେବତାଙ୍କ ସମ୍ପର୍କରେ ମୋର ମତ ହେଉଛି, ସେମାନେ ଅଛନ୍ତି କି ନାହିଁ ମୁଁ ଜାଣେନା । ଜ୍ଞାନ ଲାଭର ଅନେକ ପ୍ରତିବନ୍ଧକ । ଏକେ ତ ବିଷୟ ବଡ଼ ଗହନ, ତା ସାଙ୍ଗକୁ ମଣିଷ ଜୀବନ କ୍ଷଣସ୍ଥାୟୀ ।" ଏଥେନ୍‌ସର କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କର ସମାବେଶରେ ପ୍ରୋଟାଗୋରସ୍‌ଙ୍କର ଏହି ପ୍ରବନ୍ଧର ବିଷୟ-ବସ୍ତୁ ଓ ଲୋକଙ୍କ ଭାଷା ଗୁପ୍ତ ରହିଲା ନାହିଁ । ନଗରବାସୀଙ୍କ ମଧ୍ୟରେ ହଇଚଇ ପଡ଼ିଗଲା । ପ୍ରୋଟାଗୋରସ୍‌ଙ୍କୁ ଏଥେନ୍‌ସରୁ ବହିଷ୍କାର କରିବାକୁ ଆସେମ୍ବ୍ଲିରେ ପ୍ରସ୍ତାବ ଗୃହୀତ ହୋଇଗଲା । ଏହି ପ୍ରବନ୍ଧର ନକଲଗୁଡ଼ିକୁ ନାଗରିକଙ୍କ ଠାରୁ ଜବତ କରି ସର୍ବସାଧାରଣଙ୍କ ସାମନାରେ ପୋଡ଼ିଦିଆଗଲା ।

ଅନେକ ସଫିଷ୍ଟ ପ୍ରଚାର କରିଥିଲେ ଯେ, ନୈତିକତା ମଣିଷର ମନଗଢ଼ା । ବୁଦ୍ଧିମାନ ମଣିଷ ନୈତିକତାକୁ ଖାତିର୍ ନ କରି ନିଜର ସ୍ୱାର୍ଥସାଧନ ପଥରେ ଆଗେଇ ଚାଲେ । 'ଜୋର୍ ଯାର ମୁଲକ ତା'ର' ନୀତିଟି ପ୍ରାକୃତିକ, ନୈତିକତା ମନଗଢ଼ା । ଗର୍ଜିଆସ୍ ସ୍ପଷ୍ଟ ଭାବେ କହିଥିଲେ, "ଦୁର୍ବଳ ଶକ୍ତିଶାଳୀକୁ ବାଧା ଦେଇ ନ ପାରିବା ପ୍ରକୃତିର ନିୟମ । ଦୁର୍ବଳ ସବଳ ଦ୍ୱାରା ଶାସିତ ହେବ ଓ ତା ଅଧୀନରେ ରହିବ । ସବଳ ଆଗରେ ଚାଲିବ, ଦୁର୍ବଳ ତା'ର ଅନୁସରଣ କରିବ ।"

ନୈତିକତାକୁ ଖୋଲାଖୋଲି ନାପସନ୍ଦ କରୁଥିବା ସତ୍ତ୍ୱେ ସଫିଷ୍ଟମାନେ ନୈତିକ ଅରାଜକତାର କାରଣ ବୋଲି କହିହେବ ନାହିଁ । କଥାହେଉଛି, ଧନ ସମ୍ପଦର ଅଭିବୃଦ୍ଧି ଗମନାଗମନର ସୁବିଧା, ଜ୍ଞାନ ବିଜ୍ଞାନର ବିକାଶ ଓ ଆଦର ଫଳରେ ପାରମ୍ପରିକ ନୈତିକତାର ଗୁରୁତ୍ୱ କମିଗଲା । ଧର୍ମବିଶ୍ୱାସ ଓ ନୈତିକତା ଭାଙ୍ଗି ପଡ଼ିବାର ପ୍ରକ୍ରିୟାକୁ ସଫିଷ୍ଟମାନେ ତ୍ୱରାନ୍ୱିତ କଲେ ମାତ୍ର । ଯୁକ୍ତି ଓ ବିଚାରର ଶକ୍ତି ନୂଆ କରି ଆବିଷ୍କାର କରୁଥିବା ମଣିଷମାନେ ଜ୍ଞାନ ଆପେକ୍ଷିକ ବୋଲି ଜାଣିବା ଫଳରେ ବିନୀତ ହେବା ପରିବର୍ତ୍ତେ ଉଦ୍ଧତ ହୋଇ ଉଠନ୍ତି । ସଫିଷ୍ଟ ଯୁଗରେ ଏଥେନ୍‌ସର ବାୟୁମଣ୍ଡଳରେ ଏହି ଔଦ୍ଧତ୍ୟ ସ୍ପଷ୍ଟ ।

ପାରମ୍ପରିକ ଧର୍ମ, ନୈତିକତା ଓ ଜୀବନଧାରାକୁ ବିଶ୍ଳେଷଣ କରିବା ପରି କାଳ ସଫିଷ୍ଟଙ୍କ ସମୟରେ ଉପଗତ ହେଲା । ବିଚାର ଓ ବୁଦ୍ଧିକୁ ମୁକ୍ତ କରିବା ପାଇଁ ସେମାନେ ଆନ୍ତରିକ ଆଗ୍ରହର ସହିତ ମାତିଲେ । ସାରା ଗ୍ରୀସ୍‌ରୁ ନୂଆ ଜ୍ଞାନ, ନୂଆ ଚିନ୍ତା ସଂଗ୍ରହ କରି ଏଥେନ୍‌ସ ମାଟିରେ ବୁଣିଦେଲେ । ସେମାନଙ୍କର ବୌଦ୍ଧିକ ମନ୍ଥନରୁ ସକ୍ରେଟିସ୍ ଓ ପ୍ଳେଟୋଙ୍କର ଜନ୍ମ ।

ସକ୍ରେଟିସ୍ (ଖ୍ରୀ· ପୂ ୪୬୯—୩୯୯) ଜଣେ ମହାପୁରୁଷ ଓ ଅମର ଶହୀଦ୍ ଭାବେ ସାରା ବିଶ୍ୱ ସକ୍ରେଟିସ୍‌ଙ୍କୁ ଚବିଶ ଶତାବ୍ଦୀ ଧରି ପୂଜା କରି ଆସୁଛି । ପ୍ରତ୍ୟେକ ମହାନ୍ ମଣିଷଙ୍କର ବ୍ୟକ୍ତିତ୍ୱରେ ଗୋଟାଏ ମୌଳିକତା ଥାଏ । ସକ୍ରେଟିସ୍‌ଙ୍କ କ୍ଷେତ୍ରରେ ସତ୍ୟ ଏହାଠାରୁ ଅନେକ କିଛି ଅଧିକ । ସକ୍ରେଟିସ୍ ଇତିହାସର ଅର୍ଦ୍ଧାଶ୍ଚର୍ଯ୍ୟ ପୁରୁଷ ।

ସକ୍ରେଟିସ୍‌ଙ୍କ ପିତା ଜଣେ ଭାସ୍କର୍ଯ୍ୟ ଓ ସେ ନିଜେ ଭାସ୍କର୍ଯ୍ୟ ଭାବେ ଜୀବନ ଆରମ୍ଭ କରିଥିଲେ । ତାଙ୍କର ମାତା ଜଣେ ଧାଈ । ସକ୍ରେଟିସ୍ ପିତାଙ୍କର ବୃତ୍ତିକୁ ଛାଡ଼ି ମାତାଙ୍କର ବୃତ୍ତିକୁ ବଡ଼ ନିଷ୍ଠାର ସହିତ ଗ୍ରହଣ କରିଥିଲେ ! ମାଆ ଗର୍ଭବତୀ ନାରୀର ସନ୍ତାନ ପ୍ରସବ କରାଉଥିଲେ, ପୁଅ ହେଲେ ପୁରୁଷର ଚିନ୍ତାକୁ ଖଲାସ କରୁଥିବା ଧାଈ ! ପ୍ରତିଭାବାନ୍ ଯୁବକ ଥେଇଟିଟସ୍‌ଙ୍କ ସହିତ ଆଲୋଚନା ପ୍ରସଙ୍ଗରେ ସକ୍ରେଟିସ୍ କହିଥିଲେ, "...ଦୈହିକ ଗର୍ଭ-ବେଦନା ସହିତ ମୋର ସମ୍ପର୍କ ନାହିଁ । ମୁଁ ଗର୍ଭବେଦନା ଭୋଗୁଥିବା ମାନସର ଧାଈ ଏବଂ ଜଣେ ଯୁବକର ମାନସ-ସନ୍ତାନ ଭୂତକୁଆ ବା ସତ୍ୟ ନିହିତ ଥିବା ଜୀବନ୍ତ ଶିଶୁ ସେ କଥା ତନ୍ନ ତନ୍ନ ଭାବେ ପରୀକ୍ଷା ପୂର୍ବକ ସ୍ଥିର କରି ଦେବା ମୋ କାମର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଂଶ । ଧାଈ ସହିତ ମୋର ଆଉ ଗୋଟିଏ ସାମଞ୍ଜସ୍ୟ ଅଛି । ମୁଁ ନିଜେ କୌଣସି ଜ୍ଞାନର ଗର୍ଭଧାରୀ ହେବାକୁ ଅକ୍ଷମ । ମୁଁ ଅନ୍ୟକୁ ପ୍ରଶ୍ନ ପଚାରୁଥିଲେ ମଧ୍ୟ ନିଜେ କୌଣସିଟିର ଉତ୍ତର ଜାଣେନା ବୋଲି ମୋତେ ସାଧାରଣତଃ ଯେଉଁ ନିନ୍ଦା କରାଯାଏ ତାହା ଯଥାର୍ଥ । ମୋର ନିଜର କିଛି ଜ୍ଞାନ ନାହିଁ ।"

ପ୍ଲେଟୋଙ୍କ ଥେଇଟିଟସ୍ ଡାଏଲଗ୍‌ରେ ଆମେ ସକ୍ରେଟିସ୍‌ଙ୍କ ତୁଣ୍ଡରୁ ଏହି କଥା ଶୁଣୁ । ଧାଈ-ମାନେ ସାଧାରଣତଃ ମାଆ ହେଉଥିବା ପର୍ଯ୍ୟନ୍ତ ଧାଈକାମ କରନ୍ତି ନାହିଁ ।

ମାନସିକ ସନ୍ତାନ ସକ୍ରେଟିସଙ୍କର ଏଇ ଅଦ୍ଭୁତ ଧାଞ୍ଚ ଶରୀରକୁ ଅବଶ୍ୟ ହେଳା କରୁନ ଥିଲେ । ଶରୀରକୁ ନିରୋଗ ଓ ବଳିଷ୍ଠ କରି ରଖିବା ପ୍ରତି ସେ ଥିଲେ ଖୁବ୍ ଯତ୍ନଶୀଳ । ସକ୍ରେଟିସ୍‌ଙ୍କ ସହିଷ୍ଣୁତା ଅତୁଳନୀୟ । ଯୁଦ୍ଧ ଶିବିରରେ ଅତ୍ୟନ୍ତ ପ୍ରତିକୂଳ ପରିସ୍ଥିତିକୁ ସେ ସହାସ୍ୟ ବଦନରେ ସହ୍ୟ କରୁଥିଲେ । ଏଥେନ୍‌ସ ପାଇଁ ତିନିଥର ସେ ବୀରତ୍ୱର ସହିତ ଲଢ଼ିଛନ୍ତି । ଗୋଟିଏ ଯୁଦ୍ଧରେ ସେ ଆଲ୍‌ସିବିଏଡିଜ୍‌ଙ୍କର ପ୍ରାଣରକ୍ଷା କରିଥିଲେ । ଖ୍ରୀ. ପୂ. ୪୨୨ ଖ୍ରୀଷ୍ଟାବ୍ଦରେ ସ୍ପାର୍ଟା ସହିତ ଯୁଦ୍ଧରେ ସକ୍ରେଟିସ୍ ଶେଷ ପର୍ଯ୍ୟନ୍ତ ଯୁଦ୍ଧକ୍ଷେତ୍ରରୁ ହଟି ନ ଥିଲେ । ସ୍ପାର୍ଟୀୟ ସୈନ୍ୟମାନେ ତାଙ୍କୁ ଘେରିଗଲା ବେଳକୁ ସେ ଏକୁଟିଆ । ସକ୍ରେଟିସ୍ ସେମାନଙ୍କୁ ଏପରି ଚାହିଁଲେ ଯେ ଭୟରେ ସେମାନେ ତାଙ୍କ ପାଖକୁ ଗଲେ ନାହିଁ ! ଯୁଦ୍ଧ ସମୟରେ କ୍ଷୁଧା, କ୍ଳାନ୍ତି ଓ ଥଣ୍ଡାକୁ ସହିନେବା ବିଷୟରେ କେହି ତାଙ୍କର ସମକକ୍ଷ ନ ଥିଲେ ।

ବଞ୍ଚିବାର ସର୍ବନିମ୍ନ ଆବଶ୍ୟକତା ଠାରୁ ସକ୍ରେଟିସ୍ ଅଧିକ ଚାହୁଁ ନ ଥିଲେ । ଏଥେନ୍‌ସର ବଜାର ଘାଟରେ ସାରାଦିନ ବୁଲି ଲୋକଙ୍କ ସହିତ କଥାବାର୍ତ୍ତା କରିବାରେ ତାଙ୍କର ସମୟ ଅତିବାହିତ ହେଉଥିଲା । ସେଇଥିରୁ ତାଙ୍କୁ ମିଳୁଥିଲା ନିର୍ମଳ ଆନନ୍ଦ । ଘରସଂସାର କଥା ବୁଝିବା ବା ପୋଷାକପତ୍ରର ଯତ୍ନ ନେବା ପାଇଁ ତାଙ୍କର ସମୟ ନ ଥିଲା । ସକ୍ରେଟିସ୍‌ଙ୍କ ସ୍ତ୍ରୀ ଜାନ୍‌ଥିପି ଏହି କାରଣରୁ ତାଙ୍କୁ ଗାଳିଗୁଲଜ୍ କରୁଥିଲେ । ସ୍ୱାଭାବିକ୍ କଥା ନୁହେଁ କି ? ମାତ୍ର ସମକାଳୀନ ଏଥେନ୍‌ସବାସୀଙ୍କ ଦୃଷ୍ଟିରେ ସେ ଗୋଟାଏ କଳହପ୍ରିୟା ସ୍ତ୍ରୀ । ସକ୍ରେଟିସ୍ କିନ୍ତୁ ପତ୍ନୀଙ୍କ ଅଭିଯୋଗ ଯଥାର୍ଥ ବୋଲି ସ୍ୱୀକାର କରିଛନ୍ତି ଓ ଶେଷ ପର୍ଯ୍ୟନ୍ତ ଗୃହିଣୀଟି ପ୍ରତି ସହାନୁଭୂତି ଦେଖାଇଛନ୍ତି ।

ଦାରିଦ୍ର୍ୟ ଘୁଞ୍ଚାଇବା ପାଇଁ ସମୟ ନ ଥିବାରୁ ସକ୍ରେଟିସ୍ ଦରିଦ୍ର ଭାବେ ବଞ୍ଚିଥିଲେ—କଠୋର ସନ୍ନ୍ୟାସ ଜୀବନର ଆଦର୍ଶରେ ଅନୁପ୍ରାଣିତ ହୋଇଥିବା ଯୋଗୁ ନୁହେଁ । ଧନୀବନ୍ଧୁଙ୍କ ଘରେ ଦିନେ ଅଧେ ଭଲ ଖିଆପିଆରେ ଯୋଗ ଦେବାରେ ତାଙ୍କର ଆପତ୍ତି ନ ଥିଲା । ପ୍ରଚୁର ମଦ୍ୟପାନ କରି ମାତାଲ ନ ହେବା ତାଙ୍କର ଅନ୍ୟତମ ବୈଶିଷ୍ଟ୍ୟ । ସକ୍ରେଟିସ୍ ଆଲ୍‌ସିବିଏଡିଜ୍‌ଙ୍କର ପ୍ରେମିକ । ସୁଦର୍ଶନ ବାଳକ କାର୍ମିଡିଜ୍‌ଙ୍କୁ ଦେଖି ସକ୍ରେଟିସ୍‌ଙ୍କ କାମନାଗ୍ନି "ପ୍ରଜ୍ୱଳିତ" ହେଉଥିଲା । ମାତ୍ର ସେହି ବାଳକ ଠାରେ କିଛି ମହତ୍ତ୍ୱପୂର୍ଣ୍ଣ ଅଛି କି ନା ଜାଣି ନ ଥିବାରୁ ସେ ନିଜକୁ ସଂଯତ କରୁଥିଲେ । ଏହି ମାମୁଲି ଘଟଣାଟି

ମଧ୍ୟ ସକ୍ରେଟିସ୍‌ଙ୍କର ଅଟଳ ବ୍ୟକ୍ତିତ୍ୱ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରେ । ସତ୍ୟର ସନ୍ତୁଷ୍ଟି ନ ହେବା ପର୍ଯ୍ୟନ୍ତ ( ସତ୍ୟରର କଷଟି ପଥରରେ ପରୀକ୍ଷା କରି କାର୍‌ମିଡିଜ୍‌ର ମହତ୍ତ୍ୱପଣ ନ ଜାଣିଲା ପର୍ଯ୍ୟନ୍ତ ) ଉଗ୍ର କାମନା ସକ୍ରେଟିସ୍‌ଙ୍କ ନିକଟରେ ପଙ୍ଗୁ ।

ଏ ଘଟଣାଟି ଗୋଟିଏ ନମୁନା ମାତ୍ର । ସକ୍ରେଟିସ୍ ସାରାଜୀବନ ଏକନିଷ୍ଠ ଭାବେ ସତ୍ୟରର ଅନୁସରଣ କରିଛନ୍ତି । ପ୍ରାଣ ପଛେ ଯାଇଛି, ସତ୍ୟର ପଥରୁ ହଟି ନାହାନ୍ତି । ସତେକି ବିଧାତା ତାଙ୍କର ସତ୍ୟନିଷ୍ଠା ପରୀକ୍ଷା କରିବାକୁ ତାଙ୍କୁ ପ୍ରାଣଦଣ୍ଡ ଦିଆଇଲେ । ଅକ୍ଲେଶରେ ପ୍ରାଣ ବଞ୍ଚାଇବାର ବାଟ ଖୋଲା ଥିଲେ ମଧ୍ୟ ସତ୍ୟରର ଅନୁସରଣ କରି ସକ୍ରେଟିସ୍ ମୃତ୍ୟୁଦଣ୍ଡ ବରଣ କରିନେଲେ ।

ସକ୍ରେଟିସ୍ ପ୍ରାଣବଳି ଦେଲେ କାହିଁକି ? କୌଣସି ମହାନ୍ ସତ୍ୟ ପାଇଁ ନୁହେଁ । ଯେଉଁ ବ୍ୟକ୍ତି ନିଜକୁ ଅଜ୍ଞ ବୋଲି ଘୋଷଣା କରୁଥିଲେ, ସେ ଗୋଟାଏ ନୂତନ ସତ୍ୟ ପାଇଁ ପ୍ରାଣ ଦେବାର ପ୍ରଶ୍ନ ଉଠୁନାହିଁ । କଥା ହେଉଛି, ସକ୍ରେଟିସ୍‌ଙ୍କୁ ଗୋଟିଏ ଦୈବ ଇଙ୍ଗିତ ମିଳିଲା—ଅଜ୍ଞ ସକ୍ରେଟିସ୍ ଠାରୁ ଅଧିକ ଜ୍ଞାନୀ ଜଣେ ଗ୍ରୀକ୍‌କୁ ଖୋଜି ବାହାର କରିବା । ଦେଶ ଚଳାଉଥିବା ବିଜ୍ଞ ନେତାଙ୍କ ଠାରୁ ଆରମ୍ଭ କରି ଯଶସ୍ୱୀ ଜ୍ଞାନୀ ପଣ୍ଡିତଙ୍କୁ ପରୀକ୍ଷା କରି ସକ୍ରେଟିସ୍ ଦେଖିଲେ, ଯେମାନେ ପ୍ରତ୍ୟେକ ତାଙ୍କ ଠାରୁ ବଳି ଅଧମ ଅଜ୍ଞ !

ବିଷୟଟିର ଆରମ୍ଭ ଏହିପରି—ଥରେ ସକ୍ରେଟିସ୍‌ଙ୍କର ଜଣେ ଗୁଣମୁଗ୍ଧ ବନ୍ଧୁ ଡେଲ୍‌ଫାଇକୁ ଦେବୀ ଦର୍ଶନ କରିବାକୁ ଯାଇଥିଲେ । ଗ୍ରୀସ୍‌ରେ ସକ୍ରେଟିସ୍‌ଙ୍କ ଠାରୁ ଅଧିକ ବିଜ୍ଞ କିଏ ଅଛି ବୋଲି ସେ ଦେବପୀଠରେ ପ୍ରଶ୍ନ କରିଥିଲେ । ଉତ୍ତର ମିଳିଲା—କେହି ନାହାନ୍ତି । ଏ କଥା ଶୁଣି ସକ୍ରେଟିସ୍‌ଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେ ତ ଅଜ୍ଞ ! ଜଣେ ବିଜ୍ଞ ବ୍ୟକ୍ତି ଖୋଜି ବାହାରି କରି ଦେବତାଙ୍କୁ ପଚାରିବାକୁ ପଡ଼ିବ ତାଙ୍କ କଥାର ତାତ୍ପର୍ଯ୍ୟ । ଏହି ଅଭିଯାନରେ ବାହାରି ସକ୍ରେଟିସ୍ ଆବିଷ୍କାର କଲେ, ସୁନାମଧନ୍ୟ ବିଜ୍ଞ ବ୍ୟକ୍ତିମାନେ ପ୍ରକୃତରେ ତାଙ୍କ ଠାରୁ ଅଜ୍ଞ । ସେ ଅଜ୍ଞ—ଏଇ ଗୋଟିଏ କଥା ତ ଜାଣନ୍ତି । କିନ୍ତୁ ମୂଢ଼ମାନେ ସେତିକି ଜାଣନ୍ତି ନାହିଁ ! କିଛି ନ ଜାଣି ଆପଣାକୁ ବିଜ୍ଞ ମନେ କରିବା କି ମୂଢ଼ତା !

ଏହା ହେଉଛି ସକ୍ରେଟିସୀୟ ବିଡ଼ମ୍ବନା (irony)। ସକ୍ରେଟିସ୍ ହୃଦୟଙ୍ଗମ କଲେ ଯେ ପ୍ରକୃତରେ ସେ ଅନ୍ୟମାନଙ୍କଠାରୁ ବିଜ୍ଞ । ସେ ମୂର୍ଖ—ଏଇ ଗୋଟିଏ କଥା ତାଙ୍କୁ ଠିକ୍ ଜଣା । ଅନ୍ୟମାନଙ୍କୁ ସେତକ ଜଣା ନାହିଁ । ମୂର୍ଖମାନେ ନିଜକୁ ଜ୍ଞାନୀ ଧରି ନେଇ ନିଶ୍ଚିନ୍ତରେ କାଳାତିପାତ କରୁଛନ୍ତି !

ହଟ୍ ବଜାର ଉପରେ ଏଥେନ୍ସର ଜ୍ଞାନୀ, ମାନୀ, ପଦସ୍ଥ ବ୍ୟକ୍ତିମାନେ ସକ୍ରେଟିସ୍‌ଙ୍କ ଠାରୁ ମହାମୂର୍ଖ ଉପାଧି ପାଇବା ସେମାନଙ୍କ ପକ୍ଷରେ ଆଦୌ ପ୍ରୀତିକର ଅନୁଭୂତ ନ ଥିଲା । ସେମାନେ ସକ୍ରେଟିସ୍‌ଙ୍କ ଉପରେ ରାଗ ରଖିଲେ ଏବଂ ସକ୍ରେଟିସ୍ ଦେବଦେବୀଙ୍କୁ ମାନନ୍ତି ନାହିଁ ଓ ଯୁବକମାନଙ୍କୁ ବିପଥଗାମୀ କରୁଛନ୍ତି ବୋଲି ଯେତେବେଳେ ତାଙ୍କ ବିରୁଦ୍ଧରେ ଅଭିଯୋଗ ଆସିଲା, ସେତେବେଳେ ସେମାନେ ରାଗ ଶୁଝାଇବାର ଗୋଟିଏ ସୁଯୋଗ ପାଇଗଲେ । ବିଚାରାଳୟରେ ସକ୍ରେଟିସ୍‌ଙ୍କୁ ପ୍ରାଣଦଣ୍ଡ ମିଳିଲା ।

ପାଞ୍ଚଶହ ବିଚାରକ ବିଶିଷ୍ଟ ଜନତା ଅଦାଲତରେ ସକ୍ରେଟିସ୍‌ଙ୍କ ବିଚାର ହୋଇଥିଲା । ବିଚାରାଳୟରେ ଆତ୍ମପକ୍ଷ ସମର୍ଥନ କରି ଲଢ଼ିବାବେଳେ ସକ୍ରେଟିସ୍ ତାଙ୍କର ବିଚାର ନିଷ୍ଠା ଦେଖାଇଛନ୍ତି । ବିଚାରକମାନେ ଭୋଟ ବା ଲଟେରୀରେ ବଛା ଯାଇଥିବା ସାଧାରଣ ନାଗରିକ—ଅଭିଜ୍ଞ ଆଇନଜ୍ଞ ନୁହନ୍ତି । ପୁଣି ସେ କାଳର ବିଚାରାଳୟକୁ ଆଧୁନିକ ଅଦାଲତ ପରିବର୍ତ୍ତେ ପଞ୍ଚାୟତ କହିବା ଠିକ୍ । ସେଠି ବିଚାରକମାନେ ଦୋଷୀଙ୍କୁ ବ୍ୟକ୍ତିଗତ ଭାବେ ଜାଣିଥିଲେ ଓ ଆଇନ୍‌ର ସୀମା ଭିତରେ ଆବଦ୍ଧ ନ ରହି ସବୁ କଥା ବିଚାରକୁ ନେଉଥିଲେ । ମାତ୍ର ସକ୍ରେଟିସ୍ ସେମାନଙ୍କ ଭାବାବେଗ ଉଦ୍ରେକ କରିବାକୁ ଚେଷ୍ଟା କରିନାହାନ୍ତି । ଓଲଟି ରୋକ୍‌ଠୋକ୍ କଥା କହି ସେମାନଙ୍କୁ ଉତ୍ତେଜିତ କରିଛନ୍ତି । ପ୍ରଥମ ଥର ଭୋଟରେ ତାଙ୍କ ମୃତ୍ୟୁଦଣ୍ଡ ସପକ୍ଷରେ ୨୮୦ ଓ ବିପକ୍ଷରେ ୨୨୦ ଜଣ ବିଚାରକ ମତ ଦେଲେ । ଏଥେନ୍ସର ଆଇନ୍ ଅନୁସାରେ ଦଣ୍ଡାଦେଶ ପରେ ଦୋଷୀକୁ ଆଉ ଥରେ କହିବାର ସୁଯୋଗ ଦିଆଯାଏ । ଏହି ସୁଯୋଗରେ ଦୋଷୀ ବିଚାରକଙ୍କୁ ଅନୁନୟ ହୁଏ ଓ ନିଜପାଇଁ କୋହଳ ଦଣ୍ଡର ପ୍ରସ୍ତାବ ଦିଏ । ଦୋଷୀଆଡ଼ୁ କୋହଳ ଦଣ୍ଡର ପ୍ରସ୍ତାବ ଆସିବା ଆଇନ ସମ୍ମତ । ସାଧାରଣ ଲୋକଙ୍କ ପରି ବିଚାରକଙ୍କୁ ଅନୁନୟ ହେବା ସକ୍ରେଟିସ୍‌ଙ୍କ ଠାରୁ ଆଶା କରି-ଯାଏନା । ତେବେ ସେ ଗୋଟିଏ କୋହଳ ଦଣ୍ଡ ପାଇଁ ଅନୁରୋଧ କରିଥିଲେ । ପ୍ରତ୍ୟେକ

ନଗରବାସୀଙ୍କୁ ବିଜ୍ଞ ଓ ଉତ୍ତମ ବ୍ୟକ୍ତି କରିବା ପାଇଁ ସେ ଅବିରାମ ଚେଷ୍ଟା କରୁଥିବାରୁ ଏହାର ଯଥାଯୋଗ୍ୟ ସମ୍ମାନ ସ୍ୱରୂପ ନଗରର ପ୍ରେସିଡେଣ୍ଟ ହଲ୍‌ରେ ତାଙ୍କର ଚିତ୍ରପଟ ରଖାଯାଉ ! (ପ୍ରେସିଡେଣ୍ଟ ହଲ୍‌ରେ ଏଥେନ୍ସର ଯୋଗ୍ୟ ସନ୍ତାନଙ୍କର ଚିତ୍ର ସ୍ଥାନ ପାଏ)— ପ୍ରାଣଦଣ୍ଡ ପରିବର୍ତ୍ତେ ତାଙ୍କୁ ଏହି ପୁରସ୍କାର ଦେବାକୁ ସକ୍ରେଟିସ୍ ପ୍ରସ୍ତାବ ଦେଇଥିଲେ ।

ଦ୍ୱିତୀୟ ଥର ମତ ଗ୍ରହଣରେ ସକ୍ରେଟିସ୍‌ଙ୍କ ମୃତ୍ୟୁଦଣ୍ଡ ପ୍ରସ୍ତାବ ଅଧିକ ଭୋଟରେ ଗୃହୀତ ହୋଇଗଲା । କିନ୍ତୁ ବା ବାହୁଲ୍ୟ ପୁରସ୍କାର ଦାବୀ କରି ବିଚରା ସାଧାରଣ ବିଚାରକଙ୍କ ମୁଣ୍ଡ ଖରାପ କରିବା ପରିବର୍ତ୍ତେ ନିର୍ବାସନ ଦଣ୍ଡ ବା ମୋଟା ଅଙ୍କର ଜୋରିମାନା (ଏଥିପାଇଁ ତାଙ୍କର ବନ୍ଧୁମାନେ ପ୍ରବର୍ତ୍ତାଇଥିଲେ) ଦେବାକୁ ଆନ୍ତରିକ ପ୍ରସ୍ତାବ ଦେଇ ସକ୍ରେଟିସ୍ ଅକ୍ଳେଶରେ ପ୍ରାଣରକ୍ଷା କରି ପାରିଥାନ୍ତେ ।

ଦଣ୍ଡାଦେଶ ଓ ତାହା କାର୍ଯ୍ୟକାରୀ ହେବାର ବ୍ୟବଧାନ ଗୋଟିଏ ମାସ ଭିତରେ ସକ୍ରେଟିସ୍ ଇଚ୍ଛା କରିଥିଲେ ବନ୍ଦିଶାଳାରୁ ପଳାଇବାରେ କୌଣସି ପ୍ରତିବନ୍ଧକ ନ ଥିଲା । ତାଙ୍କ ଆଗରେ ଆନାକ୍ସଗୋରସ୍‌ଙ୍କ ଦୃଷ୍ଟାନ୍ତ ଥିଲା । ସକ୍ରେଟିସ୍‌ଙ୍କର ଅନୁରକ୍ତ ଧନୀ ବନ୍ଧୁ କ୍ରିଟୋ ବନ୍ଦିଶାଳାର ଜଗୁଆଳଙ୍କୁ ଲାଞ୍ଚ ଦେଇ ତାଙ୍କୁ ଏଥେନ୍ସ ସୀମା ପାରି କରାଇଦେବାର ସବୁ ବ୍ୟବସ୍ଥା କରିଥିଲେ । ମାତ୍ର ପ୍ରାଣରକ୍ଷା କରିବା ସପକ୍ଷରେ ସକ୍ରେଟିସ୍ ଗୋଟିଏ ଯୁକ୍ତି ଖୋଜି ପାଇଲେ ନାହିଁ ! ନ୍ୟାୟାଳୟର ରାୟକୁ ମାନିନେବା ଉଚିତ ମଣୁଥିବାରୁ ପ୍ରାଣଦଣ୍ଡକୁ ଗ୍ରହଣ କରି ହେମ୍‌ଲକ୍ ବିଷପାନ କରିଥିଲେ ।

ମୃତ୍ୟୁ ପ୍ରତି ସକ୍ରେଟିସ୍‌ଙ୍କର କୌଣସି ଭୟ ନ ଥିଲା । ଏହି କଥାଟି ତାଙ୍କର ଅନୁପମ ବ୍ୟକ୍ତିତ୍ୱକୁ ସ୍ପଷ୍ଟ କରିଦିଏ । ସେ ମୃତ୍ୟୁକୁ ଭୟ କରୁ ନ ଥିଲେ, ଯେହେତୁ ମୃତ୍ୟୁକୁ ଭୟ କରିବାର କୌଣସି ଈଶ୍ୱର ସମ୍ମତ କାରଣ ନାହିଁ ! ଅଜଣା ମୃତ୍ୟୁ ଇଲାକାରେ ପ୍ରବେଶ କରିବା ପାଇଁ ମଣିଷର ଭୟ ସହଜାତ । କେବଳ ମଙ୍ଗଳମୟ ପରମେଶ୍ୱରଙ୍କ ଠାରେ ଅଗାଧ ବିଶ୍ୱାସ ଥିବା ପରମ ଭକ୍ତ ମୃତ୍ୟୁ ଭୟରୁ ମୁକ୍ତି ପାଇପାରେ । ସକ୍ରେଟିସ୍ ଭକ୍ତ (ତାଙ୍କୁ ଚିହ୍ନିବା ବଡ଼ ଜଟିଳ) ନୁହନ୍ତି । ତଥାପି ଈଶ୍ୱର ନୌକାରେ ବସି ଭବଭୟରୁ ପାରି ହୋଇଗଲେ !! ବିଭୁ ପାଦରେ ଲୟ ରଖି ଭବସାଗର ପାରି ହୋଇଥିବା ବ୍ୟକ୍ତିଙ୍କ ସଂଖ୍ୟା ମୁଷ୍ଟିମେୟ, କିନ୍ତୁ ଈଶ୍ୱର ନୌକାରେ ତାହା ପାରିହେବାରେ ସକ୍ରେଟିସ୍ ଅଦ୍ୱିତୀୟ !

ଆତ୍ମାର ଅମରତ୍ୱ ବିଷୟରେ ସକ୍ରେଟିସ୍ ମୃତ୍ୟୁ ପୂର୍ବରୁ ଶିଷ୍ୟ ଓ ବନ୍ଧୁମାନଙ୍କ ସହିତ ଆଲୋଚନା କରୁଥିଲେ । ଆତ୍ମା ଅମର ବୋଲି ଯୁକ୍ତିତର୍କ ବଳରେ ସେ ସେମାନଙ୍କୁ ବୁଝାଇଛନ୍ତି । ମାତ୍ର ଏହା ତର୍କରର ସୀମା ବହିର୍ଭୂତ ଏବଂ ବିଶ୍ୱାସ ଓ ଉପଲବ୍ଧିର ବିଷୟ ବୋଲି ସୂଚନା ମଧ୍ୟ ଦେଇନାହାନ୍ତି ।

ସକ୍ରେଟିସ୍ ନିଶ୍ଚିତ ଭାବେ ନାସ୍ତିକ ନୁହନ୍ତି । ତେବେ ଗ୍ରୀକ୍ ଦେବଦେବୀଙ୍କ ବିଷୟରେ ସେ ସଂଶୟୀ ଥିଲେ । କଥାବାର୍ତ୍ତା ଭିତରେ ଈଶ୍ୱରଙ୍କ ପ୍ରସଙ୍ଗ କ୍ୱଚିତ ଉଠାଉଥିଲେ । "ଦେବତାମାନଙ୍କ ବିଷୟରେ ଆମେ କିଛି ଜାଣୁନା" ବୋଲି ସେ କହିଛନ୍ତି (ଫେଡ଼ିଲସ୍ ଡାଏଲ୍‌ଗ—ପ୍ଳେଟୋ) । ତାଙ୍କର ସ୍ପଷ୍ଟ ମତ ଯେ, ଦେବତାମାନଙ୍କ ସମ୍ପର୍କରେ କୌଣସି ବାଦ ବିବାଦ ଅନାବଶ୍ୟକ । କାରଣ ମଣିଷର ନିଜର ଏତେ ସମସ୍ୟା ଥାଉ ଥାଉ ସ୍ୱର୍ଗ ବ୍ୟାପାରରେ ସେ କାହିଁକି ମୁଣ୍ଡ ପୂରାଇବ ? ଦେବଦେବୀଙ୍କ ବ୍ୟାପାରରେ ନିଜର ଅଜ୍ଞତା ସ୍ୱୀକାର କରି "ଦେଶର ବିଧିବିଧାନ ଅନୁସାରେ" ଜଣେ ସେ ଦେବତାମାନଙ୍କୁ ପୂଜା କରିବା ଉଚିତ୍ । (ମେମୋରେବିଲିଆ, ବୋଲି ସେ କହିଥିଲେ ବିଚାରାଳୟରେ ସକ୍ରେଟିସ୍ କହିଥିଲେ, ପରଲୋକ ସମ୍ବନ୍ଧରେ ତାଙ୍କର କୌଣସି ଜ୍ଞାନ ନାହିଁ—ଏହି କାରଣରୁ ସେ ଅନ୍ୟମାନଙ୍କ ଠାରୁ ବିଜ୍ଞ ।

ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ସକ୍ରେଟିସ୍ ଆଗ୍ରହୀ ଲୋକଙ୍କ ସହିତ ନାନା ମାନବୀୟ ବ୍ୟାପାରର ଆଲୋଚନାରେ ବୁଡ଼ି ରହୁଥିଲେ । ନ୍ୟାୟ କଅଣ, ଅନ୍ୟାୟ କ'ଣ; କେଉଁଟା ପବିତ୍ର, କେଉଁଟା ଅପବିତ୍ର; ସାହସୀ କିଏ, ଉତ୍କୃଷ୍ଟ ବ୍ୟକ୍ତି କାହାକୁ କହିବା, ଦେଶ କିପରି ଚଳିବା ଉଚିତ୍, ଉତ୍ତମ ଶାସକର କି ପ୍ରକାର ଦକ୍ଷତା ଓ ଜ୍ଞାନ ରହିବା ଆବଶ୍ୟକ ପ୍ରଭୃତି ଥିଲ ତାଙ୍କ ଆଲୋଚନାର ବିଷୟବସ୍ତୁ । ଈଶ୍ୱରଙ୍କ ସ୍ୱରୂପ କିପରି ବା ଆମେ ତାଙ୍କୁ ପାଇବା ପାଇଁ କଅଣ କରିବା ?—ସକ୍ରେଟିସ୍ ଏପରି ପ୍ରଶ୍ନର ପାଖ ମାଡ଼ି ନାହାନ୍ତି । ତାଙ୍କ ଆଲୋଚନାର ବିଷୟବସ୍ତୁ ପ୍ରତି ଧ୍ୟାନ ଦେଲେ ସକ୍ରେଟିସ୍‌ଙ୍କୁ ସଫିଷ୍ଟଙ୍କର ସମଧର୍ମୀ ବୋଲି କୁହାଯିବ । ସକ୍ରେଟିସ୍‌ଙ୍କ ପାଇଁ ଦର୍ଶନ ହେଉଛି ନୈତିକତା ଓ ରାଜନୀତି—ମେଟାଫିଜିକ୍ସ ବା ଅଧିଭୌତିକ ନୁହେଁ ।

ସକ୍ରେଟିସ୍ ଯେ ବସ୍ତୁରଭୂମି ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ଛିଡ଼ା ହୋଇଥିଲେ ତାହା ତାଙ୍କର ଗୋଟିଏ ମୁଖ୍ୟ ଚିନ୍ତାରୁ ବୁଝିହୁଏ । ସେ ଜୋର୍‌ଦେଇ କହନ୍ତି, ମଣିଷର

ସମସ୍ତ ଭୁଲ୍ ଅଜ୍ଞାନ ଜନିତ । ଭିନ୍ନ ଭାଷାରେ, ମଣିଷର ଭୁଲ୍ ଅନିଚ୍ଛାକୃତ । ଜ୍ଞାନ ଥାଇ କେହି ଭୁଲ୍ କରି ପାରେନା । କାରଣ ଭୁଲ୍ କରି ନିଜ ଅମଙ୍ଗଳକୁ କିପରି କିଏ ଡାକି ଆଣିବ ? ତେଣୁ ଯିଏ ଯାହା ଭୁଲ୍ କରୁଛି, ତାହା ଅଜ୍ଞାନରୁ କରୁଛି । ସକ୍ରେଟିସ୍‌ଙ୍କ ଯୁକ୍ତିର ପ୍ରତିଯୁକ୍ତି ନାହିଁ । ମାତ୍ର ଆମର ଅଭିଜ୍ଞତା ଅନ୍ୟ ପ୍ରକାର ନୁହେଁ କି ? ସକାଳ ଛଅଟାରେ ବିଛଣା ଛାଡ଼ିବା ଭଲ ବୋଲି ମୁଁ ଜାଣେ, କିନ୍ତୁ ଉଠୁଛି ଆଠଟାରେ । ସକ୍ରେଟିସ୍ କହିବେ, ଏ କଥା ଅସମ୍ଭବ । ଛଅଟାରେ ଉଠିବା ଭଲ ବୋଲି ପ୍ରକୃତରେ ତମେ ଜାଣ ନାହିଁ । ତମ ପାଇଁ 'ଛଅଟାରେ ଉଠିବା ଭଲ' ଗୋଟାଏ ଶୁଣା କଥା, ଉଡ଼ା ଖବର । ଏ ବିଷୟରେ ତମର ଜ୍ଞାନର ଅଭାବ ରହିଛି । ଶ୍ରେଷ୍ଠରୁ ବଡ଼ ପର୍ଯ୍ୟନ୍ତ ମଣିଷ ଯେତେ ଭୁଲ କରୁଛି ସବୁ ଅଜ୍ଞାନବଶତ । ଏ ମତରେ ସକ୍ରେଟିସ୍ ଅଟଳ । ପ୍ରକୃତ ଜ୍ଞାନ ଥିଲେ ମନ୍ଦ ଅଭ୍ୟାସ (ଆଠଟାରେ ଉଠିବା), ଇନ୍ଦ୍ରିୟ ଲାଳସା (ଧରନ୍ତୁ ମଦ୍ୟପାନ) ବା କାମନା ବାସନା ଦ୍ୱାରା ଚାଳିତ ହୋଇ ଭୁଲ ବାଟରେ କେହି ଯିବ ନାହିଁ । "ଧର୍ମ କଅଣ ମୁଁ ଜାଣେ କିନ୍ତୁ ପ୍ରବୃତ୍ତି ..." ଏପରି କଥା ଶୁଣି ସକ୍ରେଟିସ୍ ଗମ୍ଭୀର ହୋଇ କହିବେ, "ତମର ଧର୍ମଜ୍ଞାନ ଥିଲେ ତମେ ଧର୍ମପଥରେ ଚାଲିବ । ପ୍ରବୃତ୍ତି ଜ୍ଞାନ ନିକଟରେ ପଙ୍ଗୁ ।" ଆମେ ଜାଣୁ ସାଧାରଣ ଲୋକଙ୍କ ଠାରୁ ଆରମ୍ଭ କରି ଜ୍ଞାନୀ ପଣ୍ଡିତଙ୍କ ପର୍ଯ୍ୟନ୍ତ ସମସ୍ତେ ସକ୍ରେଟିସ୍‌ଙ୍କ ବିପକ୍ଷରେ । ମାତ୍ର ଏକୁଟିଆ ଗୋଟିଏ ପଟେ ନିଜ ବିଶ୍ୱାସସିଦ୍ଧାନ୍ତରେ ସେ ଯେପରି ଅଟଳ ଭାବେ ଦଣ୍ଡାୟମାନ ତାହା ଆମକୁ ବିସ୍ମିତ କରେ । ସକ୍ରେଟିସ୍‌ଙ୍କ ଉକ୍ତିର ଅକାଟ୍ୟ ପ୍ରମାଣ ସେ ନିଜେ । ଜୀବନରେ ସେ କେବେ ନିଜ ବିଶ୍ୱାସରୁ ଟଳି ନାହାନ୍ତି । ଏଥିରେ ସନ୍ଦେହ ନାହିଁ ଯେ, ମଣିଷର ଭୁଲ ଅଜ୍ଞାନଜନିତ ବୋଲି କହିବା ପାଇଁ ସେ ଅଧିକାରୀ । କି ଅଦ୍ଭୁତ ପୁରୁଷ !

ସକ୍ରେଟିସ୍ ଦୃଢ଼ ମତ ପ୍ରକାଶ କରିଥିଲେ ଯେ ନ୍ୟାୟପରାୟଣତା, ସାଧୁତା, ସାହସ, ଇତ୍ୟାଦି ଗୋଟିଏ ଗୋଟିଏ ଉତ୍କୃଷ୍ଟତା (Virtue) ନୁହନ୍ତି । ଉତ୍କୃଷ୍ଟତା ଏକ ଓ ଅଖଣ୍ଡ -- ତାହା ହେଉଛି ଜ୍ଞାନ । ଜ୍ଞାନ ଥିଲେ ମଣିଷ ସାହସୀ; ସାଧୁ, ନ୍ୟାୟବାନ୍ ହେବ । ଏ ବିଷୟରେ ଯୁକ୍ତିରେ କେହି ତାଙ୍କୁ ପରାସ୍ତ କରି ପାରୁ ନ ଥିଲେ ।

ପରମ ଉତ୍ସାହ ଓ ନିଷ୍ଠା ସହକାରେ ପ୍ରାଚୀନ ଯୁଗର ଋଷିପ୍ରତିମ ସକ୍ରେଟିସ୍ ଲୋକଙ୍କ ସହିତ ମିଶି ଆଲୋଚନା କରୁଥିଲେ ଜାଣିଲା ମାତ୍ରେ ଭାରତୀୟ ମନ ଆଗକୁ ଡେଇଁପଡ଼ି ସିଦ୍ଧାନ୍ତ କରିନିଏ ଯେ ଆତ୍ମା, ପରମାତ୍ମା, ଭବଦୁଃଖର କାରଣ ଓ ତହିଁରେ ମୁକ୍ତି ପାଇବାର

ଉପାୟ ପ୍ରଭୃତି ବିଷୟରେ ସେ ଲୋକଙ୍କୁ ଉପଦେଶ ଦେଉଥିବେ । ସକ୍ରେଟିସ୍‌ଙ୍କୁ ତଥା ଭାରତ ଓ ଗ୍ରୀସ୍ ମଧ୍ୟରେ ପାର୍ଥକ୍ୟକୁ ବୁଝିବା ପାଇଁ ଆମକୁ ମନରୁ ଏପରି ବଦ୍ଧମୂଳ ଧାରଣା ପୋଛିବାକୁ ପଡ଼ିବ । ଜୀବନ ସାରା ଲୋକଙ୍କ ସହିତ ଆଲୋଚନାରେ ବ୍ୟାପୃତ ରହିବାର କାରଣ ସମ୍ପର୍କରେ ସକ୍ରେଟିସ୍ ଆପୋଲଜିରେ କହିଛନ୍ତି, "ବିଶ୍ଳେଷିତ ହୋଇ ନ ଥିବା ଜୀବନ ମଣିଷର ଅଯୋଗ୍ୟ ।" ଆତ୍ମ ସମୀକ୍ଷା ଦ୍ୱାରା ମଣିଷର ଜୀବନ ମହତ୍ତର ହୁଏ । ନିଜର ଅଜ୍ଞତା ପଦାରେ ପଡ଼ିଥିବାରୁ ଅନେକ ବିଜ୍ଞମନ୍ୟ ବ୍ୟକ୍ତି ସକ୍ରେଟିସ୍‌ଙ୍କ ଉପରେ ଭାରି ରୁଷ୍ଟ ହୋଇଯାଉ ଥିଲେ । ମାତ୍ର ତାଙ୍କୁ ଅତ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନ କରୁଥିବା ଲୋକଙ୍କର ମଧ୍ୟ ଅଭାବ ନ ଥିଲା । ପ୍ରକୃତ ଜ୍ଞାନ ପିପାସୁ ସକ୍ରେଟିସ୍‌ଙ୍କ ସହିତ କଥାବାର୍ତ୍ତା କରି ନିଜର ଭୁଲ ଭ୍ରାନ୍ତି ସମ୍ବନ୍ଧରେ ସଚେତନ ହେବା ଫଳରେ ତା ଭିତରେ ଅସନ୍ତୋଷ ଜାତ ହେଉଥିଲା । ଜ୍ଞାନଲାଭ କରିବାକୁ ସେ ବ୍ୟାକୁଳ ହୋଇ ଉଠୁଥିଲା । ସକ୍ରେଟିସ୍‌ଙ୍କ ସାହାଯ୍ୟ ଏତିକରେ ସୀମିତ । ସେ ଜ୍ଞାନଦାତା ନୁହନ୍ତି । ତାଙ୍କର ଦୃଢ଼ ମତ ଯେ ପ୍ରତ୍ୟେକ ବ୍ୟକ୍ତିର ଅନ୍ତରରେ ଜ୍ଞାନ ଲୁକ୍‌କାୟିତ ।

ପ୍ଲେଟୋଙ୍କର ଆଦ୍ୟ ରଚନା-ଗୁଡ଼ିକ ବିଶେଷତଃ ବିଚାରାଳୟରେ ସକ୍ରେଟିସ୍‌ଙ୍କ କଥାକୁ ଲିପିବଦ୍ଧ କରିଥିବା ଆପୋଲଜି ଡାଏଲଗ୍‌ରୁ ତାଙ୍କର ନିଖୁଣ ଚିତ୍ର ମିଳେ । ସକ୍ରେଟିସ୍ ସମ୍ପର୍କରେ ଜାଣିବାର ଅନ୍ୟ ଏକ ଉତ୍ସ ଜେନୋଫୋନ୍‌ଙ୍କ ମେମୋରେବିଲିଆ ।

ସକ୍ରେଟିସ୍‌ଙ୍କ ପାଇଁ ଜ୍ଞାନ ଓ ନୈତିକତା ମଧ୍ୟରେ ଅଭେଦ ସମ୍ପର୍କ ( ଠିକ୍ ଜ୍ଞାନ ଥିଲେ ମଣିଷ ଠିକ୍ ବାଟରେ ଚାଲିବ ) । ସକ୍ରେଟିସ୍‌ଙ୍କ ସଂସ୍ପର୍ଶରେ ଆସୁଥିବା ବନ୍ଧୁ ଓ ଶିଷ୍ୟ-ମାନେ ଏକ ମହତ୍ତର ଜୀବନ ବଞ୍ଚିବା ପାଇଁ ତାଙ୍କ ଠାରୁ ପ୍ରେରଣା ପାଉଥିଲେ । ସର୍ବଦା ନୈତିକତା ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରୁଥିବା ଯୋଗୁ ନୁହେଁ, ମଣିଷର ବିବେକକୁ ଜାଗ୍ରତ କରି ତାକୁ ଏକ ଉଚ୍ଚତର ସୋପାନକୁ ଉଠାଇ ନେଉଥିବାର କ୍ଷମତା ଯୋଗୁ ସେ ଜଗତରେ ମହର୍ଷିର ସମ୍ମାନ ପାଇଛନ୍ତି । ନ୍ୟାୟ ପଥରେ ଚଳୁ ନଥିବା ତାଙ୍କର ସଙ୍ଗୀ ଆଲ୍‌ସିବିଏଡିଜ୍ ଧରାପଡ଼ିବା ଭୟରେ ସକ୍ରେଟିସ୍‌ଙ୍କ ଠାରୁ ଦୂରେଇ ରହନ୍ତି । ଆଗାଥନ୍‌ଙ୍କ ଆୟୋଜିତ ସିମ୍ପୋଜିୟମ୍‌ରେ ଅର୍ଦ୍ଧମାତାଲ୍ ଆଲ୍‌ସିବିଏଡିଜ୍ ସକ୍ରେଟିସ୍‌ଙ୍କୁ ଦାବୁଡ଼ି ଯାଇ ଯେପରି

ସକ୍ରେଟିସ୍ କୌଣସି ଶିଷ୍ୟ ଗ୍ରହଣ କରୁ ନ ଥିଲେ । ମାତ୍ର ତାଙ୍କର କଥା ଶୁଣିବାକୁ ଅନେକ ଯୁବକ ତାଙ୍କ ପିଛା ପଡ଼ିଥିଲେ ।

ଯେବେ ତାଙ୍କର ଦୋଷ ସ୍ୱୀକାର କରିଛନ୍ତି, ତାହା ବଡ଼ ମର୍ମସ୍ପର୍ଶୀ । ସକ୍ରେଟିସ୍‌ଙ୍କୁ ସମ୍ବୋଧନ କରି ସେ କହିଛନ୍ତି, "ପେରିକ୍ଲିଜ୍ ଓ ଅନ୍ୟସବୁ ବିରାଟ ବାଗ୍ମୀମାନଙ୍କୁ ମୁଁ ଶୁଣିଛି ଏବଂ ସେମାନେ ଅତ୍ୟନ୍ତ ବାକ୍‌ପଟୁ ବୋଲି ମୁଁ ଭାବୁଥିଲି; କିନ୍ତୁ ଆପଣଙ୍କ ପରି କେହି ମୋତେ ପ୍ରଭାବିତ କରିନାହାନ୍ତି । ସେମାନେ କେବେ ମୋର ସମୁଦାୟ ଅନ୍ତରାତ୍ମାକୁ ଓଲଟ ପାଲଟ କରି ସତେ ଯେପରି ମୁଁ ନୀଚତମ ଠାରୁ ନୀଚ—ସେ କଥା ଅନୁଭବ କରିବା ଅବସ୍ଥାକୁ ମୋତେ ଆଣି ପାରି ନାହାନ୍ତି । ମାତ୍ର ଏହି ଉତ୍ତର ଯୁଗର ମାର୍ସିଆସ୍ ( ଗ୍ରୀସ୍‌ର ବିଖ୍ୟାତ ବଂଶୀବାଦକ । ତାଙ୍କ ବଂଶୀବାଦନରେ ଲୋକେ ମୋହିତ ହେଉଥିଲେ । ସକ୍ରେଟିସ୍‌ଙ୍କୁ ମାର୍ସିଆସ୍‌ଙ୍କ ସହିତ ତୁଳନା କରାଯାଇଛି ) ଅନେକବାର ମୋତେ ଏପରି ମାନସିକ ଅବସ୍ଥାରେ ପହଞ୍ଚାଇଛନ୍ତି ଯେ, ମୁଁ ଯେପରି ଜୀବନ ଯାପନ କରୁଛି ଆଉ ଅଧିକ କାଳ ସେପରି ପାରିବି ନାହିଁ ବୋଲି ଅନୁଭବ କରୁଛି । ମୋର ଦୃଢ଼ ବିଶ୍ୱାସ ତାଙ୍କୁ ଏହି ମୁହୂର୍ତ୍ତରେ ଶୁଣିଲେ ମୁଁ ପୁନର୍ବାର ଠିକ୍ ସେହିପରି ଅନୁଭବ କରିବି—ଏହା ନିରୋଧ କରିବା ମୋ କ୍ଷମତା ବାହାରେ । ସେ ମୋତେ ସ୍ୱୀକାର କରାନ୍ତି, ରାଜନୀତିରେ ବ୍ୟସ୍ତ ରହିବା ଦ୍ୱାରା ଯେଉଁ ବିଷୟଗୁଡ଼ିକ ପ୍ରତି ଯତ୍ନଶୀଳ ହେବାକୁ ମୋର ଅନ୍ତରାତ୍ମା ବ୍ୟାକୁଳ, ତହିଁରେ ମୁଁ ଅବହେଳା କରୁଛି । ତେଣୁ ମୁଁ ତାଙ୍କୁ ଶୁଣିବାକୁ ଅସ୍ୱୀକାର କରେ—ସତେ ଯେପରି ସେ ଜଣେ କୁହୁକକାରୀ କନ୍ୟା—ଏବଂ ତାଙ୍କର କଥା ଶୁଭୁଥିବା ସୀମା ମଧ୍ୟରୁ ଯଥାଶୀଘ୍ର ବାହାରିଯାଏ ।"

"ଏପରି ଗୋଟିଏ ଜିନିଷ ଅଛି ଯାହା ମୁଁ ଅନ୍ୟ କାହାରି ସାନ୍ନିଧ୍ୟରେ ଅନୁଭବ କରେନା କିମ୍ବା ସେ ଜିନିଷଟି ମୋ ଠାରେ ଥିବ ବୋଲି ଆପଣମାନେ ଆଶା କରି ନ ଥିବେ । ତାହା ହେଉଛି ଲଜ୍ଜା । ସକ୍ରେଟିସ୍ ପୃଥିବୀରେ ଏକମାତ୍ର ବ୍ୟକ୍ତି ଯେ ମୋତେ ଲଜ୍ଜିତ କରାଇ ପାରନ୍ତି । ସେ ମୋତେ ଯାହା କରିବାକୁ କହନ୍ତି, ତାହା ମୋର କର୍ତ୍ତବ୍ୟ ବୋଲି ମୁଁ ଜାଣେ, ଏହା ଅସ୍ୱୀକାର କରିବାର ଉପାୟ ନ ଥାଏ । ତଥାପି, ମୁଁ ତାଙ୍କ ଦୃଷ୍ଟିର ସୀମାରେଖା ବାହାରକୁ ଖସିଗଲା ମାତ୍ରେ ଜନତାର ପ୍ରଶଂସା ପାଇବା ପରି କାମ କରେ । ତେଣୁ ଲୁଚି ପଳାଇ ଆସିଥିବା ଦାସ ପରି ମୁଁ ପଳାଏ ଏବଂ ସେତେବେଳେ ସମ୍ଭବ ସକ୍ରେଟିସ୍‌ଙ୍କ ଠାରୁ ଦୂରେଇ ରହେ ।"

କହିବା ବାହୁଲ୍ୟ, ସକ୍ରେଟିସ୍ ଅନେକ ବ୍ୟକ୍ତିଙ୍କର ଜୀବନର ଧ୍ରୁବତାରା ହୋଇଥିଲେ । ପ୍ଲେଟୋଙ୍କ ପରି ପ୍ରତିଭାବାନ୍ ଯୁବକଙ୍କର ସେ ଥିଲେ ଆଜୀବନ ପ୍ରେରଣାର ଉତ୍ସ । କେବଳ

ତାଙ୍କର ସମସାମୟିକ ବା ପରବର୍ତ୍ତୀ ଯୁଗର ଗ୍ରୀକ୍ ନୁହନ୍ତି, ପୃଥିବୀର ସବୁ କୋଣରେ ଯୁଗ ଯୁଗ ଧରି ଅଗଣିତ ନରନାରୀ ତାଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇଛନ୍ତି । ପ୍ଲେଟୋଙ୍କର ଯେ କୌଣସି ସକ୍ରେଟିସୀୟ ରଚନା ପଢ଼ିଲେ ଆଲ୍‌ସିବିଏଡୀଜ୍‌ଙ୍କ ସ୍ୱୀକାରୋକ୍ତିର ସତ୍ୟତା ଉପଲବ୍‌ଧି କରି ହୁଏ । ଏବେ ମଧ୍ୟ ତାଙ୍କର କଥାସବୁ ପଢ଼ି ବିବେକର ଦଂଶନ ଅନୁଭବ ନ କରିବା ଅସମ୍ଭବ ।

ସକ୍ରେଟିସ୍‌ଙ୍କ ନିଜ ଭାଷାରେ କହିଲେ, ସେ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ ଗୋଟିଏ ଡାଆଁଶ । ଘୁମେଇ ପଡ଼ୁଥିବା ମଣିଷକୁ ଦଂଶନ କରି ସେମାନଙ୍କୁ ଜାଗ୍ରତ ରଖିବା ତାଙ୍କର କାମ । କେବଳ ତାଙ୍କ ସମୟରେ ଏଥେନ୍‌ସବାସୀଙ୍କ ପାଇଁ ନୁହେଁ, ସକ୍ରେଟିସ୍ ଇତିହାସର ଚିରଞ୍ଜୀବୀ ଡାଆଁଶ !

ବୋଧହୁଏ ଏଇ ତାଙ୍କର ଅସଲ ପରିଚୟ । ଦର୍ଶନ କ୍ଷେତ୍ରକୁ ସକ୍ରେଟିସ୍‌ଙ୍କ ଅବଦାନ ବିପୁଳ ଓ ସୁଦୂରପ୍ରସାରୀ । ସେ ଡାଇଲେକ୍‌ଟିକାଲ୍ ଆଲୋଚନା ପ୍ରଣାଳୀର ପ୍ରବର୍ତ୍ତକ । ଏହି ପ୍ରଣାଳୀ ଅନୁସାରେ କେତେକ ବ୍ୟକ୍ତି ମିଳିତ ଭାବେ ସତ୍ୟର ଅନୁସନ୍ଧାନ କରନ୍ତି । ଜଣେ ଗୋଟିଏ ମତ ଉପସ୍ଥାପନା କରେ ଓ ଅନ୍ୟମାନେ ତା ଉପରେ ନିଜ ନିଜର ମତ ଦିଅନ୍ତି । ଆଲୋଚନାରୁ ମୂଳମତର କିଛି ତ୍ରୁଟି ଧରାପଡ଼େ ଓ ଗୋଟିଏ ସଂଶୋଧିତ ମତ ଉପସ୍ଥାପିତ ହୁଏ । ଏହିପରି ଭାବେ ଆଲୋଚନା ଆଗେଇ ଚାଲେ । ପ୍ରତ୍ୟେକ ଆଲୋଚକ ନିଜର ଭ୍ରମ ବୁଝିପାରନ୍ତି ଓ ସମୂହ ଭାବେ ସତ୍ୟର ନିକଟତର ହୁଅନ୍ତି । ସକ୍ରେଟିସ୍ କୌଣସି ବିଷୟରେ ଆଲୋଚନା କଲାବେଳେ ଏହି ପ୍ରଣାଳୀର ଅନୁସରଣ କରୁଥିଲେ । କହିବା ବାହୁଲ୍ୟ, ଜଣେ ବ୍ୟକ୍ତି ଗୋଟିଏ ମତକୁ ବିଭିନ୍ନ ଦିଗରୁ ବିଚାର କରି ପ୍ରତ୍ୟେକ ସ୍ତରରେ ତାର ସଂଶୋଧନ ପୂର୍ବକ ଅଗ୍ରସର ହେବା ମଧ୍ୟ ଡାଇଲେକ୍‌ଟିକାଲ୍ ପ୍ରଣାଳୀ । ସତ୍ୟ ଉଦ୍‌ଘାଟନ କରିବାର ଆନ୍ତରିକତା ପରିବର୍ତ୍ତେ ଯୁକ୍ତିରେ ଜିଣିବାର ଉଦ୍ଦେଶ୍ୟ ରହିଲେ ଡାଇଲେକ୍‌ଟିକାଲ୍ ବିଫଳ ହୁଏ । ସଫିଷ୍ଟଗଣ ଓ ସକ୍ରେଟିସ୍‌ଙ୍କ ମଧ୍ୟରେ ଗୋଟିଏ ବଡ଼ ପାର୍ଥକ୍ୟ ହେଉଛି, ଆଲୋଚନା ତର୍କରେ ନିଜ ଯୁକ୍ତିର ଚମତ୍କାରିତା ଦେଖାଇ ଜିଣିବା ଥିଲା ସଫିଷ୍ଟଙ୍କର ଅସଲ ଲକ୍ଷ୍ୟ । ସକ୍ରେଟିସ୍‌ଙ୍କ ପାଇଁ ସତ୍ୟ ଉଦ୍‌ଘାଟନ ଆଲୋଚନାର ଲକ୍ଷ୍ୟ ।

ଯୁକ୍ତିଭିତ୍ତିକ ସଂଜ୍ଞାନିର୍ଣ୍ଣୟ ସକ୍ରେଟିସ୍‌ଙ୍କ ଦର୍ଶନର ବୈଜ୍ଞାନିକ ଦିଗ । ଦର୍ଶନକୁ ଏହା ତାଙ୍କର ମହାନ୍ ଦାନ । ନ୍ୟାୟ, ସଂଯମ, ସାହସ ଇତ୍ୟାଦିର ସଂଜ୍ଞା ନିରୂପଣକୁ ସେ ବିଶେଷ

ଗୁରୁତ୍ୱ ଦେଇଥିଲେ । ସଂଯମ କ'ଣ ? ଅର୍ଥାତ୍ ସଂଯମର ସଂଜ୍ଞା ନ ଜାଣି ସଂଯମ ସମ୍ବନ୍ଧରେ କଥାବାର୍ତ୍ତା ହେବା ଅବାନ୍ତର ନୁହେଁ କି ? ଏହା ଦର୍ଶାଇ ସକ୍ରେଟିସ୍ ଆଲୋଚକ ଠାରୁ ସଂଜ୍ଞା ଦାବୀ କରୁଥିଲେ ଓ ସଂଯମର ସଂଜ୍ଞା ଗୁଡ଼ିକୁ ପରୀକ୍ଷା କରୁଥିଲେ । ସଂଜ୍ଞା ଉପରେ ଗୁରୁତ୍ୱ ପ୍ରଦାନ ଲଜିକ୍‌ର ଦ୍ରୁତ ବିକାଶର ପଥ ପରିଷ୍କାର କରିଦେଲା । ପ୍ଲେଟୋ ଓ ଆରିଷ୍ଟୋଟଲ୍‌ଙ୍କ ସମୟରେ ଲଜିକ୍‌ର ଏତେ ବିକାଶ ସାଧିତ ହୋଇଥିଲା ଯେ ବିଂଶଶତାବ୍ଦୀ ପର୍ଯ୍ୟନ୍ତ ଏହାର ଆଉ ଅଧିକ ବିକାଶ ଘଟିପାରିଲା ନାହିଁ ।

ସକ୍ରେଟିସ୍ ପାଶ୍ଚାତ୍ୟ ନୀତିଶାସ୍ତ୍ରର ପ୍ରତିଷ୍ଠାତା । ଏତିକି କହିବା ମଧ୍ୟ ଯଥେଷ୍ଟ ନୁହେଁ । ସକ୍ରେଟିସ୍ ନୈତିକତା କ୍ଷେତ୍ରରେ ବିରାଟ ବିପ୍ଳବ ଆଣିଥିଲେ । ନୈତିକ ନିୟମମାନ ଦେବତାଙ୍କର ନିର୍ଦ୍ଦେଶ ନୁହେଁ । ବିଚାର ବଳରେ ମଣିଷକୁ ନୈତିକ ଆଚରଣ ସ୍ଥିର କରିବାକୁ ହେବ । ସଫିଷ୍ଟମାନେ ଦେବଦେବୀଙ୍କ ପ୍ରତି ସଂଶୟ ସୃଷ୍ଟି କରିଥିଲେ । ସେମାନଙ୍କ ପ୍ରଭାବରେ ଜନତାର ଦେବତା-ବିଶ୍ୱାସ କମିଗଲା । ରକ୍ଷଣଶୀଳ ଲୋକମାନେ ଅସ୍ୱସ୍ତି ଓ ଉତ୍ତେଜିତ ଅନୁଭବ କଲେ । ଦେବତାମାନଙ୍କ ଆସନ ସୁଦୃଢ଼ କରି ଧର୍ମଭାବ ଫେରାଇ ଆଣିବା ଦିଗରେ ସକ୍ରେଟିସ୍ କାର୍ଯ୍ୟ କଲେ ନାହିଁ । ଏ ଦୃଷ୍ଟିରୁ ସେ ସଫିଷ୍ଟମାନଙ୍କ ସହିତ ସହଯୋଗ କଲେ । ମାତ୍ର ଆଉ ଗୋଟିଏ ବିଷୟରେ ତାଙ୍କର ସହଯୋଗ ମିଳିଲା ନାହିଁ । ସେଇଟି ନୈତିକତା । ନୈତିକ ନିୟମ ଆପେକ୍ଷିକ ଓ ମଣିଷର ମନଗଢ଼ା କହି ସଫିଷ୍ଟମାନେ ନୈତିକତାକୁ ଉଡ଼ାଇ ଦେବାକୁ ବସିଥିଲେ । ସକ୍ରେଟିସ୍ କହିଲେ, ମଣିଷକୁ ତା ନିଜର ମଙ୍ଗଳ ସନ୍ଧାନ କରିବାକୁ ହେବ । ବିଚାରବଳରେ କଲ୍ୟାଣକର ନୀତି ଆବିଷ୍କାର କରିବା ଅତି ଜଟିଳ, ମାତ୍ର ଅସମ୍ଭବ ନୁହେଁ । ଏବଂ ମଣିଷମାନଙ୍କ ମଧ୍ୟରେ ବିଚାର ସାର୍ବଜନୀନ ଉପାଦାନ ହୋଇ ଥିବାରୁ ବିଚାରଭିତ୍ତିକ ନୈତିକତା ବ୍ୟକ୍ତି ନିରପେକ୍ଷ—ଆପେକ୍ଷିକ ନୁହେଁ ।

ଯାହା କଲ୍ୟାଣଦାୟକ, ଦେବତାମାନଙ୍କ ଅନୁମୋଦନ ହେତୁ ତାହା କଲ୍ୟାଣଦାୟକ ନୁହେଁ; ବରଂ ତାହା କଲ୍ୟାଣଦାୟକ ହୋଇଥିବାରୁ ଦେବତାମାନେ ତାକୁ ଅନୁମୋଦନ କରନ୍ତି ( ପ୍ଲେଟୋଙ୍କ ୟୁଥିଫ୍ରୋ )—ସକ୍ରେଟିସ୍‌ଙ୍କର ଏହି ଉକ୍ତି ପଛରେ ତାଙ୍କର ବୈପ୍ଳବିକ ଚିନ୍ତା ସ୍ପଷ୍ଟ । ନୈତିକତାକୁ ଦୈବଶକ୍ତିରୁ ବିଚ୍ଛିନ୍ନ କରି ମଣିଷର ବିଚାର ଓ ବିବେକ ଉପରେ ପ୍ରତିଷ୍ଠା କରିବାର ଉଦ୍ୟମ ଗ୍ରୀସ୍‌ର ଏହିଭଳି ଦୁର୍ବଳ ଧର୍ମ ପରମ୍ପରା-

ସୌଧକୁ ଭାଙ୍ଗି ଦେବାକୁ ସଚେଷ୍ଟ । ଗ୍ରୀସ୍‌ର ରକ୍ଷଣଶୀଳ ଲୋକେ ସକ୍ରେଟିସ୍‌ଙ୍କ ଉପରେ ଅକାରଣେ ଉତ୍ତ୍ୟକ୍ତ ହୋଇ ନାହାନ୍ତି !

ସକ୍ରେଟିସ୍ ଅବଶ୍ୟ ପ୍ରକାଶ୍ୟରେ ଦେବଦେବୀଙ୍କୁ କେବେ ଅସମ୍ମାନ କରିନାହାନ୍ତି । ମାତ୍ର ସେମାନଙ୍କ ପ୍ରତି ତାଙ୍କର ସମ୍ମାନ ପ୍ରଧାନତଃ ସୌଜନ୍ୟମୂଳକ ! ବିବେକ ଓ ଆଇନ୍ ମଧ୍ୟରେ ବିରୋଧ ହେଲେ ସକ୍ରେଟିସ୍ ବିବେକକୁ ମାନିବାକୁ କହନ୍ତି ( ପରେ ଖ୍ରୀଷ୍ଟଧର୍ମ ଏହାକୁ ଅନୁମୋଦନ କରିଛି ) । ମାତ୍ର ତାଙ୍କ ମତରେ ସର୍ବଦା ବିଧିବିଧାନ ଅନୁସାରେ ଦେବତାଙ୍କୁ ପୂଜା କରିବା ଉଚିତ । ଏହାର ତାତ୍ପର୍ଯ୍ୟ, ସାମାଜିକ ଚେତନା ଠାରୁ ଅନେକ ଅଧିକ ଗଭୀରରେ ଥିବା ମଣିଷର ଅନ୍ତରାତ୍ମା ସହିତ ଦେବତାଙ୍କର ସମ୍ପର୍କ ନାହିଁ ।

ସକ୍ରେଟିସ୍ ଗ୍ରୀସ୍‌ର ଦେବଦେବୀଙ୍କୁ ଅମାନ୍ୟ କରନ୍ତି ବୋଲି ତାଙ୍କ ବିରୁଦ୍ଧରେ ଯେଉଁ ଅଭିଯୋଗ ଆସିଥିଲା ସେଥିରେ କିଛି ସତ୍ୟତା ଅଛି ! ଗ୍ରୀକ୍ ଜାତିର ଅନ୍ତର୍ବୋଧ ବାରି ପାରିଥିଲା ଯେ ଏ ବ୍ୟକ୍ତି ଜାତିକୁ ଗୋଟାଏ ଭିନ୍ନ ମାର୍ଗରେ ପରିଚାଳିତ କରିବାକୁ ଚେଷ୍ଟା କରୁଛି ।

ସ୍ପାର୍ଟା ସହିତ ଦୀର୍ଘକାଳ ଧରି ଚାଲିଥିବା ପିଲୋପୋନେସିଆନ୍ ଯୁଦ୍ଧରେ ଏଥେନ୍‌ସର ବିପର୍ଯ୍ୟୟ ଓ ରାଜନୈତିକ କାରଣ ସକ୍ରେଟିସ୍‌ଙ୍କ ମୃତ୍ୟୁ ପାଇଁ ଅନେକ ପରିମାଣରେ ଦାୟୀ । ପେରିକ୍ଲିସ୍‌ଙ୍କ ମୃତ୍ୟୁ ( ଖ୍ରୀ.ପୂ ୪୨୯ ) ସହିତ ଏଥେନ୍‌ସର ସ୍ୱର୍ଣ୍ଣଯୁଗର ସମାପ୍ତି ଘଟିଲା । ଏତେ ବଡ଼ ମହାନ୍ ନେତାଙ୍କ ଅନ୍ତେ ଏଥେନ୍‌ସ ଅତି ସାଧାରଣ ନେତାଙ୍କ ହାତରେ ପଡ଼ିଲା । ସ୍ପାର୍ଟା ଠାରୁ ଶୋଚନୀୟ ଭାବେ ପରାସ୍ତ ହେବା ପରେ ଏଥେନ୍‌ସର ମନୋବଳ ଭାଙ୍ଗିଯିବା ସ୍ୱାଭାବିକ୍ । ସକ୍ରେଟିସ୍ ଗଣତନ୍ତ୍ରର ନିନ୍ଦୁକ । କାରଣ ଗଣତନ୍ତ୍ର ଶାସନ ଜ୍ଞାନ ଉପରେ ନୁହେଁ—ଭୋଟ ଉପରେ ପ୍ରତିଷ୍ଠିତ । ତାଙ୍କର ଯୁକ୍ତି ହେଉଛି, ରୋଗୀର ଚିକିତ୍ସା କିଏ କରିବ ସେ ବିଷୟରେ ଭୋଟ ହୁଏନା । ମାତ୍ର କାହାର ଶାସନ କରିବାର ଜ୍ଞାନ ଓ ଯୋଗ୍ୟତା ଅଛି, ତା ନ ଦେଖି ଭୋଟ ଭିତ୍ତିରେ ଶାସକ ବାଛିବା ଗଣତନ୍ତ୍ରର ଦୋଷ । ଗଣତନ୍ତ୍ରର ନେତାମାନେ ସକ୍ରେଟିସ୍‌ଙ୍କ ଉପରେ ବିଶେଷ ବିରକ୍ତ ଥିଲେ । ସେତିକି ନୁହେଁ, ଧନିକତନ୍ତ୍ରର ଅନେକ ନେତା ସକ୍ରେଟିସ୍‌ଙ୍କର ବ୍ୟକ୍ତିଗତ ବନ୍ଧୁ । ତେଣୁ ଗଣତନ୍ତ୍ର ଦଳ ଭାବିବା ସ୍ୱାଭାବିକ୍ ଯେ ଧନିକତନ୍ତ୍ର ଦଳ ପ୍ରତି ସକ୍ରେଟିସ୍‌ଙ୍କର

ସହାନୁଭୂତ ରହିଛି । ଧନୀକତନ୍ତ୍ର ଶାସନର ଅବସାନ ଘଟି କ୍ଷମତା ଗଣତନ୍ତ୍ରପନ୍ଥୀଙ୍କ ହାତକୁ ଆସିଲା ପରେ ସକ୍ରେଟିସ୍ ମୃତ୍ୟୁଦଣ୍ଡ ପାଇଲେ ।

**ସକ୍ରେଟିସ୍‌ଙ୍କ ପ୍ରତ୍ୟକ୍ଷ ପ୍ରଭାବ**—ପରବର୍ତ୍ତୀ ଦୁଇ ଶତାବ୍ଦୀର ଦର୍ଶନ ସକ୍ରେଟିସ୍‌ଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବେ ପ୍ରଭାବିତ । ପ୍ଲେଟୋ ଓ ପ୍ଲେଟୋଙ୍କ ଠାରୁ ଗଢ଼ି ଉଠିଥିବା ଦର୍ଶନ ଧାରାର ମୂଳ ହେଉଛନ୍ତି ସକ୍ରେଟିସ୍ । ସକ୍ରେଟିସ୍‌ଙ୍କ ଉତ୍ତରାଧିକାରୀ ବୋଲି ଦାବୀ କରି ଗ୍ରୀସ୍‌ରେ ତିନୋଟି ଦର୍ଶନ 'ସ୍କୁଲ୍' ମୁଣ୍ଡ ଟେକିଲେ । ସିନିକ୍, ସିରେନିକ୍ ଓ ମେଗାରିକ୍ । ସିନିକ୍ ଓ ସିରେନିକ୍‌ଙ୍କ ସମ୍ପର୍କରେ ଆମେ ପୂର୍ବରୁ କିଛି ଆଲୋଚନା କରିଛୁ । ସିନିକ୍‌ବାଦର ମୂଳଦୁଆ ଉପରେ ଷ୍ଟୋଇକ୍ ଦର୍ଶନ ଗଢ଼ି ଉଠିଲା । ସିରେନିକ୍‌ବାଦକୁ ଭିତ୍ତି କରି ଏପିକ୍ୟୁରସ୍ ତାଙ୍କର ଆମୋଦବାଦ ଗଢ଼ିଲେ । ଷ୍ଟୋଇକ୍‌ବାଦ ଓ ଏପିକ୍ୟୁରିଆନ୍ ଆମୋଦବାଦ ସମ୍ବନ୍ଧରେ ଆମେ ଯଥା ସ୍ଥାନରେ ଆଲୋଚନା କରିବୁ ।

ସିନିକ୍‌ବାଦର ପ୍ରତିଷ୍ଠାତା ଆଣ୍ଟିସ୍ଥିନିଜ୍ (ଖ୍ରୀ. ପୂ ୪୪୪—୩୬୬) ସକ୍ରେଟିସ୍‌ଙ୍କ ଘନିଷ୍ଠ ସମ୍ପର୍କରେ ଆସିଥିଲେ । ସବୁ ଆଡ଼ମ୍ବର ଠାରୁ ଦୂରେଇ ରହି ସରଳ ଜୀବନ କଟାଇବା ଦାର୍ଶନିକର ଆଦର୍ଶ ବୋଲି ଆଣ୍ଟିସ୍ଥିନିଜ୍ ସକ୍ରେଟିସ୍‌ଙ୍କ ଠାରୁ ଶିଖିଲେ । ସକ୍ରେଟିସ୍‌ଙ୍କ ବ୍ୟକ୍ତିତ୍ୱ ଓ ଚିନ୍ତାରୁ ଆଉ ଅଧିକ ତାଙ୍କୁ ଦୃଶ୍ୟ ହେଲା ନାହିଁ । ସକ୍ରେଟିସ୍‌ଙ୍କର ବେଶ ପୋଷାକ ପ୍ରତି ଅଯତ୍ନ ବିଷୟ ସମସ୍ତେ ଦେଖିଥିଲେ । ମାତ୍ର ଆଣ୍ଟିସ୍ଥିନିଜ୍‌ଙ୍କ ମଇଳା ଛିଣ୍ଡା ପୋଷାକକୁ ଅଙ୍ଗୁଳି ନିର୍ଦ୍ଦେଶ କରି ସେ ଥରେ ତାଙ୍କୁ କହିଥିଲେ, "ଆଣ୍ଟିସ୍ଥିନିଜ୍ ! ତୁମ ପୋଷାକର କଣାଗୁଡ଼ିକ ବାଟେ ମୁଁ ତୁମର ଅହଙ୍କାର ଦେଖି ପାରୁଛି ।" କହିବା ବାହୁଲ୍ୟ, ସିନିକ୍‌ମାନେ ଏ ଉକ୍ତିର ତାତ୍ପର୍ଯ୍ୟ ବୁଝିଲେ ନାହିଁ । "ପ୍ରକୃତି କୋଳକୁ ପ୍ରତ୍ୟାବର୍ତ୍ତନ"ର ସ୍ଲୋଗାନ୍ ଉଠାଇ ଥିବାରୁ ଆଣ୍ଟିସ୍ଥିନିଜ୍‌ଙ୍କୁ ସକ୍ରେଟିସ୍ ଠୋକର୍ ଦେଇଥିଲେ । ସେ ଦର୍ଶାଇଥିଲେ, ସବୁ ଦୋଷ ସତ୍ତ୍ୱେ ସଭ୍ୟତା ଅତି ମୂଲ୍ୟବାନ୍ ଏବଂ ଆଦିମ ସରଳତା ପାଇଁ ସଭ୍ୟତାକୁ ପରିତ୍ୟାଗ କରିବା ନିର୍ବୋଧତା ।

ଡାଇଓଜିନିଜ୍ ତାଙ୍କର ଗୁରୁ ଆଣ୍ଟିସ୍ଥିନିଜ୍‌ଙ୍କ ଠାରୁ ଅଧିକ ବିଖ୍ୟାତ । ଡାଇଓଜିନିଜ୍‌ଙ୍କ ଜନ୍ମସ୍ଥାନ ସିନୋପ୍ ନାମାନୁସାରେ ତାଙ୍କର ପନ୍ଥାନୁସରଣକାରୀମାନେ ସିନିକ୍ ନାମରେ ପରିଚିତ ।

ସିରେନକ୍ ସ୍କୁଲର ପ୍ରତିଷ୍ଠାତା ଆରିଷ୍ଟିପସ୍ ସକ୍ରେଟିସ୍‌ଙ୍କର ଅନୁରକ୍ତ ଶିଷ୍ୟ । ଆରିଷ୍ଟିପସ୍‌ଙ୍କର ଜନ୍ମସ୍ଥାନ ସାଇରନ୍‌ର ନାମାନୁସାରେ ତାଙ୍କ ମତାବଲମ୍ବୀମାନେ ସିରେନକ୍ ନାମରେ ପରିଚିତ । ସିରେନୈକ୍‌ମାନେ ସକ୍ରେଟିସ୍‌ଙ୍କୁ ଅତି ଲଘୁ ଭାବେ ବୁଝିଥିଲେ । ଯେଉଁ ଚିନ୍ତା ଜୀବନ ସହିତ ସମ୍ପର୍କିତ ନୁହେଁ ସକ୍ରେଟିସ୍ ସେହିପରି ଅମୂର୍ତ୍ତ ଚିନ୍ତାକୁ ନିନ୍ଦା କରିଥିଲେ । ସେ ପୁଣି ଦର୍ଶାଇ ଥିଲେ ଯେ ଜ୍ଞାନ ଅନିଶ୍ଚିତ । ସିରେନକ୍ ସେଥିରେ ଆଉ ପଦେ ଯୋଡ଼ି ଦେଲ । ଜ୍ଞାନ ଅନିଶ୍ଚିତ କିନ୍ତୁ ଆମୋଦାନୁଭୂତି ଧ୍ରୁବ । ତେଣୁ ଜ୍ଞାନର ଅନୁସରଣ ନ କରି ଆମୋଦର ଅନୁସରଣ କରିବା ଶ୍ରେୟ । ସକ୍ରେଟିସ୍ ଅନୈତିକ ଓ ସାମୟିକ ଆମୋଦକୁ ନିନ୍ଦା କରିଛନ୍ତି । ସିରେନକ୍ ଏ ଦିଗ ପ୍ରତି ପ୍ରାପ୍ୟ ଧ୍ୟାନ ଦେଇନାହାଁନ୍ତି । ସେ ସୁଖକୁ ସର୍ବୋଚ୍ଚ ମୂଲ୍ୟ ଦେଇଛନ୍ତି କିନ୍ତୁ ତାର ସୁଖ ଦୈହିକ ସ୍ତରରେ ସୀମାବଦ୍ଧ । ଏପିକୁରସ୍ ସିରେନକ୍ ଚିନ୍ତାଧାରାକୁ କେତେକାଂଶରେ ମାର୍ଜିତ କରି ଗୋଟିଏ ଶତାବ୍ଦୀ ପରେ ଅଧିକ ସ୍ଥାୟୀ ଓ ପ୍ରଭାବଶାଳୀ ଏପିକୁରିଆନ୍ ଆମୋଦବାଦ ପ୍ରତିଷ୍ଠା କଲେ ।

ସିନକ୍ ପରି ସିରେନକ୍ ନାମ-କରଣ ଗୋଟିଏ ସ୍ଥାନର ନାମ ଅନୁସାରେ ହୋଇଛି । ସେହିପରି ଷ୍ଟୋଇକ୍ ନାମ ମୂଳରେ ଗୋଟିଏ ସ୍ଥାନ ରହିଛି—କୌଣସି ବ୍ୟକ୍ତି ବା ମତ ନାହିଁ ।

ମେଗାରାର ଇଉକ୍ଲିଡୀଜ୍ (ଖ୍ରୀ. ପୂ ୪୫୦—୩୭୪ । ବିଖ୍ୟାତ ଜ୍ୟାମିତି ବିଶାରଦ ଇଉକ୍ଲିଡୀ ଗୋଟିଏ ଶତାବ୍ଦୀ ପରର ମଣିଷ) ସକ୍ରେଟିସୀୟ ଦର୍ଶନର ଆଉ ଜଣେ ପଥଭ୍ରାନ୍ତ ବ୍ୟାଖ୍ୟାକାର । ସକ୍ରେଟିସ୍ କହୁଥିଲେ, ଜ୍ଞାନଲାଭ ବଡ଼ ଜଟିଳ । ବିଶ୍ଳେଷଣର କଷଟି ପଥରରେ ପରୀକ୍ଷା କଲେ ଅନେକ ତଥ୍ୟ ଓ ମନର ଭ୍ରମ ଧରା ପଡ଼ିଯାଏ । ସକ୍ରେଟିସ୍‌ଙ୍କର ଏପରି ବିବୃତିକୁ ଭୁଲ୍ ଅର୍ଥ କରି ଇଉକ୍ଲିଡୀଜ୍ କହିଲେ, ଅଭ୍ରାନ୍ତ ଜ୍ଞାନ ନାହିଁ । ପ୍ରଶ୍ନୋତ୍ତର ଛଳରେ ସକ୍ରେଟିସ୍‌ଙ୍କର ଡାଇଲେକ୍‌ଟିକାଲ୍ ଆଲୋଚନାକୁ ସେ ତର୍କ କୌଶଳ ବୋଲି ବୁଝିଲେ । ସତ୍ୟର ଉଦ୍‌ଘାଟନ ସକ୍ରେଟିସୀୟ ଆଲୋଚନାର ଉଦ୍ଦେଶ୍ୟ ବୋଲି ସେ ଦେଖିପାରିଲେ ନାହିଁ । ସେ ଧରିନେଲେ ଯେ ସକ୍ରେଟିସ୍‌ଙ୍କୁ ତର୍କକଳା ଜଣା ଥିବାରୁ ସେ ଯୁକ୍ତିରେ ଅଜେୟ । ତର୍କ କୌଶଳକୁ ଗୁରୁତ୍ୱ ଦେଇ ଇଉକ୍ଲିଡୀଜ୍ ହେଲେ ଏରିଷ୍ଟିକ୍ (Eristic) ଦର୍ଶନର ପ୍ରତିଷ୍ଠାତା ।

ଇଉକ୍ଲିଡୀଜ୍ ମେଗାରାର ଅଧିବାସୀ ହୋଇଥିବାରୁ ତାଙ୍କର ଦର୍ଶନବାଦ ମେଗାରିକ୍ ନାମରେ ମଧ୍ୟ ପରିଚିତ ।

ପ୍ଲେଟୋ (ଖ୍ରୀ· ପୂ ୪୬୭-୩୪୭) ପେରିକ୍ଲିଜ୍‌ଙ୍କ ମୃତ୍ୟୁ ପରେ ପରେ ମହାମନୀଷୀ ପ୍ଲେଟୋଙ୍କର ଜନ୍ମ । ତାଙ୍କ ପରି ମହାନ୍ ପ୍ରତିଭାର ଆବିର୍ଭାବ ଜଗତରେ କ୍ୱଚିତ ଘଟିଛି । ତେଣୁ ପେରିକ୍ଲିଜ୍‌ଙ୍କ ମୃତ୍ୟୁ ସହିତ ଗ୍ରୀକ୍ ସ୍ୱର୍ଣ୍ଣଯୁଗର ଅବସାନ ହେଲା ବୋଲି ଆମେ କପରି କହିବା ? ପ୍ରଥମକଥା, ଗୋଟାଏ ଜାତି ଏକାଦିନକେ ଭୂଇଁଫୁଟି ପଡ଼େନା । ଦ୍ୱିତୀୟରେ ସ୍ୱର୍ଣ୍ଣଯୁଗର ଉର୍ବର କ୍ଷେତ୍ରରୁ ସକ୍ରେଟିସ୍ ଓ ପ୍ଲେଟୋଙ୍କର ଉଦ୍ଭବ ।

ଦର୍ଶାଯାଏ, ସକ୍ରେଟିସ୍ ତାଙ୍କର ଦର୍ଶନ ସମ୍ବନ୍ଧରେ ଧାଡ଼ିଟିଏ ଲେଖିନାହାନ୍ତି । ସେ କତିଦିନ କହାଣ ଧରିଥିଲେ, ଲେଖନୀ ଧରିବା ତାଙ୍କୁ ବଡ଼ ଅଡୁଆ । ତେଣୁ ନିଜ ଚିନ୍ତାକୁ ଲିପିବଦ୍ଧ କରିବାର ପ୍ରଶ୍ନ କେଉଁଠୁ ଉଠୁଛି ? ପ୍ଲେଟୋ ଅନେକ ମହାନ୍‌ଗ୍ରନ୍ଥ ରଚନା କରିଛନ୍ତି । କିନ୍ତୁ ନିଜ ଦର୍ଶନ ସମ୍ବନ୍ଧରେ ଗୋଟିଏ ଧାଡ଼ି ବି ନୁହେଁ ! ଯାହା ଲେଖିଛନ୍ତି ସବୁ ସକ୍ରେଟିସ୍‌ଙ୍କ ଚରିତ ବା ସକ୍ରେଟିସ୍‌ଙ୍କ ତତ୍ତ୍ୱ । ତେବେ ପ୍ଲେଟୋଙ୍କର ଅନେକ ମତ ଓ ଚିନ୍ତା ଯେ ସକ୍ରେଟିସ୍‌ଙ୍କ ନାମରେ ଭଣିତା ହୋଇଛି ସେଥିରେ ସନ୍ଦେହ ନାହିଁ । ସକ୍ରେଟିସ୍ ଓ ପ୍ଲେଟୋଙ୍କର ଚିନ୍ତାକୁ ପୃଥକ କରିବା କାଠିକର ପାଠ । ତଥାପି ପ୍ଲେଟୋ ବିଶାରଦମାନେ ଏ ଦିଗରେ ସନ୍ତୋଷଜନକ ସାଫଲ୍ୟ ଅର୍ଜନ କରିଛନ୍ତି । ପ୍ଲେଟୋଙ୍କର ବିଦଗ୍ଧ ପାଠକମାନେ କିନ୍ତୁ ମନଃଚକ୍ଷୁରେ ସକ୍ରେଟିସ୍ ଓ ପ୍ଲେଟୋଙ୍କର ଯୁଗଳମୂର୍ତ୍ତି ଦର୍ଶନ କରନ୍ତି । ଦୁହିଁଙ୍କୁ ପୃଥକ ଭାବେ ଦେଖିବା ସେମାନଙ୍କ ପକ୍ଷରେ ସମ୍ଭବ ନୁହେଁ ।

ସକ୍ରେଟିସ୍‌ଙ୍କ ଚିନ୍ତାର ତାତ୍ପର୍ଯ୍ୟ ବୁଝିବା ଓ ତାଙ୍କ ବ୍ୟକ୍ତିତ୍ୱକୁ ସମ୍ପୂର୍ଣ୍ଣଭାବେ କଳିବାର କ୍ଷମତା କେବଳ ପ୍ଲେଟୋଙ୍କର ହିଁ ଥିଲା । ଅନ୍ୟମାନେ ସକ୍ରେଟିସ୍‌ଙ୍କ ବ୍ୟକ୍ତିତ୍ୱର ଗୋଟିଏ ଦିଗ ଓ ଚିନ୍ତାର ଗୋଟିଏ ଶାଖା ଦେଖିଥିଲେ । ସକ୍ରେଟିସ୍ ଥିଲେ ଦରିଦ୍ର ଓ ଦେଖିବାକୁ ଅସୁନ୍ଦର । ସୋଲୋନ୍‌ଙ୍କ ବଂଶରେ ପ୍ଲେଟୋଙ୍କ ମାଆଙ୍କର ଜନ୍ମ ଓ ତାଙ୍କର ପିତା ପ୍ରାଚୀନ ଏଥେନ୍‌ସର ରଜାଙ୍କ ବଂଶଧର । ଏପରି ଉଚ୍ଚକୁଳରେ ଜାତ ପ୍ଲେଟୋଙ୍କ ଉପରେ ବିଧାତା ସମସ୍ତ ଆଶୀର୍ବାଦ ଢାଳି ଦେଇଥିଲା । ପ୍ଲେଟୋଙ୍କର ଅସଲ ନାମ ଆରିଷ୍ଟୋକ୍ଲିସ୍ । ପାର୍ଶ୍ୱକାୟ ଓ ବଳିଷ୍ଠ ଆରିଷ୍ଟୋକ୍ଲିସ୍‌ଙ୍କ ଡାକନାମ Platon (ଅର୍ଥାତ୍ ପ୍ରଶସ୍ତ) । ଏହି ନାମରେ ଜଗତ ତାଙ୍କୁ ଚିହ୍ନିଛି । ପ୍ଲେଟୋଙ୍କର ସୁନ୍ଦର ଦେହଭଙ୍ଗୀରେ ସମସ୍ତେ ମୋହିତ ହେଉଥିଲେ । ସେ ଜଣେ ବ୍ୟାୟାମବୀର ଥିଲେ ଓ ଇସ୍‌ଥମସ୍‌ରେ ଖେଳରେ କୁସ୍ତି

ପ୍ରତିଯୋଗିତାରେ ଯୋଗଦେଇ ପୁରସ୍କୃତ ହୋଇଥିଲେ । ପ୍ଲେଟୋ ତିନୋଟି ଯୁଦ୍ଧକ୍ଷେତ୍ରରେ ଲଢ଼ିଛନ୍ତି । ଗୋଟିକରେ ସାହସିକତା ପାଇଁ ତାଙ୍କୁ ପୁରସ୍କାର ମିଳିଥିଲା ।

କୁସ୍ତି କସରତ୍ ଠାରୁ ଆରମ୍ଭ କରି ଗଣିତ, କବିତା, ଚିତ୍ରକଳା ଓ ବାଗ୍ମିତାରେ ପ୍ଲେଟୋଙ୍କର ଅସାଧାରଣ ପ୍ରତିଭା ଥିଲା । ରାଜନୀତି ତ ପ୍ଲେଟୋଙ୍କ ବଂଶର ପେଷା । ତତ୍କାଳୀନ ଏଥେନ୍ସର ଦୁଇଜଣ ବିଶିଷ୍ଟ ରାଜନୀତିଜ୍ଞ କାରମିଡ଼ୀଜ୍ ଓ କ୍ରିଟିଆସ୍ ତାଙ୍କର ଆତ୍ମୀୟ । ପ୍ଲେଟୋଙ୍କ ପ୍ରତିଭା ପ୍ରତି ଦୃଷ୍ଟି ଦେଲେ ରାଜନୀତିରେ ପ୍ରବେଶ କରି ସେ ଅକ୍ଳେଶରେ ସର୍ବୋଚ୍ଚ ସୋପାନକୁ ଉଠି ପାରିଥାନ୍ତେ ବୋଲି ନିର୍ଦ୍ୱନ୍ଦ୍ୱରେ କୁହାଯାଇପାରେ । ବସ୍ତୁତଃ ଟ୍ରାଜିକ୍ କବି ଓ ରାଜନୈତିକ ନେତାର ଜୀବନ ମଧ୍ୟରୁ ଗୋଟିକୁ ବାଛିବା ଦ୍ୱନ୍ଦ୍ୱରେ ପଡ଼ିଥିବାବେଳେ ସକ୍ରେଟିସ୍‌ଙ୍କ ସହିତ ପ୍ଲେଟୋଙ୍କର ଭେଟ । ସେତେବେଳେ ତାଙ୍କୁ ପ୍ରାୟ କୋଡ଼ିଏ ବର୍ଷ ବୟସ । ସକ୍ରେଟିସ୍‌ଙ୍କୁ ଚହ୍ନିବା ଦିନୁ ପ୍ଲେଟୋଙ୍କ ଜୀବନର ଲକ୍ଷ୍ୟ ସ୍ଥିର ହୋଇଗଲା । ସ୍ପୋର୍ଟସ, କବିତା, ରାଜନୀତି, ଅର୍ଥ, ଯଶ ସବୁ ଛାଡ଼ି ସକ୍ରେଟିସ୍‌ଙ୍କ ପଦାଙ୍କ ଅନୁସରଣ କରିବାକୁ ପ୍ଲେଟୋ ସ୍ଥିର କରିନେଲେ ।

ସକ୍ରେଟିସ୍ କ୍ରିଟିଆସ୍ ଓ କାର୍‌ମିଡ଼ୀଜ୍‌ଙ୍କର ବନ୍ଧୁ । ତେଣୁ ପ୍ଲେଟୋ ତାଙ୍କୁ ପିଲାଦିନୁ ଦେଖୁଥିବେ । କୋଡ଼ିଏ ବର୍ଷ ବୟସରେ ପ୍ଲେଟୋ ସକ୍ରେଟିସ୍‌ଙ୍କ ମହନୀୟତା ହୃଦୟଙ୍ଗମ କରିବା ଅବସ୍ଥାକୁ ଆସିଲେ ।

ଦୁଃଖ କଷ୍ଟ ଜାଣି ନ ଥିବା ପ୍ଲେଟୋ କମ୍ ବୟସରୁ କଠୋର ପରୀକ୍ଷାର ସମ୍ମୁଖୀନ ହେଲେ । ତାଙ୍କୁ ପ୍ରାୟ ପଚିଶ ବର୍ଷ ବୟସବେଳେ କ୍ରିଟିଆସ୍ ଓ କାର୍‌ମିଡ଼ୀଜ୍ ଆଗପଛ ହୋଇ ଇହଧାମରୁ ବିଦାୟ ନେଲେ । ପ୍ଲେଟୋଙ୍କ ପରିବାରର ଶତ୍ରୁ ଗଣତାନ୍ତ୍ରିକ ଦଳ ହାତକୁ କ୍ଷମତା ଗଲା । ସକ୍ରେଟିସ ଦୁଇ ତିନିବର୍ଷ ପରେ ମୃତ୍ୟୁଦଣ୍ଡ ପାଇଲେ । ଏ ଘଟଣା ପ୍ଲେଟୋଙ୍କୁ ପ୍ରଚଣ୍ଡ ଧକ୍କା ଦେଲା । ହତଶ୍ରୀ ଏଥେନ୍ସ ତାଙ୍କୁ ଗୋଟାଏ ପାଗଳ ଗାରଦ ପରି ମନେହେଲା ଓ ସେ କିଛିକାଳ ନଗର ଛାଡ଼ି ଚାଲିଗଲେ । ଏଥେନ୍ସରୁ ପଳାଇ ପ୍ଲେଟୋ ମେଗାରର ଇଉକ୍ଲିଡ଼ଙ୍କ ଅତିଥି ହୋଇଥିଲେ । ସେଠାରୁ ଗଲେ ସିରିନ୍ । ଏହି କାଳ ମଧ୍ୟରେ ପ୍ଲେଟୋ ମିଶର ଯାଇଥିଲେ ବୋଲି କେତେକ କହନ୍ତି । ଯାହାହେଉ ଖ୍ରୀ.ପୂ ୩୯୫ରେ ଏଥେନ୍ସ ଫେରିଆସି ପ୍ଲେଟୋ ଆଠ ଦଶବର୍ଷ ନଗରରେ ବିତାଇଲେ । ଏହାରି ଭିତରେ ସେ କେତେକ ସକ୍ରେଟିସୀୟ ଡାଏଲଗ୍ ରଚନା କରିଥିବା ସମ୍ଭବ ।

ପିଥାଗୋରସ୍‌ଙ୍କ ଦର୍ଶନ ଉତ୍ତମଭାବେ ଅଧ୍ୟୟନ କରିବାକୁ ପ୍ଳେଟୋ । ପୁଣି ଖ୍ରୀ. ପୂ ୩୮୭ରେ ବିଶିଷ୍ଟ ପିଥାଗୋରସୀୟ ଦାର୍ଶନିକ ଆର୍କିଟାସ୍‌ଙ୍କୁ ଟାରେଣ୍ଟମ୍‌ରେ ଭେଟିଲେ । ଏହାପରେ ସେ ଯାଇଥିଲେ ସିସିଲି । ସେଠାରେ ସିରାକ୍ୟୁଜ୍‌ର ରାଜା ପ୍ରଥମ ଡାଇଓନିସସ୍‌ଙ୍କ ଶାଳକ ଡାୟନ୍‌ଙ୍କ ସହିତ ତାଙ୍କର ଘନିଷ୍ଠ ବନ୍ଧୁତ୍ୱ ହୋଇଥିଲା । ଡାୟନ୍ ଜଣେ ଦର୍ଶନ ଅନୁରକ୍ତ ବ୍ୟକ୍ତି । ମାତ୍ର ସିରାକ୍ୟୁଜ୍ ସହିତ ଏଥେନ୍ସର ଯୁଦ୍ଧ ଲାଗିଥିବା କାରଣରୁ ବା ପ୍ଳେଟୋଙ୍କ ନୀତିଗତିକ ଉପଦେଶରେ ବିରକ୍ତ ହେବା କାରଣରୁ ପ୍ରଥମ ଡାଇଓନିସସ୍ ପ୍ଳେଟୋଙ୍କୁ ଜଣେ ଦାସଭାବେ ବନ୍ଦୀ କରି ଦେଇଥିଲେ । ଖବର ପାଇ ତାଙ୍କ ବନ୍ଧୁମାନେ ବହୁ ଅର୍ଥ ବିନିମୟରେ ପ୍ଳେଟୋଙ୍କୁ ମୁକୁଳାଇଲେ ।

ଆର୍କିଟାସ୍ ସାତଥର ଟାରେଣ୍ଟମ୍‌ର ଅଧୀଶ୍ୱର ଭାବେ ନିର୍ବାଚିତ ହୋଇଥିଲେ । ତାଙ୍କୁ ଦେଖି ଜଣେ ଦାର୍ଶନିକ ରାଜପଦ ଲାଭ କରିବା ଅବାସ୍ତବ ନୁହେଁ ବୋଲି ପ୍ଳେଟୋଙ୍କର ଧାରଣା ହୋଇଥିବ ।

ଏହିପରି ଦୁର୍ଘଟଣାରୁ ରକ୍ଷା ପାଇ ଏଥେନ୍ସ ଫେରିବା ପରେ ପ୍ଳେଟୋ ବୀର ଆକାଡେମସ୍ ( ଜଣେ ସ୍ଥାନୀୟ ଦେବତା ) ଙ୍କ ପବିତ୍ର କୁଞ୍ଜବନରେ ତାଙ୍କର ବିଖ୍ୟାତ ଆକାଡେମି ସ୍ଥାପନ କଲେ । ଏହି ଆକାଡେମି ପ୍ରାୟ ହଜାରେ ବର୍ଷ ଧରି ୟୁରୋପର ଜ୍ଞାନ ଗବେଷଣାର ପ୍ରଧାନ ପୀଠ ହୋଇ ରହିଲା । ତତ୍ତ୍ୱତଃ ଆକାଡେମି ମିଉଜ୍ ଦେବୀଙ୍କ ପୂଜା ପାଇ ଉଦ୍ଦିଷ୍ଟ ଏକ ଧର୍ମାନୁଷ୍ଠାନ । ଏହାର ଛାତ୍ରମାନଙ୍କୁ କୌଣସି ପ୍ରକାର ଦରମା ଦେବାକୁ ପଡୁ ନ ଥିଲା । ତେବେ ଛାତ୍ରଙ୍କ ମୁରବିମାନେ ସ୍ୱେଚ୍ଛାରେ ଆକାଡେମିକୁ ଦାନ ଦେଉଥିଲେ । ଆକାଡେମି ଛାତ୍ରଙ୍କର ନିର୍ଦ୍ଦିଷ୍ଟ 'ୟୁନିଫର୍ମ' ଥିଲା—ଟୋପି ଓ କଳା ଗାଉନ୍ । ବିଶ୍ୱବିଦ୍ୟାଳୟ ଡିଗ୍ରୀ ନେବା ପାଇଁ ପୃଥିବୀର ସବୁ ଅଞ୍ଚଳରେ ବ୍ୟବହୃତ କଳା ଗାଉନ୍‌ର ଆରମ୍ଭ ପ୍ଳେଟୋଙ୍କ ଆକାଡେମିରୁ । ନାରୀମାନଙ୍କ ଅଧ୍ୟୟନ ପାଇଁ ଆକାଡେମିର ଦ୍ୱାର ଥିଲା ଉନ୍ମୁକ୍ତ । ସେ କାଳର ଗ୍ରୀସ୍‌ରେ ପ୍ଳେଟୋଙ୍କର ଏ ପଦକ୍ଷେପ ବୈପ୍ଳବିକ ନିଶ୍ଚୟ ।

ପ୍ଳେଟୋଙ୍କ ସମୟରେ ଅଧ୍ୟୟନର ପ୍ରଧାନ ବିଷୟ ଥିଲା ଗଣିତ ଓ ଦର୍ଶନ । ଆକାଡେମିର ପ୍ରବେଶ ଦ୍ୱାରରେ ଲିପିବଦ୍ଧ ସତର୍କବାଣୀଟି ଥିଲା ଏହିପରି—"ଜ୍ୟାମିତିରେ ଅଜ୍ଞ ବ୍ୟକ୍ତି ଭିତରକୁ ପ୍ରବେଶ କରିବା ନିଷେଧ ।" ଆକାଡେମିର ପ୍ରତିଷ୍ଠା ଦିନ ଠାରୁ ଆଲେକ୍‌ଜାଣ୍ଡ୍ରିଆରେ ବିଜ୍ଞାନର ଅଭ୍ୟୁଦୟ ପର୍ଯ୍ୟନ୍ତ ସବୁ ଜ୍ୟାମିତି ଗ୍ରନ୍ଥ ପ୍ରଣେତାମାନେ

ଆକାଡେମିରୁ ବାହାରିଥିଲେ । ପ୍ଲେଟୋ ଓ ତାଙ୍କର ସହକାରୀମାନେ ବକ୍ତୃତା ଓ ପ୍ରଶ୍ନୋତ୍ତର ଛଳରେ ଛାତ୍ରଙ୍କୁ ଶିକ୍ଷା ଦେଉଥିଲେ । ଜ୍ଞାନ ଦାନ ଶିକ୍ଷାର ଏକମାତ୍ର ଉଦ୍ଦେଶ୍ୟ ଥିଲା । ଯେଉଁ ଛାତ୍ରମାନେ ଅନ୍ୟ କିଛି ପାଇବା ଆଶାରେ ଯାଉଥିଲେ, ସେମାନଙ୍କୁ ନିରାଶ ହେବାକୁ ପଡ଼ୁଥିଲା । ମାତ୍ର ପ୍ରତିଭାବାନ୍ ଓ ଜ୍ଞାନାନ୍ୱେଷୀ ଛାତ୍ରମାନେ ଆକାଡେମିରେ ବିଶେଷ ଭାବେ ଉପକୃତ ହେଉଥିଲେ । ବହୁ ଶତାବ୍ଦୀ ପର୍ଯ୍ୟନ୍ତ ପ୍ଲେଟୋଙ୍କ ଆକାଡେମି ଥିଲା ଜ୍ଞାନ କ୍ଷେତ୍ରରେ ସମସ୍ତ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାରର ପୀଠ ।

ପ୍ଲେଟୋଙ୍କ ଆକାଡେମି ସ୍ଥାପିତ ହେବାର ଅଳ୍ପ କେତେ ବର୍ଷ ପୂର୍ବରୁ ଆଇସୋକ୍ରେଟସ୍ ଗୋଟିଏ ଆକାଡେମି ସ୍ଥାପନ କରିଥିଲେ । ମାତ୍ର ଜ୍ଞାନ ସାଧନା ପରିବର୍ତ୍ତେ କର୍ମକ୍ଷେତ୍ରରେ ଛାତ୍ରଙ୍କୁ ପ୍ରତିଷ୍ଠିତ କରାଇବା ଆଇସୋକ୍ରେଟସ୍‌ଙ୍କ ଆକାଡେମିର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଆକାଡେମି ଶବ୍ଦଟି ପ୍ଲେଟୋଙ୍କ ଆକାଡେମିରୁ ତାର ଅର୍ଥ ସଂଗ୍ରହ କରିଛି ।

ଆକାଡେମି ସ୍ଥାପନ କରିବା ଫଳରେ ପ୍ଲେଟୋଙ୍କୁ ତାଙ୍କ ଜୀବନର ଉପଯୁକ୍ତ କାମ ମିଳିଗଲା । ଦୀର୍ଘ ଚାଳିଶବର୍ଷ କାଳ ଅଧ୍ୟୟନ, ଅଧ୍ୟାପନା ଓ ଆକାଡେମିର ପରିଚାଳନାରେ ପ୍ଲେଟୋ ବୁଡ଼ି ରହିଥିଲେ । ଦୁଃଖର ବିଷୟ, ଛାତ୍ରଙ୍କୁ ପଢ଼ାଇବା ପାଇଁ ସେ ଯେଉଁ 'ନୋଟ୍' ପ୍ରସ୍ତୁତ କରୁଥିଲେ ସେ ସବୁ ହଜି ଯାଇଛି । ଜଗତରେ ଚିରକାଳ ପ୍ଲେଟୋଙ୍କ ପ୍ରତିଭା ଘୋଷଣା କରିବା ପାଇଁ ତାଙ୍କର ଡାଏଲଗ୍‌ଗୁଡ଼ିକ ଅବଶ୍ୟ ବଞ୍ଚି ରହିଛନ୍ତି । ଦର୍ଶନକୁ ଜନପ୍ରିୟ କରିବା ଉଦ୍ଦେଶ୍ୟରେ ଲିଖିତ ଡାଏଲଗ୍ ଗୁଡ଼ିକୁ କିନ୍ତୁ ପ୍ଲେଟୋ ନିଜେ ବା ତାଙ୍କର ଛାତ୍ରମାନେ ଗୁରୁତ୍ୱ ଦେଉ ନ ଥିଲେ ! ସେ ଗୁଡ଼ିକ ଯେ ସାଧାରଣ ଲୋକଙ୍କ ପାଇଁ ଲିଖିତ !

ସିରାକ୍ୟୁଜ୍‌ର ସ୍ୱେଚ୍ଛାଚାରୀ ରାଜା ପ୍ରଥମ ଡାଇଓନିସସ୍‌ଙ୍କ ମୃତ୍ୟୁ ପରେ ଡାୟନ୍‌ଙ୍କ ଅନୁରୋଧରେ ଦ୍ୱିତୀୟ ଡାଇଓନିସସ୍‌ଙ୍କ ଶିକ୍ଷାଭାର ଗ୍ରହଣ କରିବାକୁ ପ୍ଲେଟୋ ଖ୍ରୀ. ପୂ ୩୬୭ରେ ଦ୍ୱିତୀୟବାର ସିରାକ୍ୟୁଜ୍ ଯାଇଥିଲେ । ଯେଉଁ ରାଜ୍ୟକୁ ଥରେ ଯାଇ ସେଠାରୁ ଦାସ ଭାବେ ବିକ୍ରୀ ହୋଇଥିଲେ, ସେ ରାଜ୍ୟକୁ ପୁନର୍ବାର ପ୍ଲେଟୋ ଗଲେ କିପରି ? ଏହାର ଗୋଟିଏ ବଡ଼ କାରଣ ଅଛି । ପ୍ଲେଟୋ ଭାବିଲେ, ତାଙ୍କର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଚିନ୍ତାକୁ ବାସ୍ତବ ରୂପ ଦେବାର ସୁଯୋଗ ସିରାକ୍ୟୁଜ୍‌ରେ ମିଳିବ । ସେତେବେଳକୁ 'ରିପବ୍ଲିକ୍' ଲେଖା ସରିଥାଏ । ରିପବ୍ଲିକ୍‌ର ପ୍ରତିପାଦ୍ୟ ବିଷୟ ହେଉଛି, "ଯେ ପର୍ଯ୍ୟନ୍ତ ରାଜାମାନେ ଦାର୍ଶନିକ ହୋଇ ନାହାନ୍ତି

ବା ଦାର୍ଶନିକମାନେ ରାଜସିଂହାସନରେ ବସି ନାହାନ୍ତି, ସେ ପର୍ଯ୍ୟନ୍ତ ମାନବଜାତିର ଉଦ୍ଧାର ନାହିଁ ।" ଜଣେ ରାଜର୍ଷି କପରି ପ୍ରଜାପାଳନ କରେ ଜଗତବାସୀଙ୍କୁ ତାହା ଦେଖାଇ ଦେବାକୁ ପ୍ଳେଟୋ ଦ୍ୱିତୀୟ ଡାଇଓନିସସ୍‌ଙ୍କ ଶିକ୍ଷାଭାର ଗ୍ରହଣ କରିନେଲେ ।

ପ୍ରଥମ ଡାଇଓନିସସ୍‌ଙ୍କୁ କୌଣସି ବେମାର ହୋଇ ନ ଥିଲା ବା ସେ ଷଡ଼ଯନ୍ତ୍ରର ଶିକାର ହୋଇ ନ ଥିଲେ । ତାଙ୍କ ଦ୍ୱାରା ରଚିତ ଗୋଟିଏ ଟ୍ରାଜେଡି ଅନ୍ୟ ଏକ ନଗରରେ ପ୍ରଥମ ପୁରସ୍କାର ପାଇଥିବାରୁ ସେ ଗୋଟିଏ ଭୋଜିର ଆୟୋଜନ କରିଥିଲେ । ରାଜା ଏତେ ଖୁସି ହୋଇଯାଇଥିଲେ ଯେ ପ୍ରଚୁର ମଦ୍ୟପାନରେ ତାଙ୍କର ମୃତ୍ୟୁ ହେଲା ।

ସେତେବେଳକୁ ଦ୍ୱିତୀୟ ଡାଇଓନିସସ୍‌ଙ୍କ ବୟସ ପଚିଶ ବର୍ଷ । ଦୁର୍ବଳମନା, କ୍ଷୀଣ ଶରୀର ଜଣେ ଯୁବକ ରାଜାଙ୍କୁ ଗଣିତ, ଦର୍ଶନ ଆଦି ପଢ଼େଇବା କି ଜଟିଳ ବ୍ୟାପାର ତାହା ସହଜେ ଅନୁମେୟ । ଡାୟନ୍ ଜଣେ ବିଜ୍ଞ ଓ ବୁଦ୍ଧିମାନ୍ ବ୍ୟକ୍ତି । ପ୍ଳେଟୋଙ୍କ ଆକାଡେମିରେ ସେ କିଛି ବର୍ଷ କଟାଇଥିଲେ । ତାଙ୍କର ମନ୍ତ୍ରଣାରେ ଦ୍ୱିତୀୟ ଡାଇଓନିସସ୍ ରାଜ୍ୟ ଚଳାଇ ନେଉଥିଲେ । ତେଣୁ ମାମୁଁଙ୍କର କଥା ଭାଙ୍ଗି ନ ପାରି ପ୍ଳେଟୋଙ୍କୁ ନିମନ୍ତ୍ରଣ କରିଥିଲେ ।

ଶୁଭରେ ବିଦ୍ୟାରମ୍ଭ ହେଲା । ରାଜା ବୁଦ୍ଧିମାନ୍ ଓ ସଚ୍ଚରିତ୍ର ହେବା ଆବଶ୍ୟକ (କିଏ ମନା କରି ପାରିବ ?) । ସେଥିପାଇଁ ଜ୍ୟାମିତି ପଢ଼ିବା ଦରକାର । ନୈତିକ ଆଚରଣ ସମ୍ବନ୍ଧରେ ସ୍ପଷ୍ଟ ଧାରଣା ରଖିବା ଦରକାର । ରାଜା ଯେତେବେଳେ ଜ୍ୟାମିତି ପଢ଼ୁଛନ୍ତି ଦରବାର ସାରା ଜ୍ୟାମିତିରେ ମାତିଲା । ପାଠ ପଢା ପାଇଁ ବାଲିବସ୍ତାମାନ ଆସି ଦରବାରରେ ଜମା ହେଲା । ରାଜାଙ୍କୁ କି ଏ ସବୁ ପୋଷାଏ ? ସୁରା ଓ ସାକୀର ମଜା ପାଇଥିବା ଦୁର୍ବଳମନା ରାଜାଙ୍କୁ ଜ୍ୟାମିତିର ସ୍ୱାଦ ଚଖାଇବା ଜଣେ ପ୍ଳେଟୋ ପକ୍ଷରେ ମଧ୍ୟ ଅସମ୍ଭବ । କିପରି ଜ୍ୟାମିତି କବଳରୁ ଉଦ୍ଧାର ପାଇବେ ଡାଇଓନିସସ୍ ସେ ସୁଯୋଗ ଉଣ୍ଡୁଥାନ୍ତି । ପ୍ଳେଟୋଙ୍କ ପ୍ରତି ଅସନ୍ତୁଷ୍ଟ ଜଣେ ମନ୍ତ୍ରଣାଦାତା ରାଜାଙ୍କ କାନରେ ଗୋଟିଏ ମନ୍ତ୍ର ଫୁଙ୍କିଦେଲେ । କହିଲେ, ଏ ସବୁ ଜ୍ୟାମିତି ପଢ଼ା ଏଥେନ୍ସବାସୀଙ୍କର ଗୋଟାଏ ଗ୍ଲାନ୍ ବ୍ୟତୀତ ଅନ୍ୟ କିଛି ନୁହେଁ । ପଢ଼େଇବା ବାହାନାରେ ପ୍ଳେଟୋ ସିରାକ୍ୟୁଜ୍‌ର ନକ୍ସା ଟିପି ନେଉଛନ୍ତି । ସିରାକ୍ୟୁଜ୍‌କୁ ଯୁଦ୍ଧରେ ପାରୁ ନ ଥିବା ଏଥେନ୍ସର ଏଣିକି ଆଉ ଚିନ୍ତା କଣ ? ରାଜା ଏ କଥାକୁ ବିଶ୍ୱାସ କରନ୍ତୁ ବା ନ କରନ୍ତୁ ପାଠପଢ଼ାରୁ ରକ୍ଷା ପାଇବାର

ଗୋଟାଏ ବାଟ ପାଇଗଲେ । ସେ ଡାୟୋନ୍‌ଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରି ତାଙ୍କୁ ନିର୍ବାସିତ କଲେ । ଜଣେ ଦାର୍ଶନିକ ଶାସକ ଗଢ଼ିବାର ଯୋଜନାର ଏଇ ହେଲା ଶେଷ ପରିଣତି । ପ୍ଲେଟୋ ଏଥେନ୍‌ସ ଫେରିଲେ ।

ପ୍ଲେଟୋଙ୍କ ଦର୍ଶନର ସାରାଂଶ ପ୍ରଦାନ କରିବା ବା ସେ ଯାହା ଯାହା ଚିନ୍ତା କରିଥିଲେ ସେ ସବୁକୁ ଏକ, ଦୁଇ, ତିନି, ଚାରି କ୍ରମରେ ସଜେଇ କହିବା ଗୋଟିଏ ଅସମ୍ଭବ ବ୍ୟାପାର । ଏମର୍‌ସନ୍ (୧୮୦୩—୮୨) କହନ୍ତି, ଏ ପର୍ଯ୍ୟନ୍ତ ଚିନ୍ତାଶୀଳ ବ୍ୟକ୍ତିମାନେ ଯାହା ଭାବୁଛନ୍ତି ଓ ଲେଖୁଛନ୍ତି ସେ ସବୁର ମୂଳ ହେଉଛନ୍ତି ପ୍ଲେଟୋ । ବିଂଶ ଶତାବ୍ଦୀର ଅନ୍ୟତମ ବିଶିଷ୍ଟ ଦାର୍ଶନିକ ଓ ଗଣିତଜ୍ଞ ହ୍ୱାଇଟ୍‌ହେଡ଼୍‌ଙ୍କ ମତରେ ସମୁଦାୟ ୟୁରୋପୀୟ ଦର୍ଶନ ପ୍ଲେଟୋଙ୍କ ଲେଖାର ପାଦଟୀକା ! ଅର୍ଥାତ୍ ଆଜି ପର୍ଯ୍ୟନ୍ତ ପାଶ୍ଚାତ୍ୟ ଦାର୍ଶନିକମାନେ ଏପରି କିଛି ନୂଆ ଚିନ୍ତା କରି ନାହାନ୍ତି, ଯାହାର ବୀଜ ପ୍ଲେଟୋଙ୍କ ରଚନାବଳୀରେ ନାହିଁ !

ପ୍ଲେଟୋଙ୍କର ଫର୍ମ ତତ୍ତ୍ୱ (Theory of Forms) ଅମୂର୍ତ୍ତ ଚିନ୍ତନ (abstract thinking)ର ପ୍ରଥମ ମହାନ୍ ପଦକ୍ଷେପ । ଫର୍ମ କଅଣ ଗୋଟିଏ ଦୃଷ୍ଟାନ୍ତରୁ ତାହା ବୁଝିବା ସୁବିଧାଜନକ । ଅନେକ ମଣିଷ ଅଛନ୍ତି କିନ୍ତୁ "ମଣିଷ" ଗୋଟିଏ ଶ୍ରେଣୀ, ଜାତି ବା ପ୍ଲେଟୋଙ୍କ ଭାଷାରେ ଫର୍ମ । ଅନେକ ସୁନ୍ଦର ବସ୍ତୁ (ସୁନ୍ଦର ଫୁଲ, ସୁନ୍ଦର ଚିତ୍ର, ସୁନ୍ଦର ସ୍ୱାସ୍ଥ୍ୟ) ମଧ୍ୟରେ ଯାହା ସାଧାରଣ ତା ହେଉଛି ସୌନ୍ଦର୍ଯ୍ୟର ଫର୍ମ । ସୌନ୍ଦର୍ଯ୍ୟ ଫର୍ମର ଉପସ୍ଥିତି ଯୋଗୁ ଗୋଟିଏ ସୁନ୍ଦର ବସ୍ତୁ ସୁନ୍ଦର ହୋଇଯାଏ । ସୁନ୍ଦର ବସ୍ତୁମାନେ ଧ୍ୱଂସ ହୁଅନ୍ତି, ସେମାନଙ୍କ ସୌନ୍ଦର୍ଯ୍ୟ ଚାଲିଯାଏ, କିନ୍ତୁ ସୌନ୍ଦର୍ଯ୍ୟର ଫର୍ମ ଶାଶ୍ୱତ ଓ ଅମ୍ଳାନ । ଫର୍ମମାନେ ସ୍ଥାନ କାଳର ଅତୀତ, ସ୍ୱୟଂସୃଷ୍ଟ ଓ ସ୍ୱାସତ । ଫର୍ମମାନେ ଜ୍ଞାନର ବସ୍ତୁ ।

ସକ୍ରେଟିସ୍‌ଙ୍କର ସଂଜ୍ଞା ନିରୂପଣ ଫର୍ମତତ୍ତ୍ୱର ଅଗ୍ରଦୂତ । ସକ୍ରେଟିସ୍ ଫର୍ମ ସମ୍ବନ୍ଧରେ ଅବଗତ ଥିଲେ । କିନ୍ତୁ ପ୍ଲେଟୋ ତାଙ୍କର ଦାର୍ଶନିକ ଜୀବନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଫର୍ମ-ତତ୍ତ୍ୱର ବିଭିନ୍ନ ଦିଗ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିଛନ୍ତି ।

ପ୍ଲେଟୋ ପାଶ୍ଚାତ୍ୟର ପ୍ରଥମ ମହାନ୍ ରାଜନୀତି ତତ୍ତ୍ୱବିତ୍ । ବିଭିନ୍ନ ଶାସନ ଢାଞ୍ଚାର ସ୍ୱରୂପକୁ ସେ ଚମତ୍କାର ଭାବେ ବର୍ଣ୍ଣନା କରିଛନ୍ତି । ଆଦର୍ଶ ରାଷ୍ଟ୍ରର ସ୍ୱରୂପ ତାଙ୍କର ବିଖ୍ୟାତ

ରିପବ୍ଲିକ୍ ଡାଏଲଗ୍‌ରେ ବର୍ଣ୍ଣିତ । ଜ୍ଞାନୀ, ତତ୍ତ୍ୱଦର୍ଶୀ, ଦାର୍ଶନିକ-ଶାସକ ଆଦର୍ଶ ରାଷ୍ଟ୍ରର ଚାଳକ । ଆଦର୍ଶରାଷ୍ଟ୍ରରେ ଜ୍ଞାନର ସୋପାନ ଅନୁସାରେ ଶାସନର ବିଭିନ୍ନ ସୋପାନରେ ଶାସକମାନେ ଅବସ୍ଥାପିତ । ବାଲ୍ୟକାଳରୁ ଶାସକମାନଙ୍କୁ ଶିକ୍ଷା ଦେଇ କପରି ଗଢ଼ିବାକୁ ହେବ ତାର ଠିକନଖ 'ସିଲବସ୍' ରିପବ୍ଲିକ୍ ଡାଏଲଗ୍‌ରେ ପେଶ୍ ହୋଇଛି ।

ପ୍ଲେଟୋ ଜଣେ ଆଦର୍ଶବାଦୀ । ଆକାଡେମିରେ ନିର୍ମଳ ପରିବେଶ ଭିତରେ ଥାଇ ମଣିଷ କପରି ଉଚ୍ଚତର ସୋପାନକୁ ଯିବ, ସୁସ୍ଥ ଓ ଜନମଙ୍ଗଳ ରାଷ୍ଟ୍ର କପରି ପ୍ରତିଷ୍ଠିତ ହେବ ସେହି ଚିନ୍ତାରେ ସେ ଘାର ହେଉଥିଲେ । ସମାଜର କଲ୍ୟାଣ ସମ୍ବନ୍ଧରେ କେବଳ ଲେଖିବା ଓ ଚିନ୍ତା କରିବାରେ ସୀମାବଦ୍ଧ ନ ରହି ସିରାକ୍ୟୁଜ୍‌କୁ ଆଦର୍ଶ ନ ହେଲେ ମଧ୍ୟ ଗୋଟିଏ ଉନ୍ନତ ନଗର କରିବା ପାଇଁ ସେ ଡାଇଓନିସସ୍‌ଙ୍କ ଶିକ୍ଷାଭାର ଗ୍ରହଣ କରିଥିଲେ । ଫଳାଫଳ ଆମେ ଜାଣୁ । ପ୍ଲେଟୋ ଆଦର୍ଶବାଦୀ ମାତ୍ର ଅବାଧ୍ୟ ମଣିଷ ଓ ତାର ସମାଜକୁ ବଦଳାଇବା କେତେ କଷ୍ଟ, ସେ ବିଷୟରେ ସଚେତନ ଥିଲେ । ତା ବୋଲି ଜ୍ଞାନୀମାନେ ଚୁପ୍‌ଚାପ୍ ବସିଯିବେ ନାହିଁ । ମଣିଷ ସମାଜ ଓ ଦାର୍ଶନିକ ମଧ୍ୟରେ ସମ୍ପର୍କ, ଦାର୍ଶନିକର ଭାଗ୍ୟ ରିପବ୍ଲିକ୍ ଡାଏଲଗ୍‌ର ଗୋଟିଏ ରୂପକରେ ସୁନ୍ଦର ଭାବେ ରୂପ ପାଇଛି । ରୂପକଟି ଏହିପରି—

ମନେକର ଗୋଟିଏ ଗୁମ୍ଫା ଭିତରେ ଅନେକଗୁଡ଼ିଏ ଲୋକ ବାସ କରୁଛନ୍ତି । ସେମାନେ ପ୍ରତ୍ୟେକେ ଜନ୍ମରୁ ବନ୍ଦୀ । ଏପରି ବନ୍ଧାଯାଇଛନ୍ତି ଯେ କେବଳ ସାମନାକୁ ଚାହିଁ ପାରିବେ, ମୁଣ୍ଡ ବୁଲେଇ ପଛକୁ ଅନେଇ ପାରିବେ ନାହିଁ । ଗୁମ୍ଫା ଗୋଟିଏ ଆଲୋକର ଉତ୍ସ ଆଡ଼କୁ ମୁହାଁଇଛି କିନ୍ତୁ ବନ୍ଧନ ଯୋଗୁ ଗୁହାବାସୀମାନେ ଆଲୋକ ଆଡ଼କୁ ଚାହିଁବାକୁ ଅକ୍ଷମ । ଆଲୋକର ଉତ୍ସ ଓ ଗୁହା ମଧ୍ୟରେ ଗୋଟିଏ ପାଚେରୀ । ପାଚେରୀ ଆଡ଼ୁଆଳରେ ରହି କଣେଇ ଖେଳ ଦେଖାଳୀ କିଏ ଜଣେ ଗଛଲତା, ପଶୁପକ୍ଷୀ, ମଣିଷ ଓ ବିଭିନ୍ନ ବସ୍ତୁଙ୍କୁ ପାଚେରୀ ଉପରେ ରଖନ୍ତି । ଏ ସବୁର ଛାଇ ଗୁମ୍ଫାର କାନ୍ଥ ଉପରେ ପଡ଼େ । ଗୁହାମାନବ-ମାନେ କେବଳ ସାମନାକୁ ଚାହିଁ ପାରୁଥିବାରୁ ବସ୍ତୁଙ୍କର ଛାଇ ଓ ପରସ୍ପରର ଛାଇ ଦେଖନ୍ତି । ଆଜନ୍ମରୁ ଛାୟାଙ୍କୁ ଦେଖୁଥିବା ଗୁହାମାନବ ପକ୍ଷରେ ଛାୟା ହିଁ ବାସ୍ତବ ।

ମନେକର ଗୁହାର ଜଣେ ବନ୍ଦୀ କୌଣସି ପ୍ରକାରେ ମୁକୁଳି ପଦାକୁ ଚାଲିଆସିଲା । ହେଲେ ଆଲୁଅରେ ତାର ଅନଭ୍ୟସ୍ତ ଚକ୍ଷୁ ଝଲସି ଯିବ । ଅନ୍ଧାରିଆ ଗୁମ୍ଫା ଭିତରେ ସେ

ଛାଇ ସବୁ ଦେଖୁଥିଲା, ମାତ୍ର ଆଲୋକିତ ମୁକ୍ତ ଆକାଶ ତଳେ ସେ କିଛି ଦେଖିବାକୁ ଅକ୍ଷମ ! ଆଖି ଖୋଲିବାକୁ କଷ୍ଟ ! ତେବେ କାଳକ୍ରମେ ସେ ଆଲୋକରେ ଚାଲିବାକୁ ଅଭ୍ୟସ୍ତ ହୁଏ । ଅନୁଜ୍ଜ୍ୱଳ ବସ୍ତୁଙ୍କୁ ଦେଖିବାକୁ ଆରମ୍ଭ କରେ । କ୍ରମଶଃ ଗୋଟି ଗୋଟି କରି ବାସ୍ତବ ବସ୍ତୁମାନେ ତାକୁ ଦିଶନ୍ତି । ସେ ଜାଣିପାରେ ଅନ୍ଧାରିଆ ଗୁମ୍ଫା ଭିତରେ ସେ ଛାୟାଙ୍କୁ ଦେଖୁଥିଲା, ବାହାରର ଆଲୋକରେ ବାସ୍ତବ ବସ୍ତୁଙ୍କୁ ଦେଖୁଛି ।

ଅନୁଭବ ଜଗତରୁ ଫର୍ମ ରାଜ୍ୟକୁ ଗଲେ ବ୍ୟକ୍ତି ପ୍ରଥମେ କିଛି ଦେଖି ପାରେନା । ସମସ୍ତେ ଗଛ ଦେଖିଛନ୍ତି କିନ୍ତୁ ସମସ୍ତେ ଗଛର 'ଫର୍ମ' ଦେଖିବାକୁ ଅକ୍ଷମ ।

ଗୁହାମୁକ୍ତ ମାନବ ଯଦି ପୁଣି ଗୁମ୍ଫା ଭିତରକୁ ଫେରିଯାଏ ତେବେ ବିଚିତ୍ର ପରିସ୍ଥିତି ସୃଷ୍ଟି ହେବ । ଅନ୍ଧାରରେ ସେ କିଛି ଦେଖି ପାରିବ ନାହିଁ ! ସେ ଅନ୍ଧ ବୋଲି ତା ସାଥୀମାନେ ଥଟ୍ଟା କରିବେ । ଅନ୍ଧାରରେ କିଛିକାଳ ଅଭ୍ୟସ୍ତ ହୋଇଗଲେ ସେ ଅବଶ୍ୟ ଛାୟାଙ୍କୁ ଦେଖିପାରେ । ସେତିକି ନୁହେଁ, ଆଲୋକର ରାଜ୍ୟ ଦେଖି ଆସିଥିବାରୁ ଛାୟାମାନଙ୍କ ବ୍ୟାପାର ତା'ର ସାଥୀମାନଙ୍କ ଠାରୁ ଅଧିକ ଭଲ ବୁଝିପାରେ । ମାତ୍ର ସେ ଯଦି ସାଥୀଙ୍କ ବନ୍ଧନ ଫିଟାଇ ସେମାନଙ୍କୁ ଆଲୋକର ଉତ୍ସ ଆଡ଼େ ଚାହିଁବାକୁ କହେ, ତେବେ ଗୁରୁତର ପରିସ୍ଥିତି ସୃଷ୍ଟି ହେବ । କାରଣ ଆଲୋକ ଆଡ଼କୁ ଚାହିଁ ସେମାନେ ଯନ୍ତ୍ରଣା ଅନୁଭବ କରିବେ । ସେମାନଙ୍କୁ କିଛି ଦିଶିବ ନାହିଁ ! ସମସ୍ତେ ଗୁହାମୁକ୍ତ ମାନବକୁ ନିନ୍ଦା କରିବେ । ଆଲୋକ ଲୋଭୀ ସାଥିଟିକୁ ସେମାନେ ମାରି ପକାଇ ପାରନ୍ତି ।

ପ୍ଲେଟୋଙ୍କ ଭାଷାରେ ଏହି ରୂପକଟିର ବର୍ଣ୍ଣନା ମନୋମୁଗ୍‌ଧକର । ଏଥେନ୍‌ସର ଜନତା ହାତରେ ସକ୍ରେଟିସ୍‌ଙ୍କ ଦଶା କ'ଣ ହେଲା ? ଗୁମ୍ଫା ଭିତରେ ଆଲୋକ ରାଜ୍ୟରୁ ଆସିଥିବା ମୁକ୍ତ ମାନବ ପରି ! ତଥାପି ପ୍ରକୃତ ଦାର୍ଶନିକ ତା'ର ଅନ୍ଧାର ମୂଳକର ସାଥୀ-ମାନଙ୍କ ପାଖକୁ ଫେରେ । ଆଲୋକ ଆଡ଼କୁ ଅଗ୍ରସର ହେବାକୁ ସେମାନଙ୍କୁ ପ୍ରବର୍ତ୍ତାଏ । ସାଥୀମାନଙ୍କର ଦୟନୀୟ ଅବସ୍ଥା ଦେଖି ଥୟ ହୋଇ ରହିବା ତା ପକ୍ଷରେ ସମ୍ଭବ ନୁହେଁ ।

ଅପୂର୍ବ କଳ୍ପନା ! ଅପୂର୍ବ ବର୍ଣ୍ଣନା ! ବିଶ୍ୱ ସାହିତ୍ୟରେ ପ୍ଲେଟୋଙ୍କ ଡାଏଲଗ୍‌ଗୁଡ଼ିକର ବାସ୍ତବିକ୍ ତୁଳନା ନାହିଁ । ଉତ୍କୃଷ୍ଟ କବିତା ଓ ମହାନ୍ ଚିନ୍ତା ବା ଧର୍ମଭାବ ଛନ୍ଦ ହୋଇ-

ଯାଇଥିବା ଗ୍ରନ୍ଥ ଜଗତରେ ବିରଳ । ମାତ୍ର ଜଟିଳତା ଓ ତନ୍ଦ୍ରାକୁ ଛାଡ଼ି ପ୍ଳେଟୋଙ୍କ ରଚନାବଳୀର ଆଉ ଗୋଟାଏ ପ୍ରସ୍ଥ ଅଛି । ତାହା ହେଉଛି ନାଟକ । କଥୋପକଥନ ଛଳରେ ଆଲୋଚନାକୁ ଜମେଇ ଦେଇ ପ୍ଳେଟୋ ବେଶ୍ ନାଟକୀୟ ପରିସ୍ଥିତି ସୃଷ୍ଟି କରିପାରନ୍ତି । ଏକଦା ୟୁରିପିଡ଼ିଜ୍‌ଙ୍କ ପଦାଙ୍କ ଅନୁସରଣ କରିବାକୁ ଚାହୁଁଥିବା ବ୍ୟକ୍ତିଙ୍କର ଏପରି କୃତିତ୍ୱ ସ୍ୱାଭାବିକ୍ ।

ପ୍ଳେଟୋ ସମୁଦାୟ ଛତିଶ ଖଣ୍ଡ ଡାଏଲଗ୍‌ର ଲେଖକ । ସେମାନଙ୍କ ମଧ୍ୟରେ ରିପବ୍ଲିକ୍, ସିମ୍ପୋଜିୟମ୍, ଫିଡ଼ୋ (ମୃତ୍ୟୁ ପୂର୍ବରୁ ଶିଷ୍ୟମାନଙ୍କ ସହିତ ଆତ୍ମାର ଅମରତ୍ୱ ସମ୍ବନ୍ଧରେ ସକ୍ରେଟିସ୍‌ଙ୍କ ଆଲୋଚନା), ଆପୋଲୋଜି (ବିଚାରାଳୟରେ ସକ୍ରେଟିସ୍‌ଙ୍କର ବକ୍ତବ୍ୟ) ଓ ଲଅଜ୍ ପ୍ଳେଟୋଙ୍କ ଶେଷ ଡାଏଲଗ୍ । ରିପବ୍ଲିକ୍‌ର ପ୍ରତିଷ୍ଠା ଅସମ୍ଭବ ଜାଣି ସେ ଏହି ଡାଏଲଗ୍‌ରେ ଦ୍ୱିତୀୟ ସର୍ବୋତ୍କୃଷ୍ଟ ନଗରର ପରିକଳ୍ପନା କରିଛନ୍ତି । ରିପବ୍ଲିକ୍‌ର ଭିତ୍ତି-ଜ୍ଞାନ, ଲଅଜ୍‌ର ଭିତ୍ତି-ଆଇନ୍) ସୁପରିଚିତ ।



# ପିଲୋପୋନେସିଆନ୍ ଯୁଦ୍ଧ

※ ଏହି ଯୁଦ୍ଧ ଥିଲା ଗ୍ରୀକ୍‌ମାନଙ୍କ ମଧ୍ୟରେ ଅନ୍ତର୍ଯୁଦ୍ଧ ।

※ ଏହି ଯୁଦ୍ଧ ଫଳରେ ଗ୍ରୀକ୍ ଜାତିର ମେରୁଦଣ୍ଡ ଭାଙ୍ଗିଗଲା ।

※ ଗ୍ରୀସ୍ ସ୍ୱାଧୀନତା ହରାଇଲା ।

ସାଲମିସ୍ ରଣକ୍ଷେତ୍ରରେ ପାରସ୍ୟର ନିଶ୍ଚିତ ପରାଜୟ ଦିନଠାରୁ ଗ୍ରୀସ୍‌ର ସ୍ୱର୍ଣ୍ଣଯୁଗ ଆରମ୍ଭ । ସ୍ୱର୍ଣ୍ଣଯୁଗ ଶେଷ ହେବାର ଦୁଇଟି ତାରିଖ ଧରାଯାଏ । ପେରିକ୍ଲିଜ୍‌ଙ୍କ ମୃତ୍ୟୁ ଦିବସ ବା ସକ୍ରେଟିସ୍‌ଙ୍କ ମୃତ୍ୟୁ ଦିବସ । ଅର୍ଥାତ୍ ସ୍ୱର୍ଣ୍ଣଯୁଗର ସ୍ଥାୟିତ୍ୱ ପଚାଶ ବର୍ଷ (ଖ୍ରୀ. ପୂ. ୪୮୦—୪୨୯) ବା ସକ୍ରେଟିସ୍‌ଙ୍କ ଅନ୍ତିମଦିନ ପର୍ଯ୍ୟନ୍ତ ଗଣିଲେ ଅଶୀ ବର୍ଷ (ଖ୍ରୀ. ପୂ. ୪୮୦—୩୯୯) ।

ପେରିକ୍ଲିଜ୍‌ଙ୍କ ମୃତ୍ୟୁର ମାତ୍ର ଦୁଇବର୍ଷ ପୂର୍ବରୁ ପିଲୋପୋନେସିଆନ୍ ଯୁଦ୍ଧର ଆରମ୍ଭ । ସକ୍ରେଟିସ୍‌ଙ୍କ ମୃତ୍ୟୁ ପୂର୍ବରୁ ଏହି ଯୁଦ୍ଧ ଶେଷ । ତେଣୁ ପାରସ୍ୟ ଯୁଦ୍ଧଠାରୁ ପିଲୋପୋନେସିଆନ୍ ଯୁଦ୍ଧ (ଆରମ୍ଭ ବା ଶେଷ) ପର୍ଯ୍ୟନ୍ତ କାଳ ଗ୍ରୀସ୍‌ର ସ୍ୱର୍ଣ୍ଣଯୁଗ । ଗୋଟିଏ ଯୁଦ୍ଧରେ ଦୁର୍ଦ୍ଦାନ୍ତ ବିଦେଶୀ ଆକ୍ରମଣକାରୀଙ୍କୁ ଜିଣିବା ଫଳରେ ଗ୍ରୀସ୍‌ର ଅନ୍ତର୍ନିହିତ ଶକ୍ତି ଜାଗ୍ରତ ହେଲା । ଆଉ ଗୋଟିଏ ଯୁଦ୍ଧରେ ଆପଣା ଭିତରେ ମାରପିଟ୍ ହୋଇ ଗ୍ରୀକ୍ ଜାତି ଆତ୍ମହତ୍ୟା କଲା ।

ସ୍ୱର୍ଣ୍ଣଯୁଗ ଅନ୍ତେ ଗ୍ରୀସ୍‌ରେ ବଡ଼ ପ୍ରତିଭାଶାଳୀ ବ୍ୟକ୍ତି ଜନ୍ମ ହୋଇ ନ ଥିଲେ, ଏପରି ନୁହେଁ । କଥା ହେଉଛି ଗୋଟାଏ ଜାତିର ସ୍ୱର୍ଣ୍ଣଯୁଗ ସଂସ୍କୃତିର ବିକାଶ ପାଇଁ ଅତ୍ୟନ୍ତ ଅନୁକୂଳ ଯୋଗ । ଅନେକ ଶୁଭ କାରଣର ଯୋଗାଯୋଗ ଫଳରେ ଏ ଯୋଗ ସୃଷ୍ଟି ହୁଏ । ମଣିଷର ନିର୍ବୋଧତା, ଦୂରଦୃଷ୍ଟିର ଅଭାବ ଓ କାଳର ଚକ୍ରାନ୍ତ ଫଳରେ ତାହା ଭାଙ୍ଗିଯାଏ ।

ପେରିକ୍ଲିଜ୍‌ଙ୍କ ଅନ୍ତେ ଯେଉଁ ରାଜନୈତିକ ନେତାମାନେ ଆସିଲେ, ସେମାନଙ୍କୁ ଦେଖିଲେ ହୃଦ୍‌ବୋଧ ହୁଏ ଯେ କିଅଣ ଗୋଟାଏ ପରିବର୍ତ୍ତନ ଘଟିଗଲାଣି । ସେମାନେ ଅଯୋଗ୍ୟ ନୁହନ୍ତି, ବରଂ କାମିକା ମଣିଷ; କିନ୍ତୁ ସେମାନେ ଯେ ପେରିକ୍ଲିଜ୍‌ଙ୍କ ଠାରୁ ଭିନ୍ନ ଧାତୁରେ ଗଢ଼ା (ସମସ୍ତେ ତାଙ୍କ ଉଚ୍ଚତାର ନେତା ହୋଇଥାନ୍ତେ ବୋଲି ଆଶା କରିବା ଅନ୍ୟାୟ) ତାହା ଯେ କେହି ବୁଝିପାରେ ।

ଏଥେନ୍‌ସର ସାମ୍ରାଜ୍ୟବାଦୀ ମନୋବୃତ୍ତି, ଲୋଭ ଓ କରଦ ନଗରମାନଙ୍କୁ ଶୋଷଣ କରିବା ପ୍ରକୃତ ପିଲୋପୋନେସିଆନ୍ ଯୁଦ୍ଧର ଗୋଟିଏ ବଡ଼ କାରଣ । ଯୁଦ୍ଧ ଆରମ୍ଭ ପରେ ପେରିକ୍ଲିଜ୍ ଇହଧାମରୁ ବିଦାୟ ନେଇଥିଲେ ଏବଂ ଏଥେନ୍‌ସର ଭୁଲ୍‌କୁ ସୁଧାରି ରାଜନୈତିକ ବିଚକ୍ଷଣତା ବଳରେ ଗୋଟାଏ ସମାଧାନ କରିଦେବା ପରି ନେତା ଆଉ କେହି ବାହାରିଲେ ନାହିଁ ।

ଏଥେନ୍‌ସ ଅଧୀନରୁ ମୁକ୍ତ ହେବାପାଇଁ ବିଭିନ୍ନ ନଗର ବିଭିନ୍ନ ସମୟରେ ବିଦ୍ରୋହ ବା ଆପତ୍ତି କରିଛନ୍ତି । ଏଥେନ୍‌ସ ସେମାନଙ୍କୁ ଦୃଢ଼ଭାବେ ଦମନ କରିଛି । ପ୍ରତିଥର ଏଥେନ୍‌ସର ଦମନଲୀଳା ସପକ୍ଷରେ ଓ ବିପକ୍ଷରେ ଅନ୍ୟ ନଗରମାନେ ସ୍ୱର ଉଠାଇଛନ୍ତି । ଗ୍ରୀସର ଏହି ଆନ୍ତଃରାଜ୍ୟ ରାଜନୀତି ଭିତରକୁ ପ୍ରବେଶ କରିବା ଆମର ଉଦ୍ଦେଶ୍ୟ ନୁହେଁ । ଏଥେନ୍‌ସର ଆଧିପତ୍ୟରୁ କିଛି ସୁଫଳ ମିଳି ନ ଥିଲା କହିବା ମଧ୍ୟ ଠିକ୍ ନୁହେଁ । ଇଜିଆନ୍ ସମୁଦ୍ରରେ ବାଣିଜ୍ୟ ସମ୍ପୂର୍ଣ୍ଣ ଭାବେ ଏଥେନ୍‌ସର ନିୟନ୍ତ୍ରଣରେ ଥିଲା । କାହାର ପଣ୍ୟବାହୀ ଜାହାଜ କେଉଁଠାକୁ ବାଣିଜ୍ୟ କରିବାକୁ ଯିବ ସେ କଥା ମଧ୍ୟ ଏଥେନ୍‌ସର ବଣିକମାନେ ସ୍ଥିର କରୁଥିଲେ । କିଛିକାଳ ଆନ୍ତର୍ଜାତିକ ବାଣିଜ୍ୟକୁ ସୁବ୍ୟବସ୍ଥିତରୂପେ ପରିଚାଳନା କରି ଏଥେନ୍‌ସ ଇଜିଆନ୍ ସମୁଦ୍ରରେ ଶାନ୍ତିଶୃଙ୍ଖଳା ରକ୍ଷା କରିଥିଲା । ମାତ୍ର କିଛିକାଳ ପରେ

ଏଥେନ୍ସ ହୋଇ ଉଠିଲା ଅର୍ଥଲୋଭୀ । ପାରସ୍ୟଯୁଦ୍ଧ ସମୟରୁ ଆରମ୍ଭ ହୋଇଥିବା ନଗର ସଂଘ ବସ୍ତୁତଃ ଏଥେନ୍ସର ସାମ୍ରାଜ୍ୟରେ ପରିଣତ ହୋଇଥିଲା । ଗୋଟିଏ ନଗରକୁ ସଂଘଭୁକ୍ତ କରି ରଖିବା ପାଇଁ ଆବଶ୍ୟକାସ୍ଥ ସ୍ଥଳେ ବଳ ପ୍ରୟୋଗ କରାଯାଉଥିଲା । ବ୍ୟକ୍ତି ସ୍ୱାଧୀନତା ଓ ଗଣତନ୍ତ୍ରର ଧ୍ୱଜା ଉଡ଼ାଇଥିବା ଏଥେନ୍ସ ଆସେମ୍ବ୍ଲିରେ ପେରିକ୍ଲିଜ୍ଙ୍କ ଉତ୍ତରାଧିକାରୀ କ୍ଲିଅନ୍ ସ୍ପଷ୍ଟଭାବେ କହିଥିଲେ (ଖ୍ରୀ. ପୂ ୪୨୭) ଯେ ଏଥେନ୍ସର ଭଲକାମ ଯୋଗୁ ନୁହେଁ, କେବଳ ପ୍ରାଣଭୟରେ ସାମ୍ରାଜ୍ୟର ପ୍ରଜାମାନେ ଏଥେନ୍ସକୁ ମାନିକରି ଥାଆନ୍ତି ।

ସ୍ପାର୍ଟା ପ୍ରତି ଅନୁରକ୍ତ ମେଲସ୍ ଦ୍ୱୀପକୁ ବଳପୂର୍ବକ ଅଧିକାର କରିବା ସମୟରେ ଏଥେନ୍ସର ଦୂତ ଗୋଟିଏ ଆଜ୍ଞାପତ୍ର ନେଇ ଦ୍ୱୀପରେ ପ୍ରବେଶ କରିଥିଲା । ମେଲସ୍ର ଦୋଷ କଣ ? ଦୁର୍ବଳତା ! ଦୁର୍ବଳକୁ ସବଳ ଅଧିକାର କରିବା ପ୍ରକୃତିର ନିୟମ । ତେଣୁ ଏଥେନ୍ସ, ମେଲସ୍ ଅଧିକାର କରିବ ! ଆଜ୍ଞାପତ୍ରରେ ଲେଖାଥିଲା, "ଆମେ ଦେବତାଙ୍କୁ ବିଶ୍ୱାସ କରୁ ଓ ମଣିଷଙ୍କ ସମ୍ବନ୍ଧରେ ଜାଣୁ ଯେ ସେମାନେ ଯେଉଁଠି ପାରିବେ ସେଠି ଶାସନ କରିବା ସେମାନଙ୍କର ସ୍ୱଭାବ । ଆମ୍ଭେମାନେ ଏ ନିୟମର କର୍ତ୍ତା ନୋହୁଁ ବା ପ୍ରଥମକରି ଆମେ ଯେ ଏହାକୁ ପାଳନ କରୁଛୁ ତା ନୁହେଁ । ଏହା ପୂର୍ବରୁ ଥିଲା ଓ ଆମ ପରେ ମଧ୍ୟ ରହିବ । ତୁମର ବା ଆଉ କାହାରି ଯଦି ଆମପରି ଶକ୍ତି ଥାଆନ୍ତା, ତେବେ ଆମେ ଯାହା କରୁଛୁ ତମେ ଅବିକଳ ସେଇଆ କରନ୍ତ ।"

ସଫିଷ୍ଟମାନେ ପ୍ରକୃତିର ନିୟମ ଏଇଆ ବୋଲି ଶିକ୍ଷା ଦେଉଥିଲେ ।

ଏଥେନ୍ସ ଅଧୀନରେ ଥାଇ ମଧ୍ୟ ଇଜିଆନ୍ ଉପକୂଳର ନଗରଗୁଡ଼ିକ ବାଣିଜ୍ୟରୁ ବହୁତ ଧନ ଉପାର୍ଜନ କଲେ । ଏଥେନ୍ସ ଅଧୀନରେ ରହିବା ସେମାନଙ୍କୁ କାଳକ୍ରମେ ଅସହ୍ୟ ହେଲା । ଗୁପ୍ତରେ ସେମାନେ ସ୍ପାର୍ଟା ସହିତ ପରାମର୍ଶ କଲେ । ପ୍ରଥମରୁ ସ୍ପାର୍ଟା ଯୁଦ୍ଧରେ ପଶିବାକୁ ରାଜି ହେଉ ନ ଥିଲା । କାରଣ ପ୍ରଚୁର ସମ୍ପଦ ଠୁଳ କରିଥିବା ଓ ଜଳଯୁଦ୍ଧରେ ଅଜେୟ ଏଥେନ୍ସ ବିରୁଦ୍ଧରେ ଲଢ଼ିବାରେ ତାର ସ୍ୱାର୍ଥ କ'ଣ ? ମାତ୍ର ଡୋରିଆନ୍ ଓ ଆୟୋନିଆନ୍ ଜାତିଭେଦ କଥା ଉଠାଇ ଏଥେନ୍ସର ଶତ୍ରୁମାନେ ସ୍ପାର୍ଟାକୁ ଉତ୍ତ୍ୟକ୍ତ

କଲେ । ସ୍ପାର୍ଟାରେ ଧନୀକତନ୍ତ୍ର ସରକାର ଓ ଏଥେନ୍ସରେ ଗଣତାନ୍ତ୍ରିକ ସରକାର ଶାସନ କରୁଥିଲା । ଜାତିଗତ ଓ ଆଦର୍ଶଗତ ବିଭେଦ ଜନିତ ବୈରିଭାବରେ ଅଗ୍ନିସଂଯୋଗ କରି ଏଥେନ୍ସ ବିରୋଧୀମାନେ ସ୍ପାର୍ଟାକୁ ଯୁଦ୍ଧପାଇଁ ମତାଇଲେ ।

ସ୍ପାର୍ଟାବାସୀ ଡୋରିଆନ, ଏଥେନ୍ସବାସୀ ଆୟୋନିଆନ୍ । ଏଥେନ୍ସ ଦ୍ୱାରା ଅତ୍ୟାଚରିତ ନଗରଙ୍କ ମଧ୍ୟରେ ଅନେକ ଡୋରିଆନ୍ ନଗର ଥିଲେ ।

ସ୍ପାର୍ଟାରୁ ଧମକ ଗଲା—ଏଥେନ୍ସ ତା ଅଧୀନସ୍ଥ ଗ୍ରୀକ୍ ନଗରଙ୍କୁ ମୁକ୍ତ ଦେଉ । ପେରିକ୍ଲିଜ୍ ଉତ୍ତର ଦେଲେ, ଆମେ ଯୁଦ୍ଧ ଆରମ୍ଭ କରିବାକୁ ଚାହୁଁନା, ମାତ୍ର ଆମ ଉପରେ ଆକ୍ରମଣ ହେଲେ କପରି ଆତ୍ମରକ୍ଷା କରିବାକୁ ହୁଏ ଆମେ ଜାଣୁ ।”

ଖ୍ରୀ· ପୂ ୪୩୧ରେ ପିଲୋପୋନେସିଆନ୍ ଯୁଦ୍ଧ ଆରମ୍ଭ ହେଲା । ସ୍ପାର୍ଟୀୟମାନେ ମାଡ଼ି ଆସି ଆଟିକାର ଗ୍ରାମାଞ୍ଚଳ ଓ ଶସ୍ୟକ୍ଷେତ୍ର ଧ୍ୱଂସ କଲେ । ପେରିକ୍ଲିଜ୍‌ଙ୍କ ନିର୍ଦ୍ଦେଶ ଅନୁସାରେ ଗ୍ରାମବାସୀମାନେ ପ୍ରାଚୀରବେଷ୍ଟିତ ଏଥେନ୍ସ ନଗରରେ ଆଶ୍ରୟ ନେଇଥାନ୍ତି । ଶତ୍ରୁ ସେମାନଙ୍କ ଶସ୍ୟକ୍ଷେତ୍ର ଛାରଖାର କରି ଦେଉଛି ଦେଖି ଲୋକେ ଅସମ୍ଭାଳ ହେଉଥାନ୍ତି । ମାତ୍ର ସ୍ଥଳ ଯୁଦ୍ଧରେ ସ୍ପାର୍ଟାର ମୁକାବିଲା କରିବାକୁ ପେରିକ୍ଲିଜ୍ ଚାହୁଁ ନ ଥିଲେ । ଏଥେନ୍ସର ଯୁଦ୍ଧ ଜାହାଜ ସ୍ପାର୍ଟା ଉପକୂଳରେ ଲାଗି ଶତ୍ରୁ ଉପରେ ଚଡ଼ୋଉ କରିବା ଥିଲା ପେରିକ୍ଲିଜ୍‌ଙ୍କ ଯୋଜନା । ଏଥେନ୍ସର ରାଜକୋଷରେ ବିପୁଳ ସମ୍ପତ୍ତି ଗଚ୍ଛିତ ଥିଲା । ସୁଦୂର ଦକ୍ଷିଣ ରୁଷିଆରୁ ଯଥେଷ୍ଟ ଖାଦ୍ୟଶସ୍ୟ ଏଥେନ୍ସର ଜାହାଜମାନଙ୍କରେ ବୋଝେଇ ହୋଇ ଆସୁଥିଲା । ପେରିକ୍ଲିଜ୍ ଜାଣିଥିଲେ, ଧୈର୍ଯ୍ୟର ସହିତ ଧୀରସ୍ଥିର ଭାବେ କାର୍ଯ୍ୟ କଲେ ବିଜୟ ସୁନିଶ୍ଚିତ ।

ପେରିକ୍ଲିଜ୍‌ଙ୍କ ଯୋଜନା ଓ ରଣ କୌଶଳ ନିର୍ଭୁଲ । କିନ୍ତୁ ଦୁର୍ଭାଗ୍ୟବଶତଃ ଏଥେନ୍ସରେ ମହାମାରୀ ପଶିଲା । ନଗରର ଏକ ଚତୁର୍ଥାଂଶ ଲୋକ ମେଲେରିଆରେ ପ୍ରାଣ ଦେଲେ । ଯୁଦ୍ଧବେଳେ ଏପରି ମହାମାରୀକୁ ବିଧାତାର ଅଭିଶାପ ବ୍ୟତୀତ କ'ଣ କହିବା ? ପେରିକ୍ଲିଜ୍‌ଙ୍କର ଦୁଇପୁଅଙ୍କୁ ମହାମାରୀ ପୋଛି ଦେଲା । ତା'ପର ବର୍ଷ ସେ ନିଜେ ମୃତ୍ୟୁ ମୁଖରେ ପଡ଼ିଲେ । ଏଥେନ୍ସର ଜୀବନ ମରଣ ସଙ୍କଟ ବେଳାରେ ତାର ମହାନ୍ ନେତା

ଗ୍ଭଲିଥିବା ନଗର ପକ୍ଷରେ ଏକ ଦାରୁଣ ଧକ୍‌କା । ଏହି ସଙ୍କଟରୁ ଏଥେନ୍‌ସକୁ ପୁଣି ଉଠାଇ ଆଣିବା ପରି ନେତା ଆଉ ନ ଥିଲେ ।

ପିଲୋପୋନେସିଆନ୍ ଯୁଦ୍ଧରେ ପ୍ରାୟ ସମସ୍ତ ନଗର ଏଥେନ୍‌ସ ବା ସ୍ପାର୍ଟା ପକ୍ଷଭୁକ୍ତ ହୋଇଥିଲେ । ଯୁଦ୍ଧର ବହ୍ନିଶିଖା ସମଗ୍ର ଗ୍ରୀସ୍‌କୁ ଗ୍ରାସିଗଲା । ଯୁଦ୍ଧ ଗ୍ଭଲିଲା ଦୀର୍ଘ ସତେଇଶ ବର୍ଷ । କେତେବେଳେ ସ୍ପାର୍ଟା ଜିଣୁଥିଲା ତ ଆଉ କେତେବେଳେ ଏଥେନ୍‌ସ । ଗୋଟାଏ ବୃହତ୍ତର ଲକ୍ଷ୍ୟହୀନ, ଅର୍ଥହୀନ ଯୁଦ୍ଧରେ ମାତି ଗ୍ରୀକ୍ ଜାତି ଯେ ଦୁର୍ବଳ ହୋଇ ପ୍ରାଣଶକ୍ତି ହରାଉଥିଲା ସେଥିରେ ସନ୍ଦେହ ନାହିଁ ।

ପେରିକ୍ଲିଜ୍‌ଙ୍କ ଅନ୍ତେ ନୂଆ ଧରଣର ନେତାମାନେ ଏଥେନ୍‌ସର ଦାୟିତ୍ୱ ବହନ କଲେ । ଏମାନଙ୍କ ପାଖରେ ପେରିକ୍ଲିଜ୍‌ଙ୍କ ଜ୍ଞାନ, ବୁଦ୍ଧି, ଉଦାର ଦୃଷ୍ଟିକୋଣ, ଦେଶପ୍ରେମ, କର୍ତ୍ତବ୍ୟନିଷ୍ଠା ବା ରାଜନୈତିକ ବିଚକ୍ଷଣତା ନ ଥିଲା । ତାଙ୍କ ସହିତ ଏମାନଙ୍କ ତୁଳନା କଲେ ଏଥେନ୍‌ସର ଭାଗ୍ୟରବି ଯେ ପଶ୍ଚିମକୁ ଢଳିଛନ୍ତି ସେ କଥା ସ୍ପଷ୍ଟ ହୋଇଯାଏ । ପେରିକ୍ଲିଜ୍‌ଙ୍କ ଉତ୍ତରାଧିକାରୀମାନେ ହେଉଛନ୍ତି ଚମଡ଼ା ବଣିକ କ୍ଲିଅନ୍, ଦଉଡ଼ି ବ୍ୟବସାୟୀ ୟୁକ୍ରେଟିସ୍ ଓ ଲାମ୍ପ ବିକ୍ରେତା ହାଇପର୍‌ବୋଲସ୍ । ଗୋଟାଏ ରାଜ୍ୟକୁ ସମ୍ଭାଳିଲା ପରି ଶିକ୍ଷାଦୀକ୍ଷା ବା ପ୍ରସ୍ତୁତି ଏମାନଙ୍କର ନ ଥିଲା । ଯୁଦ୍ଧ ବେଳେ ଲୋକଙ୍କୁ ଚଗେଇ ମତେଇ ସେମାନଙ୍କ ସମର୍ଥନ ଆଦାୟ କରିବାର ବାକ୍‌ଚାତୁରୀ କେବଳ ଏମାନଙ୍କ ଜଣାଥିଲା । ଏହି ନୂଆ ନେତାମାନେ ଅମାର୍ଜିତ, ସ୍ୱାର୍ଥପର ଓ ଦୁର୍ନୀତିଗ୍ରସ୍ତ । କ୍ଲିଅନ୍ ଜଣେ ଗଣବକ୍ତା । ବକ୍ତୃତା ଦେବା ସମୟରେ ସେ ଲୁଗା ଟେକି ଜାନୁସ୍ଫୋଟ କରୁଥିଲେ । ତାଙ୍କ ପୂର୍ବରୁ ଏଥେନ୍‌ସରେ ଏପରି ଦୃଶ୍ୟ ଦେଖା ନ ଥିଲା । ସେ ସର୍ବଦା ଶ୍ରମିକର ପୋଷାକ ପିନ୍ଧି ସର୍ବସାଧାରଣ ସଭାରେ ଉପସ୍ଥିତ ହୁଅନ୍ତି । ଥରେ ଯୁଦ୍ଧ କ୍ଷେତ୍ରରେ ଅଦ୍ଭୁତ ସାହସ ଓ ଦକ୍ଷତାର ପରିଚୟ ଦେଇ ସେ ସ୍ପାର୍ଟାକୁ ଜିଣିଥିଲେ । କିନ୍ତୁ ଏଥେନ୍‌ସ ଅଧୀନସ୍ଥ ନଗରଗଡ଼ିକରୁ ଯଥେଚ୍ଛା କର ଆଦାୟ କରିବା ପରି ଘଟଣା ଜଣାଇଦିଏ ଯେ ନେତା ହେବା ପରି ସଦ୍‌ଗୁଣ ତାଙ୍କର ନ ଥିଲା ।

ଲଢ଼େଇ କରୁଥିବା ସମୟରେ କ୍ଲିଅନ୍‌ଙ୍କର ମୃତ୍ୟୁ ହୋଇଥିଲା । ସ୍ପାର୍ଟାର ସୁଦକ୍ଷ ସେନାପତି ମଧ୍ୟ ସେହି ଯୁଦ୍ଧରେ ପ୍ରାଣ ହରାଇଲେ । ଏ ବିପଦ ସହିତ ସେତିକିବେଳେ ଦାସ-

ମାନଙ୍କର ( Heltos )ବିଦ୍ରୋହ ମୁଣ୍ଡ ଟେକିଲା । ସ୍ପାର୍ଟା ଯୁଦ୍ଧ ବିରତିର ପ୍ରସ୍ତାବ ଦେଲା । ଏଥେନ୍ସ ମଧ୍ୟ ଏଥିରେ ରାଜି ହୋଇଗଲା ( ଖ୍ରୀ. ପୂ ୪୨୧ ) । କେବଳ ଯେ ଯୁଦ୍ଧ ସରିଲା ତା ନୁହେଁ, ଦୁଇ ନଗର ପଚାଶ ବର୍ଷିଆ ଶାନ୍ତି ଚୁକ୍ତିରେ ସ୍ୱାକ୍ଷର କଲେ । ଦରକାର ପଡ଼ିଲେ ସ୍ପାର୍ଟାର ଆଭ୍ୟନ୍ତରୀଣ ବିଦ୍ରୋହ ଦମନ କରିବାରେ ସାହାଯ୍ୟ କରିବାକୁ ଏଥେନ୍ସ ବନ୍ଧୁତାର ହାତ ବଢ଼ାଇଲା ।

ନେତୃତ୍ୱର ଅଭାବ ଓ ବ୍ୟକ୍ତିଗତ ଉଚ୍ଚାଭିଳାଷ ପଚାଶ ବର୍ଷିଆ ଶାନ୍ତି ଚୁକ୍ତିକୁ ଛଅ ବର୍ଷରେ ଭାଙ୍ଗି ଦେଲା । ଏଥେନ୍ସ ଆକାଶରେ ଧୂମକେତୁ ପରି ଆଲ୍‌ସିବିଏଡ଼ୀଜ୍‌ଙ୍କର ଆବିର୍ଭାବ ଏହାର ମୁଖ୍ୟ କାରଣ । ଆଲ୍‌ସିବିଏଡ଼ୀଜ୍ ଏକ ନଷ୍ଟ ପ୍ରତିଭା । ଏହି ଅଭିଜାତ ତରୁଣକୁ ପ୍ଲେଟୋ ଠିକ୍ ଭାବେ ଚିତ୍ରଣ କରିଛନ୍ତି । ସକ୍ରେଟିସ୍‌ଙ୍କୁ ବୁଝିପାରିବାର କ୍ଷମତା ଆଲ୍‌ସିବିଏଡ଼ୀଜ୍‌ଙ୍କର ଥିଲା । ସକ୍ରେଟିସଙ୍କ କଥା ଶୁଣି ସେ କାନ୍ଦି ପକାଉଥିଲେ । ସେଥିପାଇଁ ତାଙ୍କ ଠାରୁ ଲୁଚି ରହି ଆଲ୍‌ସିବିଏଡ଼ୀଜ୍ ଭିନ୍ନ ପଥରେ ଚାଲିଥିଲେ ।

ଆଲ୍‌ସିବିଏଡ଼ୀଜ୍‌ଙ୍କ ଠାରେ ଜନମନ ମୋହିନୀ ଶକ୍ତି ଥିଲା । ଦେଖିବାକୁ ସେ ଥିଲେ କନ୍ଦର୍ପ ପରି ସୁନ୍ଦର । ବେପରୁଆ, ଦୁଃସାହସୀ ଓ ଯୁଦ୍ଧ ପରିଚାଳନାରେ ଧୂରନ୍ଧର । ଏହି ଯୁବକଙ୍କର ବାଗ୍ମିତାରେ ଜନତା ପାଗଳ ହୋଇ ଉଠିଥିଲା । ଏପରିକି ତାଙ୍କର କୁକର୍ମ ଓ ଓ ପାପାଚାରକୁ ଲୋକେ ପ୍ରଶଂସା କରୁଥିଲେ । ଆଲ୍‌ସିବିଏଡ଼ୀଜ ଥିଲେ ତରୁଣମାନଙ୍କର ହିରୋ । ଥରେ ସାଙ୍ଗମାନଙ୍କ ସହିତ ବାଜି ପକେଇ ସେ ଏଥେନ୍ସର ସବୁଠାରୁ ଧନୀ ଓ ଜଣେ ପ୍ରତିପତ୍ତିଶୀଳ ବ୍ୟକ୍ତିଙ୍କୁ ବଜାର ଉପରେ ପିଟିଲେ । ପରଦିନ ସକାଳେ ଉକ୍ତ କୁବେରପତିଙ୍କ ଘରେ ପହଞ୍ଚି ସେ ଏପରି ଅଭିନୟ କଲେ ଯେ ଭଦ୍ରବ୍ୟକ୍ତି ମୁଗ୍ଧ ହୋଇ ଆଲ୍‌ସିବିଏଡ଼ୀଜ୍‌ଙ୍କ ସହିତ ନିଜ କନ୍ୟାର ବିବାହ କରିଦେଲେ । ବେଶ୍ ମୋଟା ଯୌତୁକ ନେବାକୁ ଆଲ୍‌ସିବିଏଡ଼ୀଜ୍ ଛାଡ଼ି ନ ଥିଲେ । ଘଟଣାଟି ତାଙ୍କ କର୍ମ ଦକ୍ଷତାର ଏକ ପ୍ରମାଣ ମାତ୍ର ।

ସୁନ୍ଦରୀ ନାରୀ ଓ କଳାବିନୋଦିନୀ ଗଣିକାଙ୍କ ସହିତ ଆଲ୍‌ସିବିଏଡ଼ୀଜ୍‌ଙ୍କ ସୁସମ୍ପର୍କ ବିଷୟ ତାଙ୍କ ସ୍ତ୍ରୀଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କୁ ଜଣା ଥିଲା । ତେବେ ଅଳ୍ପଦିନେ ସ୍ତ୍ରୀ ସବୁ ଜାଣିପାରିଲେ ଓ ଆଲ୍‌ସିବିଏଡ଼ୀଜ୍‌ଙ୍କୁ ଛାଡ଼ପତ୍ର ଦେବାକୁ ସ୍ଥିର କଲେ । ଅଭିଯୋଗ କରିବାକୁ ସ୍ତ୍ରୀ କୋର୍ଟକୁ ଯାଇଥାନ୍ତି । ଆଲ୍‌ସିବିଏଡ଼ୀଜ୍ ଖବର ପାଇ ପହଞ୍ଚିଲେ ଓ ତାଙ୍କୁ

କୋର୍ଟରୁ ଟାଣି ଟାଣି ଘର ପର୍ଯ୍ୟନ୍ତ ଆଣିଲେ । ରାସ୍ତାଯାକ ଲୋକ ଦେଖୁଥାନ୍ତି, ହେଲେ ଜଣେ ମଧ୍ୟ ପାଟି ଫିଟେଇ ପଦେ କହିଲ ନାହିଁ । ନିୟମ ଭାଙ୍ଗିବା କାହାକୁ ମାର୍‌ପିଟ୍ କରିବା ଥିଲା ତାଙ୍କର ଦୈନନ୍ଦିନ କାମ । ଲୋକେ ପ୍ରତିବାଦ କରିବେ କ'ଣ, ମନ ଭିତରେ ଏଥିପାଇଁ ତାଙ୍କୁ ପ୍ରଶଂସା କରୁଥିଲେ ।

ସମାଜର ନାଲି ଆଖି, ପାପ ଭୟ ଓ ବିବେକର ବାରଣକୁ ଭ୍ରୂକ୍ଷେପ ନ କରି ଜୀବନକୁ ଉପଭୋଗ କରିବାରେ ମାତିଥିବା ଆଲ୍‌ସିବିଏଡୀଜ୍‌ଙ୍କର ଦର୍ଶନ ଲୋକଙ୍କୁ ଆକୃଷ୍ଟ କରୁଥିଲା । ତାଙ୍କ ସମ୍ବନ୍ଧରେ ଏତେକଥା କହିବାର କାରଣ ଆଲ୍‌ସିବିଏଡୀଜ୍‌ଙ୍କର ଲୋକପ୍ରିୟତାର ତତ୍କାଳୀନ ଏଥେନ୍‌ସର ନୈତିକ ଅବସ୍ଥିତି କଳି ହୁଏ । କଥା କହିଲା ବେଳେ ଆଲ୍‌ସିବିଏଡୀଜ୍ ଟିକିଏ ଖନୋଉ ଥିଲେ (ଯଦିଓ ସେ ଜଣେ ବଡ଼ ବାଗ୍ମୀ) । ତାଙ୍କରି ପରି ଖନେଇ ପାରିବା ପାଇଁ ଅଭ୍ୟାସ କରିବାରେ ଯୁବକମାନେ ଲାଗି ପଡ଼ିଲେ । ସେ ଯେପରି ଜୋତା ପିନ୍ଧୁଥିଲେ ତାହା 'ଆଲ୍‌ସିବିଏଡୀଜ୍ ଜୋତା' ନାମରେ ଖ୍ୟାତ ହେଲା । ଏହି ଜନପ୍ରିୟ ବ୍ୟକ୍ତିଙ୍କର ବିଳାସପୂର୍ଣ୍ଣ ଜୀବନ ଏଥେନ୍‌ସରେ ଅଭୂତପୂର୍ବ । ଏହାର ପ୍ରଭାବ ଲୋକଙ୍କ ଉପରେ ପଡ଼ିବା ସ୍ୱାଭାବିକ୍ ।

ପେରିକ୍ଲିଜ୍‌ଙ୍କ ମୃତ୍ୟୁ ପରେ ରାଜନୀତିରେ ପ୍ରବେଶ କରି ଆଲ୍‌ସିବିଏଡୀଜ୍ ଦେଖିଲେ, ତାଙ୍କର ଏକମାତ୍ର ପ୍ରତିଦ୍ୱନ୍ଦୀ ହେଉଛନ୍ତି ନିସିଆସ୍ । ନିସିଆସ୍ ଜଣେ ସମ୍ଭ୍ରାନ୍ତ ବଂଶଜ, ଶାନ୍ତିପ୍ରିୟ ମିତବାକ୍ ନେତା । ନିସିଆସ୍‌ଙ୍କୁ ଦବେଇବାକୁ ଆଲ୍‌ସିବିଏଡୀଜ୍ ଯୁଦ୍ଧର ବନ୍ଦନା ଗାଇଲେ । ବାହୁବଳରେ ନଗରର ପୂର୍ବ ଗୌରବ ଫେରାଇ ଆଣିବା ପାଇଁ ଲୋକଙ୍କୁ ମତାଇଲେ ।

ଆଲ୍‌ସିବିଏଡୀଜ୍ ପେରିକ୍ଲିଜ୍‌ଙ୍କ ଆତ୍ମୀୟ ଓ ତାଙ୍କରି ଘରେ ରହି ବଢ଼ିଥିଲେ । ସେ ସକ୍ରେଟିସ୍‌ଙ୍କ ଆଲୋଚନା ଶୁଣିବାକୁ ଭଲ ପାଉଥିଲେ । ଏ କଥା ଭୁଲିଗଲେ ଚଳିବ ନାହିଁ ଯେ କଳା, ସାହିତ୍ୟ, ଦର୍ଶନ ପ୍ରତି ତାଙ୍କର ଅନୁରାଗ ଥିଲା । ଗୁଣ ଓ ଦୁର୍ଗୁଣ ସବୁ ମିଶି ତାଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱ ଗଢ଼ା ।

ଇଟାଲି ଓ ସିସିଲିର ଧନୀ ନଗର କେତୋଟି ଉପରେ ଆଲ୍‌ସିବିଏଡୀଜ୍‌ଙ୍କର ଲୋଲୁପ ଦୃଷ୍ଟି ପଡ଼ିଲା । ସିରାକ୍ୟୁଜ୍ ସିସିଲିର ସବୁଠାରୁ ଧନୀ ଓ ପ୍ରତାପୀ ନଗର । ସିସିଲି ଠାରୁ ଖାଦ୍ୟ ଶସ୍ୟ ଓ ସମ୍ପତ୍ତି ପାଇ ସ୍ପାର୍ଟା ଭବିଷ୍ୟତରେ ଏଥେନ୍‌ସ ସହିତ ଲଢ଼ିବାର ବଳ ପାଇବ ବୋଲି ଯୁକ୍ତି କରି ଆଲ୍‌ସିବିଏଡୀଜ୍ ସିରାକ୍ୟୁଜ୍ ଆକ୍ରମଣ

କରବାର ପ୍ରସ୍ତାବ ଆସେମ୍ବ୍ଲିରେ ପାଶ୍ କରାଇ ନେଲେ । ସ୍ପାର୍ଟାର ସ୍ୱାର୍ଥ ଦୃଷ୍ଟିରୁ ଏ ଘଟଣାରେ ସ୍ପାର୍ଟା ଉତ୍‌କ୍ଷିପ୍ତ ହେବା ସ୍ୱାଭାବିକ୍ ।

ଆଲ୍‌ସିବିଏଡିଜ୍‌ଙ୍କର ନେତୃତ୍ୱରେ ଏଥେନ୍‌ସର ଯୁଦ୍ଧ ଜାହାଜ ସିସିଲି ଅଭିମୁଖେ ବାହାରିବାର ଅଳ୍ପ କେତେଦିନ ପୂର୍ବରୁ ଗୋଟିଏ ଅଦ୍ଭୁତ ଘଟଣା ଏଥେନ୍‌ସକୁ ସ୍ତବ୍ଧ କରି-ଦେଲା । ଦିନେ ସକାଳୁ ଦେଖାଗଲା, ନଗର ସାରା ହର୍ମିଜ୍ ଦେବତାଙ୍କର ସବୁ ମୂର୍ତ୍ତି ବିକଳାଙ୍ଗ ! ରାତିରେ ଦୁର୍ବୃତ୍ତମାନେ ଦେବତାଙ୍କର ମୂର୍ତ୍ତିଗୁଡ଼ିକରୁ ନାକ, କାନ ଓ ଲିଙ୍ଗ ଭାଙ୍ଗି ଦେଇଛନ୍ତି । ଏପରି କିଏ କଲା ଓ କାହିଁକି ? ସନ୍ଦେହ କରାଗଲା ଯେ ଆଲ୍‌ସିବିଏଡିଜ୍‌ଙ୍କ ନେତୃତ୍ୱରେ ତାଙ୍କର ମାତାଲ୍ ବନ୍ଧୁମାନେ ଏ କାଣ୍ଡ ଭିଆଇଛନ୍ତି ! ଅବଶ୍ୟ ନିର୍ଦ୍ଦିଷ୍ଟ ପ୍ରମାଣର ଅଭାବ ଥିଲା । ଆଲ୍‌ସିବିଏଡିଜ୍ ତାଙ୍କ ନାମରେ ଉଠୁଥିବା ଦୁର୍ନାମର ପ୍ରତିବାଦ କରି ସଙ୍ଗେ ସଙ୍ଗେ ଘଟଣାର ଉପଯୁକ୍ତ ବିଚାର ପାଇଁ ଦାବୀ କଲେ । ମାତ୍ର ସେ ସିସିଲିରୁ ଫେରିବା ପର୍ଯ୍ୟନ୍ତ ବିଚାରକୁ ଗଡ଼େଇ ଦିଆଗଲା ।

ଆଲ୍‌ସିବିଏଡିଜ୍ ବାହାର ଗଲାପରେ (ଖ୍ରୀ. ପୂ ୪୧୫) ମୂର୍ତ୍ତି ଭଙ୍ଗା ବ୍ୟାପାରରେ ତାଙ୍କ ବିରୁଦ୍ଧରେ ଅଧିକ ପ୍ରମାଣ ମିଳିଲା । ଲୋକମାନେ ଉତ୍ତ୍ୟକ୍ତ ହେଲେ । ଲୋକଙ୍କ ଦାବୀକୁ ଏଡ଼ି ନ ପାରି ବିଚାର ପାଇଁ ତାଙ୍କୁ ଫେରି ଆସିବାକୁ ସିସିଲିକୁ ସମନ୍ ଗଲା । ଆଲ୍‌ସିବିଏଡିଜ୍ ସମନ୍ ଗ୍ରହଣ କରି ଫେରିଲେ । ମାତ୍ର ବାଟରେ ଖସି ସ୍ପାର୍ଟା ପଳାଇଲେ । ଏ ଅପ୍ରତ୍ୟାଶିତ ଘଟଣାରେ ଚକିତ ଓ ଉତ୍‌କ୍ଷିପ୍ତ ହୋଇ ଆସେମ୍ବ୍ଲି ତାଙ୍କର ସମ୍ପତ୍ତି ବାଜ୍ୟାପ୍ତ କଲା ଓ ଧରା ପଡ଼ିଲେ ମୃତ୍ୟୁଦଣ୍ଡ ପାଇବେ ବୋଲି ନିଷ୍ପତ୍ତି ନେଲା ।

ସ୍ପାର୍ଟାରେ ଆଲ୍‌ସିବିଏଡିଜ୍ ତାଙ୍କର ସମସ୍ତ ବିଳାସବ୍ୟସନ ଛାଡ଼ି ସ୍ପାର୍ଟୀୟ କଠୋର ଜୀବନକୁ ଗ୍ରହଣ କରିନେଲେ । ଏଥେନ୍‌ସର ଅତି ଗୁପ୍ତ ସାମରିକ ତଥ୍ୟ ସେ ସ୍ପାର୍ଟାକୁ ଦେଇଦେଲେ । ସେତିକି ନୁହେଁ, ସ୍ପାର୍ଟାର ରାଣୀଙ୍କୁ ପ୍ରେମ କରି ତାଙ୍କୁ ଗୋଟିଏ ସୁନ୍ଦର ପୁତ୍ର ଉପହାର ଦେଲେ । ନବଜାତ ପୁତ୍ରର ଜନକ ଆଲ୍‌ସିବିଏଡିଜ୍ ବୋଲି ରାଣୀ ଗର୍ବରେ ଘନିଷ୍ଠ ବାନ୍ଧବୀମାନଙ୍କୁ ଜଣାଇଲେ । ଆଲ୍‌ସିବିଏଡିଜ୍ ମଧ୍ୟ ବନ୍ଧୁମାନଙ୍କୁ ଗୁପ୍ତରେ କହିଲେ, ତାଙ୍କ ପୁଅକୁ ସ୍ପାର୍ଟାର ରାଜସିଂହାସନରେ ବସାଇବାର ଆଉ କିଛି ସୁବିଧା ଉପାୟ ନ ଥିଲା । ରାଜା ଯାଇଥିଲେ ଯୁଦ୍ଧକୁ । ଫେରି ଆସି ସବୁ ଶୁଣିଲେ । ପାରସ୍ୟ

ବିରୁଦ୍ଧରେ ଏସିଆ ଅଭିମୁଖେ ବାହାରିଥିବା ସ୍ପାର୍ଟୀୟ ସେନାବାହିନୀର ମୁଖ୍ୟ ଭାବେ ସେ ଆଲ୍‌ସିବିଏଡ଼ିଜ୍‌ଙ୍କୁ ପଠାଇଲେ । ସୁବିଧା ଦେଖି ତାଙ୍କୁ ହତ୍ୟା କରିବାକୁ ରଜାଙ୍କର ଗୁପ୍ତ ନିର୍ଦ୍ଦେଶ ଥିଲା । ଆଲ୍‌ସିବିଏଡ଼ିଜ୍ ଏ ଚକ୍ରାନ୍ତର ସୁରାକ୍ ପାଇ ଠିକ୍ ସମୟରେ ଖସିଯାଇ ସାର୍ଡିସ୍‌ର ପାର୍ଶୀ ଶାସକଙ୍କ ଶରଣ ପଶିଲେ । ଏ ଘଟଣାରେ ସ୍ପାର୍ଟା କ୍ରୋଧାନ୍ୱିତ ହେବା ସ୍ୱାଭାବିକ୍ । ଆଲ୍‌ସିବିଏଡ଼ିଜ୍‌ଙ୍କ ଉପରେ ଏଥେନ୍‌ସ ଓ ସ୍ପାର୍ଟା ଉଭୟଙ୍କର ରାଗ ରହିଲା ।

ସିସିଲିରେ ଆଲ୍‌ସିବିଏଡ଼ିଜ୍ ଯେଉଁ ଯୁଦ୍ଧ ଆରମ୍ଭ କରିଦେଇ ଗଲେ, ତାଙ୍କୁ ସମ୍ଭାଳିବା ପରି ବୁଦ୍ଧି ବା ଦକ୍ଷତା ନିସିଆସ୍‌ଙ୍କର ନ ଥିଲା । ସ୍ପାର୍ଟାର ସାହାଯ୍ୟ ପାଇ ସିରାକ୍ୟୁଜ୍ ଏଥେନ୍‌ସକୁ ଶୋଚନୀୟ ଭାବେ ପରାସ୍ତ କଲା ( ଖ୍ରୀ. ପୂ ୪୧୪ ) ଓ ନିସିଆସ୍‌ଙ୍କ ସମେତ ସବୁ ଏଥେନ୍‌ସୀୟ ମଲେ । ଏପରି ଶୋଚନୀୟ ପରାଜୟ ଫଳରେ ଏଥେନ୍‌ସର ଅଣ୍ଟା ଭାଙ୍ଗିଗଲା । ସେତେବେଳକୁ ନଗରର ଅଧେ ନାଗରିକ ମୃତ ବା ବନ୍ଦୀ । ରାଜକୋଷ ଶୂନ୍ୟପ୍ରାୟ । ଏଥେନ୍‌ସର ଅବସ୍ଥା ଦେଖି କରଦ ନଗରମାନେ ଆଉ କର ଦେଲେ ନାହିଁ । ବନ୍ଧୁମାନେ ସ୍ପାର୍ଟା ଆଡ଼କୁ ଢଳିଲେ । ସ୍ପାର୍ଟା ବା ଏ ସୁଯୋଗ ଛାଡ଼ନ୍ତା କାହିଁକି ? ପଚିଶ ବର୍ଷିଆ ଯୁଦ୍ଧବନ୍ଦ ଚୁକ୍ତିର ବାରମ୍ବାର ଖିଲାପ କରାଯାଇଛି ଦର୍ଶାଇ ସ୍ପାର୍ଟା ଏଥେନ୍‌ସ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ସ୍ପାର୍ଟାକୁ ସାହାଯ୍ୟ କରିବାକୁ ସିରାକ୍ୟୁଜ୍ ଗୋଟାଏ ଟାଣୁଆ ସେନାବାହିନୀ ପଠାଇଲା । ସୁଯୋଗ ଜାଣି ସେତିକିବେଳେ ଏଥେନ୍‌ସର ଲକ୍ଷ୍ମୀ ଭଣ୍ଡାର ସ୍ୱରୂପ ଲଉରିଅମ୍ ରୂପାଖଣିର କୋଡ଼ିଏ ହଜାର ଦାସ ବିଦ୍ରୋହ କରି ସ୍ପାର୍ଟାକୁ ପଳାଇଲେ ।

ଏହିପରି ବିପଦ ବେଳେ ଏଥେନ୍‌ସକୁ ସମୂଳେ ବିନାଶ କରିବା ପାଇଁ ପାରସ୍ୟ ସ୍ପାର୍ଟାକୁ ସାହାଯ୍ୟ କଲା । ଗ୍ରୀସ୍ ମାଟିରୁ ପାରସ୍ୟ ହଟିଯିବା ପରେ ବାଣିଜ୍ୟ ଓ ଅନ୍ୟାନ୍ୟ ଶ୍ରେଷ୍ଠବଡ଼ ସ୍ୱାର୍ଥ ନେଇ ଏଥେନ୍‌ସ ପାରସ୍ୟ ମଧ୍ୟରେ ମଝିରେ ମଝିରେ ସଂଘର୍ଷ ହେଉଥାଏ । ପାରସ୍ୟ ଦେଖିଲା, ପୁରୁଣା ଶତ୍ରୁକୁ ନିପାତ କରିବାର ଅପୂର୍ବ ସୁଯୋଗ ସମାଗତ । ଜଳ-ଯୁଦ୍ଧରେ ସ୍ପାର୍ଟା ଦୁର୍ବଳ । ଆୟୋନୀୟ ନଗରଗୁଡ଼ିକୁ ଅଧିକାର କରିବାରେ ପାରସ୍ୟକୁ ସାହାଯ୍ୟ କରିବ ବୋଲି ନିର୍ଲ୍ଲଜ ଚୁକ୍ତି କରି ସ୍ପାର୍ଟା ପାରସ୍ୟ ଠାରୁ ଅନେକ ଯୁଦ୍ଧ ଜାହାଜ ଆଣିଲା । ଗ୍ରୀସ୍‌ର ଅଖଣ୍ଡତା ରକ୍ଷା କରିବାକୁ ଦିନେ ସ୍ପାର୍ଟା ଏଥେନ୍‌ସ ସହିତ କାନ୍ଧ ମିଳାଇ ପାରସ୍ୟ ସହିତ ଲଢ଼ିଥିଲା । କାଳଚକ୍ର କିନ୍ତୁ ଏହିପରି ବଦଳିଯାଏ ।

ମୃତ୍ୟୁ ବ୍ୟଥିତ ଏଥେନ୍ସର ଆଉ ଗତି କ'ଣ ? ତଥାପି ଏଥେନ୍ସ ଦଶବର୍ଷ କାଳ ଲଢ଼ିଲା । ଜନ୍ମଭୂମିକୁ ଫେରିବାକୁ ସୁଯୋଗ ଉଣ୍ଡୁଥିବା ଆଲ୍‌ସିବିଏଡୀଜ୍ ଏଥେନ୍ସର ଚରମ ଦୁର୍ଦ୍ଦିନରେ ଡାକରା ପାଇ ନଗରକୁ ଆସିଥିଲେ ଓ ଆଶ୍ଚର୍ଯ୍ୟଜନକ ଭାବେ ସ୍ପାର୍ଟାକୁ ଗୋଟିଏ ବଡ଼ ଯୁଦ୍ଧରେ ପରାସ୍ତ କରିଥିଲେ । (ଖ୍ରୀ. ପୂ ୪୧୦) ଏଥେନ୍ସର ମନୋବଳ ଫେରି ଆସିଲା । ଆଉ ଗୋଟିଏ ଜଳଯୁଦ୍ଧରେ ଆଲ୍‌ସିବିଏଡୀଜ୍ ସ୍ପାର୍ଟାର ମୁକାବିଲା କରିବାକୁ ପ୍ରସ୍ତୁତ ଥାଆନ୍ତି । ମାତ୍ର ଏଥେନ୍ସରୁ ଠିକ୍ ସମୟରେ ସାହାଯ୍ୟ ତାଙ୍କ ପାଖରେ ପହଞ୍ଚିଲା ନାହିଁ । ଦୁଃସାହସୀ ଆଲ୍‌ସିବିଏଡୀଜ୍ ଅଳ୍ପ କେତୋଟି ଜାହାଜ ଧରି ଗୋଟିଏ ପାଖ ଦ୍ୱୀପକୁ ଲୁଣ୍ଠନ କରିବାକୁ ଗ୍ଲଲେ । ତାଙ୍କ ତଳିଆ ସେନାପତିଙ୍କ ଦାୟିତ୍ୱରେ ଏଥେନ୍ସୀୟ ନୌବାହିନୀ ରହିଲା । ଏହି ସେନାପତି ନିଜେ ବାହାଦୁରୀ ନେବା ପାଇଁ ସ୍ପାର୍ଟୀୟ ଯୁଦ୍ଧ-ଜାହାଜ ଉପରେ ଆକ୍ରମଣ କଲେ । ତାଙ୍କର ଏହି ଭୁଲ୍‌ର ଫଳ ମିଳିଗଲା । ସ୍ପାର୍ଟାର ସେନାପତି ତାଙ୍କୁ ଶୋଚନୀୟ ଭାବେ ପରାସ୍ତ କଲେ । ଏଥେନ୍ସର ସବୁ ଯୁଦ୍ଧଜାହାଜ ସମୁଦ୍ରରେ ବୁଡ଼ି ନଷ୍ଟ ହେଲା । ଏହାପରେ ଆଲ୍‌ସିବିଏଡୀଜ୍ ଆଉ ଏଥେନ୍ସ ଫେରିଲେ ନାହିଁ । ସେ ପୁଣି ଫିରିଜିଆର ପାର୍ଶୀ ସେନାପତିଙ୍କ ଆଶ୍ରୟ ନେଲେ । ମାତ୍ର ସ୍ପାର୍ଟା ସହିତ ପାରସ୍ୟ ହାତ ମିଳାଇ ଥିବାରୁ ସ୍ପାର୍ଟୀୟ ସେନାପତିଙ୍କ ଇଚ୍ଛାନୁସାରେ ପାର୍ଶୀମାନେ ଆଲ୍‌ସିବିଏଡୀଜଙ୍କୁ ମାରିଦେଲେ । ଏହି ଅଦ୍ଭୁତ ଚରିତ୍ରର ଜୀବନର ଅବସାନ ଏହିପରି ଘଟିଲା ।

ଜଳ ଯୁଦ୍ଧରେ ସମ୍ପୂର୍ଣ୍ଣ ଭାବେ ପରାସ୍ତ ହେବା ପରେ ଏଥେନସ ବାଧ୍ୟ ହୋଇ ଖ୍ରୀ. ପୂ ୪୦୪ରେ ଆତ୍ମସମର୍ପଣ କଲା । ମାତ୍ର ବାରୋଟି ଜାହଜ ଛାଡ଼ି ଦେଇ ସ୍ପାର୍ଟା ଏଥେନ୍ସର ସମସ୍ତ ଜାହଜ ଛଡ଼ାଇ ନେଲା । ସବୁ ବିଷୟରେ ସ୍ପାର୍ଟାକୁ ମାନି ଚଳିବାକୁ ରାଜି ହୋଇ ଏଥେନ୍ସ ସ୍ପାର୍ଟା ସହିତ ସନ୍ଧି କଲା ।

ସ୍ପାର୍ଟାର ବିଜୟ ଫଳରେ ଏଥେନ୍ସର ଧନୀକଗୋଷ୍ଠୀ ଆନନ୍ଦିତ ହେଲେ । କାରଣ ଗଣତନ୍ତ୍ର ବିରୋଧୀ ସ୍ପାର୍ଟା ଏଥେନ୍ସରେ ଧନୀକତନ୍ତ୍ରର ପ୍ରଚଳନ କଲା । କେବଳ ଏଥେନ୍ସ କାହିଁକି, ସ୍ପାର୍ଟାର ବିଜୟ ଫଳରେ ସମଗ୍ର ଗ୍ରୀସ୍‌ରୁ ଗଣତାନ୍ତ୍ରିକ ସରକାର ହଟିଗଲେ । ସବୁ ନଗରରେ ସ୍ପାର୍ଟାର ମନୋନୀତ ସମ୍ଭ୍ରାନ୍ତମାନେ ଶାସନମୁଖ୍ୟ ହେଲେ । ଏଥେନ୍ସରେ କ୍ରିଟିଆସ୍ ହେଲେ ଧନୀକତନ୍ତ୍ର ସରକାରର ମୁଖ୍ୟ । ଖ୍ରୀ. ପୂ ୪୦୪କୁ ସ୍ପର୍ଶିଲେ

ଏଥେନ୍ସର ମୁମୂର୍ଷ ଅବସ୍ଥା ହେଲେ । ମାତ୍ର ଏଥେନ୍ସର ଅନେକ ପୂର୍ବରୁ ସ୍ପାର୍ଟାର ମୃତ୍ୟୁ ଘଟିଲା । ଏହାର କାରଣ ଏଥେନ୍ସ ଯେଉଁ ପାପ କରିଥିଲା, ସ୍ପାର୍ଟା ସେହି ପାପ କଲା । ମାତ୍ର ପାପ କରିବା ସହିତ ଏଥେନ୍ସ ଅନେକ ପୁଣ୍ୟ ସଞ୍ଚୟ କରିଥିଲା । ସ୍ପାର୍ଟାର କିଛି ପୁଣ୍ୟ ନ ଥିଲା । ତେଣୁ ସେ ରକ୍ଷା ପାଇ ପାରିଲା ନାହିଁ ।

ଏଥେନ୍ସର ପ୍ରଥମ ପୁଣ୍ୟ ହେଉଛି, ତାର ଏକ ସୁଦୃଢ଼ ଗଣତାନ୍ତ୍ରିକ ପରମ୍ପରା । ଏହି ପରମ୍ପରା ଯୋଗୁ ଧନୀକତନ୍ତ୍ର ସରକାର ବିରୁଦ୍ଧରେ ଜନ ଜାଗରଣ ହେଲା ଓ ମାତ୍ର ଦୁଇ ତିନ ବର୍ଷ ମଧ୍ୟରେ ଗଣତନ୍ତ୍ର ଫେରି ଆସିଲା । କଳା, ସାହିତ୍ୟ ଓ ଦର୍ଶନ କ୍ଷେତ୍ରରେ ମହାନ୍ ସିଦ୍ଧି ଏଥେନ୍ସର ଦ୍ୱିତୀୟ ପୁଣ୍ୟ । ପିଲୋପୋନେସିଆନ୍ ଯୁଦ୍ଧ କାଳ ଭିତରେ ମଧ୍ୟ ଏଥେନ୍ସର ସାଂସ୍କୃତିକ କୀର୍ତ୍ତି ଆମକୁ ହତବାକ କରେ । ଆନାକ୍ସଗୋରସ୍ ନିର୍ବାସିତ ହେଲେ, ସକ୍ରେଟିସ୍ ମୃତ୍ୟୁଦଣ୍ଡ ପାଇଲେ କିନ୍ତୁ ସେମାନଙ୍କର ଜୀବନ ସାଧନା ଏଥେନ୍ସର ଜାତୀୟ ଜୀବନରେ ଶକ୍ତିର ସଞ୍ଚାର କରିଥିଲା ନିଶ୍ଚୟ । କେବଳ ଏ ଦୁଇଜଣ ନୁହନ୍ତି, କଳା ଓ ଜ୍ଞାନ କ୍ଷେତ୍ରରେ ବହୁ ପ୍ରତିଭାବାନ୍ ବ୍ୟକ୍ତିଙ୍କର ସାଧନାର ପୁଣ୍ୟ ବଳରେ ଗୋଟିଏ ସାମ୍ରାଜ୍ୟ ହରାଇବା ପରେ ଏଥେନ୍ସ ଆଉ ଏକ ନୂତନ ସାମ୍ରାଜ୍ୟ ଗଢ଼ି ଦେଲା । ତାହା ହେଉଛି, ଜ୍ଞାନର ସାମ୍ରାଜ୍ୟ । ଯୁଦ୍ଧରେ ବାରମ୍ବାର ଆଘାତ ପାଇ ପରାଧୀନ ହୋଇଥିବା ଏଥେନ୍ସରୁ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ସ୍ଥପତି ଓ ଶିଳ୍ପୀମାନେ ଯାଇ ସମଗ୍ର ଭୂମଧ୍ୟସାଗରୀୟ ଅଞ୍ଚଳରେ କାରୁକାର୍ଯ୍ୟ ମଣ୍ଡିତ ଅଟ୍ଟାଳିକା ନିର୍ମାଣ ଓ ମୂର୍ତ୍ତି ଗଠନ କରୁଥିଲେ । ଯୁଦ୍ଧ ବିଧ୍ୱସ୍ତ ଏଥେନ୍ସରେ ୟୁରୋପର ପ୍ରଥମ ବିଶ୍ୱବିଦ୍ୟାଳୟ ଗଢ଼ି ଉଠେ ହଜାର ବର୍ଷ କାଳ ଜ୍ଞାନ ସାଧନାର କେନ୍ଦ୍ର ହେଲା ।

ଇତର ଗ୍ରୀକ୍ ନଗରମାନଙ୍କ ଉପରେ ଏଥେନ୍ସର ଅତ୍ୟାଚାରର ପ୍ରତିବାଦ କରି ସ୍ପାର୍ଟା ଯୁଦ୍ଧରେ ପଶିଥିଲା । ମାତ୍ର ଏଥେନ୍ସ ଧୂଳିସାତ୍ ହେଲା ପରେ ସ୍ପାର୍ଟା କ୍ଷୁଦ୍ର ଓ ଶକ୍ତିହୀନ ନଗରଗୁଡ଼ିକୁ ଶୋଷଣ କରିବା ଆରମ୍ଭ କରିଦେଲା । ଯୁଦ୍ଧ ବିଜେତା ମହା ପରାକ୍ରମୀ ସ୍ପାର୍ଟା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବ କିଏ ? ପ୍ରଚୁର କର ଆଦାୟ କରିବା ସହିତ ସ୍ପାର୍ଟାର ମନୋନୀତ ସମ୍ଭ୍ରାନ୍ତ ବଂଶୀୟମାନେ ସବୁ ନଗରରେ ଶାସନ ଗାଦି ଅଧିକାର କଲେ । ସ୍ପାର୍ଟା ବିରୁଦ୍ଧରେ ଅସନ୍ତୋଷ ଭିତରେ ଭିତରେ କୁହୁଳି ରହିଲା ଓ ସୁଯୋଗ ପାଇଲେ ତା କବଳରୁ ଖସିବାକୁ ସମସ୍ତେ ପ୍ରସ୍ତୁତ ହୋଇ ରହିଲେ ।

ଏବଂ ସୁଯୋଗ ଆସିଲା । ଗ୍ରୀସ୍‌ର ଅନ୍ତର୍ବିବାଦ, ପରସ୍ପର ପ୍ରତି ଅବିଶ୍ୱାସ, ପରସ୍ପର ବିରୁଦ୍ଧରେ ଷଡ଼ଯନ୍ତ୍ରର ସୁଯୋଗ ତାର ପୁରୁଣା ଶତ୍ରୁ ପାରସ୍ୟ ନେଇଥିଲା । ପିଲୋପୋନେସିଆନ୍ ଯୁଦ୍ଧ ସରିବା ପରେ ଦୂର ଦୂରାନ୍ତରେ ଲଢ଼ୁଥିବା ହଜାର ହଜାର ଗ୍ରୀକ୍ ସୈନ୍ୟ ବେକାର ହୋଇ ପଡ଼ିଲେ । ପାରସ୍ୟର ଯୁବରାଜ ସାଇରସ୍ ସେମାନଙ୍କୁ ଭଲ ଦରମା ଦେଇ ଗୋଟିଏ ଟାଣୁଆ ସେନାବାହିନୀ ଗଢ଼ିଲେ (ଖ୍ରୀ. ପୂ ୪୦୧) । ଯେ ବେତନ ଦେବ, ତା ପାଇଁ ଲଢ଼ିବା ମନୋବୃତ୍ତି ଏହିଠାରୁ ଆରମ୍ଭ ହେଲା । ତାଙ୍କର ଭାଇ ଓ ପାରସ୍ୟର ସମ୍ରାଟ ଆର୍ଟାଜକ୍‌ସିଜ୍‌ଙ୍କ ବିରୁଦ୍ଧରେ ଲଢ଼ି ସିଂହାସନ ମାଡ଼ି ବସିବା ଥିଲା ସାଇରସ୍‌ଙ୍କ ଉଦ୍ଦେଶ୍ୟ । ତାଙ୍କ ସେନାବାହିନୀରେ ଗ୍ରୀସ୍‌ର ସବୁ ନଗରର ସୈନ୍ୟ ଥିଲେ । ସେମାନଙ୍କ ସଂଖ୍ୟା ପ୍ରାୟ ବାର ହଜାର ।

ଗ୍ରୀସ୍‌ରୁ ବେବିଲୋନ୍ ଅନେକ ଦୂର । ମାତ୍ର ଅର୍ଥ ଲୋଭରେ ଗ୍ରୀକ୍ ସୈନ୍ୟମାନେ ସାଇରସ୍‌ଙ୍କ ସାଙ୍ଗରେ ଗଲେ । ଯୁଦ୍ଧରେ ସାଇରସ୍ ପରାସ୍ତ ହୋଇ ମଲେ । କେବଳ ଗ୍ରୀକ୍‌ଙ୍କ ବ୍ୟତୀତ ତାଙ୍କର କୌଣସି ସୈନ୍ୟ ପ୍ରାଣ ବଞ୍ଚାଇ ପାରିଲେ ନାହିଁ । ଗ୍ରୀକ୍‌ଙ୍କର ପ୍ରତ୍ୟୁତ୍ପନ୍ନମତି ଓ କ୍ଷିପ୍ରଗତି ସେମାନଙ୍କୁ ରକ୍ଷା କଲା । ସମ୍ରାଟଙ୍କ ସୈନ୍ୟମାନେ ସେମାନଙ୍କୁ ଖେଦୁଥାନ୍ତି ଓ ପ୍ରାଣ ରକ୍ଷା କରିବାକୁ ସେମାନେ ପଳାଉଥାଆନ୍ତି । ସେମାନଙ୍କର ସାହା ଭରସା ବା କିଏ ଅଛି ? ଗ୍ରୀସ୍ ଠାରୁ ଦୁଇ ହଜାର ମାଇଲ ଦୂରରେ କିଏ ସେମାନଙ୍କୁ ରକ୍ଷା କରିବ ? ଗ୍ରୀକ୍‌ମାନେ ନିଜ ଭିତରୁ ଜଣକୁ ନେତା ଭାବେ ବାଛିଲେ । ତାଙ୍କର ନାମ ଜେନୋଫୋନ୍ । ସେ ଏଥେନ୍‌ସୀୟ ଓ ସକ୍ରେଟିସ୍‌ଙ୍କ ଶିଷ୍ୟ । ତାଙ୍କ ନେତୃତ୍ୱରେ ଦଶ ହଜାର ଗ୍ରୀକ୍ ସୈନ୍ୟ ଦୁର୍ଦ୍ଧାନ୍ତ ଶତ୍ରୁରାଜ୍ୟ ଭିତରେ ଦୁଇହଜାର ମାଇଲ ପଥ ଅତିକ୍ରମ କରିବା ଏକ କଳ୍ପନାତୀତ ବ୍ୟାପାର । ବିଦେଶରେ ସେମାନଙ୍କୁ ବାଟ ଘାଟ ଜଣା ନ ଥିଲା । ଅନ୍ଧାଧୁନ୍ଦା ଭାବେ ନଈ, ପାହାଡ଼, ତୁଷାରାଚ୍ଛନ୍ନ ଗିରିପଥ ଓ ଉତ୍ତପ୍ତ ମରୁଭୂମି ଅତିକ୍ରମ କରି ସେମାନେ ଆଗକୁ ବଢ଼ୁଥିଲେ । ଅନେକ ସ୍ଥାନରେ ଅତର୍କିତ ଭାବେ ଶତ୍ରୁସୈନ୍ୟ ସେମାନଙ୍କୁ ଛାବୁଡ଼ୁଥିଲେ । ଖାଦ୍ୟ ସଂଗ୍ରହ କରିବା ଆଉ ଏକ ବିଷମ ସମସ୍ୟା । ମୋଟ ଉପରେ ଜେନୋଫୋନ୍‌ଙ୍କ ଦଶହଜାର ବନ୍ଧୁ ଯେଉଁ ଧୈର୍ଯ୍ୟ, ସାହସ ଓ ସହିଷ୍ଣୁତାର ଦୃଷ୍ଟାନ୍ତ ରଖି ଯାଇଛନ୍ତି, ଇତିହାସରେ ତାର ତୁଳନା ନାହିଁ । ସେମାନଙ୍କୁ ଫେରି ଆସିବାର ଦେଖି ସମଗ୍ର ଗ୍ରୀକ୍ ଜାତି ଗର୍ବିତ ହେବା ସ୍ୱାଭାବିକ୍ । ମାତ୍ର ସ୍ପାର୍ଟାର ରାଜା ଆଉ ପାଦେ ଆଗେଇ ଯାଇ

ଥିବାଲେ, ସାହସୀ ଓ ବୀର ଗ୍ରୀକ୍ ସୈନ୍ୟଙ୍କ ସାହାଯ୍ୟରେ ପାରସ୍ୟକୁ ଏସୀୟ ଗ୍ରୀକ୍ ନଗର-ଗୁଡ଼ିକରୁ ତଡ଼ି ଦେବା ସମ୍ଭବ । ପ୍ରକୃତରେ ମଧ୍ୟ ସ୍ପାର୍ଟାର ରାଜା କେତୋଟି ଯୁଦ୍ଧ କ୍ଷେତ୍ରରେ ପାରସ୍ୟ ସେନାଙ୍କୁ ଅକ୍ଲେଶରେ ଜିଣିଗଲେ । ମାତ୍ର ଚତୁର ସମ୍ରାଟଙ୍କ ଚକ୍ରାନ୍ତ ଅନ୍ୟ ପ୍ରକାର । ଥିବାଜ୍ ଓ ଏଥେନ୍ସକୁ ପ୍ରଚୁର ସୁନା ପଠାଇ ସ୍ପାର୍ଟା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ସମ୍ରାଟ ଦୁହିଁଙ୍କୁ ମନାଇଲେ । ମାରାଥନ୍ ଓ ସାଲାମିସ୍‌ଠାରେ ଯୁଦ୍ଧ ବେଳେ ଗ୍ରୀକ୍‌ଙ୍କୁ ଉତ୍କୋଚ ଦେଇ ଜିଣିବା ସମ୍ଭବ ହୋଇ ନ ଥିଲା । ମାତ୍ର ସେ କାଳ ଅତୀତର । ସ୍ପାର୍ଟାର ରାଜାଙ୍କ ଅନୁପସ୍ଥିତିରେ ନଅବର୍ଷ ଶାନ୍ତିରେ ରହିବା ପରେ ଏଥେନ୍ସ ସ୍ପାର୍ଟା ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ଖବର ପାଇ ସ୍ପାର୍ଟାର ରାଜା ଗ୍ରୀସ ଧାଇଁଲେ । ସେହି ସୁଯୋଗରେ ପାରସ୍ୟ ନୌବାହିନୀ ସ୍ପାର୍ଟାର ଜାହାଜଗୁଡ଼ିକୁ ସମ୍ପୂର୍ଣ୍ଣ ଭାବେ ନଷ୍ଟ କରିଦେଲେ । ସ୍ପାର୍ଟାର ଶକ୍ତିଶାଳୀ ନୌବାହିନୀ ଭୂଷୁଡ଼ି ଗଲା । ସ୍ପାର୍ଟାକୁ ପରାସ୍ତ କରି ପାରସ୍ୟ ସମ୍ରାଟ ଗ୍ରୀସ୍ ଉପରେ ଗୋଟିଏ ଚୁକ୍ତି ଲଦି ଦେଲେ । ଏହି ଚୁକ୍ତି ଅନୁସାରେ ଏସୀୟ ନଗରଗୁଡ଼ିକ ଉପରେ ପାରସ୍ୟର ଅଧିକାର ଗ୍ରୀସ୍ ସ୍ୱୀକାର କଲା । କହିବା ବାହୁଲ୍ୟ, ମାରାଥନ୍ ଓ ସାଲାମିସ୍ ଯୁଦ୍ଧର ସୁଫଳ ଏହିପରି ନଷ୍ଟ ହେଲା । ପ୍ରତିରୋଧ ବା ପ୍ରତିବାଦ କରିବା ଅବସ୍ଥାରେ ଏଥେନ୍ସ ନ ଥାଏ । ଗ୍ରୀକ୍ ନଗର ଗୁଡ଼ିକ ନାମକୁ ମାତ୍ର ସ୍ୱାଧୀନ ହୋଇ ରହିଲେ । ପାରସ୍ୟକୁ ଅମାନ୍ୟ କରିବାର ଶକ୍ତି ସେମାନେ ହରାଇଥିଲେ । ସେମାନଙ୍କର ଏପରି ଦଶା ପାଇଁ ସମସ୍ତଙ୍କର କ୍ରୋଧ ସ୍ପାର୍ଟା ଉପରେ ପଡ଼ିଲା ।

ସ୍ପାର୍ଟା କିନ୍ତୁ ଅନୁତାପ କରିବା ପରିବର୍ତ୍ତେ ରାଗ ସୁଝାଇବାକୁ ଥିବାଜ୍ ଉପରେ ଆକ୍ରମଣ କଲା । ସେତେବେଳେ ଥିବାଜ୍‌ରେ ଜଣେ ବିଚକ୍ଷଣ ଶାସକ ଓ ଯୁଦ୍ଧ ବିଶାରଦ ଥାଆନ୍ତି । ତାଙ୍କର ନାମ ଏପାମ୍ଇନନ୍ଡାସ୍ । “ସେ ଜଣେ ଜ୍ଞାନୀ ଓ ସଚ୍ଚୋଟ ମଣିଷ । ଏପାମ୍ଇନନ୍ଡାସ୍‌ଙ୍କର ବୁଦ୍ଧି ଓ ମୌଳିକ ରଣ କୌଶଳର ମୁକାବିଲା କରି ନ ପାରି ସ୍ପାର୍ଟା ଶୋଚନୀୟ ଭାବେ ପରାସ୍ତ ହେଲା । ଏ ପରାଜୟ ଫଳରେ ସ୍ପାର୍ଟା ଭାଙ୍ଗି ପଡ଼ିଲା ଓ ତାର ତେଜ ବୀର୍ଯ୍ୟ ଏହି ଦିନୁ ମଉଳିଗଲା । ଗ୍ରୀସ୍‌ରେ ସ୍ପାର୍ଟାର ତିରିଶ ବର୍ଷ କାଳର ନେତୃତ୍ୱର ଅବସାନ ଘଟିଲା । ଏପରି ଏକ ଅନ୍ତିମ ପରାଜୟ ସମ୍ବାଦ ସ୍ପାର୍ଟାରେ ପହଞ୍ଚିଲା ବେଳକୁ ନଗରରେ ଏକ ଧର୍ମୋତ୍ସବ ପାଳିତ ହେଉଥାଏ । ସମ୍ବାଦ ପାଇବା ପରେ ମଧ୍ୟ ଉତ୍ସବ ଯଥାରୀତି ଚାଲିଲା । ଲୋକମାନେ ଶୋକ କଲେ ନିଶ୍ଚୟ କିନ୍ତୁ ସେମାନେ ଯୁଦ୍ଧରେ ପ୍ରାଣ

ହରାଇଥିବା ସୈନିକଙ୍କର ଜ୍ଞାତିକୁଟୁମ୍ବ ନୁହନ୍ତି । ଯେଉଁମାନେ ଯୁଦ୍ଧରେ ନଗର ପାଇଁ ପ୍ରାଣବଳି ଦେଇ ପାରିଲେ ନାହିଁ ସେମାନଙ୍କ ଆତ୍ମୀୟ ସ୍ୱଜନ ଏବଂ ଶୋକ ଶୋଭାଯାତ୍ରାରେ ନଗର ପରିକ୍ରମା କଲେ । ଧନ୍ୟରେ ଦେଶ ! ବିସ୍ମୃତି ଗର୍ଭକୁ ଚାଲିଯିବା ପୂର୍ବରୁ ପୃଥିବୀକୁ ଏଇ ଦେଶର ବିଦାୟ ବାର୍ତ୍ତା ।

ପରସ୍ପର ସହିତ ସହଯୋଗ ପରିବର୍ତ୍ତେ ପ୍ରତିଦ୍ୱନ୍ଦ୍ୱିତା କରି ଗୋଟାଏ ଜାତି କିପରି ଧ୍ୱଂସ ପାଏ, ପେରିକ୍ଲିଜ୍ ପରବର୍ତ୍ତୀ ଗ୍ରୀକ୍ ଇତିହାସ ତାହାର ଦୃଷ୍ଟାନ୍ତ । ସ୍ପାର୍ଟାକୁ ଜିଣିଲା ପରେ ଗୋଟାଏ ସାମ୍ରାଜ୍ୟ ଗଢ଼ିବାର ସ୍ୱପ୍ନ ଏପାମିନନ୍ଡାସ୍‌ଙ୍କୁ ଘାରିଲା । ସଇତାନର ସ୍ୱପ୍ନ ! ଥିବାଜ୍ ଏଥେନ୍ସ ଆକ୍ରମଣ କଲା । ଏଥେନ୍ସ ଓ ସ୍ପାର୍ଟା ମିଶି ଥିବାଜ୍ ବିରୁଦ୍ଧରେ ଲଢ଼ିଲେ । ଥିବାଜ୍ ଜିଣିଲା ମାତ୍ର ଦୁର୍ଭାଗ୍ୟକୁ ଏପାମିନନ୍ଡାସ୍ ଏହି ଯୁଦ୍ଧରେ ପ୍ରାଣ ହରାଇଲେ । ମୁଣ୍ଡ ଉଠେଇ ଆସୁଥିବା ଥିବାଜ୍ ଝାଉଁଳି ଗଲା ।

ଖ୍ରୀ. ପୂ ୩୬୨ରେ ଏପାମିନନ୍ଡାସ୍ ମୃତ୍ୟୁମୁଖରେ ପଡ଼ିଲେ । ପରସ୍ପର ସହିତ ଲଢ଼ି ଗ୍ରୀସ୍ ଏତେବେଳକୁ ଧ୍ୱସ୍ତବିଧ୍ୱସ୍ତ । ଚତୁର୍ଦ୍ଦିଗ ଅରାଜକତା । କୌଣସି ନଗର ନେତୃତ୍ୱ ନେବା ଅବସ୍ଥାରେ ନ ଥାଏ । ମାସେଡନିଆର ରାଜା ଓ ଆଲେକ୍‌ଜାଣ୍ଡର୍‌ଙ୍କ ପିତା ଫିଲିପ୍ ସବୁ ଲକ୍ଷ୍ୟ କରୁଥାନ୍ତି । ଗ୍ରୀସ୍‌କୁ ଅକ୍ତିଆର କରିବାକୁ ସେ ମନ ଭିତରେ ପ୍ରସ୍ତୁତ ହେଉଥାନ୍ତି ।

ଏହିପରିକି ପରିସ୍ଥିତିରେ ଏଥେନ୍ସ ପୁଣି ଥରେ ଗ୍ରୀସ୍‌ର ନେତୃତ୍ୱ ନେବା ପାଇଁ ଶେଷ ଚେଷ୍ଟା କରିଥିଲା । ତାର ଉଦ୍ୟମ କିଛି ପରିମାଣରେ ସଫଳ ହୋଇଥିଲା ମଧ୍ୟ । ପାରସ୍ୟ ଠାରୁ ଉତ୍କୋଚ ପାଇଥିବା ସୁନାକୁ ଖର୍ଚ୍ଚ କରି ଏଥେନ୍ସ ତାହାର ପ୍ରାଚୀର ଓ ଜାହାଜ-ଗୁଡ଼ିକୁ ପୁନର୍ନିର୍ମିତ କରି ସାରିଥିଲା । ଅର୍ଥନୈତିକ ସ୍ଥିରତା ଆଣିପାରିବା ଫଳରେ ଏଥେନ୍ସୀୟ ମୁଦ୍ରା ଗ୍ରୀକ୍ ଜଗତରେ ତାର ପୂର୍ବ ଗୌରବ ଫେରି ପାଇଲା । ଇଜିଆନ୍ ଉପକୂଳର ନଗରମାନେ ଦେଖିଲେ, ସମୁଦ୍ରରେ ନିରାପତ୍ତା ରକ୍ଷା କରିବା କୌଣସି ଗୋଟିଏ ନଗର ପକ୍ଷରେ ସମ୍ଭବ ନୁହେଁ । ତେଣୁ ପୂର୍ବ ଭଳି ସେମାନେ ଏଥେନ୍ସର ନେତୃତ୍ୱ ମାନି-ନେଲେ । ଖ୍ରୀ. ପୂ ୩୭୦ ବେଳକୁ ଏଥେନ୍ସ ପୂର୍ବ ଭୂମଧ୍ୟସାଗରୀୟ ଅଞ୍ଚଳର ସବୁଠାରୁ ଶକ୍ତିଶାଳୀ ରାଷ୍ଟ୍ର ।

ଶିଳ୍ପ ଓ ବାଣିଜ୍ୟର ଦ୍ରୁତ ବିକାଶ ଫଳରେ ଏଥେନ୍ସର ଧନୀ ବ୍ୟକ୍ତିବିଶେଷଙ୍କ ଉଦ୍ୟମରେ ଉନ୍ନତ ବ୍ୟାଙ୍କମାନ ଗଢ଼ିଉଠିଲା । ଗୋଟିଏ ଗୋଟିଏ ସଚ୍ଚୋଟ ବ୍ୟାଙ୍କର ଚେକ୍‌କୁ ସାରା ଗ୍ରୀସ୍ ଏପରିକି ଗ୍ରୀସ୍ ବାହାରେ ସ୍ୱୀକୃତି ମିଳୁଥିଲା । ଖ୍ରୀ. ପୂ ଚତୁର୍ଥ ଶତାବ୍ଦୀ ଏଥେନ୍ସର ବ୍ୟାଙ୍କିଙ୍ଗ୍ ସିଷ୍ଟମ ଅତି ଉନ୍ନତ ।

ଏଥେନ୍ସ ତାର ଅର୍ଥନୈତିକ ଅଧୋଗତିକୁ ସୁଧାରିନେଲା, ମାତ୍ର ନୈତିକ ଅଧୋଗତିକୁ ସୁଧାରିବା ଏତେ ସହଜ ନୁହେଁ । କୃଷି ଅବହେଳିତ ହେବା ଫଳରେ ଗରିବ-ମାନେ ଆହୁରି ଗରିବ ହେଲେ । ବେପାର କରି ଧନୀଙ୍କର ଧନ ବଢ଼ିଲା । ମାତ୍ର ଗରିବଙ୍କର ସମସ୍ୟା ପ୍ରତି ଧନୀକ ଶ୍ରେଣୀ ଆଦୌ ଦୃଷ୍ଟି ଦେଲା ନାହିଁ । ଓଲଟି ଧନୀମାନେ ଗରିବଙ୍କୁ ଶତ୍ରୁ ପରି ମଣୁଥିଲେ । ଖ୍ରୀ. ପୂ. ୩୬୬ରେ ଆଇସୋକ୍ରେଟିସ୍ ଲେଖିଛନ୍ତି, "ଧନୀମାନେ ସେମାନଙ୍କ ସମ୍ପତ୍ତିକୁ ସମୁଦ୍ରରେ ଫୋପାଡ଼ି ଦେବେ ବରଂ ଗରିବଙ୍କୁ କାଣି କଉଡ଼ିଟିଏ ମଧ୍ୟ ଦେବେ-ନାହିଁ ।" ଏପରି ଉତ୍କଟ ଶ୍ରେଣୀ ବିବାଦ ବିଦେଶୀ ଶତ୍ରୁର ଆକ୍ରମଣ ଠାରୁ ଅଧିକ ମାରାତ୍ମକ ।

ବୃହତ୍ତର ଦୃଷ୍ଟିରୁ ଦେଖିଲେ ଉତ୍କଟ ଶ୍ରେଣୀ ବିବାଦ ନୈତିକ ଅଧୋଗତିର ଫଳ । ଏଥେନ୍ସରେ ନୂଆ ନୂଆ ବିଳାସ ପଶିଲା । ଲୋକେ ସ୍ୱାର୍ଥପର ଭାବେ ଅର୍ଥ ଉପାର୍ଜନରେ ମାତିଲେ । ଶାସକ ଓ ରାଜନୀତିଜ୍ଞଙ୍କ ଭିତରେ ଦୁର୍ନୀତି ବଢ଼ିଲା । ମୋଟ ଉପରେ ଏଥେନ୍ସ ତାର ସମ୍ପଦ ଓ ସାମ୍ରାଜ୍ୟକୁ ଫେରି ପାଇଥିଲେ ମଧ୍ୟ ଆଭ୍ୟନ୍ତରୀଣ ଦୁର୍ବଳତାକୁ ଅତିକ୍ରମ କରି ପାରି ନ ଥିଲା ।

ମାସେଡୋନିଆର ରଜା ଫିଲିପ୍ ଗ୍ରୀସ୍‌ର ପରିସ୍ଥିତି ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ମାସେଡୋନିଆ ଗ୍ରୀସ୍‌ର ଉତ୍ତରରେ ଅବସ୍ଥିତ ଏକ ପାହାଡ଼ିଆ ରାଜ୍ୟ । ଏହି ରାଜ୍ୟର ନିରକ୍ଷର ଲୋକମାନେ ବଣ ପାହାଡ଼ରେ ପଶୁ ଚରାଇ ବଞ୍ଚୁଥିଲେ । ସେମାନଙ୍କୁ ଅର୍ଦ୍ଧ ଗ୍ରୀକ୍ କହିବା ସମୀଚୀନ । ମାସେଡୋନିଆର ସରକାରୀ ଭାଷା ଗ୍ରୀକ୍ । ମାତ୍ର କଳା, ସାହିତ୍ୟ ବା ଦର୍ଶନକୁ ଏ ଅଞ୍ଚଳର କୌଣସି ଅବଦାନ ନ ଥିଲା । ସଭ୍ୟତାର ଆଲୋକ ପାଇ ନ ଥିବା ଲୋକଗୁଡ଼ିକୁ ମଝିରେ ମଝିରେ ଥ୍ରେସ୍‌ବାସୀ ଆସି ଲୁଣ୍ଠନ କରୁଥିଲେ । ବଣ ପାହାଡ଼ରେ ବିଚ୍ଛିନ୍ନ ହୋଇ

ରହିଥିବା ବଭିନ୍ନ ଉପଜାତିର ଲୋକଙ୍କୁ ଏକାଠି କରି ଏକ ଜାତୀୟ ଭାବରେ ଉଦ୍‌ବୁଦ୍ଧ କରିବା ଫିଲିପ୍‌ଙ୍କର କୃତିତ୍ୱ ।

ଯୌବନରେ ଫିଲିପ୍ ଏପାମ୍‌ଇନନ୍‌ଡାସ୍‌ଙ୍କ ଅତିଥି ଭାବେ ଥିବାଜ୍‌ରେ ତିନି ବର୍ଷ କଟାଇଥିଲେ । ଏହି ମହାନ୍ ସାମରିକ ପ୍ରତିଭାଙ୍କର ରଣକୌଶଳକୁ ଫିଲିପ୍ ମନଧ୍ୟାନ ଦେଇ ଲକ୍ଷ୍ୟ କରିଥିଲେ । ଅଭିନବ ବ୍ୟୂହସଜ୍ଜା ଯୋଗୁ ଏପାମ୍‌ଇନନ୍‌ଡାସ୍‌ଙ୍କର ମୌଳିକ ସାମରିକ ପ୍ରତିଭା ସ୍ୱୀକୃତ । ଫିଲିପ୍ ତାଙ୍କର ବ୍ୟୂହସଜ୍ଜାକୁ ଗ୍ରହଣ କରି ଯୁଦ୍ଧରେ ଅଜେୟ ହୋଇଥିଲେ । ସେତିକି ନୁହେଁ, ଗ୍ରୀସ୍‌ରେ ତିନି ବର୍ଷ ରହିବା ଫଳରେ ଶିକ୍ଷା ଓ ସଂସ୍କୃତି ଆଡ଼କୁ ଫିଲିପ୍‌ଙ୍କର ମନ ଢଳିଗଲା । ଗ୍ରୀସ୍‌ର ଭାବୀ ଅଧିପତିଙ୍କର ଗ୍ରୀକ୍ ସଂସ୍କୃତି ପ୍ରତି ସାମାନ୍ୟ ଅନୁରକ୍ତିର ମୂଲ୍ୟ ଅନେକ ବେଶୀ ।

ମାସେଡୋନିଆର ଅଧିବାସୀଙ୍କୁ ସଙ୍ଗଠିତ କରି ଥ୍ରେସ୍‌କୁ ସାବାଡ଼ କରିବା ଫିଲିପ୍‌ଙ୍କର ପ୍ରଥମ କାର୍ଯ୍ୟ ହେଲା । ତା ପରେ ସେ ମାସେଡୋନିଆର ଅଧିବାସୀଙ୍କୁ ଗ୍ରୀକ୍ କଲେ ଓ ଗ୍ରୀକ୍ ଜାତିର କଲ୍ୟାଣ ପାଇଁ ସମଗ୍ର ଗ୍ରୀସ୍‌କୁ ବାହୁବଳରେ ନିଜ ଅକ୍ତିଆରକୁ ଆଣିଲେ । ଫିଲିପ୍ କେବଳ ଜଣେ ସାହସୀ ବୀର ନୁହନ୍ତି, ସେ ଜଣେ ଉତ୍ତମ କୂଟନୀତିଜ୍ଞ । କେତେବେଳେ ନରମ ଓ କେତେବେଳେ ଗରମ ହୋଇ ସେ ଗ୍ରୀସ୍‌କୁ ଆୟତ୍ତାଧୀନ କଲେ । ଗ୍ରୀକ୍‌ଙ୍କର ଲାଞ୍ଚଖିଆ ପ୍ରକୃତି ଫିଲିପ୍‌ଙ୍କୁ ଭଲ ଭାବେ ଜଣାଥିଲା । ପ୍ରତ୍ୟେକ ନଗରର ଲାଞ୍ଚୁଆମାନଙ୍କୁ ହାତ କରି ଫିଲିପ୍ ନିଜ ଉଦ୍ଦେଶ୍ୟ ସାଧନ କରୁଥିଲେ । ଲାଞ୍ଚୁଆମାନଙ୍କ ସାହାଯ୍ୟରେ ନଗର ନଗର ମଧ୍ୟରେ କଳି ଲଗାଇ ଗ୍ରୀକ୍‌ମାନଙ୍କର ଏକତା ଭାଙ୍ଗିଦେବା ସେତେବେଳେ ବଡ଼ ସହଜ ।

ଫିଲିପ୍ ଆଲେକ୍‌ଜାଣ୍ଡର୍‌ଙ୍କର ପିତା । ଜଣେ ଆଲେକ୍‌ଜାଣ୍ଡର୍‌ଙ୍କୁ ଜନ୍ମ ଦେଲା ଭଳି ସଦ୍‌ଗୁଣ ତାଙ୍କର ଥିଲା । ଆଲେକ୍‌ଜାଣ୍ଡର୍‌ଙ୍କ ପରି ସେ ଉଭୟଙ୍କର କ୍ରୋଧୀ, ଜିଦ୍‌ଖୋର, ପୁଣି ଦୟାଳୁ ଆଉ ଉଦାର । ସେ କାଳରେ ଫିଲିପ୍‌ଙ୍କ ପରି ସାହସୀ ବୀର କେହି ନ ଥିଲେ । ସାହସୀ ଯୋଦ୍ଧାମାନଙ୍କୁ ସେ ଅତ୍ୟନ୍ତ ଭଲ ପାଉଥିଲେ ଓ ସେମାନଙ୍କ ସହିତ ବନ୍ଧୁ ଭଳି ଚଳୁଥିଲେ । ଦିନରେ ଯୁଦ୍ଧ ଭୂମିରେ ଜୀବନକୁ ବାଜି ମାରି ଲଢ଼େଇ ଆଉ ରାତି ଅଧ ପର୍ଯ୍ୟନ୍ତ ବେପରୁଆ ଆମୋଦ ପ୍ରମୋଦ—ଏଇ ଜୀବନ ଦର୍ଶନକୁ ଫିଲିପ୍ ଓ ତାଙ୍କର ବନ୍ଧୁମାନେ ଗ୍ରହଣ କରି ନେଇଥିଲେ । ଫିଲିପ୍‌ଙ୍କର ପରମ ଶତ୍ରୁ ଡିମୋସ୍ଥିନିଜ୍ ତାଙ୍କ ସମ୍ବନ୍ଧରେ କହନ୍ତି,

"କି ଅଦ୍ଭୁତ ମଣିଷ ! କ୍ଷମତା ଓ ରାଜ୍ୟ ବିସ୍ତାର ପାଇଁ ଲଢ଼େଇ କରି ଏ ଲୋକ ଗୋଟାଏ ଆଖି ନଷ୍ଟ କଲା, ଗୋଟାଏ ବାହୁ ଭାଙ୍ଗିଲା ଓ ଗୋଟାଏ ଗୋଡ଼ ପଙ୍ଗୁ କଲା !"

ମାସେଡୋନିଆ ଓ ଥ୍ରେସ ଉପକୂଳରେ ଏଥେନ୍ସର ନିୟନ୍ତ୍ରଣାଧୀନ କେତୋଟି ନଗରକୁ ଫିଲିପ୍ ଖ୍ରୀ. ପୂ ୩୫୭ରେ ଆକ୍ରମଣ କଲେ । ଏହି ନଗରଗୁଡ଼ିକ ଏସିଆର ପ୍ରବେଶ ଦ୍ୱାର ସ୍ୱରୂପ । ଥ୍ରେସ୍‌ର ସୁନାଖଣି ଉପରେ ଫିଲିପ୍‌ଙ୍କର ଆଖି ନ ଥାଏ । ଦଶ ବର୍ଷ ଭିତରେ ଥ୍ରେସ ସମେତ ଇଜିଆନ୍ ଉପକୂଳର ବହୁତ ଅଞ୍ଚଳ ଫିଲିପ୍‌ଙ୍କ ନିୟନ୍ତ୍ରଣାଧୀନ ହେଲା ।

ଏହାପରେ ଗ୍ରୀସ୍‌ର ନେତୃତ୍ୱ ନେବାର ସୁଯୋଗ ଫିଲିପ୍ ଖୋଜୁଥାନ୍ତି । ଠିକଣା ସମୟରେ ଏକ ସୁବର୍ଣ୍ଣ ସୁଯୋଗ ଆସିଲା । ଫିଲିପ୍ ରାଜ୍ୟ ବିସ୍ତାର କରି ଧନ ଓ କ୍ଷମତା ବଢ଼ାଇ ଚାଲିଥିବା ବେଳେ ଗ୍ରୀକ୍‌ମାନଙ୍କ ଭିତରେ ଏକ ଧର୍ମଯୁଦ୍ଧ (ଖ୍ରୀ. ପୂ ୩୫୬—୩୪୬) ଚାଲିଥାଏ । ଫିଲିପ୍ କ'ଣ କରୁଛନ୍ତି ସେ କଥା ଚିନ୍ତା କରିବାକୁ କାହାର ବେଳ ନାହିଁ । ଡେଲଫାଇଙ୍କ ମନ୍ଦିରର ସମ୍ପତ୍ତି ତୋଷରପାତ କରିଥିବା ଅଭିଯୋଗରେ ବିଓସିଆ ପ୍ରଭୃତି ଡେଲ୍‌ଫାଇ ଲିଗ୍‌ର ସଭ୍ୟମାନେ ଏହି ଲିଗ୍‌ର ଅନ୍ୟତମ ସଭ୍ୟ ଫୋସିସ୍‌କୁ ଆକ୍ରମଣ କଲେ । ମାତ୍ର ଏଥେନ୍ସ ଓ ସ୍ପାର୍ଟା ଫୋସିସ୍ ପକ୍ଷ ନେଲେ । ଲଢ଼େଇ ଚାଲିଲା । ପରାଜୟର ସୂଚନା ପାଇ ଡେଲ୍‌ଫାଇ ଲିଗ୍ ଫିଲିପ୍‌ଙ୍କୁ ନିମନ୍ତ୍ରଣ କଲା । ଏହାଠାରୁ ଭଲ ସୁଯୋଗ ଆଉ କ'ଣ ଥାଇପାରେ ? ଅତିଶୀଘ୍ର ଫିଲିପ୍ ସୈନ୍ୟସାମନ୍ତ ଧରି ଗ୍ରୀସ୍‌ରେ ପ୍ରବେଶ କରି ସମସ୍ତଙ୍କୁ ସାବାଡ଼ କରିଦେଲେ । ମନ୍ଦିରର ରକ୍ଷକ ଭାବେ ଡେଲ୍‌ଫାଇ ଲିଗ୍ ତାଙ୍କୁ ସମ୍ମାନ କଲା । ପିଥିଆନ୍ କ୍ରୀଡ଼ା ପ୍ରତିଯୋଗିତାର ସଭାପତି ଭାବେ ଯୋଗ ଦେବାକୁ ଫିଲିପ୍‌ଙ୍କୁ ନିମନ୍ତ୍ରଣ କରାଗଲା । ଏହାର ତାତ୍ପର୍ଯ୍ୟ ସେ ଜଣେ ସମ୍ମାନିତ ଗ୍ରୀକ୍ ରାଜା ! ଗ୍ରୀସ୍‌ର ବନ୍ଧୁ ଓ ରକ୍ଷକ ଭାବେ ଏସୀୟ ନଗରଗୁଡ଼ିକରୁ ପାରସ୍ୟକୁ ଘଉଡ଼େଇ ଦେବାକୁ ଫିଲିପ୍ ପ୍ରତିଶ୍ରୁତି ଦେଲେ ।

ଏ ସମସ୍ତ ବ୍ୟାପାରରେ ସ୍ପାର୍ଟା ନୀରବ ରହିଲା । କେବଳ ପ୍ରତିବାଦ କଲେ ଏଥେନ୍ସର ଡିମୋସ୍ଥିନିଜ୍ । ସେ ଦୃଢ଼ ଭାବେ କହିଲେ ଯେ ଫିଲିପ୍ ଗ୍ରୀସର ରକ୍ଷକ ନୁହନ୍ତି, ଭକ୍ଷକ । ଡିମୋସ୍ଥିନିଜ୍ ଏଥେନ୍ସର ସର୍ବଶ୍ରେଷ୍ଠ ବାଗ୍ମୀ । ରାଜନୈତିକ କ୍ଷେତ୍ରରେ ତାଙ୍କର କେତେଜଣ ଟାଣୁଆ ବିରୋଧୀ ଥିଲେ । ଫିଲିପ୍‌ଙ୍କ ଠାରୁ ଲାଞ୍ଚ ଖାଇ ସେମାନେ ତାଙ୍କର

ଜୟଗାନ କରୁଥିଲେ । ତାରଧ୍ୟ ମଧ୍ୟ ଲାଞ୍ଚ ବଳରେ ଅନେକ ନେତାଙ୍କୁ ହାତରେ ରଖିଥିଲା । ଗ୍ରୀସ୍ ଉପରେ ପାରସ୍ୟର ଲୋଲୁପ ଦୃଷ୍ଟି ମଧ୍ୟ ଥାଏ । ମାତ୍ର ଶେଷରେ ଗ୍ରୀସ୍ ମାସେଡନିଆର ଅଧୀନ ହେବା ଗ୍ରୀକ୍ ଜାତି ତଥା ମାନବ ସଭ୍ୟତା ପକ୍ଷରେ ଯେ ଅଧିକ ସ୍ପୃହଣୀୟ ସେଥିରେ ସନ୍ଦେହ ନାହିଁ ।

ରାଜ୍ୟ ବିସ୍ତାର କରି ଫିଲିପ୍ ଗ୍ରୀସ୍‌ର ଦକ୍ଷିଣ ସୀମାନ୍ତ ପର୍ଯ୍ୟନ୍ତ ଲାଗି ଆସିଲେଣି ଲକ୍ଷ୍ୟ କରି ଏଥେନ୍‌ସ ପ୍ରମାଦ ଗଣିଲା । ଶେଷରେ ଡେମୋସ୍ଥିନିଜ୍‌ଙ୍କ ପ୍ରବର୍ତ୍ତନା ସଫଳ ହେଲା । ଏଥେନ୍‌ସ ଓ ଥିବାଜ୍ ମିଶି ଖ୍ରୀ. ପୂ ୩୩୮ରେ ଫିଲିପ୍‌ଙ୍କ ସେନାବାହିନୀକୁ ହାବୁଡ଼ିଲେ । ସ୍ପାର୍ଟା ସେମାନଙ୍କ ସହିତ ଯୋଗ ଦେଲା ନାହିଁ । ମାତ୍ର ଗ୍ରୀସ୍‌ର ଏହି ଦୁଇ ବିଶିଷ୍ଟ ନଗରୀଙ୍କ ଭାଗ୍ୟରେ ଶୋଚନୀୟ ପରାଜୟ ଲେଖାଥିଲା । ମାସେଡନିଆ ପକ୍ଷରୁ ଏହି ଯୁଦ୍ଧର ନେତୃତ୍ୱ ନେଇଥିଲେ ଫିଲିପ୍‌ଙ୍କର ବିଶ୍ୱ ବିଜୟୀ ପୁତ୍ର ଆଲେକ୍‌ଜାଣ୍ଡର (ସେତେବେଳେ ତାଙ୍କ ବୟସ ଅଠର ବର୍ଷ) । ଏଥେନ୍‌ସୀୟଙ୍କର ସାହସ ବା ବୀରତ୍ୱର ଅଭାବ ନ ଥିଲା । ମାତ୍ର ମାସେଡନିଆ ସେନାବାହିନୀର ନୂତନ ରଣକୌଶଳର ସମ୍ମୁଖୀନ ହେବା ସେମାନଙ୍କ ପକ୍ଷରେ ମୁସ୍କିଲ୍ ହେଲା ।

ବିଜୟୀ ଫିଲିପ୍ ପରାଜିତ ଗ୍ରୀକ୍‌ମାନଙ୍କ ପ୍ରତି ଅତ୍ୟନ୍ତ ଉଦାର ବ୍ୟବହାର ଦେଖାଇଥିଲେ । ଏହା ତାଙ୍କର ଦୂରଦୃଷ୍ଟି ତଥା ମହତ୍ତ୍ୱ ହୃଦୟର ପରିଚୟ ଦିଏ । ଥିବାଜ୍‌ର କେତେକ ମାସେଡନିଆ ବିରୋଧୀ ନେତାଙ୍କୁ ହତ୍ୟା କରି ଅନ୍ୟମାନଙ୍କୁ ସେ ମୁକ୍ତି ଦେଲେ । ଏଥେନ୍‌ସର ଦୁଇ ହଜାର ଯୁଦ୍ଧ ବନ୍ଦୀଙ୍କୁ ଖଲାସ କରି ସେ ଶାନ୍ତି ପ୍ରତିଷ୍ଠାର ଗୋଟିଏ ପ୍ରସ୍ତାବ ଆଣିଲେ । ପ୍ରସ୍ତାବଟି ହେଉଛି, ଗ୍ରୀସ୍ ଉପରେ ଆକ୍ରମଣ ହେଲେ ଆକ୍ରମଣକାରୀ ବିରୁଦ୍ଧରେ ଯୁଦ୍ଧରେ ଫିଲିପ୍ ହେବେ ଗ୍ରୀକ୍ ପକ୍ଷର ନେତା । ଏଥେନ୍‌ସ ଅନେକ ଭୟଙ୍କର ଦଣ୍ଡ ଆଶଙ୍କା କରୁଥିଲା । ତେଣୁ ଖୁସି ମନରେ ଗ୍ରୀସ୍‌ର ନୂତନ ନେତାଙ୍କୁ ସ୍ୱାଗତ କଲା ।

ଜଣେ ଓକିଲ ଭାବେ ଡେମୋସ୍ଥିନିଜ୍ ଜୀବନ ଆରମ୍ଭ କରିଥିଲେ । ମକଦ୍ଦମାରେ ପଡ଼ିଥିବା ଲୋକର ବକ୍ତବ୍ୟକୁ ସେ ସୁନ୍ଦର ଭାବେ ଲେଖିପାରୁଥିଲେ । ମାତ୍ର ସେ ଆଦୌ ଭଲ ବକ୍ତା ନ ଥିଲେ । ତାଙ୍କ ଉଚ୍ଚାରଣରେ ଅନେକ ଭୁଲ୍ ରହୁଥିଲା । ଏହି ତ୍ରୁଟି ସୁଧାରିବାକୁ ନିର୍ଜନ ସମୁଦ୍ର ବେଳାରେ ପାଟିରେ ଗୋଡ଼ି ପୂରାଇ ଡେମୋସ୍ଥିନିଜ୍ ଘଣ୍ଟା ଘଣ୍ଟା ବକ୍ତୃତା ଦେଉଥିଲେ । ଏହି ବ୍ୟକ୍ତି ପରେ ହେଲେ ଗ୍ରୀସ୍‌ର ଶ୍ରେଷ୍ଠ ବାଗ୍ମୀ ।

ଫିଲିପ୍ ପରାଜିତ ଏଥେନ୍ସ ପ୍ରତି ଯେଉଁ ଭଳି ଉଦାର ମନୋଭାବ ଦେଖାଇଲେ ( ତା ପଛରେ କୂଟନୀତି ଥାଉ ପଛେ ) ଗ୍ରୀକ୍ ନଗରମାନେ ପରସ୍ପର ପ୍ରତି ସେହିଭଳି ଉଦାର ନ ଥିଲେ । ଏଥେନ୍ସ, ସ୍ପାର୍ଟା ବା ଥିବାଜ୍ ପରି ବିଶିଷ୍ଟ ନଗରମାନେ ପରସ୍ପର ପ୍ରତି ତଥା ଅନ୍ୟାନ୍ୟ କ୍ଷୁଦ୍ର ନଗରମାନଙ୍କ ପ୍ରତି ଯେପରି ବିଶ୍ୱାସଘାତକତା ଓ ନିଷ୍ଠୁର ଆଚରଣ କରୁଥିଲେ ତାହା ସ୍ପଷ୍ଟ ଜଣାଇ ଦିଏ ଯେ ସେମାନଙ୍କ ମଧ୍ୟରୁ କିଏ ଗ୍ରୀସ୍‌ର ନେତା ହେବା ପାଇଁ ଆଉ ଯୋଗ୍ୟ ହୋଇ ନ ଥିଲା । ଏଭଳି ପରିସ୍ଥିତିରେ ଗ୍ରୀସ୍ ଫିଲିପ୍ ଓ ତାଙ୍କ ଅନ୍ତେ ଆଲେକ୍‌ଜାଣ୍ଡର୍‌ଙ୍କ ଅଧୀନକୁ ଯିବା ବିଧାତାର ଆଶୀର୍ବାଦ । ଏହା ଫଳରେ ଗ୍ରୀସରେ ପ୍ରତିଦିନ ଚାଲିଥିବା ଯୁଦ୍ଧ ବନ୍ଦ ହେଲା । ଫିଲିପ୍ ଓ ଆଲେକ୍‌ଜାଣ୍ଡର୍ ଗ୍ରୀସ୍‌ର ନଗରଗୁଡିକୁ ଯଥେଷ୍ଟ ସ୍ୱାଧୀନତା ଦେଇଥିଲେ । ବସ୍ତୁତଃ ମାସେଡନିଆ ବିରୁଦ୍ଧରେ ବିଦ୍ରୋହ କରିବା ବ୍ୟତୀତ ଗ୍ରୀସ୍ ଅନ୍ୟ ସମସ୍ତ ସ୍ୱାଧୀନତା ଉପଭୋଗ କରୁଥିଲା ।

ଫିଲିପ୍ ତାଙ୍କର ସମସ୍ତ ଯୋଜନାକୁ ସଫଳ ଭାବେ ରୂପାୟିତ କରିଥିଲେ । ଯୁଦ୍ଧ ବା ଶାସନ ସଂକ୍ରାନ୍ତୀୟ ତାଙ୍କର କୌଣସି ଆଖିଦୃଶିଆ ଭୁଲ୍ ନାହିଁ । ମାତ୍ର ଫିଲିପ୍ ନିଜର ବୈବାହିକ ଜୀବନକୁ ସଜାଡ଼ିବାରେ ବିଫଳ ହେଲେ । ଫିଲିପ୍ ମୋଲୋସିଆର ସୁନ୍ଦରୀ ରାଜକନ୍ୟା ଅଲିମ୍ପିଆସ୍‌ଙ୍କୁ ବିବାହ କରିଥିଲେ । ଅଲିମ୍ପିଆସ୍ ଯେପରି ପରମା ସୁନ୍ଦରୀ ସେହିପରି ରଣଚଣ୍ଡୀ ! ଏକପତ୍ନୀ ବ୍ରତ ପାଳନ କରୁଥିବା ପର୍ଯ୍ୟନ୍ତ ଫିଲିପ୍‌ଙ୍କର କୌଣସି ସମସ୍ୟା ନ ଥିଲା । ମାତ୍ର ପରେ ସେ ଅନେକ ସ୍ତ୍ରୀ ଗ୍ରହଣ କଲେ । ଏହାପରେ ରଣଚଣ୍ଡୀଙ୍କ କୋପ ସମ୍ଭାଳିବା ଫିଲିପ୍‌ଙ୍କ ପକ୍ଷରେ କଷ୍ଟକର ହେଲା । ଅତ୍ୟନ୍ତ ବନ୍ୟ ଓ ହିଂସ୍ର ଡାଇଓନିସସ୍‌ଙ୍କ ପୂଜାରେ ଅଲିମ୍ପିଆସ୍ ଭାଗ ନେଲେ । ଦିନେ ରାତିରେ ଅଲିମ୍ପିଆସ୍‌ଙ୍କ ଶଯ୍ୟାରେ ଗୋଟିଏ ସାପ ଦେଖି ଫିଲିପ୍ ଚମକି ପଡ଼ିଲେ । ଅଲିମ୍ପିଆସ୍ ସଫେଇ ଦେଲେ ଯେ ସାପଟି ପ୍ରକୃତରେ ଜଣେ ଦେବତା । ପ୍ରତିଶୋଧ ପରାୟଣା ରାଣୀ ପୁଣି ଜଣାଇଦେଲେ ଯେ ଫିଲିପ୍ ଆଲେକ୍‌ଜାଣ୍ଡର୍‌ଙ୍କ ପିତା ନୁହନ୍ତି । ଥରେ ରାତିରେ ଜିଅସ୍‌ଙ୍କ ବଜ୍ର ତାଙ୍କ ଉପରେ ପଡ଼ିବା ପରେ ସେ ଗର୍ଭବତୀ ହେଲେ । ଜିଅସ୍ ଆଲେକ୍‌ଜାଣ୍ଡର୍‌ଙ୍କ ପିତା ! ଏ କଥା ଫିଲିପ୍‌ଙ୍କୁ ଶକ୍ତ ଧକ୍‌କା ଦେଲା । ରାଣୀଙ୍କ ଠାରୁ ଦୂରେଇ ସେ ସୁରା ଓ ସାକୀରେ ବୁଡ଼ି ରହିଲେ । ଅଲିମ୍ପିଆସ୍ ଆଲେକ୍‌ଜାଣ୍ଡର୍‌ଙ୍କ କାନରେ ଏହି ଗୋପନ ସତ୍ୟ ଫୁଙ୍କିଦେଲେ । ଆଲେକ୍‌ଜାଣ୍ଡର୍

ଦେବତାଙ୍କ ସନ୍ତାନ ଜଣେ ଦେବତା ! ପରେ ଆଲେକ୍‌ଜାଣ୍ଡର୍‌ଙ୍କର ଅଭୂତପୂର୍ବ ବିଶ୍ୱବିଜୟ ଦେଖି ଲୋକେ ଏହିକଥା ବିଶ୍ୱାସ କରିଥିଲେ ।

ଫିଲିପ୍ ବିବାହ କରି ଥାଆନ୍ତି । ଥରେ ଜଣେ ସେନାପତିଙ୍କ ସହିତ ମଦ୍ୟପାନ କରୁଥିବା ବେଳେ ସେନାପତି ପ୍ରସ୍ତାବ ଦେଲେ ଯେ, ରାଜା ଦ୍ୱିତୀୟ ରାଣୀଙ୍କର ପୁଅକୁ ଉତ୍ତରାଧିକାରୀ ବୋଲି ଘୋଷଣା କରନ୍ତୁ । କାରଣ ଦ୍ୱିତୀୟ ରାଣୀ ଶୁଦ୍ଧ ମାସେଡନୀୟ ନାରୀ । ଆଲେକ୍‌ଜାଣ୍ଡର୍ ଏକଥା ଶୁଣିପାରି ସେନାପତିଙ୍କ ମୁଣ୍ଡକୁ ଲକ୍ଷ୍ୟ କରି ଗୋଟିଏ ମଦ୍ୟପାତ୍ର ଫୋପାଡ଼ିଲେ ଓ ଗର୍ଜି ଉଠି କହିଲେ, "ମୁଁ କ'ଣ ଜାରଜ ?" । ଖଣ୍ଡା କାଢ଼ି ଫିଲିପ୍ ଉଠି ଆସୁଥିଲେ ମାତ୍ର ଅତ୍ୟଧିକ ମଦ୍ୟପାନ ହେତୁ ଗୋଟିଏ ପାହୁଣ୍ଡ ବି ବଢ଼ି ପାରିଲେ ନାହିଁ । ପିତାଙ୍କ ଉଦ୍ଦେଶ୍ୟରେ ଆଲେକ୍‌ଜାଣ୍ଡର୍ ଉପହାସ କରି କହିଲେ, "ଇଏ ୟୁରୋପ ଟପି ଏସିଆରେ ପଦାର୍ପଣ କରିବାକୁ ଯୋଜନା କରୁଛନ୍ତି କିନ୍ତୁ ନିଜ ଚଉକିରୁ ପାହୁଣ୍ଡେ ଆଗେଇ ପାରୁନାହାନ୍ତି !"

ଫିଲିପ୍ ଆଲେକ୍‌ଜାଣ୍ଡର୍‌ଙ୍କୁ ସ୍ନେହ କରୁଥିଲେ । ପିତାଙ୍କ ପ୍ରତି ଆଲେକ୍‌ଜାଣ୍ଡର୍‌ଙ୍କର ଶ୍ରଦ୍ଧା ଓ ସମ୍ମାନ ଥିଲା । ତେବେ ଫିଲିପ୍‌ଙ୍କ ମୃତ୍ୟୁ ପୂର୍ବରୁ ପିତାପୁତ୍ରଙ୍କ ମଧ୍ୟରେ ଏହିପରି ଏକ ଅଶାନ୍ତି ସୃଷ୍ଟି ହୋଇଥିଲା ।

ଉପରୋକ୍ତ ସେନାପତିଙ୍କର ଜଣେ ପ୍ରତିଦ୍ୱନ୍ଦୀ ଫିଲିପ୍‌ଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରି ତାଙ୍କୁ ହତ୍ୟା କରିଥିଲେ ( ଖ୍ରୀ. ପୂ ୩୩୬ ) । ଏଥିରେ ରାଣୀଙ୍କର ହାତ ଥିବାର କୌଣସି ପ୍ରମାଣ ନାହିଁ । ଫିଲିପ୍‌ଙ୍କ ମୃତ୍ୟୁ ପରେ ସେନାବାହିନୀର ଅତିପ୍ରିୟ ଆଲେକ୍‌ଜାଣ୍ଡର୍ ରାଣୀଙ୍କ ସମର୍ଥନରେ ସିଂହାସନ ଆରୋହଣ କଲେ ।



# ଆଲେକ୍‌ଜାଣ୍ଡର୍

(ଖ୍ରୀ. ପୂ ୩୫୬—୩୨୩)

※ ଇତିହାସରେ ଅଦ୍ୱିତୀୟ ବୀର ଆଲେକ୍‌ଜାଣ୍ଡର୍ ଗ୍ରୀକ୍ ସଂସ୍କୃତିର ବଡ଼ ଭକ୍ତ ।

※ ଆଲେକ୍‌ଜାଣ୍ଡର୍‌ଙ୍କ ଦିଗ୍‌ବିଜୟ ଫଳରେ ଗ୍ରୀକ୍ ସଂସ୍କୃତି ବ୍ୟାପକ ଅଞ୍ଚଳରେ ପ୍ରବେଶ କଲା ।

※ ପ୍ରାଚ୍ୟ ପାଶ୍ଚାତ୍ୟ ମଧ୍ୟରେ ଆଦାନ ପ୍ରଦାନର ବାଟ ଫିଟିଗଲା ।

ପିତା ଫିଲିପ୍‌ଙ୍କର ତେଜ, ସଂଯମ ଏବଂ ମାତା ଅଲିମ୍ପିଆସ୍‌ଙ୍କର ପ୍ରଚଣ୍ଡ ପ୍ରାଣଶକ୍ତି ଓ ଜିଦ୍‌ର ସମ୍ମିଶ୍ରଣ ଆଲେକ୍‌ଜାଣ୍ଡର୍‌ଙ୍କ ଠାରେ ଘଟିଥିଲା । ଜଣେ ମହାନ୍ ବୀରର ସମସ୍ତ କଳା ନେଇ ସେ ଜନ୍ମ ହୋଇଥିଲେ । ସ୍ୱାସ୍ଥ୍ୟ ବା ସୌନ୍ଦର୍ଯ୍ୟ କେଉଁଥିରେ ତାଙ୍କୁ ବିଧାତା ଊଣା କରି ନ ଥିଲା । ଆଦ୍ୟ ଯୌବନରେ ଆଲେକ୍‌ଜାଣ୍ଡର୍‌ଙ୍କର କ୍ରୀଡ଼ା ପ୍ରତିଭା, ଦୌଡ଼ିବାର କ୍ଷିପ୍ରତା, ଶିକାରରେ ନିର୍ଭୀକତା ଓ ଅସ୍ତ୍ର ଚାଳନାର ବିଦ୍ୟୁତ୍ ଗତି ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ ।

ଆଲେକ୍‌ଜାଣ୍ଡର୍‌ଙ୍କର ବାଲ୍ୟଗୁରୁଙ୍କ ନାମ ଲିଓନିଡାସ୍ । ସେ ଶୈଶବରୁ ଆଲେକଜାଣ୍ଡର୍‌ଙ୍କୁ ବିଳାସବ୍ୟସନ ଠାରୁ ଦୂରରେ ରଖିଥିଲେ । ସେତିକି ନୁହେଁ, ଆଲେକ୍‌ଜାଣ୍ଡର୍ ଯେପରି ଅସୀମ କଷ୍ଟସହିଷ୍ଣୁ ହୋଇ ବଢ଼ିବେ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ସାରା ଜୀବନ ଯୁଦ୍ଧଭୂମି ଓ ସୈନ୍ୟ ଶିବିରରେ କଟାଇଥିବା ଏହି ମହାନ୍ ବୀରଙ୍କୁ ଉପଯୁକ୍ତ ତାଲିମ୍ ଦେଇ ଗଢ଼ିଥିଲେ 'ଲିଓନିଡାସ୍ । ତାଙ୍କର ଠାରୁ ପ୍ରେରଣା ପାଇ ପିଲାଦିନୁ ପାରସ୍ୟ ବିଜୟର ସ୍ୱପ୍ନ ଦେଖିଥିଲେ ଆଲେକ୍‌ଜାଣ୍ଡର୍ ।

ଲେଖାପଢ଼ା ଶିଖିବା ପରେ ଆଲେକ୍‌ଜାଣ୍ଡର୍‌ଙ୍କୁ ଦର୍ଶନ, ସାହିତ୍ୟ ଇତ୍ୟାଦି ପଢ଼ାଇବାକୁ ଆରିଷ୍ଟୋଟ୍‌ଲ୍‌ ଆସିଲେ । ଦର୍ଶନ ପଢ଼ିଲେ ପୁଅ ଧୀର ସ୍ଥିର ହେବ ଓ ମୁଣ୍ଡ ଗରମ ବେଳେ ତାଙ୍କ ପରି ନାନା କାଣ୍ଡ ଭିଆଇବ ନାହିଁ—ଏହାହିଁ ଥିଲା ଫିଲିପ୍‌ଙ୍କର ଉଦ୍ଦେଶ୍ୟ । ସମୟେ ସମୟେ କ୍ରୋଧାନ୍ଧ ହେବାର ପୈତୃକ ଗୁଣଟି କିନ୍ତୁ ଆଲେକ୍‌ଜାଣ୍ଡର୍‌ଙ୍କର ଛାଡ଼ି ନ ଥିଲା । ଦର୍ଶନର ସେତେଦୂର ଶକ୍ତି ନାହିଁ ! ତେବେ ଆରିଷ୍ଟୋଟ୍‌ଲ୍‌ଙ୍କ ସଂସ୍ପର୍ଶରେ ଆସିବା ଫଳରେ ଆଲେକ୍‌ଜାଣ୍ଡର୍‌ଙ୍କ ହୃଦୟରେ ଜ୍ଞାନ ପ୍ରତି କିଛିଟା ଅନୁରାଗ ସୃଷ୍ଟି ହୋଇଥିଲା । ସର୍ବଦା ଯୁଦ୍ଧ ଓ ଯୁଦ୍ଧ ଚିନ୍ତାରେ ବୁଡ଼ିରହି ସେ ତାଙ୍କର ଜ୍ଞାନ ପିପାସା ମେଣ୍ଟାଇ ପାରୁ ନ ଥିଲେ । ଦିନକର କ୍ଲାନ୍ତିକର ଯାତ୍ରା ବା ଯୁଦ୍ଧପରେ ରାତି ଅଧ ପର୍ଯ୍ୟନ୍ତ ଜ୍ଞାନ ଗବେଷକଙ୍କ ଆଲୋଚନାରେ ଭାଗ ନେଇ ସେ ଆନନ୍ଦ ଲାଭ କରୁଥିଲେ । ଥରେ ଆରିଷ୍ଟୋଟ୍‌ଲ୍‌ଙ୍କ ପାଖକୁ ସେ ଲେଖିଥିଲେ, "ମୋର କ୍ଷମତା ବିସ୍ତାର ଓ ରାଜ୍ୟ ଜୟ ପରିବର୍ତ୍ତେ ମନ ଚାହୁଁଛି ଜୀବନର ଉତ୍କୃଷ୍ଟତା ଜ୍ଞାନରେ ମୁଁ ଅନ୍ୟମାନଙ୍କୁ ଟପି ଯାଆନ୍ତି କି !"

ଗ୍ରୀକ୍ ଜାତିର ଜ୍ଞାନ, କଳା ଓ ସଂସ୍କୃତି ପ୍ରତି ଆଲେକ୍‌ଜାଣ୍ଡର୍‌ଙ୍କର ଗଭୀର ଶ୍ରଦ୍ଧା ଥିଲା । ଏହା ମୂଳରେ ଆରିଷ୍ଟୋଟ୍‌ଲ୍‌ଙ୍କ ପ୍ରଭାବ ରହିଛି । ସେ ଯେଉଁ ଯେଉଁ ଏସୀୟ ରାଜ୍ୟ ଜୟ କରୁଥିଲେ, ସେଠାରେ ଗ୍ରୀକ୍ ସଂସ୍କୃତିର ବୀଜ ବୁଣିଦେବା ଥିଲା ତାଙ୍କର ପ୍ରଥମ କାର୍ଯ୍ୟ । ଅବଶ୍ୟ ସ୍ଥାନୀୟ ଧର୍ମ ବା ସଂସ୍କୃତିକୁ ଦମନ କଲା ପରି ନିର୍ବୋଧ ସେ ନ ଥିଲେ । ଦୂର ଦୂରାନ୍ତରେ ଗ୍ରୀକ୍ ସଂସ୍କୃତିକୁ ରୋପଣ କରି ସେ ଯେଉଁଭଳି ସାଂସ୍କୃତିକ ଆଦାନ ପ୍ରଦାନର ବାଟ ଫିଟାଇଲେ ଇତିହାସ ତାର କିଛି ହିସାବ ପାଇଛି, ଅନେକ ହିସାବ ପାଇନାହିଁ ।

ଥରେ ଗୋଟିଏ ଦିବ୍ୟ ସୁନ୍ଦର ବଳିଷ୍ଠ ଅଶ୍ୱ ଧରି ଜଣେ ଲୋକ ଫିଲିପ୍‌ଙ୍କ ପାଖକୁ ଆସିଲା । ଆଖି ଲାଖି ରହିଲା ପରି ଘୋଡ଼ାଟିଏ । ମାତ୍ର ଫିଲିପ୍‌ଙ୍କ ଦୁର୍ଦ୍ଦାନ୍ତ ସେନାପତିମାନେ ମଧ୍ୟ ସେ ଘୋଡ଼ା ପିଠିରେ ବସି ପାରିଲେ ନାହିଁ । ରାଜାଙ୍କ ମନ ମରିଗଲା । ଏପରି ଘୋଡ଼ାକୁ କିଣି ଲାଭ କ'ଣ ? 'ଚଢ଼ି ନ ଜାଣି ଘୋଡ଼ାର ଦୋଷ' କହି ବାରବର୍ଷର ବାଳକ ଆଲେକ୍‌ଜାଣ୍ଡର୍ ଆଗେଇ ଗଲେ ଘୋଡ଼ା ଆଡ଼କୁ । ଫିଲିପ୍ ରାଗିଗଲେ । ଅଭିଜ୍ଞ ସେନାପତିଙ୍କୁ ଆକ୍ଷେପ କରି ବାଳକ ଆଲେକ୍‌ଜାଣ୍ଡର୍‌ଙ୍କର ଏପରି ଉକ୍ତି ତାଙ୍କୁ ଭଲ ଲାଗିଲା ନାହିଁ । ରାଗିଯାଇ ସେ ଉଦ୍ଧତ ବାଳକକୁ ଘୋଡ଼ା ପାଖକୁ ଯିବାକୁ ଛାଡ଼ି ଦେଲେ । ଘୋଡ଼ା ଚଢ଼ିବା ସୁଆଦ ଥରେ ଦେଖ !

ଆଲେକ୍‌ଜାଣ୍ଡର୍ ଘୋଡ଼ାକୁ ବୁଲାଇ ଦେଇ ତାର ମୁହଁ ସୂର୍ଯ୍ୟ ଆଡ଼କୁ ରଖିଲେ । ଉଦ୍ଦେଶ୍ୟ, ନିଜ ଛାଇ ଦେଖି ଘୋଡ଼ା ପୂର୍ବରୁ ଯେପରି ଚମକୁ ଥିଲା ତାହା ବନ୍ଦ କରିବା । ତା ପରେ ଘୋଡ଼ାକୁ ଟିକିଏ ଆଉଁସି ତା ପିଠିକୁ ଉଠିଗଲେ । ବିଜୁଳି ବେଗରେ ଘୋଡ଼ା ଧୂଳି ଉଡ଼େଇ ଅଦୃଶ୍ୟ ହୋଇଗଲା ।



[ ରୋମ୍‌ରୁ ମିଳିଥିବା ଆରିଷ୍ଟୋଟଲ୍‌ଙ୍କ ମୂର୍ତ୍ତିର ଚିତ୍ର ।]

କ୍ଲିଟସ୍ ସେନାପତି ଥିଲେ ଆଲେକ୍‌ଜାଣ୍ଡର୍‌ଙ୍କ ବନ୍ଧୁ । କେତେ ଭୟଙ୍କର ରଣକ୍ଷେତ୍ରରେ ସେ ଆଲେକ୍‌ଜାଣ୍ଡର୍‌ଙ୍କର ଏକମାତ୍ର ସଖା ହୋଇ ଲଢ଼ିଛନ୍ତି ।

ନିମିଷକେ ଘୋଡ଼ା ଅଦୃଶ୍ୟ ହୋଇ ଯିବାରୁ ଫିଲିପ୍‌ଙ୍କର ହୃଦୟ ଶୁଖିଗଲା । ଛୋଟ ପିଲାଟାର କି ଦଶା ହେବ କେଜାଣେ । କିଛି ସମୟ ପରେ ଆଲେକ୍‌ଜାଣ୍ଡର୍ ନିର୍ବିଘ୍ନରେ ଫେରି ଆସିବାର ଦେଖି ଫିଲିପ୍ ତାଙ୍କୁ କୁଣ୍ଢାଇ ପକାଇ କହିଲେ, "ପୁତ୍ର ! ମାସେଡୋନିଆ ରାଜ୍ୟଟି ତମ ପାଇଁ ଅତି କ୍ଷୁଦ୍ର । ତମକୁ ଖୋଜିଲା ପରି ସାମ୍ରାଜ୍ୟଟିଏ ଗଢ଼ି ନେବ ।" ଅଭ୍ରାନ୍ତ ଭବିଷ୍ୟବାଣୀ । ତେବେ ଉତ୍ତରାଧିକାରୀ ସୂତ୍ରରେ ଆଲେକ୍‌ଜାଣ୍ଡର୍ କମ୍ ପୈତୃକ ସମ୍ପତ୍ତି ପାଇ ନ ଥିଲେ । କ୍ଷୁଦ୍ର ମାସେଡୋନିଆ ନୁହେଁ, ସମଗ୍ର ଗ୍ରୀସ୍ ଥିଲା ଫିଲିପ୍‌ଙ୍କର ଅଧୀନ । କେବଳ ଗୋଟିଏ ବଡ଼ ରାଜ୍ୟ ନୁହେଁ, ଆଲେକ୍‌ଜାଣ୍ଡର୍‌ଙ୍କ ପାଇଁ ଫିଲିପ୍ ଛାଡ଼ି ଯାଇଥିଲେ ଗୋଟିଏ ଦକ୍ଷ, ସୁଶୃଙ୍ଖଳ ସେନାବାହିନୀ ଓ କେତେଜଣ ବିଚକ୍ଷଣ ସେନାଧ୍ୟକ୍ଷ ।

ଇତିହାସ ଆଲେକ୍‌ଜାଣ୍ଡରଙ୍କୁ ଜଣେ ଦିଗ୍‌ବିଜୟୀ ସମ୍ରାଟର ଆସନ ଦେଇଛି । ମଣିଷର କୃତିତ୍ୱ ବା ଆସନ ଅନେକ ସମୟରେ ବ୍ୟକ୍ତିକୁ ଢାଙ୍କି ପକାଏ । ଯେ କୌଣସି କ୍ଷେତ୍ରରେ ଅସାଧାରଣ ପ୍ରତିଭା ସମ୍ପନ୍ନ ମଣିଷର ଏକ ବୈଶିଷ୍ଟ୍ୟ ଓ ଆକର୍ଷଣ ରହିଛି । ଆଲେକ୍‌ଜାଣ୍ଡର୍ ଏହାର ବ୍ୟତିକ୍ରମ ନୁହନ୍ତି । ତାଙ୍କ ଠାରେ କି ପ୍ରଚଣ୍ଡ ଶକ୍ତି ରହିଥିଲା ଭାବିଲେ ଆମେ ବିସ୍ମିତ ହେଉ । ସିଂହାସନ ଆରୋହଣ କଲା ବେଳକୁ ଆଲେକ୍‌ଜାଣ୍ଡରଙ୍କ ବୟସ ମାତ୍ର କୋଡ଼ିଏ । ପ୍ରତାପୀ ଫିଲିପ୍‌ଙ୍କର ଆକସ୍ମିକ ମୃତ୍ୟୁ ପରେ ତାଙ୍କର ଅନଭିଜ୍ଞ ତରୁଣ ପୁତ୍ରଙ୍କୁ ଫୁଙ୍କି ମାରି ଉଡ଼େଇ ଦେବାକୁ ଭିତରେ ବାହାରେ ନାନା ଷଡ଼ଯନ୍ତ୍ର ଚାଲି-ଥାଏ । ବିଦ୍ରୋହ ଦମନ କରିବା ପାଇଁ ସେନାବାହିନୀକୁ ଧରି ଏଣେତେଣେ ଖେଦିବା ଦିନ ଠାରୁ ଆରମ୍ଭ କରି ତାଙ୍କର ଦଶବର୍ଷର ଅବିଶ୍ରାନ୍ତ ଦିଗ୍‌ବିଜୟ କାଳ ଭିତରେ ଆଲେକ୍‌ଜାଣ୍ଡର୍‌ଙ୍କୁ କେହି କ୍ଲାନ୍ତ ହେବାର ଦେଖି ନାହାନ୍ତି । ଯାତ୍ରା ସମୟରେ ରଥରେ ବସି କ୍ଲାନ୍ତି ମେଣ୍ଟାଇବା ପରିବର୍ତ୍ତେ ପୂର୍ଣ୍ଣ ବେଗରେ ଧାଉଁଥିବା ରଥରୁ ତଳକୁ ଡେଇଁ ପୁଣି ଦୌଡ଼ି ଦୌଡ଼ି ସେ ରଥ ଉପରକୁ ଚଢ଼ନ୍ତି । ଅକାରଣେ ଉଡ଼ନ୍ତା ଚଢ଼େଇ ବା ଦୂରରେ ଥିବା କୌଣସି ବସ୍ତୁକୁ ଲକ୍ଷ୍ୟ କରି ଶର ମାରନ୍ତି । ଚୁପ୍‌ଚାପ୍ ବିଶ୍ରାମ କରିବା ତାଙ୍କୁ ସବୁଠାରୁ କଷ୍ଟ । ସେନାବାହିନୀ କେଉଁଠି ବିଶ୍ରାମ କଲେ ଆଲେକ୍‌ଜାଣ୍ଡର୍ ଏକୁଟିଆ ଶିକାରକୁ ବାହାରି ଯାଆନ୍ତି । ସାଙ୍ଗରେ କୌଣସି ଯାନବାହନ ବା ମଣିଷ ନ ଥାଏ । ଏକାକୀ ଯେ କୌଣସି ବନ୍ୟ ଜନ୍ତୁର ମୁକାବିଲା କରିବାରେ ତାଙ୍କର ଆନନ୍ଦ । ଥରେ ଜଙ୍ଗଲରେ ଗୋଟିଏ ସିଂହ ସହିତ ଆଲେକ୍‌ଜାଣ୍ଡର୍‌ଙ୍କର ଲଢ଼େଇ ହେଲା । ଦୁହିଁଙ୍କ ମଧ୍ୟରୁ କିଏ ରାଜା ହେବ ସତେକି ଏଇ ଲଢ଼େଇରୁ ତାହା ସ୍ଥିର ହେବାକୁ ଯାଉଛି ! ସମ୍ରାଟ ସେଇ ଭଳି ଲଢ଼ିଲେ ବୋଲି ପରେ ସୈନ୍ୟମାନେ କଥାବାର୍ତ୍ତା ହେଉଥିଲେ । ଆଲେକ୍‌ଜାଣ୍ଡର୍‌ଙ୍କ କାନରେ ଏ କଥା ପଡ଼ିବାରୁ ତାଙ୍କୁ ବଡ଼ ସନ୍ତୋଷ ଲାଗିଲା ।

କଠିନ ପରିଶ୍ରମ କରିବା ଓ ଦୁଃସାହସିକ କାମ ଭିତରକୁ ଧସେଇ ପଶିବାରେ ସେ ଅପାର ଆନନ୍ଦ ଅନୁଭବ କରୁଥିଲେ । ସେନାପତିମାନଙ୍କର ଏତେ ଚାକର ବାକର ଦେଖି ସେ ବିସ୍ମିତ ହେଉଥିଲେ । ପଚାରୁଥିଲେ, "ତୁମମାନଙ୍କର ସବୁ କାମ ତ ଚାକରମାନେ କରୁଛନ୍ତି, ତମକୁ ଗାଢ଼ ନିଦ ହେଉଛି କିପରି ? ଆମେ ଯେଉଁମାନଙ୍କୁ ଜିଣୁଛୁ ସେମାନଙ୍କର ମନ୍ଦଭ୍ୟାସ ଠାରୁ ଦୂରେଇ ରହିବା ଆମର ପ୍ରଥମ ଆବଶ୍ୟକତା—ଏତିକି ଆଜି ପର୍ଯ୍ୟନ୍ତ

ବୁଝିନାହଁ !" ଗାଡ଼ ନିଦ୍ରା ମୂଲ୍ୟବାନ୍, ମୋଟେ ନିଦ ନ ଲାଗିବା କିନ୍ତୁ ଅମୂଲ୍ୟ ! ଆଲେକ୍-ଜାଣ୍ଡର୍‌ଙ୍କ ଅବଶୋଷ ହେଉଥିଲା ଯେ ତାଙ୍କୁ ମଧ୍ୟ ଶୋଇବାକୁ ପଡ଼ୁଛି ! ସେ ନଶ୍ୱର ମଣିଷଟିଏ ବୋଲି ନିଦ୍ରା ତାଙ୍କୁ ସଚେତନ କରି ଦେଉଥିଲା ।

ଆଲେକ୍‌ଜାଣ୍ଡର୍ ତ୍ରିଭୁବନ ବିଜୟୀ ସମ୍ରାଟ । ମାତ୍ର ତାଙ୍କର ଅସଲ ପରିଚୟ ହେଉଛି, ଯେ ଜଣେ ଅଦ୍ଭୁତ ଯୋଦ୍ଧା । ଯୁଦ୍ଧ ତାଙ୍କର ନିଶା । ଯୁଦ୍ଧ କ୍ଷେତ୍ରରେ ରଣ ଦୁନ୍ଦୁଭି ଶୁଣିଲେ ଆଲେକ୍‌ଜାଣ୍ଡର୍‌ଙ୍କୁ କାଳେଶୀ ଲାଗିଯାଏ । ସୈନିକ, ସେନାପତି କାହାରି କଥା ନ ଶୁଣି ସମସ୍ତଙ୍କୁ ପଛରେ ପକାଇ ଆଲେକ୍‌ଜାଣ୍ଡର୍ ଶତ୍ରୁସୈନ୍ୟଙ୍କ ସମ୍ମୁଖରେ ପହଞ୍ଚି ଯାଆନ୍ତି । ସେନାବାହିନୀର ମୁଖ୍ୟ ପରିଚାଳକ ସ୍ୱୟଂ ସମ୍ରାଟ ପ୍ରଥମ ଧାଡ଼ିରେ ଯାଇଁ ଲଢ଼ିବା ସମର-ଶାସ୍ତ୍ରର ସବୁ ନିୟମର ବହିର୍ଭୂତ । ସେ ଯୁଗରେ ବ୍ୟବହୃତ ସବୁପ୍ରକାର ଅସ୍ତ୍ରର ଚିହ୍ନ ଆଲେକ୍‌ଜାଣ୍ଡର୍‌ଙ୍କ ଶରୀରରେ ଥିଲା । କଥା ହେଉଛି, ସମ୍ରାଟ ପ୍ରଥମ ସୈନିକ ହେବା ଫଳରେ ତାଙ୍କୁ ରକ୍ଷା କରିବାକୁ ଅନ୍ୟମାନେ ଶତ୍ରୁ ଆଡ଼କୁ ମାଡ଼ି ଚାଲନ୍ତି । ତେଣୁ ବିଜୟ ବା ସମ୍ରାଟଙ୍କୁ ହରାଇ ଚରମ ପରାଜୟ ବ୍ୟତୀତ ଆଲେକଜାଣ୍ଡର୍‌ଙ୍କ ସେନାବାହିନୀର ଅନ୍ୟ ଗତି ନ ଥିଲା । ଦ୍ୱିତୀୟ ସମ୍ଭାବନାଟି ଥରକରୁ ଅଧିକ ଘଟି ନ ଥାନ୍ତା । ଆଲେକ୍‌ଜାଣ୍ଡର୍‌ଙ୍କର ଅନେକ ଚତୁର ଓ ଅଭିଜ୍ଞ ସେନାପତି ଥିଲେ । ସେମାନେ ତାଙ୍କୁ ସମ୍ଭାଳି ନେଉଥିଲେ ।

ଆଗପଛ ନ ଭାବି ଆଲେକ୍‌ଜାଣ୍ଡର୍ କିପରି ଶତ୍ରୁବ୍ୟୂହ ଭିତରକୁ ଛୁଟି ଯାଆନ୍ତି, ଭାରତବର୍ଷରେ ଘଟି ଯାଇଥିବା ଏକ ଘଟଣା ତାର ଜ୍ୱଳନ୍ତ ଦୃଷ୍ଟାନ୍ତ । ପଞ୍ଜାବରେ ମାଲବ ଜାତି ସହିତ ଆଲେକ୍‌ଜାଣ୍ଡର୍‌ଙ୍କର ଘୋର ଯୁଦ୍ଧ ହୋଇଥିଲା । ମାଲବମାନେ ଗୋଟିଏ ନଗର ( ଆଧୁନିକ ଝାଙ୍ଗ୍ ଜିଲ୍ଲାର ଅନ୍ତର୍ଗତ ) ଭିତରେ ରହି ଆତ୍ମରକ୍ଷା କରୁଥାନ୍ତି । ନଗରର ଉଚ୍ଚ ପାଚେରି ବାହାରେ ଗ୍ରୀକ୍ ସୈନ୍ୟମାନେ ଦୁଇ ତିନି ଦିନ ଅପେକ୍ଷା କଲା ପରେ-ଆଲେକ୍‌ଜାଣ୍ଡର୍ କ୍ରୋଧରେ ଅସମ୍ଭାଳ ହୋଇପଡ଼ିଲେ । ଅନ୍ୟ ଉପାୟ ନ ପାଇ କୌଣସି ପ୍ରକାରେ ପାଚେରି ଉପରକୁ ଉଠି ତଳକୁ ଡେଇଁ ଯାଇ ଆଉ ପଟେ । ପାଗଳର କାଣ୍ଡ ନୁହେଁ ? ସେନାପତି ଓ ସୈନ୍ୟମାନଙ୍କୁ ବୁଦ୍ଧି ଦିଶିଲା ନାହିଁ । ଏଡ଼େ ଉଚ୍ଚା ପାଚେରି ଯେ ସମୁଦାୟ ସେନାବାହିନୀରୁ ମାତ୍ର ଦୁଇଜଣ ସେହି ଉପାୟରେ ପାଚେରି ଟପି ପାରିଲେ । ଶତ୍ରୁ-ମାନଙ୍କ ମଝିରେ ସମ୍ରାଟ ଏକୁଟିଆ । ଗ୍ରୀକ୍‌ମାନେ ପାଗଳଙ୍କ ପରି ପାଚେରିର କବାଟକୁ

ଆଘାତ କଲେ । କବାଟ ଭାଙ୍ଗିଲା ଓ ଶହ ଶହ ଗ୍ରୀକ୍-ସୈନ୍ୟ ସେହି ସଂକୀର୍ଣ୍ଣ ପଥରେ ଧସେଇ ପଶି ପ୍ରାଣ ଦେଲେ । ଶତ୍ରୁ ସୈନ୍ୟଙ୍କ ସହିତ ଏକାକୀ ଲଢ଼ି କ୍ଷତବିକ୍ଷତ ଅବସ୍ଥାରେ ତଳେ ଅଚେତ ହୋଇ ପଡ଼ିଥିବା ସମ୍ରାଟଙ୍କୁ ତାଙ୍କ ସୈନ୍ୟମାନେ ଉଦ୍ଧାର କରିଥିଲେ । ଏହି ଯୁଦ୍ଧରେ ଆଲେକ୍‌ଜାଣ୍ଡର୍ ପ୍ରାଣ ହରାଇ ଥାଆନ୍ତେ । ସଂଜ୍ଞାହୀନ ସମ୍ରାଟଙ୍କୁ ତାଙ୍କ ଲୋକେ ବୋହି ନେବା ସମୟରେ ଗ୍ରୀକ୍ ସାମରିକ ଅଫିସର୍‌ମାନେ ଛଳ ଛଳ ଆଖିରେ ଧାଡ଼ି ବାନ୍ଧି ଛିଡ଼ା ହୋଇଥିଲେ । ସମ୍ପୂର୍ଣ୍ଣ ଆରୋଗ୍ୟ ହେବାକୁ ଆଲେକ୍‌ଜାଣ୍ଡର୍‌ଙ୍କୁ ତିନିମାସ ସମୟ ଲାଗିଲା ।

ଅହରହ ଯୁଦ୍ଧ ଓ ଯୁଦ୍ଧ ଚିନ୍ତାରେ ବୁଡ଼ି ରହିଥିବା ରଣରଙ୍ଗା ଆଲେକ୍‌ଜାଣ୍ଡର୍‌ଙ୍କର ଯେଉଁ ସବୁ ଛବି ଆମେ କଳ୍ପନା କରୁ, ବାସ୍ତବରେ ସେ ଥିଲେ ସେ ସବୁଠାରୁ ସମ୍ପୂର୍ଣ୍ଣ ଭିନ୍ନ । ତାଙ୍କର କମନୀୟ ମୁଖମଣ୍ଡଳ ଓ ଉଜ୍ଜ୍ୱଳ ରୂପକାନ୍ତି ଦେଖି ଲୋକେ ମୋହିତ ହେଉଥିଲେ । ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀର ବିଶିଷ୍ଟ ଐତିହାସିକ ପ୍ଲୁଟାର୍ଚ୍ଚ କହନ୍ତି, ଆଲେକ୍‌ଜାଣ୍ଡର୍‌ଙ୍କ ଶରୀର ଏପରି ସୁଗନ୍ଧଯୁକ୍ତ ଯେ ତାଙ୍କର ପରିଧେୟ ସବୁ ବାସନ୍ତି । ତାଙ୍କର ଉପାଣିଆ, ନରମ, ନୀଳ ଆଖି, ଘଞ୍ଚକେଶ, ଭାବପୂର୍ଣ୍ଣ ସ୍ୱପ୍ନିଳବେଶର ସୁନ୍ଦର ମୁହଁ ଓ ସୁଗଠିତ ଶରୀର ଦେଖି ଦର୍ଶକ ମୁଗ୍ଧ ହେଉଥିଲେ । ସ୍ୱଭାବତଃ ସେ ବଡ଼ ଭାବପ୍ରବଣ । ସଙ୍ଗୀତ ବା କବିତା ଶୁଣିଲେ ଆଲେକ୍‌ଜାଣ୍ଡର୍‌ଙ୍କର ଢଳ ଢଳ ନୟନ ଲୋତକାର୍ଦ୍ର ହୋଇ ଉଠୁଥିଲା । କୈଶୋରରେ ବୀଣାବାଦନ ବେଳେ ଆଲେକ୍‌ଜାଣ୍ଡର୍ ବିହ୍ୱଳ ହୋଇ ପଡ଼ୁଥିଲେ । "ତୁ ଯୁଦ୍ଧ କରିବୁ କିପରି ?" କହି ଫିଲିପ୍ ତାଙ୍କୁ ଚିଡ଼ାଉଥିଲେ । ଫଳରେ ଆଲେକ୍‌ଜାଣ୍ଡର୍ ବୀଣା ଛାଡ଼ିଲେ ଏବଂ କବିତା, ସଙ୍ଗୀତ ଠାରୁ ଦୂରେଇ ରହିଲେ ।

ଆଲେକ୍‌ଜାଣ୍ଡର୍‌ଙ୍କର ସ୍ୱଭାବ ଆମର ଅନୁମାନ ଠାରୁ ଅନେକ ଭିନ୍ନ । ସେ ଯେପରି ସ୍ନେହୀ, ସେହିପରି ସରଳ ବିଶ୍ୱାସୀ ଓ ଦୟାଳୁ । ତାଙ୍କର ସୈନିକ ଓ ସେବକମାନଙ୍କୁ ସେ ଖୁବ୍ ଭଲ ପାଉଥିଲେ । ଯୁଦ୍ଧରେ ଆହତ ହୋଇଥିବା ଜଣେ ସାଧାରଣ ସୈନିକ ପାଖରେ ସେ ନିଜେ ଉପସ୍ଥିତ ରହି ତାଙ୍କୁ ଆଶ୍ୱାସନା ଦେଉଥିଲେ । ଥରେ ଆଲେକ୍‌ଜାଣ୍ଡର୍‌ଙ୍କର କୋଷାଧ୍ୟକ୍ଷ କିଛି ଅର୍ଥ ଆତ୍ମସାତ୍ କରି ଫେରାର୍ ହେଲେ । କେତେଦିନ ବା ଲୁଚି ରହିବା ସମ୍ଭବ ? ଯାହାହେଉ ଫେରିଆସି ସେ ସମ୍ରାଟଙ୍କୁ କ୍ଷମା ମାଗିଲେ । ଜଣେ ରାଜା ଗୋଟା ଏ ଭଳି ବିଶ୍ୱାସଘାତକକୁ କି ଦଣ୍ଡ ଦେଇଥାନ୍ତେ ଆମେ ଅନୁମାନ କରିପାରୁ । ଆଲେକ୍‌ଜାଣ୍ଡର୍ କେବଳ ଦୁର୍ବୃତ୍ତ କୋଷାଧ୍ୟକ୍ଷକୁ କ୍ଷମା କଲେ ନାହିଁ, ସମସ୍ତଙ୍କୁ ହତବାକ୍ କରି ତାଙ୍କୁ ସେହି

ପଦରେ ପୁନର୍ନିଯୁକ୍ତ ଦେଲେ । ଥରେ ଆଲେକ୍‌ଜାଣ୍ଡର୍ ଅସୁସ୍ଥ ଥାଆନ୍ତି । ଚିକିତ୍ସକ ସମ୍ରାଟଙ୍କ ପାଖରେ ବସି ପାନେ ଔଷଧ ପ୍ରସ୍ତୁତ କରିବାରେ ବ୍ୟସ୍ତ । ଏତିକିବେଳେ ଦୂତ ଖଣ୍ଡେ ଚିଠି ଆଣି ଦେଲା । ଚିଠିଟି ପଢ଼ି ସମ୍ରାଟ ଉଚ୍ଚ ସ୍ୱରରେ ହସିଲେ ଓ ଔଷଧ ପାନକ ପିଇଦେଇ ଚିଠିଖଣ୍ଡିକ ଚିକିତ୍ସକ ହାତକୁ ବଢ଼ାଇଦେଲେ । ଚିଠି ଆସିଥିଲା ସମ୍ରାଟଙ୍କର ଜଣେ ଶୁଭେଚ୍ଛୁଙ୍କ ପାଖରୁ । ଲେଖାଥିଲା, ପାରସ୍ୟ ସମ୍ରାଟଙ୍କ ଠାରୁ ଲାଞ୍ଚ ପାଇ ଚିକିତ୍ସକ ମହାଶୟ ଔଷଧରେ ଆଲେକ୍‌ଜାଣ୍ଡର୍‌ଙ୍କୁ ବିଷ ଦେବେ । ଶତ୍ରୁକୁ ନିପାତ କରିବାର ବହୁ ପରୀକ୍ଷିତ ସରଳ ଉପାୟ ! ଜଣେ ପ୍ରକୃତ ସମ୍ରାଟର ହୃଦୟ ପାଇ ନ ଥିଲେ କିଏ ବା ନିଜ ବିଶ୍ୱାସରେ ଏପରି ଅଟଳ ରହି ପାରିବେ ?

ଆଲେକ୍‌ଜାଣ୍ଡର୍ ଥିଲେ ଭୟଙ୍କର କ୍ରୋଧୀ । କ୍ରୋଧବେଳାରେ ତାଙ୍କର ସବୁ ଦୟାମାୟା ଉଭେଇ ଯାଉଥିଲା । ମାତ୍ର ରାଗ କମିଗଲେ ତାଙ୍କୁ ଅନୁତାପ ଗ୍ରାସ କରେ । ସେ ଖାଦ୍ୟ ସ୍ପର୍ଶ ନ କରି ଗୋଟିଏ ଘରେ ଦୁଇ ତିନି ଦିନ ଚୁପ୍ ଚାପ୍ ରହନ୍ତି । କମ୍ୱା ପ୍ରଚୁର ମଦ୍ୟପାନ କରନ୍ତି । ଆଲେକ୍‌ଜାଣ୍ଡର୍ ଥିଲେ ଖାଦ୍ୟପେୟରେ ବଡ଼ ସଂଯମୀ । ସାମାନ୍ୟ ପାନୀୟ ଧରି ବନ୍ଧୁ ମେଳରେ ଦୀର୍ଘକାଳ କଟାଇବାରେ ତାଙ୍କର ଆନନ୍ଦ । ମାତ୍ର କ୍ରୋଧ ହାତରୁ ରକ୍ଷା ପାଇବାକୁ ଜୀବନର ଶେଷ ଭାଗରେ ସେ ପ୍ରଚୁର ପିଉଥିଲେ ।

ଆଲେକ୍‌ଜାଣ୍ଡର୍‌ଙ୍କର ସବୁଠାରୁ ସ୍ଥାୟୀ ଓ ବ୍ୟାପକ ପ୍ରଭାବ କଅଣ ? ଦାଢ଼ି କ୍ଷିଅର ! ଯୁଦ୍ଧ ସମୟରେ ଦାଢ଼ି ଶତ୍ରୁର ହାତମୁଠାକୁ ଚାଲି ଯାଇପାରେ ଆଶଙ୍କା କରି ଆଲେକ୍‌ଜାଣ୍ଡର୍ କ୍ଷିଅର ହେଉଥିଲେ । ତାଙ୍କୁ ଦେଖି ୟୁରୋପରେ କ୍ଷିଅର ହେବା ଏକ ଫେସନ୍ ଭାବେ ଆରମ୍ଭ ହେଲା । ଆଲେକ୍‌ଜାଣ୍ଡର୍‌ଙ୍କ ପରି ବିରାଟ ପୁରୁଷ ଯେଉଁ ଫେସନ୍ ମୂଳରେ ଥିଲେ ତାହା ଦ୍ରୁତ ଭାବେ ପ୍ରସାରିତ ହୋଇଯିବା ସ୍ୱାଭାବିକ୍ । ଦାଢ଼ି ନ ଥିବା ମାଇଚିଆର ଲକ୍ଷଣ ବୋଲି ଯେଉଁ ବଦ୍ଧମୂଳ ଧାରଣାଟି ଥିଲା, ଆଲେକ୍‌ଜାଣ୍ଡର୍‌ଙ୍କ ଯୋଗୁ ତାହା ଦୂର ହେଲା । ଦାଢ଼ି କଟା ଫେସନ୍‌କୁ ରୋକିବା ପାଇଁ କ୍ଷିଅର ହେବା ରୋଡ୍‌ସ୍ ଦ୍ୱୀପରେ ଥିଲା ବେଆଇନ୍ । ମାତ୍ର ମାଇଚିଆ ହୋଇଯିବାର ଦୁର୍ନାମ ଆଉ କାହିଁ କଲା ନାହିଁ । ଯଦି ଆଲେକ୍‌ଜାଣ୍ଡର୍ ମାଇଚିଆ ହୁଅନ୍ତି ତେବେ ମାଇଚିଆ ଉପାଧି ପାଇବା ଯେ କୌଣସି ପୁରୁଷପୁଙ୍ଗବ ପକ୍ଷରେ ଗୌରବର ବିଷୟ ।

## ବିଜୟ ଯାତ୍ରା :

ଜଣେ ବିଶ୍ୱାସଘାତକ ସେନାପତି ହାତରେ ଫିଲିପ୍ ପ୍ରାଣ ହରାଇବା ( ଖ୍ରୀ.ପୂ ୩୩୬) ସମ୍ବାଦ ପହଞ୍ଚିବା ପରେ ଗ୍ରୀସ୍ ଓ ପାରସ୍ୟରେ ଆନନ୍ଦ ଉଲ୍ଲାସ ଖେଳିଗଲା । ଫିଲିପ୍‌ଙ୍କ ପରି ବୀର ଯିଏ ସେମାନଙ୍କୁ ଜବତ୍ କରି ରଖିଥିଲା, କୋଡ଼ିଏ ବର୍ଷ ବୟସର ଗୋଟାଏ ଅନଭିଜ୍ଞ ବଚ୍ଚାକୁ ଧର୍ତ୍ତବ୍ୟରେ କିଏ ? ଅଧିକାଂଶ ଗ୍ରୀକ୍ ନଗର ସ୍ୱାଧୀନତା ଘୋଷଣା କଲେ । ଫିଲିପ୍‌ଙ୍କ ମୃତ୍ୟୁ ଖବର ଏଥେନ୍ସରେ ପହଞ୍ଚିବା ପରେ ଡିମୋସ୍ଥିନିଜ୍ ତାଙ୍କର ଦେହଁଲୁଗା ପିନ୍ଧି, ଫୁଲମାଳ ପକେଇ ଏଥେନ୍ସର ରାଜଦାଣ୍ଡରେ ବୁଲିଲେ ଓ ସ୍ୱାଧୀନତାର ଜୟଗାନ କରି ଆସେମ୍ବ୍ଲି ଜମାଇଲେ । ଘରେ, ବାହାରେ ଷଡ଼ଯନ୍ତ୍ର ଓ ବିଦ୍ରୋହ ରୋକିବା ପାଇଁ ଆଲେକଜାଣ୍ଡର୍ ଯେପରି ଚତୁରଙ୍ଗ ଖେଳିଗଲେ ତାହା ସମସ୍ତଙ୍କୁ ସ୍ତବ୍ଧ କରିଦେଲା । କ୍ଷମା ପ୍ରାର୍ଥନା କରିବାକୁ ଏଥେନ୍ସକୁ ତର ସହିଲା ନାହିଁ । ଅନ୍ୟ ନଗରମାନଙ୍କର ଅବସ୍ଥା ନ କହିବା ଭଲ । ଆଲେକ୍‌ଜାଣ୍ଡର୍ ତାଙ୍କର ଉଦାରତା ଦେଖାଇବାରେ କାର୍ପଣ୍ୟ କଲେ ନାହିଁ । ଗ୍ରୀସ୍‌ରେ ଯେଉଁଠି ଯେଉଁଠି ସ୍ୱେଚ୍ଛାଚ୍ଛୃଙ୍ଖ ଶାସନ ଥିଲା, ସବୁ ସେ ଉଠାଇ ଦେଲେ । ସ୍ୱାୟତ୍ତ-ଶାସନର ଅଧିକାର ସବୁ ନଗରକୁ ମିଳିଲା ।

ତାଙ୍କ ଅନୁପସ୍ଥିତିର ସୁଯୋଗ ନେଇ ଇଲିରିଆନ୍‌ମାନେ ମାସେଡୋନିଆ ଆକ୍ରମଣ କରିବାକୁ ବାହାରିଛନ୍ତି ଖବର ପାଇ ଆଲେକ୍‌ଜାଣ୍ଡର୍ ଅପ୍ରତ୍ୟାଶିତ ଭାବେ ସେମାନଙ୍କୁ ଭେଟିବାକୁ ତରବର ହୋଇ ଗ୍ରୀସ୍ ଛାଡ଼ିଲେ । କିଛିଦିନ ପରେ ଗ୍ରୀସ୍‌ରେ ଗୋଟାଏ ଉଡ଼ା ଖବର ଆସି ପହଞ୍ଚିଲା ଯେ ଡାନିଉବ୍ ନଦୀ କୂଳରେ ଇଲିରିଆନ୍‌ଙ୍କ ସହିତ ଲଢ଼୍ ଲଢ଼୍ ଆଲେକ୍‌ଜାଣ୍ଡର୍ ପ୍ରାଣ ହରାଇଛନ୍ତି । ପାରସ୍ୟ ଠାରୁ ପ୍ରଚୁର ଅର୍ଥ ଲାଞ୍ଚ ପାଇ ମାସେଡୋନିଆ ବିରୁଦ୍ଧରେ ବିଦ୍ରୋହ କରିବାକୁ ଡିମୋସ୍ଥିନିଜ୍ ଏଥେନ୍ସକୁ ମତାଇଲେ । ତାଙ୍କ ପ୍ରରୋଚନାରେ ଥିବାଜର ବିଦ୍ରୋହୀମାନେ ଆଲେକ୍‌ଜାଣ୍ଡର୍‌ଙ୍କ ଅଫିସରମାନଙ୍କୁ ମାରିପକାଇଲେ । ଏ ଖବର ଆଲେକଜାଣ୍ଡର୍‌ଙ୍କ ପାଖରେ ପହଞ୍ଚିଲା । କ୍ରୋଧାନ୍ୱିତ ହୋଇ ସେ ଗ୍ରୀସ୍ ଫେରିଲେ ଓ ଥିବାଜ୍‌କୁ ଧୂଳିସାତ୍ କରିଦେଲେ । କବି ପିଣ୍ଡାର୍‌ଙ୍କର ଗୃହ, ଦେବପୂଜକ ଓ ବିଦ୍ରୋହର ବିରୋଧ କରିଥିବା ଲୋକଙ୍କ ବ୍ୟକ୍ତିତ ସମଗ୍ର ଥିବାଜ୍‌କୁ ଧ୍ୱଂସ କରି ଦେବାକୁ ସମ୍ରାଟଙ୍କର ଆଦେଶ ହେଲା । ପରେ ସେ ଏପରି ଆଦେଶ ଦେଇଥିବାରୁ ଅନୁତପ୍ତ ହୋଇଛନ୍ତି । ତେବେ

ଏଥେନ୍ସକୁ ସେ କ୍ଷମା କରିଦେଲେ । ଏପରିକି ଡିମୋସ୍ଥିନିଜ୍‌ଙ୍କ ପରି ମାସେଡୋନିଆ ବିରୋଧୀ ନେତାଙ୍କୁ ମଧ୍ୟ କୌଣସି ଦଣ୍ଡ ମିଳିଲା ନାହିଁ । ଗ୍ରୀସ୍‌ର ମଣ୍ଡଳମଣି ଏଥେନ୍ସ ପ୍ରତି ଆଲେକ୍‌ଜାଣ୍ଡର୍‌ଙ୍କ ମନରେ ବଡ଼ ଦୁର୍ବଳତା ଥିଲା । ଖାଣ୍ଟି ଗ୍ରୀକ୍ ନ ହେଲେ ମଧ୍ୟ ଗ୍ରୀକ୍ ସଂସ୍କୃତିର ରକ୍ଷକ ଭାବେ ପରିଚିତ ହେବାକୁ ଆଲେକ୍‌ଜାଣ୍ଡର୍ ବ୍ୟାକୁଳ ଥିଲେ । ପାରସ୍ୟ ସହିତ ଯୁଦ୍ଧ ସମୟରେ ପାର୍ଶୀମାନେ ଆକ୍ରୋପଲିସ୍‌ରୁ ନେଇ ଯାଇଥିବା ବହୁ ମୂର୍ତ୍ତି ଉଦ୍ଧାର କରି ସେ ଏଥେନ୍ସ ପଠାଇଥିଲେ । ଥରେ ଜର୍କ୍‌ସିସ୍ ନେଇ ଯାଇଥିବା ଗୋଟିଏ ମୂର୍ତ୍ତି ଉଦ୍ଧାର କଲାପରେ ସେ କହିଥିଲେ, "ହେ ଏଥେନ୍ସବାସୀ ! ତୁମମାନଙ୍କର ପ୍ରଶଂସାର ଯୋଗ୍ୟ ହେବାକୁ ମୁଁ କି ବିପଦ ବରଣ କରେ ତାହା ଜାଣିପାରନ୍ତ !"

ସବୁ ବିଦ୍ରୋହ ଦମନ କଲାପରେ ଜଣେ ଯୋଗ୍ୟ ସେନାପତିଙ୍କ ହାତରେ ମାସେଡୋନିଆର ରକ୍ଷଣାବେକ୍ଷଣ ଦାୟିତ୍ୱ ଅର୍ପଣ କରି ବାଇଶ ବର୍ଷ ବୟସରେ ଆଲେକଜାଣ୍ଡର୍ ଉତ୍ସାହରେ ଅବିଶ୍ୱାସ୍ୟ ରୋମାଞ୍ଚକର ବିଶ୍ୱବିଜୟରେ ବାହାରିଲେ । ଏସିଆକୁ ଅଧିକାର କରିବା ଥିଲା ତାଙ୍କର ସ୍ୱପ୍ନ । ମାସେଡୋନିଆ ଛାଡ଼ିବା ଦିନ ଠାରୁ ସେ ଆଉ ମାତ୍ର ଏଗାର ବର୍ଷ ବଞ୍ଚିଥିଲେ । ଜନ୍ମଭୂମିକୁ ଫେରିବାର ସୌଭାଗ୍ୟ ତାଙ୍କର ହୋଇ ନ ଥିଲା । ସେନାବାହିନୀକୁ ସଳଖ ବାଟରେ ହେଲେସ୍‌ପଣ୍ଟ ପଠାଇ ଦେଇ ଅଳ୍ପ କେତେଜଣ ସୈନ୍ୟସାମନ୍ତଙ୍କୁ ଧରି ଆଗାମେମନନ୍ ଟ୍ରୟ ଯାଇଥିବା ବାଟେ ଆଲେକ୍‌ଜାଣ୍ଡର୍ ବାହାରିଲେ । ତାଙ୍କର ଉତ୍ସାହବାଣୀ ଯୋଦ୍ଧାମାନଙ୍କ ମନରେ ଉନ୍ମାଦନା ଭରିଦେଲା । କେବଳ ନେପୋଲିୟନ୍‌ଙ୍କୁ ବାଦ୍ ଦେଲେ ସେନାବାହିନୀକୁ ଯୁଦ୍ଧ ପ୍ରେରଣା ଦେବା ବିଷୟରେ ଅନ୍ୟ କୌଣସି ବୀର ଆଲେକ୍‌ଜାଣ୍ଡର୍‌ଙ୍କ ସହିତ ତୁଳନୀୟ ନୁହନ୍ତି । ନିଜର ସ୍ୱପ୍ନ, ଅଭିଳାଷ ଓ ଉନ୍ମାଦନାର ପ୍ରଭାବରେ ସୈନ୍ୟମାନଙ୍କୁ ବୁଡ଼େଇ ଦେବାର ଅଦ୍ଭୁତ କ୍ଷମତା ଆଲେକ୍‌ଜାଣ୍ଡର୍‌ଙ୍କର ଥିଲା ।

ୟୁରୋପ ଓ ଏସିଆ ମଧ୍ୟରେ ପ୍ରଥମ ଯୁଦ୍ଧ ଆରମ୍ଭ ହୋଇଥିଲା ଟ୍ରୟରେ । ନିଜକୁ ଟ୍ରୟ ଯୁଦ୍ଧର ମହାବୀର ଆକିଲ୍‌ସଙ୍କ ବଂଶଧର ଭାବି ଆଲେକ୍‌ଜାଣ୍ଡର୍ (ତାଙ୍କର ମାଆ ଅଲିମ୍ପିଆସ୍ ଆକିଲ୍‌ସଙ୍କ ବଂଶରେ ଜନ୍ମ) ଗର୍ବ ଅନୁଭବ କରୁଥିଲେ । ଟ୍ରୟରେ ଆକିଲ୍‌ସଙ୍କ କବର ପାଖରେ ଯଥାବିଧି ପୂଜା କରି ଆଲେକ୍‌ଜାଣ୍ଡର୍ ତାଙ୍କର ବିଜୟ ଅଭିଯାନରେ ବାହାରିଲେ ।

ଗ୍ରୀସ୍‌ର ନେତା ଭାବେ ଫିଲିପ୍‌ ଓ ପାରସ୍ୟ ସମ୍ରାଟଙ୍କ ମଧ୍ୟରେ ଠକାଠକ ଲାଗି ରହୁଥିଲା । ଫିଲିପ୍‌ଙ୍କର ପାରସ୍ୟ ବିଜୟ ସ୍ୱପ୍ନକୁ ବାସ୍ତବ ରୂପ ଦେବା ପାଇଁ ଆଲେକ୍‌ଜାଣ୍ଡର୍‌ ବଦ୍ଧ ପରିକର ଥିଲେ । ମାତ୍ର ପଇଁତିରିଶ ହଜାର ସୈନ୍ୟଙ୍କୁ ଧରି ପାରସ୍ୟ ଜିଣିବାର ଯୋଜନା ଗୋଟାଏ ପାଗଳର ଦିବାସ୍ୱପ୍ନ । ଜଣେ ଆଲେକ୍‌ଜାଣ୍ଡର୍‌ ହିଁ ଏପରି ଅସମ୍ଭବକୁ ସମ୍ଭବ କରିପାରେ । ଆଲେକ୍‌ଜାଣ୍ଡର୍‌ଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ଗ୍ରୀକ୍‌ମାନେ ଏସିଆ ଭୂମି ଆଡ଼େ ଛୁଟିଲେ । ସବା ଆଗରେ ସ୍ୱୟଂ ଆଲେକ୍‌ଜାଣ୍ଡର୍‌ଙ୍କର ଜାହାଜ । କୂଳ ପାଖେଇ ଆସିବାରୁ ସେ ଜାହାଜ ଉପରେ ଥାଇ ସଜୋରରେ ଗୋଟିଏ ବର୍ଚ୍ଛା ଛାଡ଼ିଲେ । ସୈନ୍ୟମାନେ ଦେଖୁଥାନ୍ତି, ତାହା ଯାଇ ପାରସ୍ୟ ସାମ୍ରାଜ୍ୟର ଭୂମିକୁ ବିଦ୍ଧ କଲା । ଜାହାଜରୁ ଡେଇଁପଡ଼ି ପ୍ରଥମେ ଆଲେକ୍‌ଜାଣ୍ଡର୍‌ ଶତ୍ରୁ-ମାଟିରେ ପଦାର୍ପଣ କଲେ ।

ଗ୍ରୀକ୍‌ମାନଙ୍କୁ ଠିକଣା ଜବାବ୍‌ ଦେବାକୁ ଡେରିଅସ୍‌ଙ୍କ ଗଭର୍ଣ୍ଣରମାନେ ବିରାଟ ସେନାବାହିନୀ ଧରି ଗ୍ରେନିସସ୍‌ ନଦୀ କୂଳରେ ଅପେକ୍ଷା କରିଥାନ୍ତି । ଗ୍ରୀକ୍‌ମାନେ ଆସି ନଈର ଅନ୍ୟ ପଟେ ପହଞ୍ଚିଲେ । ସୁବିଧା ଦେଖି କୌଶଳରେ ନଦୀ ପାରି ହେବାକୁ ଗ୍ରୀକ୍‌ ସେନାପତିମାନେ ମସୁଧା କରୁଥାନ୍ତି । ସେମାନେ ସମ୍ରାଟଙ୍କୁ କହିଲେ ସେ ଦିନଟା ଅଶୁଭ ହୋଇଥିବାରୁ ଶୁଭଦିନ ଦେଖି ପାରିହେବା ଉଚିତ୍‌ ହେବ । କିଛି ଉତ୍ତର ନ ଦେଇ ଆଲେକ୍‌ଜାଣ୍ଡର୍‌ ନଦୀକୁ ଲମ୍ଫ ପ୍ରଦାନ କଲେ ! ସେଇ ଥିଲା ତାଙ୍କର ଉତ୍ତର । ଏହାପରେ ସୈନ୍ୟମାନେ ପାଣିକୁ ଡେଇଁଲେ ଓ ସମ୍ରାଟଙ୍କ ଶିରସ୍ତ୍ରାଣକୁ ଲକ୍ଷ୍ୟ ରଖି ପହଁରିଲେ । ଅକଳ୍ପ-ନୀୟ ବ୍ୟାପାର । ଖରସ୍ରୋତା ଗଭୀର ନଈ, କର୍ଦ୍ଦମାକ୍ତ ଖାଡ଼ି ବନ୍ଧ, ଆରପଟେ ଶତ୍ରୁମାନଙ୍କର ଅନବରତ ଶର ବର୍ଷଣ, ଏସବୁ ପ୍ରତିବନ୍ଧକକୁ ଭ୍ରୂକ୍ଷେପ ନ କରି ଆଲେକ୍‌ଜାଣ୍ଡର୍‌ ଯାଇଁ ଶତ୍ରୁ ସମ୍ମୁଖରେ ହାଜର୍‌ ! ଗ୍ରୀକ୍‌ ସୈନ୍ୟମାନେ ପ୍ରାଣପ୍ରିୟ ସମ୍ରାଟଙ୍କର ପାଖ ଛାଡ଼ୁ ନ ଥାନ୍ତି । ପ୍ରଥମ ମୁକାବିଲାରେ ପାର୍ଶୀମାନେ ହାରିଲେ ଓ ଏସିଆ ମାଇନର୍‌ ଆଲେକ୍‌ଜାଣ୍ଡର୍‌ଙ୍କ କରଗତ ହେଲା ।

ପାରସ୍ୟ ଠାରୁ ମୁକ୍ତିଲାଭ କରିବାକୁ ବ୍ୟାକୁଳ ଆୟୋନୀୟ ନଗରଗୁଡ଼ିକ ଆଲେକ୍‌-ଜାଣ୍ଡର୍‌ଙ୍କୁ ସ୍ୱାଗତ କଲେ । ଆଲେକ୍‌ଜାଣ୍ଡର୍‌ ସବୁ ନଗରକୁ ସ୍ୱାୟତ୍ତଶାସନର ଅଧିକାର ଦେଇଥିଲେ ।

ପାର୍ଶୀମାନଙ୍କ ପରାଜୟରେ ବିଚଳିତ ହୋଇ ସ୍ୱୟଂ ଡେରିଅସ୍ ପାଞ୍ଚଲକ୍ଷ ସୈନ୍ୟ ଧରି ଇସସ୍ ଉପସାଗର ନିକଟରେ ପ୍ରସ୍ତୁତ ହୋଇ ଥାଆନ୍ତି । ଗ୍ରୀକ୍‌ମାନଙ୍କ ଠାରୁ ବହୁ ଗୁଣରେ ଅଧିକ ସୈନ୍ୟ ଥାଇ ମଧ୍ୟ ଡେରିଅସ୍ ହାରିଲେ । ମାଆ ଓ ପରିବାରକୁ ଛାଡ଼ି ପଳାଇବାକୁ ତାଙ୍କୁ ତର ସହିଲା ନାହିଁ । ଆଲେକ୍‌ଜାଣ୍ଡର୍ ସେମାନଙ୍କୁ ଉପଯୁକ୍ତ ସମ୍ମାନ ଦେଖାଇଥିଲେ । ସନ୍ଧି ସ୍ଥାପନ କରିବାକୁ ଇଚ୍ଛା କରି ଡେରିଅସ୍ ଖବର ପଠାଇଲେ ଯେ ୟୁଫ୍ରେଟିସ୍ ନଦୀର ପଶ୍ଚିମକୁ ଥିବା ପାରସ୍ୟ ଭୂଖଣ୍ଡକୁ ନେଇ ଆଲେକ୍‌ଜାଣ୍ଡର୍ ସନ୍ତୁଷ୍ଟ ରହନ୍ତୁ । ଆଲେକ୍‌ଜାଣ୍ଡର୍‌ଙ୍କ ଠାରୁ ଖବର ଆସିଲା, ଡେରିଅସ୍ ତାଙ୍କୁ ନିଜର ସମାସ୍କନ୍ଧ ନ ଭାବି 'ଏସିଆର ଅଧୀଶ୍ୱର' ବୋଲି ସମ୍ବୋଧନ କରିବାକୁ ଶିଖନ୍ତୁ !

ଡେରିଅସ୍ ଓ ଆଲେକ୍‌ଜାଣ୍ଡର୍‌ଙ୍କ ମଧ୍ୟରେ ପ୍ରଭେଦ ସ୍ପଷ୍ଟ । ଆଲେକ୍‌ଜାଣ୍ଡର୍ ସବୁବେଳେ ତାଙ୍କ ସେନାବାହିନୀ ଆଗରେ । ଯେ କୌଣସି ବିପଦକୁ ସେ ପ୍ରଥମେ ଝାସନ୍ତି । ଚତୁର୍ଦ୍ଦିଗ ଅଶ୍ୱାରୋହୀ, ଗଜାରୋହୀ ଓ ପଦାତିକଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଡେରିଅସ୍ ଯୁଦ୍ଧ ଭୂମିରେ ରଥ ଉପରେ ଥାଆନ୍ତି ।

ଟିର୍ ନଗର ଅଧିକାର କରିବାକୁ ଗ୍ରୀକ୍‌ମାନଙ୍କୁ ବିଶେଷ ପରିଶ୍ରମ କରିବାକୁ ପଡ଼ିଥିଲା । ଏହି ନଗରକୁ ବେଢ଼ିଥିବା ପାଚେରୀର ଉଚ୍ଚତା ଶହେ ଫୁଟ । ଏପରି ସୁରକ୍ଷିତ ନଗରକୁ ପଦାନତ କରିବା ଅସମ୍ଭବ ବୋଲି ସମସ୍ତେ ଧରି ନେଇଥିଲେ । ତେଣୁ ଟିର୍‌ର ପତନ ପରେ ସମଗ୍ର ପାଲେଷ୍ଟାଇନ୍ ଓ ସିରିୟା ଆଲେକ୍‌ଜାଣ୍ଡର୍‌ଙ୍କ ପାଖରେ ଆତ୍ମ ସମର୍ପଣ କରିଥିଲେ । ଜେରୁଜେଲମ୍ ଓ ଗାଜା ଜୟ କଲା ପରେ ଆଲେକ୍‌ଜାଣ୍ଡର୍‌ଙ୍କ ଦୃଷ୍ଟି ପଡ଼ିଲା ମିଶର ଉପରେ ।

ଖ୍ରୀ. ପୂ. ୫୨୫ ଠାରୁ ମିଶର ପାରସ୍ୟ ଅଧୀନରେ ଥାଏ । ତେଣୁ ପାର୍ଶୀଙ୍କ ପ୍ରତି ମିଶରୀୟଙ୍କ ମନରେ ବୈରଭାବ ରହିବା ସ୍ୱାଭାବିକ୍ । ମାତ୍ର ଗ୍ରୀକ୍‌ଙ୍କ ସହିତ ମିଶରୀୟଙ୍କର ଉତ୍ତମ ସମ୍ପର୍କ ଥିଲା । ବାଣିଜ୍ୟ ସନ୍ଧାନରେ ଗ୍ରୀକ୍‌ମାନେ ମିଶର ଆସୁଥିଲେ । ଅନେକ ଗ୍ରୀକ୍ ମିଶରରେ ବସବାସ କରୁଥିଲେ । ପାର୍ଶୀ ଶାସନରୁ ମୁକ୍ତ କରିବାକୁ ଆସିଥିବା ଦେବଦୂତ ଭାବେ ଆଲେକ୍‌ଜାଣ୍ଡର୍‌ଙ୍କୁ ମିଶରରେ ସ୍ୱାଗତ କରାଗଲା । ସ୍ଥାନୀୟ ଲୋକଙ୍କର ଅଧିକ ସହଯୋଗ ପାଇବାକୁ ପ୍ରଚାର କରାଗଲା ଯେ, ଆଲେକ୍‌ଜାଣ୍ଡର୍ ଦେବରାଜ ଆମୋନ୍ (ଜିଅସ୍‌ଙ୍କର ମିଶରୀୟ ସଂସ୍କରଣ)ଙ୍କର ପୁତ୍ର । ଆଲେକ୍‌ଜାଣ୍ଡର୍‌ଙ୍କୁ ମିଶରୀୟ ଧର୍ମ ପୁରୋହିତଙ୍କ

ସମର୍ଥନ ମିଳିଲା । ବିଶେଷ ପ୍ରତିବନ୍ଧକର ସମ୍ମୁଖୀନ ନ ହୋଇ ଆଲେକ୍‌ଜାଣ୍ଡର୍‌ ମିଶର ଜୟ କରିନେଲେ । ମିଶରରେ ଗୋଟିଏ ନୂତନ ରାଜଧାନୀ ପ୍ରତିଷ୍ଠା କରିବା ପାଇଁ ସେ ସ୍ଥିର କଲେ ଓ ନୀଳନଦୀର ମୁହାଣରେ ଆଲେକ୍‌ଜାଣ୍ଡ୍ରିଆ ନଗର ସ୍ଥାପନ କରିବାର ପ୍ରାଥମିକ ପରିକଳ୍ପନା ଶେଷ କରି ପାର୍ଶୀଙ୍କ ସହିତ ମୁକାବିଲା କରିବାକୁ ପୁଣି ଏସିଆ ଫେରିଲେ ।

ସ୍ୱୟଂ ଅଲିମ୍ପିଆସ୍ ଏ କାହାଣୀର ସ୍ରଷ୍ଟା । ଆଲେକ୍‌ଜାଣ୍ଡର୍ ଦେବ-ରାଜଙ୍କ ପୁତ୍ର ବୋଲି ସେ ନିଜେ ବା ଗ୍ରୀକ୍‌ମାନେ ଅନ୍ତର ଭିତରେ ଆଦୌ ବିଶ୍ୱାସ କରୁ ନ ଥିଲେ । ମିଶରରେ ଆଲେକ୍‌ଜାଣ୍ଡର୍ ଦେବ-ରାଜଙ୍କ ପୁତ୍ର ବୋଲି ପ୍ରଚାର ହେଉଥିବାର ଖବର ପାଇ ଅଲିମ୍ପିଆସ୍ ପରିହାସରେ ମନ୍ତବ୍ୟ କରିଥିଲେ ଯେ ସେ ଆଉ ତାଙ୍କ ସଉତୁଣୀ ଦେବୀ ହେରାଙ୍କ କୋପରୁ ରକ୍ଷା ପାଇବେ ନାହିଁ !

ଡେରିଅସ୍ ଏଥର ସବୁ ପ୍ରକାର ପ୍ରସ୍ତୁତ ହୋଇ ଥାଆନ୍ତି । ସେ ଜାଣିଥାନ୍ତି ଯେ ଏହି ଯୁଦ୍ଧରେ ହାରିଲେ ଆଉ ରକ୍ଷା ନାହିଁ । ଆର୍‌ବେଲା ଠାରେ ବିରାଟ ପାର୍ଶୀ ସେନାବାହିନୀ ସହିତ ଆଲେକ୍‌ଜାଣ୍ଡର୍‌ଙ୍କର ତୁମୁଳ ଯୁଦ୍ଧ ହେଲା । ଡେରିଅସ୍ ପରାସ୍ତ ହୋଇ ପଳାଉଥିବା ଅବସ୍ଥାରେ ନିଜ ଦେହରକ୍ଷୀଙ୍କ ଦ୍ୱାରା ନିହତ ହେଲେ । ବିଶାଳ ପାରସ୍ୟ ସାମ୍ରାଜ୍ୟକୁ ଅଧିକାର କରିନେବାର ପଥ ସୁଗମ ହୋଇଗଲା । ମାତ୍ର ପଚିଶ ବର୍ଷ ବୟସରେ ଏତେ ବଡ଼ ସାମ୍ରାଜ୍ୟର ଅଧୀଶ୍ୱର ହୋଇ ମଧ୍ୟ ଆଲେକ୍‌ଜାଣ୍ଡର୍‌ଙ୍କ ମନ ଶାନ୍ତ ହେଲା ନାହିଁ । ପାରସ୍ୟ ସାମ୍ରାଜ୍ୟର ପୂର୍ବ ସୀମାନ୍ତକୁ ଟପି ରହସ୍ୟାବୃତ୍ତ ପୂର୍ବ ଦେଶୀୟ ରାଜ୍ୟ ସବୁ ଜୟ କରିବାକୁ ସେ ବ୍ୟଗ୍ର ହୋଇ ପଡ଼ିଲେ । ଜନଶ୍ରୁତି ଥାଏ, ପୂର୍ବ ଦିଗରେ ମହା ସମୁଦ୍ର । ସେ ପର୍ଯ୍ୟନ୍ତ ରାଜ୍ୟର ସୀମା ଘୁଞ୍ଚାଇ ନେବା ଆଲେକ୍‌ଜାଣ୍ଡର୍‌ଙ୍କୁ ଶୋଭା ପାଏ । ସତରେ ଅବଶ୍ୟ ସେ ଦିଗରେ କୌଣସି ସମୁଦ୍ର ନାହିଁ । ସମୁଦ୍ରର ଅସ୍ତିତ୍ୱ ଥିଲା କେବଳ ଜନକଳ୍ପନାରେ ।

ଅନେକ ଯୁଦ୍ଧ, ଅନେକ ରାଜ୍ୟ ଜୟ ପରେ ଆଲେକ୍‌ଜାଣ୍ଡର୍ ଆସି ପହଞ୍ଚିଲେ ହିମାଳୟ ପାଖରେ । ଆଗକୁ ଭାରତବର୍ଷ । ସେ ଦେଶକୁ ନେଇ କେତେ କାହାଣୀ, କେତେ ଜନଶ୍ରୁତି ! ଉଲ୍ଲସିତ ହୋଇ ଆଲେକ୍‌ଜାଣ୍ଡର୍ ଭାରତବର୍ଷରେ ପ୍ରବେଶ କଲେ । ସେ କାଳରେ ଭାରତର ଉତ୍ତର ପଶ୍ଚିମ ସୀମାନ୍ତ ଅଞ୍ଚଳ ଦୁର୍ବଳ । ଅନେକ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ପଞ୍ଜାବ ଓ ସିନ୍ଧୁ ପରବର୍ତ୍ତୀ କାଳର ବୀରଭୂମି ନ ଥିଲା । ଗୋଟିଏ ଉପଜାତିର

ରାଜ୍ୟ ବିଦେଶୀଙ୍କ ସାହାଯ୍ୟରେ ଅନ୍ୟ ଉପଜାତିର ରାଜ୍ୟକୁ ସାବାଡ଼ କରିବା ପାଇଁ ଆଲେକ୍‌ଜାଣ୍ଡର୍‌ଙ୍କୁ ସ୍ୱାଗତ କରୁଥିଲା । ତଥାପି କେତେକ ସ୍ଥାନରେ ବିଦେଶୀ ଗ୍ରୀକ୍‌ଙ୍କୁ ତୀବ୍ର ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମାଲ୍‌କନ୍ଦ ଗିରିପଥ ନିକଟବର୍ତ୍ତୀ ମାସାଗା ରାଜ୍ୟର ସୈନ୍ୟମାନେ ଆଲେକ୍‌ଜାଣ୍ଡର୍‌ଙ୍କ ସହିତ ଘୋର ଯୁଦ୍ଧ କରିଥିଲେ । ନଗର ଛାଡ଼ି ଚାଲିଗଲେ ଗ୍ରୀକ୍‌ମାନେ କିଛି କ୍ଷତି କରିବେ ନାହିଁ ବୋଲି ପ୍ରତିଶ୍ରୁତି ପାଇ ମାସାଗାବାସୀ ନଗରରୁ ବାହାରି ଯାଇଥିଲେ । ସେମାନେ କିଛି ଦୂର ଚାଲିଗଲା ପରେ ଅପ୍ରସ୍ତୁତ ଅବସ୍ଥାରେ ସେମାନଙ୍କ ଉପରେ ଆକ୍ରମଣ ହେଲା । ଆଲେକ୍‌ଜାଣ୍ଡାର୍‌ଙ୍କ ପରି ମହାବୀରଙ୍କର ଏପରି ହୀନ ଆଚରଣ ତାଙ୍କ ଯଶରେ ଗୋଟିଏ କଳାଦାଗ ( ଏ କଥା ପ୍ଲୁଟାର୍କ ଓ ଅନ୍ୟ ଐତିହାସିକ କହିଛନ୍ତି ) । ପ୍ରଥମେ ପ୍ରତିଜ୍ଞା ଭଙ୍ଗ ନ କରିବାକୁ ଅନୁରୋଧ କରି ଶେଷରେ ବାଧ୍ୟ ହୋଇ ମାସାଗୀୟମାନେ ଲଢ଼ିଥିଲେ । ସେମାନଙ୍କର ଅନ୍ତିମ ଯୁଦ୍ଧକୁ ସମ୍ଭାଳିବା ଗ୍ରୀକ୍‌ଙ୍କ ପକ୍ଷରେ କାଠିକର ପାଠ ହୋଇଥିଲା ।

ଖ୍ରୀ. ପୂ. ୩୨୬ ପାଖାପାଖି ଆଲେକ୍‌ଜାଣ୍ଡର୍‌ଙ୍କ ଭାରତ ପ୍ରବେଶ ପୂର୍ବରୁ ଖ୍ରୀ.ପୂ. ୬ଷ୍ଠ ଶତାବ୍ଦୀରେ ପାରସ୍ୟ ସମ୍ରାଟ ସାଇରସ୍ ଭାରତର କେତେକ ଅଞ୍ଚଳ ଦଖଲ କରିଥିଲେ । ତା.ଭିତରେ ଗାନ୍ଧାର ଅନ୍ତର୍ଗତ । ଖ୍ରୀ ପୂ ୫୧୮ ବେଳକୁ ପ୍ରଥମ ଡେରିଅସ୍ ଭାରତରେ ପାରସ୍ୟ ଉପନିବେଶକୁ ଅଧିକ ବିସ୍ତାର କରିଥିଲେ । ଏଥିରୁ ପାରସ୍ୟ ସାମ୍ରାଜ୍ୟକୁ ବିପୁଳ ପରିମାଣରେ କର ମିଳୁଥିଲା ।

ସିନ୍ଧୁ ନଦୀ ଟପି ଝେଲମ୍ ପାଖରେ ଆଲେକ୍‌ଜାଣ୍ଡର୍ ଭେଟିଥିଲେ ବିଖ୍ୟାତ ପୁରୁଙ୍କୁ । ପୁରୁଙ୍କର ରଣସଜ୍ଜା, ରଥୀ ଓ ଗଜାରୋହୀମାନଙ୍କୁ ଦେଖି ଆଲେକଜାଣ୍ଡର୍ ଉଲ୍ଲସିତ ହୋଇଥିଲେ । କାରଣ ସେ ଜାଣିପାରିଲେ ଯେ ତାଙ୍କର ରଣକ୍ଷୁଧା ମେଣ୍ଟାଇ ପାରିବା ପରି ଜଣେ ବୀରଙ୍କ ସହିତ ସେ ଲଢ଼ିବାକୁ ଯାଉଛନ୍ତି । ପୁରୁ ହାରିଗଲେ ସତ, ମାତ୍ର ଏଥିପାଇଁ ବଳର ଅଭାବ ଅପେକ୍ଷା ତାଙ୍କର ଦୁର୍ଭାଗ୍ୟ ଅଧିକ ପରିମାଣରେ ଦାୟୀ । ଯୁଦ୍ଧ ପୂର୍ବ ଘନ ବର୍ଷାରେ ଯୁଦ୍ଧଭୂମି ପିଚ୍ଛିଳ ହୋଇଥାଏ । ପୁରୁଙ୍କର ରଥୀମାନଙ୍କୁ ଏହା ବଡ଼ ଅସୁବିଧାରେ ପକାଇଲା । କର୍ଦ୍ଦମାକ୍ତ ପଡ଼ିଆରେ ଘୋଡ଼ାମାନେ ରଥ ଟାଣିପାରିଲେ ନାହିଁ । ରଥୀମାନଙ୍କ ଉପରେ ପୁରୁ ବିଶେଷ ଭାବେ ନିର୍ଭର କରୁଥିଲେ । ଯାହାହେଉ, ବ୍ୟକ୍ତିଗତ ଭାବେ ଅସୀମ ବୀରତ୍ୱ ଦେଖାଇ ପୁରୁ ଶେଷ ପର୍ଯ୍ୟନ୍ତ ଲଢ଼ିଥିଲେ । ଗ୍ରୀକ୍ ସୈନ୍ୟମାନେ ତାଙ୍କୁ ଧରିବା ବେଳକୁ ତାଙ୍କ ଶରୀରରେ ନଅଟି ଅସ୍ତ୍ରାଘାତ ହୋଇଥାଏ ।

'ମୁଁ ଆପଣଙ୍କ ଠାରୁ ରାଜୋଚିତ ବ୍ୟବହାର ଚାହେଁ' ପୁରୁଙ୍କର ଏହି ଉତ୍ତରରେ ଆଲେକ୍‌ଜାଣ୍ଡର୍ ମୁଗ୍ଧ ହୋଇଥିଲେ । ଏହା ବ୍ୟତୀତ ପୁରୁଙ୍କୁ ତାଙ୍କର ରାଜ୍ୟ ଫେରାଇ ଆଲେକଜାଣ୍ଡର୍ ଦୂରଦୃଷ୍ଟି ଓ ବିଚକ୍ଷଣ କୂଟନୀତିର ପରିଚୟ ଦେଇଛନ୍ତି । ସୁଦୂର ଗ୍ରୀସ୍‌ଠୁ ଭାରତଭୂମିରେ ତାଙ୍କର ଉପନିବେଶକୁ ସମ୍ଭାଳିବା ସହଜ ନୁହେଁ ବୋଲି ଆଲେକ୍‌ଜାଣ୍ଡର୍ ଜାଣିଥିଲେ । ତେଣୁ ପୁରୁଙ୍କ ପରି ବୀରଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ କରିବା ବୁଦ୍ଧିମାନର କାର୍ଯ୍ୟ ବୋଲି ସେ ବିଚାରିଥିବେ ।

ପୁରୁଙ୍କର ବନ୍ଧୁତ୍ୱ ଓ ସାହାଯ୍ୟର ଆବଶ୍ୟକତା ଅଳ୍ପ ଦିନ ପରେ ପଡ଼ିଲା । ସେତେବେଳେ ସାଙ୍ଗାଲା ରାଜ୍ୟରେ କାଥସ୍ ନାମକ ଜାତି ବାସ କରୁଥାନ୍ତି । ଭଲ ଯୋଦ୍ଧା ହିସେବ ସେମାନଙ୍କର ସୁନାମ ଥାଏ । କାଥସ୍‌ମାନେ ଆଲେକ୍‌ଜାଣ୍ଡର୍‌ଙ୍କ ସହିତ ଭୀଷଣ ଯୁଦ୍ଧ କଲେ । ସେମାନଙ୍କୁ ଦମନ କରିବା ପାଇଁ ପୁରୁଙ୍କ ସାହାଯ୍ୟ ଦରକାର ପଡ଼ିଲା । ସାଙ୍ଗାଲା ଶେଷରେ ହାରିବାରୁ ଆଲେକ୍‌ଜାଣ୍ଡର୍ କ୍ରୋଧରେ ସେ ନଗରକୁ ଧୂଳିସାତ୍ କରିଦେଲେ ।

ଏହାପରେ କିନ୍ତୁ ଗ୍ରୀକ୍ ସୈନ୍ୟମାନେ ଆଉ ପାଦେ ଆଗକୁ ବଢ଼ିଲେ ନାହିଁ । ଆଗକୁ ବଢ଼ିବା ପାଇଁ ଆଲେକ୍‌ଜାଣ୍ଡର୍‌ଙ୍କର ସମସ୍ତ ଉତ୍ସାହବାଣୀ ଓ ଅନୁରୋଧ ବୃଥା ଗଲା । ପ୍ରଥମତଃ, ଦୀର୍ଘକାଳ ଧରି ଯୁଦ୍ଧ କରି ସେମାନେ କ୍ଲାନ୍ତ ହୋଇ ପଡ଼ିଥିଲେ । ଜନ୍ମଭୂମି ଛାଡ଼ି ବିଦେଶରେ ଘୂରି ବୁଲିବା ଆଉ ସେମାନଙ୍କୁ ରୁଚିଲା ନାହିଁ । ତାଛଡ଼ା ପୁରୁ ଓ କାଥସ୍‌ଙ୍କର ବୀରତ୍ୱ ସେମାନଙ୍କୁ ଆତଙ୍କିତ କରିଥିଲା । ଗଙ୍ଗାନଦୀ ଟପିବାକୁ ସେମାନେ ଆଦୌ ରାଜି ହେଲେ ନାହିଁ । ଗଙ୍ଗା ସେ ପଟେ ପରାକ୍ରମୀ ଓ ବିଭବଶାଳୀ ରାଜ୍ୟ ସବୁ ଅଛନ୍ତି ବୋଲି ସେମାନେ ଖବର ପାଇଥାନ୍ତି । ପ୍ଲୁଟାର୍କଙ୍କ କହିବା ଅନୁସାରେ ଗଙ୍ଗା ଟପିଥିଲେ ଆଲେକ୍‌ଜାଣ୍ଡର୍‌ଙ୍କୁ ପରାକ୍ରମୀ ଗଙ୍ଗରୀ ( ?—Gangaritai ) ରାଜ୍ୟର ରାଜାଙ୍କର ସମ୍ମୁଖୀନ ହେବାକୁ ପଡ଼ିଥାନ୍ତା । ଏହି ରାଜା କୋଡ଼ିଏ ହଜାର ଅଶ୍ୱାରୋହୀ, ଦୁଇଲକ୍ଷ ପଦାତିକ ଓ ଦୁଇହଜାର ଯୁଦ୍ଧରଥ ସହିତ ଆଲେକ୍‌ଜାଣ୍ଡର୍‌ଙ୍କୁ ଅପେକ୍ଷା କରିଥିଲେ ।

**ଶାନ୍ତି ହିଁ ଅଶାନ୍ତି :**

ଭଙ୍ଗା ହୃଦୟରେ ଆଲେକ୍‌ଜାଣ୍ଡର୍ ବାଧ୍ୟ ହୋଇ ଫେରିଥିଲେ । ଫେରିବା ବାଟରେ ମାଲିବ ରାଜ୍ୟ ପଡ଼ିଥିଲା । ସେ ରାଜ୍ୟର ଲୋକେ ବିଦେଶୀ ଆକ୍ରମଣକାରୀର ମୁକାବିଲା କରିବା

ପାଇଁ ପ୍ରସ୍ତୁତ ଥାଆନ୍ତି । ଗ୍ରୀକ୍‌ମାନେ ଆଉ ଯୁଦ୍ଧ ଚାହୁଁ ନ ଥିଲେ । ମାଝ ଧାରୁ ଫେରି ଯୁଦ୍ଧକୁ ଏଡ଼େଇ ନ ପଳାଇବାକୁ ଆଲେକ୍‌ଜାଣ୍ଡର୍ ଆହ୍ୱାନ କରିବାରୁ ସମସ୍ତେ ରାଜି ହେଲେ । ଖଣ୍ଡଣ ଯୁଦ୍ଧ ହେଲା । ଅନିଚ୍ଛାରେ ଯୁଦ୍ଧରେ ପଶିଥିବା ହୋଧାନ୍ଧ ଗ୍ରୀକ୍ ସୈନ୍ୟମାନେ କୃଷି-କ୍ଷେତ୍ରରେ କାମ କରୁଥିବା ନିରୀହ କୃଷକମାନଙ୍କୁ ମାରି ପକାଇଲେ । ଏପରି ଭାବେ ଯୁଦ୍ଧର ଧର୍ମ ଲଂଘନ କରିଥିବା ହେତୁ ଆଲେକ୍‌ଜାଣ୍ଡର୍ ନିନ୍ଦିତ ହୋଇଛନ୍ତି । ମାଲବରେ ଆଲେକ୍‌ଜାଣ୍ଡର୍ ଭୟଙ୍କର ଆଘାତ ପାଇଥିଲେ ।

ଏସିଆରେ ନଅ ବର୍ଷ ଧରି ଅବିଶ୍ରାନ୍ତ ଯୁଦ୍ଧ ଶେଷ କରି ଆଲେକ୍‌ଜାଣ୍ଡର୍ ବେବିଲୋନ୍‌କୁ ଫେରିଲେ ଓ ତାଙ୍କର ବିଶାଳ ସାମ୍ରାଜ୍ୟ ସମ୍ଭାଳିବା ଦିଗରେ ମନ ଦେଲେ । ସ୍ଥାନୀୟ ଜନ ସମର୍ଥନ ବ୍ୟତୀତ ଏଡ଼େ ବଡ଼ ସାମ୍ରାଜ୍ୟର ମୁକୁଟମଣି ହୋଇ ରହିବା କ'ଣ ସମ୍ଭବ ? ତା ଛଡ଼ା ଗ୍ରୀକ୍‌ମାନେ ଯେଉଁମାନଙ୍କୁ 'ବାର୍ବାରିଆନ୍' କହନ୍ତି ସେମାନେ କ'ଣ ସତରେ ଅସଭ୍ୟ ? ଆଲେକ୍‌ଜାଣ୍ଡର୍‌ଙ୍କର ଏକାବେଳକେ ଭିନ୍ନ ପ୍ରତ୍ୟକ୍ଷ ଅନୁଭୂତି ହେଲା । ପାରସ୍ୟ ସମ୍ରାଟଙ୍କର ଶୃଙ୍ଖଳିତ ଶାସନ ପଦ୍ଧତି ଲକ୍ଷ୍ୟ କରି ସେ ବିସ୍ମିତ ହେଲେ । ପାରସ୍ୟ ରାଜଦରବାରର ଆଭିଜାତ୍ୟ, ଶାଳୀନତା, ଶିଷ୍ଟାଚାର ଓ ମାର୍ଜିତ ରୁଚି ଗ୍ରୀକ୍‌ଙ୍କ ପାଖରେ ଦୁର୍ଲ୍ଲଭ । ପାର୍ଶୀ ଗଭର୍ଣ୍ଣର, ଶାସକଙ୍କୁ ବଦଳାଇ ସେମାନଙ୍କ ସ୍ଥାନରେ ବସାଇବାକୁ ଯୋଗ୍ୟ ମାସେଡୋନୀୟ ସବୁ କେଉଁଠୁ ମିଳିବେ । ଏହିସବୁ କାରଣରୁ ପୂର୍ବର ପାରସ୍ୟ ସାମ୍ରାଜ୍ୟ ଉପରେ ଗ୍ରୀସ୍‌କୁ ଲଦି ନ ଦେବା ପାଇଁ ଆଲେକ୍‌ଜାଣ୍ଡର୍ ସ୍ଥିର କଲେ । ପାର୍ଶୀ ଶାସକ ଓ ଗଭର୍ଣ୍ଣରମାନେ ସେମାନଙ୍କର ପୂର୍ବ ପଦରେ ରହିଲେ । ଗ୍ରୀକ୍ ଓ ପାର୍ଶୀଙ୍କର ମିଳନ ହେଉ, ଦୁଇ ସଂସ୍କୃତିର ମିଳନରୁ ଏକ ନୂତନ ସଂସ୍କୃତି ଜନ୍ମ ନେଉ ବୋଲି ଆଲେକ୍‌ଜାଣ୍ଡର୍ ଇଚ୍ଛା କଲେ ।

କହିବା ବାହୁଲ୍ୟ ଆଲେକ୍‌ଜାଣ୍ଡର୍‌ଙ୍କର ଏପରି ମନୋଭାବ ବାସ୍ତବମୁଖୀ ଓ ପ୍ରଶଂସନୀୟ । ହଜାର ହଜାର ଗ୍ରୀକ୍ ସୈନିକ ପାର୍ଶୀ ନାରୀଙ୍କୁ ବିବାହ କରି ସାରିଥାନ୍ତି । ଆଲେକ୍‌ଜାଣ୍ଡର୍ ନିଜେ ଡେରିଅସ୍‌ଙ୍କ କନ୍ୟାକୁ ବିବାହ କଲେ । ପାର୍ଶୀ ରମଣୀଙ୍କର ସୌନ୍ଦର୍ଯ୍ୟ ଆଲେକ୍‌ଜାଣ୍ଡର୍‌ଙ୍କର ଯୋଜନାକୁ ସହଜ କରି ଦେଲା । ପାର୍ଶୀ ସ୍ତ୍ରୀ ଗ୍ରହଣ କରୁଥିବା ଗ୍ରୀକ୍‌କୁ ରାଜକୋଷରୁ ମୋଟା ଯୌତୁକ ମିଳୁଥିଲା ।

କେବଳ ଗ୍ରୀକ୍‌ଙ୍କର ସମ୍ରାଟ ନ ରହି ପାର୍ଶୀଙ୍କର ସମ୍ରାଟ ହେବା ପାଇଁ ଆଲେକ୍‌ଜାଣ୍ଡର୍ ଅନେକ ବଦଳିଗଲେ । ଏ ବାଟରେ ସାହାଯ୍ୟ କଲେ ତାଙ୍କର ପାର୍ଶୀ-ସ୍ତ୍ରୀମାନେ । ସେ ପାର୍ଶୀ ପୋଷାକ ପିନ୍ଧିଲେ । ପାର୍ଶୀ ଯୁବକମାନଙ୍କୁ ତାଲିମ୍ ଦେଇ ବହୁତ ଗୁରୁତ୍ୱପୂର୍ଣ୍ଣ ପଦରେ ରଖିଲେ । ଏହା ଫଳରେ ଗ୍ରୀକ୍‌ମାନେ ଟିକିଏ ଅସନ୍ତୁଷ୍ଟ ହେବା ସ୍ୱାଭାବିକ୍ । ସେମାନେ ଅନୁଭବ କଲେ ଯେ ସମ୍ରାଟ ସେମାନଙ୍କ ଠାରୁ ଦୂରେଇ ଯାଉଛନ୍ତି । ଯେଉଁ ସମ୍ରାଟ ତାଙ୍କ ସହିତ ଏତେ ଘନିଷ୍ଠ ଭାବେ ମିଶୁଥିଲେ, ପାର୍ଶୀଙ୍କର ତୋଷାମଦ ଓ ସମ୍ରାଟଙ୍କୁ ପୂଜା କରିବାର ପରମ୍ପରା ପ୍ରଭାବରେ ସେ ବଦଳିଛନ୍ତି । ଏହି କାରଣରୁ ଆଲେକ୍-ଜାଣ୍ଡର୍‌ଙ୍କୁ ହତ୍ୟା କରିବା ପାଇଁ ମଧ୍ୟ ଷଡ଼ଯନ୍ତ୍ର ହୋଇଥିଲା ।

ସମ୍ରାଟଙ୍କୁ ଦେବତା ଜ୍ଞାନ କରିବାର ପାର୍ଶୀ ପରମ୍ପରା ତାଙ୍କ ଆସନ ସୁଦୃଢ଼ କରିବ ବୋଲି ଆଲେକ୍‌ଜାଣ୍ଡର୍ ମନେକଲେ । ମାସେଡୋନିଆ ବ୍ୟତୀତ ସବୁ ଗ୍ରୀକ୍ ନଗରକୁ ଖବର ଗଲା ଜିଅସ୍-ଆମୋନ୍‌ଙ୍କ ପୁତ୍ର ଭାବେ ଆଲେକ୍‌ଜାଣ୍ଡର୍‌ଙ୍କୁ ମାନ୍ୟ କରିବାକୁ ହେବ । ଫିଲିପ୍‌ଙ୍କୁ ଅପମାନ ହେବ ବୋଲି ମାସେଡୋନିଆକୁ ବାଦ୍ ଦିଆଗଲା । ଗ୍ରୀକ୍‌ମାନେ ବିଷୟଟିକୁ କିପରି ଗ୍ରହଣ କଲେ ତାହା ସ୍ପାର୍ଟାନ୍‌ଙ୍କର ଉକ୍ତିରେ ପ୍ରତିଫଳିତ । ଆଲେକ୍‌ଜାଣ୍ଡର୍‌ଙ୍କର ନିର୍ଦ୍ଦେଶକୁ ମାନିନେଇ ସ୍ପାର୍ଟାନ୍‌ମାନେ କହିଲେ, 'ଯଦି ଆଲେକ୍‌ଜାଣ୍ଡର୍ ଗୃହୁଁଛନ୍ତି ତେବେ ତାଙ୍କୁ ଦେବତା କୁହାଯାଉ' ! କଥା ହେଉଛି, ଆଲେକ୍‌ଜାଣ୍ଡର୍ ଯେ ନିଃସନ୍ଦେହ ଭାବେ ଦେବରାଜଙ୍କ ପୁତ୍ର, ଏ ମନ୍ତ୍ର ମିଶର ଓ ବେବିଲୋନ୍‌ର ଧର୍ମ-ପୁରୋହିତମାନେ ତାଙ୍କ କାନରେ ସବୁବେଳେ ଫୁଙ୍କିଲେ । ଆଲେକ୍‌ଜାଣ୍ଡର୍ ଏ କଥା ମନ ଭିତରେ ବିଶ୍ୱାସ କରୁଥିଲେ, ତା ନୁହେଁ । ଥରେ ଖଣ୍ଡିଆ ହୋଇ ଆଲେକ୍‌ଜାଣ୍ଡର୍‌ଙ୍କ ଶରୀରରୁ ରକ୍ତ ବାହାରିଲା । ପାଖରେ ଥିବା ଜଣେ ବନ୍ଧୁଙ୍କୁ ସେ କହିଲେ, "ଦେଖୁଛ ! ମୋ ଦେହରୁ ରକ୍ତ ବାହାରୁଛି—ଦେବରକ୍ତ (ichor) ନୁହେଁ ।" ଲୋକଙ୍କୁ ଶାସନ କରିବା ସୁବିଧାଜନକ ଭାବି ଆଲେକ୍‌ଜାଣ୍ଡର୍ ଦେବତାର ଅଭିନୟ କରୁଥିଲେ । ଏହି ଭୂମିକାରେ ଅବତୀର୍ଣ୍ଣ (ଦେବତାଙ୍କ ପରି ମଣ୍ଡି ହୋଇ ସ୍ୱର୍ଣ୍ଣ ସିଂହାସନରେ ବସିବା ଇତ୍ୟାଦି) ହେବା ପରେ ସେ ଅଧିକ ବଦ୍‌ରାଗୀ ହୋଇଉଠିଲେ ।

ନୂତନ ଦେବତାଙ୍କୁ ଲମ୍ବ ହୋଇ ପ୍ରଣାମ କରିବାର ବିଧି ଗ୍ରୀକ୍‌ମାନଙ୍କୁ ଆଦୌ ଭଲ ଲାଗିଲା ନାହିଁ । ସେମାନଙ୍କର ଗଣତାନ୍ତ୍ରିକ ମନୋବୃତ୍ତି ଯୋଗୁ ଅନେକ ବିଷୟ ( ଅତ୍ୟଧିକ

ଆଡ଼ମ୍ବର, ସମ୍ରାଟ ଓ ସେମାନଙ୍କ ମଧ୍ୟରେ ବ୍ୟବଧାନ ) ସେମାନଙ୍କୁ ଅରୁଚିକର ହେଲା । ଆଲେକ୍‌ଜାଣ୍ଡର୍‌ଙ୍କର ଜଣେ ଅତି ଦକ୍ଷ ଓ ପ୍ରିୟ ସାମରିକ ଅଫିସର୍‌ଙ୍କ ପୁଅ ତାଙ୍କୁ ହତ୍ୟା କରିବାକୁ ଷଡ଼ଯନ୍ତ୍ର କରି ଧରାପଡ଼ିଲେ ଓ ପିତାଙ୍କ ସହିତ ପ୍ରାଣ ହରାଇଲେ । ଏହି ଘଟଣା ପରେ ସେନାବାହିନୀ ସହିତ ଆଲେକ୍‌ଜାଣ୍ଡର୍‌ଙ୍କର ଉତ୍ତମ ସମ୍ପର୍କ କ୍ଷୁଣ୍ଣ ହୋଇଥିଲା । ଆଲେକ୍‌ଜାଣ୍ଡର୍ ଅଧିକ ଅଶାନ୍ତ ଓ ଏକୁଟିଆ ହୋଇ ପଡ଼ିଲେ । ଆରିଷ୍ଟୋଟଲ୍‌ଙ୍କର ଜଣେ ପୁତୁରା ଐତିହାସିକ କାଲିସ୍ଥିନିଜ୍ (ଆଲେକଜାଣ୍ଡର୍‌ଙ୍କୁ ଭବିଷ୍ୟତର ପୃଥିବୀ ସହିତ ପରିଚିତ ଐତିହାସିକ କରାଇବ ବୋଲି କହିହେବା ତାଙ୍କର ଆଉ ଏକ ଦୋଷ) ଆଲେକ୍‌ଜାଣ୍ଡର୍‌ଙ୍କ ଗୋଡ଼ତଳେ ପଡ଼ି ନ ଥିଲେ ଓ ସମ୍ରାଟ ପ୍ରାଚ୍ୟ ଢଙ୍ଗରଙ୍ଗକୁ ଆଦରି ଯାଉଥିବାରୁ ତାଙ୍କୁ ସମାଲୋଚନା କରୁଥିଲେ । ଗୋଟାଏ ଷଡ଼ଯନ୍ତ୍ର ସହିତ ମିଳିତରେ ତାଙ୍କୁ ଯୋଡ଼ି ମୃତ୍ୟୁଦଣ୍ଡ ଦିଆଗଲା । ଏ ଘଟଣା ପରେ ଆରିଷ୍ଟୋଟଲ୍‌ଙ୍କ ସହିତ ଆଲେକ୍‌ଜାଣ୍ଡର୍‌ଙ୍କର ସୁସମ୍ପର୍କ ନଷ୍ଟ ହୋଇଥିଲା ।

ସେନାବାହିନୀ ମଧ୍ୟରେ ଅଶାନ୍ତିର କି ଚରମ ହୋଇଥାଆନ୍ତା କେଜାଣି ହଠାତ୍ ଜ୍ୱରରେ ପଡ଼ି ଆଲେକ୍‌ଜାଣ୍ଡର୍ ମାତ୍ର ତେତିଶ ବର୍ଷ ବୟସରେ ପ୍ରାଣତ୍ୟାଗ କଲେ ।

## ଆଲେକ୍‌ଜାଣ୍ଡର୍‌ଙ୍କ ପ୍ରଭାବ :

ସାମୟିକ ଭାବେ ଏକ ବିଶାଳ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ମଧ୍ୟରେ ଆଲେକ୍-ଜାଣ୍ଡର୍‌ଙ୍କର ଐତିହାସିକ ଭୂମିକା ସୀମାବଦ୍ଧ ନୁହେଁ । ଆଲେକ୍‌ଜାଣ୍ଡର୍ ଜଣେ ବ୍ୟକ୍ତି ମାତ୍ର ନୁହନ୍ତି, ସେ ଇତିହାସର ଏକ ଶକ୍ତି । ତାଙ୍କର ସାଫଲ୍ୟ ତଥା ପ୍ରଭାବ ସୁଦୂର ପ୍ରସାରୀ । ଆଲେକଜାଣ୍ଡର୍‌ଙ୍କ ପରଠାରୁ ନଗର-ରାଷ୍ଟ୍ରର କାଳ ପୂରିଲା । ଶ୍ରେଷ୍ଠ ଶ୍ରେଷ୍ଠ ନଗର-ରାଷ୍ଟ୍ରରେ ଗ୍ରୀକ୍‌ମାନେ ଗଣତାନ୍ତ୍ରିକ ଜୀବନଧାରାର ଯେଉଁ ମହାନ୍ ପରୀକ୍ଷା ଚଳାଇଥିଲେ, ତା'ର ଇତି ଘଟିଲା । ଫରାସୀ ବିପ୍ଲବ ପର୍ଯ୍ୟନ୍ତ ୟୁରୋପରେ କେଉଁଠି ହେଲେ ଗଣତନ୍ତ୍ରର ସ୍ୱରୂପ ଦେଖିବାକୁ ମିଳିଲା ନାହିଁ । ଏହା କିଛି କମ୍ ଗୁରୁତ୍ୱପୂର୍ଣ୍ଣ କଥା ନୁହେଁ । ବିଭିନ୍ନ ଜାତି ଓ ଦେଶର ଲୋକଙ୍କୁ ଏକାଠି କରିବା ପାଇଁ କିପରି ଧର୍ମର ପ୍ରୟୋଗ କରିବାକୁ ହୁଏ, ସେ ବିଷୟ ୟୁରୋପର ରାଜାମାନେ ଆଲେକ୍‌ଜାଣ୍ଡର୍‌ଙ୍କ ଠାରୁ ଶିଖିଲେ । ଆଲେକ୍‌ଜାଣ୍ଡର୍‌ଙ୍କ ଠାରୁ ଫରାସୀ ବିପ୍ଲବ ପର୍ଯ୍ୟନ୍ତ ୟୁରୋପରେ ରାଜତନ୍ତ୍ରର ରାଜୁତି ହୋଇଥିଲା । ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ସେତୁମାନ ଗଢ଼ିଦେବା ତାଙ୍କର ଐତିହାସିକ ଭୂମିକା ।

ଆଲେକ୍‌ଜାଣ୍ଡ୍ରର୍‌ଙ୍କୁ ଗଣତନ୍ତ୍ରର ବିନାଶକାରୀ ରୂପେ ଦେଖିବା ଭୁଲ୍‌ ହେବ । କଥା ହେଉଛି, ଶ୍ରେଷ୍ଠ ଶ୍ରେଷ୍ଠ ନଗର-ରାଷ୍ଟ୍ରର ଯୁଗ ସରିଗଲା । ଗଣତନ୍ତ୍ରର ଅଧୋଗତିରେ ଅରାଜକତା ଓ ରାଜତନ୍ତ୍ରର ଅଧୋଗତିରେ ସ୍ୱେଚ୍ଛାଚାର ସୃଷ୍ଟି ହୁଏ । ଗ୍ରୀସ୍‌ର ଗଣତନ୍ତ୍ର ତାର ସ୍ୱାଭାବିକ୍ ମୃତ୍ୟୁମୁଖରେ ପଡ଼ିଥିଲା । ଆଲେକ୍‌ଜାଣ୍ଡ୍ରର୍ ନିମିତ୍ତ ମାତ୍ର ! ନଗର-ରାଷ୍ଟ୍ରମାନେ ସାମାନ୍ୟ କାରଣରୁ ଯୁଦ୍ଧରେ ମାତୁଥିଲେ । ବହିଃଶତ୍ରୁଙ୍କୁ ରୋକିବା ପରି ସେମାନଙ୍କର ପ୍ରତିରକ୍ଷା ବଳିଷ୍ଠ ନ ଥିଲା । ସ୍ୱାଧୀନତା ଉପଭୋଗ କରିବା ପାଇଁ ଯେଉଁ ସଂଯମ ଓ ଦାୟିତ୍ୱବୋଧ ରହିବା କଥା, ଗ୍ରୀକ୍‌ମାନଙ୍କ ଠାରେ ତାର ଅଭାବ ବଢ଼ିଲା । ଏ ସବୁ ଅବଶ୍ୟ ଶବ-ବ୍ୟବଚ୍ଛେଦରୁ ମିଳିଥିବା ତଥ୍ୟ ! ଜୀବନ୍ତ ଗ୍ରୀସ୍‌କୁ ଚାହିଁଲେ ଏଥେନ୍‌ସର ସ୍ୱର୍ଣ୍ଣଯୁଗ ନିକଟରେ ମାନବଜାତି ଏ ପର୍ଯ୍ୟନ୍ତ ନତମସ୍ତକ ।

ଗ୍ରୀକ୍ ସଂସ୍କୃତିକୁ କୌଣସି ପ୍ରକାରେ ନଷ୍ଟ କରିବା ଦୂରେ ଥାଉ, ଗ୍ରୀସର ମହତ୍ତ୍ୱ ବାହାର ଦୁନିଆରେ ପ୍ରଚାର କରିବା ଆଲେକ୍‌ଜାଣ୍ଡ୍ରର୍‌ଙ୍କ ଜୀବନର ବ୍ରତ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କ ଦିଗ୍‌ବିଜୟର ଏହା ଥିଲା ଅନ୍ୟତମ ଉଦ୍ଦେଶ୍ୟ । ଛୋଟିଆ ଗ୍ରୀସ୍‌ର ଗଣ୍ଡି ଭିତରୁ ମୁକୁଳାଇ ଗ୍ରୀକ୍-ସଂସ୍କୃତି ସୌରଭକୁ ଚତୁର୍ଦ୍ଦିଗ ଖେଳାଇ ଦେବା ଆଲେକଜାଣ୍ଡ୍ରର୍‌ଙ୍କର କୃତିତ୍ୱ । ଗ୍ରୀସ୍‌ର ସୀମା ଟପି ଗ୍ରୀକ୍ କଳା, ସାହିତ୍ୟ, ଦର୍ଶନ ଓ ଜୀବନଧାରା ଅନ୍ୟ ଦେଶର ଲୋକଙ୍କୁ କେତେଦୂର ପ୍ରଭାବିତ କଲା; ଅନ୍ୟ ସଂସ୍କୃତି ସହିତ ଗ୍ରୀକ୍ ସଂସ୍କୃତିର ସଙ୍ଗମରୁ କ'ଣ ନୂତନ ସୃଷ୍ଟି ହେଲା ତାର କିଛି ହିସାବ ମିଳିପାରେ, କିଛିଟା ଅନୁମାନ କରାଯାଇପାରେ କିନ୍ତୁ ହିସାବ ନିକାଶ କରିବା ଏପରି କ୍ଷେତ୍ରରେ ଅସମ୍ଭବ ବ୍ୟାପାର । ଭଗୀରଥଙ୍କ ପରି ଆଲେକ୍‌ଜାଣ୍ଡ୍ରର୍ ଗ୍ରୀକ୍ ସଂସ୍କୃତି-ଗଙ୍ଗାକୁ ଅନେକ ଆଗେଇ ନେଇଗଲେ । ଫଳରେ ମାନବ ସଭ୍ୟତାର ବିକାଶ ଧାରାରେ ଗ୍ରୀସ୍ ତାର ଉପଯୁକ୍ତ ଭୂମିକା ଗ୍ରହଣ କରିପାରିଲା ।

ପୂର୍ବରୁ ଗ୍ରୀକ୍-ସୈନ୍ୟ ଓ ବଣିକମାନେ ଏସିଆର ବାସିନ୍ଦା ହେବା ଆରମ୍ଭ କରିଥିଲେ । ଆଲେକ୍‌ଜାଣ୍ଡ୍ରର୍‌ଙ୍କ ସମୟରେ ଗ୍ରୀକ୍‌ମାନେ ଗ୍ରୀସ୍ ଛାଡ଼ି ବହୁତ ଆଗେଇ ବିଛେଇ ହୋଇଗଲେ । ସମଗ୍ର ପୂର୍ବ ଭୂମଧ୍ୟସାଗରୀୟ ଅଞ୍ଚଳରେ ଗ୍ରୀକ୍ ହେଲା ରାଜଭାଷା । ଏହି ଅଞ୍ଚଳରେ ଗ୍ରୀକ୍ ଭାଷାର ପ୍ରାଧାନ୍ୟ ହଜାରେ ବର୍ଷ ରହିଲା । ମିଶର ଓ ନିକଟବର୍ତ୍ତୀ ପ୍ରାଚ୍ୟ ଭୂଖଣ୍ଡରେ ଶିକ୍ଷିତ ଅଣ ଗ୍ରୀକ୍‌ମାନେ ଗ୍ରୀକ୍ ଭାଷା ପଢ଼ିଲେଖି ପାରୁଥିଲେ । ଗ୍ରୀକ୍ ସଂସ୍କୃତିର ପ୍ରସାର ଦିଗରେ

ଏହି ଗୋଟିଏ କଥା କେତେ ସାହାଯ୍ୟ କରିଥିବ ତାହା ସହଜେ ଅନୁମେୟ । ଗ୍ରୀକ୍ ଭାଷା କିପରି ପ୍ରାଧାନ୍ୟ ଲାଭ କରିଥିଲା ତାର ଏକ ଉଦାହରଣ ଦିଆଯାଇପାରେ । ମିଶରରେ ଅନେକ ସଂଖ୍ୟକ ଇହୁଦୀ ବାସ କରୁଥିଲେ । ସେମାନେ ଗ୍ରୀକ୍ ଭାଷା ଶିଖିବା ପାଇଁ ଏତେ ଧ୍ୟାନ ଦେଲେ ଯେ ଆଉ ହିବ୍ରୁ ଭାଷାରେ ପଢ଼ି ଲେଖି ପାରିଲେ ନାହିଁ । ସେମାନଙ୍କ ପାଇଁ ଓଲ୍ଡ ଟେଷ୍ଟାମେଣ୍ଟକୁ ଗ୍ରୀକ୍ ଭାଷାରେ ଅନୁବାଦ କରିବାକୁ ପଡ଼ିଥିଲା ! ସତୁରି ଜଣ ପଣ୍ଡିତ ଏହି କାର୍ଯ୍ୟ ସମ୍ପାଦନ କରିଥିଲେ । ଓଲ୍ଡ ଟେଷ୍ଟାମେଣ୍ଟର ଏହି ପ୍ରାଚୀନତମ ଅନୁବାଦ ସଂସ୍କରଣଟି ଅତି ମୂଲ୍ୟବାନ୍ ।

ଅନ୍ୟ ସ୍ଥାନର ଲୋକେ ମହାନ୍ ଗ୍ରୀକ୍ ସଂସ୍କୃତିରୁ ବାଛି ବାଛି ମୂଲ୍ୟବାନ୍ ଉପାଦାନ ଆଗ୍ରହରେ ଗ୍ରହଣ କରିଗଲେ ତା ନୁହେଁ । ସାଂସ୍କୃତିକ ଆଦାନ ପ୍ରଦାନ ସିଧାସଳଖ ଘଟେ-ନାହିଁ, ନାଟକୀୟ ଓ ଅଚେତନ ଭାବେ ଘଟେ । ଆରମ୍ଭରୁ ଏହି ଆଦାନପ୍ରଦାନ ତୀବ୍ର ସଂଘର୍ଷର ଆକାର ନେଇପାରେ । ଏହାକୁ ଆଦାନ ପ୍ରଦାନ କହିବା ଅପେକ୍ଷା ଐତିହାସିକ ବାଧ୍ୟବାଧକତା କହିବା ସମୀଚୀନ । ଗ୍ରୀକ୍ ଓ ଇହୁଦୀଙ୍କର ଏହିପରି ସଂଘର୍ଷ ଘଟିଥିଲା ପାଲେଷ୍ଟାଇନ୍‌ରେ । ଏହା ହେଉଛି ଶତାବ୍ଦୀ ଶତାବ୍ଦୀ ଲାଗି ରହିଥିବା ଦୁଇ ଭିନ୍ନ ଜୀବନଧାରା ମଧ୍ୟରେ ଆଦ୍ୟ ସଂଘର୍ଷ । ଆଲେକ୍‌ଜାଣ୍ଡର୍‌ଙ୍କ ଅନ୍ତେ ପାଲେଷ୍ଟାଇନର ଜୁଡ଼ିଆ ଟଲେମିଙ୍କର ଅଧୀନସ୍ଥ ହେଲା । ଜୁଡାଇଜମ୍‌ର ଭିତ୍ତି ହେଉଛି ଧର୍ମ । ନୈତିକ ଶୃଙ୍ଖଳା ଓ ଦୈନନ୍ଦିନ ଜୀବନରେ ଠିକଣାଠି ଆଚରଣ ବିଧିକୁ ଇହୁଦୀମାନେ ମାନି ଚଳୁଥିଲେ । କୃଷିଜୀବୀ ଇହୁଦୀମାନେ ସେ ପର୍ଯ୍ୟନ୍ତ ବାଣିଜ୍ୟ ଭିତରକୁ ପଶି ନ ଥାନ୍ତି । ଏହିପରି ଏକ ନୈଷ୍ଠିକ ଓ ସରଳ ଜୀବନ-ଧାରାର ଭୂମି ମଧ୍ୟକୁ ମାଡ଼ି ଆସିଲେ ଗ୍ରୀକ୍ । ସେ ସମୟ ପୁଣି ଏପିକୁରସ୍‌ଙ୍କର । ଗ୍ରୀକ୍-ମାନଙ୍କର ମଉଜ ମଜଲିସ୍, ଯୌନ ବ୍ୟାପାରରେ ଉଦାର ଦୃଷ୍ଟିଭଙ୍ଗୀ, ନୃତ୍ୟ, ସଙ୍ଗୀତ, କଳା ଏପରିକି ଦର୍ଶନ ଓ ସାହିତ୍ୟ ପ୍ରତି ଅନୁରକ୍ତି ଦେଖି ଇହୁଦୀମାନେ ନାକ ଟେକିଲେ । ଅନେକ ଇହୁଦୀ ଯୁବକ କିନ୍ତୁ ମରହଟିଆଙ୍କୁ ଅଛା କରି ଗ୍ରୀକ୍‌ଙ୍କର ପଦାଙ୍କ ଅନୁସରଣ କରିବା ସ୍ୱାଭାବିକ୍ । ପରମ୍ପରାକୁ ରକ୍ଷା କରିବା ପାଇଁ ଇହୁଦୀମାନେ ଗୋଟିଏ ସଂଘ ଗଢ଼ିଲେ—ପବିତ୍ରତା ରକ୍ଷାକାରୀ ସଂଘ । ଭାରତବର୍ଷରେ ଆଲେକ୍‌ଜାଣ୍ଡର୍‌ଙ୍କ ସୈନ୍ୟମାନେ ଲେଙ୍ଗୁଟିପିନ୍ଧା ଫକୀରଙ୍କୁ ଯେଉଁ ନାମରେ ଡାକୁଥିଲେ, ଏହି ସଂଘର ଲୋକଙ୍କୁ ଗ୍ରୀକ୍‌ମାନେ ସେହି ନାମ (gymnosophist) ଦେଲେ ! ପ୍ରାଚ୍ୟ ପାଶ୍ଚାତ୍ୟ ମଧ୍ୟରେ ଅସଲ ଯୁଦ୍ଧ ଆରମ୍ଭ ହୋଇଗଲା । ଅଧିକରୁ ଅଧିକ ସଂଖ୍ୟକ ଇହୁଦୀ 'ପବିତ୍ରତା ରକ୍ଷାକାରୀ ସଂଘ'ରେ ମିଶିଲେ ।

ଜୁଡିଆର ଧର୍ମୀୟ ରାଜନୈତିକ ପରିବର୍ତ୍ତନ ବିଷୟ ଭିତରକୁ ଆମେ ଯିବୁ ନାହିଁ । ଗ୍ରୀକ୍ ଓ ଇହୁଦୀଙ୍କ ମଧ୍ୟରେ ସଂଘର୍ଷକୁ ଉତ୍ତେଜିତ କଲା ପରି ଘଟଣା ଘଟିଗଲେ ମଧ୍ୟ ମୂଳ କାରଣ ହେଲା ଜୀବନଧାରାର ଭିନ୍ନତା । ଫଳରେ ଗୋଟିଏ ଶତାବ୍ଦୀ ପରେ ଦୁଇଜାତି ମଧ୍ୟରେ ରକ୍ତାକ୍ତ ସଂଘର୍ଷ ଆରମ୍ଭ ହୋଇଗଲା । ଜୁଡିଆ ଟଲେମି ବଂଶ ହାତରୁ ଖସି ଆଲେକ୍‌ଜାଣ୍ଡର୍‌ଙ୍କ ଅନ୍ୟତମ ସେନାପତି ସିଲିଉକସ୍‌ଙ୍କ ବଂଶଧର ଆଣ୍ଟିଓକସ୍‌ଙ୍କ ଅଧୀନକୁ ଆସିଥାଏ । ଇହୁଦୀମାନେ ଟଲେମିଙ୍କୁ ସମର୍ଥନ କରନ୍ତି ଭାବି ଆଣ୍ଟିଓକସ୍ ହଜାର ହଜାର ଇହୁଦୀ ନରନାରୀଙ୍କୁ ହତ୍ୟାକଲେ ( ଖ୍ରୀ. ପୂ ୧୬୭ ) । ତା ପରେ ଆରମ୍ଭ ହୋଇଗଲା ବଳପୂର୍ବକ ଇହୁଦୀମାନଙ୍କର ଧର୍ମାନ୍ତରକରଣ । ହାୟରେ ଇହୁଦୀ ଜାତି ! ତୋର ଦୁର୍ଦ୍ଦଶାର



[ ରଣାଙ୍ଗନରେ ଆଲେକ୍‌ଜାଣ୍ଡର୍ ]

ଆରମ୍ଭ କେତେକାଳରୁ ! ଜେରୁଜେଲମ୍‌ରେ ଇହୁଦୀଙ୍କ ମନ୍ଦିର ଜିଅସ୍‌ଙ୍କ ମନ୍ଦିରରେ ରୂପାନ୍ତରିତ ହେଲା । ଇହୁଦୀ ଧର୍ମୋତ୍ସବ ପାଳନ କରିବା ପାଇଁ ମୃତ୍ୟୁଦଣ୍ଡର ବ୍ୟବସ୍ଥା ହେଲା । ଯାହା ଠାରୁ ଇହୁଦୀ ଧର୍ମଗ୍ରନ୍ଥ ମିଳିଲା, ସେ ମଲା । ଧର୍ମଛାଡ଼ିବା ପାଇଁ ଇହୁଦୀଙ୍କୁ

ଜବରଦସ୍ତ ଘୁଷୁରି ମାଂସ ଖୁଆଗଲା । ହଜାର ହଜାର ଇହୁଦୀ ଦାସ ଭାବେ ବନ୍ଦୀ ହେଲେ । ଜେରୁଜେଲମ୍‌କୁ ଅତିକ୍ରମ କରି ଏପରି ଅତ୍ୟାଚାର ଗାଁ ଗହଳକୁ ବ୍ୟାପିଗଲା ।

କେତେକ ଇହୁଦୀ ବଣ ପାହାଡ଼କୁ ପଳେଇ ଯାଇ ଲୁଚି ରହିଲେ । ଧର୍ମ ପାଇଁ ସେମାନେ ଯେପରି ଲଢ଼ୁଥିଲେ ଓ ଅକାତରରେ ପ୍ରାଣ ଦେଉଥିଲେ ଇତିହାସରେ ତାର ପଟାନ୍ତର ବିରଳ । ଅପୂର୍ବ ବୀରତ୍ୱ ଦେଖାଇ ସଂଘବଦ୍ଧ ଇହୁଦୀ ଜାତି ଆଣ୍ଟିଓକସ୍‌ଙ୍କୁ ପରାସ୍ତ କରିଥିଲା । ଏହାପରେ ଆରମ୍ଭ ହେଲା ପାଲଟା ଆକ୍ରମଣ । ଗ୍ରୀକ୍ ଧର୍ମ ଓ ଜୀବନଧାରାର ହଟ୍ଟା ଅଭିଯାନ !

ଏସିଆ ଭୂମିରେ ଗ୍ରୀକ୍ ଓ ଏସୀୟମାନଙ୍କ ମଧ୍ୟରେ ସହଯୋଗ, ସଂଘର୍ଷ, ଆକ୍ରମଣ ଓ ପ୍ରତି ଆକ୍ରମଣ ଭିତରେ ଦୁଇ ସଂସ୍କୃତି ମଝିରେ ଗୋଟାଏ ଦେଣାନେଣା ଚାଲିଲା ବିଭିନ୍ନ ସ୍ଥାନରେ । ତାହା ଏ ଯାବତ୍ ଚାଲିଥିବା ପ୍ରାଚ୍ୟ-ପାଶ୍ଚାତ୍ୟର ସଂଘର୍ଷ ମିଳନର ଆଦ୍ୟ-ପର୍ବ ! ଆଲେକ୍‌ଜାଣ୍ଡର୍ ପ୍ରାଚ୍ୟ-ପାଶ୍ଚାତ୍ୟର ମିଳନର ସ୍ୱପ୍ନ ଦେଖିଥିଲେ । ତାଙ୍କର କେତେ ଶତାବ୍ଦୀ ପରେ ପାଶ୍ଚାତ୍ୟ କବି ଗାଇଲେ, 'ପ୍ରାଚ୍ୟ ହିଁ ପ୍ରାଚ୍ୟ' ଆଉ ପାଶ୍ଚାତ୍ୟ ହିଁ ପାଶ୍ଚାତ୍ୟ; ଦୁହିଁଙ୍କର ମିଳନ ଅସମ୍ଭବ । ପୂରା ସତ ନ ହେଲେ ବି ଆଂଶିକ ଭାବେ ସତ । ଆଲେକ୍‌ଜାଣ୍ଡର୍ ପ୍ରାଚ୍ୟର ବିସ୍ତୃତ ଅଞ୍ଚଳ ଜିଣିନେଲେ କିନ୍ତୁ ପ୍ରାଚ୍ୟର ହୃଦୟକୁ ଅଧିକାର କରିପାରିଲେ ନାହିଁ । ଏହାର ପୁନରାବୃତ୍ତି ଇତିହାସରେ ଏକାଧିକବାର ଘଟିଛି ।

ଏଥେନ୍‌ସରୁ ଆଲୋକ ନେଇ ଏସିଆର ଅନ୍ଧକାର ଦୂର କରିବା ଥିଲା ଆଲେକ୍-ଜାଣ୍ଡର୍‌ଙ୍କର ମହତ୍ ଉଦ୍ଦେଶ୍ୟ । ନିୟତିର ପରିହାସ, ସେ ନିଜେ କେତେକାଂଶରେ ଏସୀୟ ହୋଇପଡ଼ିଲେ । ଏସିଆରେ ବେପିଚ ଗ୍ରୀକ୍ ଜୀବନଧାରାର ସମାଦର ଘଟିଥିଲା । ରାଜ-ଦରବାରରେ ଗ୍ରୀକ୍ ଭାଷା ଚଳିଲା, ସମାଜର ଉପର ସ୍ତରର ଲୋକେ ଗ୍ରୀକ୍ ଚାଲିଚଳଣକୁ ଆଦରିଗଲେ ମାତ୍ର ମାଟିର ଭାଷା, ସଭ୍ୟତାକୁ ଧରି ରଖିଥିବା ଜନତା ପୁଣି ମୁଣ୍ଡଟେକି ସବୁ ଓଲଟପାଲଟ କରିଦେଲା । ପ୍ରାଚ୍ୟ ଚିନ୍ତା ଓ ଦୃଷ୍ଟିଭଙ୍ଗୀ ଦ୍ୱାରା ଗ୍ରୀକ୍‌ମାନେ ସଂକ୍ରମିତ ହେଲେ । ଗ୍ରୀସ୍‌ରେ ଜ୍ୟୋତିର୍ବିଜ୍ଞାନ ଭିତରେ ପ୍ରାଚ୍ୟର ଜ୍ୟୋତିଷଶାସ୍ତ୍ର ପଶିଲା । ଗଣତନ୍ତ୍ର ହଟିଯାଇ ରାଜାରାଜୁଡ଼ାଙ୍କ ଯୁଗ ଆରମ୍ଭ ହେଲା । ପ୍ରାଚ୍ୟରେ ରାଜାଙ୍କୁ ଦେବତାଙ୍କ ପରି

ପୂଜବାଉ ପରମ୍ପରା ଗ୍ରୀକ୍ ରାଜା ଓ ରୋମାନ୍ ସମ୍ରାଟଙ୍କୁ ସୁହାଇଲା । ରାଜା ଈଶ୍ୱରଙ୍କର ପ୍ରତିନିଧି ଓ ତାଙ୍କ ଶାସନକୁ ମାନିନେବା ଉଚିତ—ଏହି ଦୃଷ୍ଟିଭଙ୍ଗୀ ପ୍ରାଚ୍ୟରୁ ପାଶ୍ଚାତ୍ୟକୁ ଯାଇଛି ।

ପ୍ରାଚ୍ୟର ଅଦୃଷ୍ଟବାଦ ଜେନୋଙ୍କ ଦର୍ଶନ ମାଧ୍ୟମରେ ଗ୍ରୀକ୍‌ମାନଙ୍କୁ ସ୍ପର୍ଶ କଲା । ଗ୍ରୀକ୍-ଦେବତାମାନେ କାଳକ୍ରମେ ଲୁଚିଗଲେ; କିନ୍ତୁ ପ୍ରାଚ୍ୟର ଦେବତାମାନେ ପୂଜିତ ହେଉଥିଲେ । ଧର୍ମ ସର୍ବସାଧାରଣଙ୍କ ଆବଶ୍ୟକତା ପୂରଣ କରେ କିନ୍ତୁ ଦର୍ଶନ ସାଧାରଣତଃ ମୁଷ୍ଟିମେୟ ବ୍ୟକ୍ତିଙ୍କ ମଧ୍ୟରେ ସୀମାବଦ୍ଧ ରହେ । ପ୍ରାଚ୍ୟକୁ ଦେବା ପାଇଁ ଗ୍ରୀସ୍‌ର ଥିଲା ଦର୍ଶନ ଓ ଗ୍ରୀସ୍‌କୁ ଦେବାପାଇଁ ପ୍ରାଚ୍ୟର ଥିଲା ଧର୍ମ । ପ୍ରାଚ୍ୟର ଧର୍ମଭାବ ଦ୍ୱାରା ପାଶ୍ଚାତ୍ୟଭୂଖଣ୍ଡ ଅଧିକ ପ୍ରଭାବିତ ହୋଇଛି ।

ଏହିସବୁ କଥା ବିଚାର କଲେ ଆଲେକ୍‌ଜାଣ୍ଡର୍ ପ୍ରାଚ୍ୟର ପାଶ୍ଚାତ୍ୟୀକରଣର ନିମିତ୍ତ ହୋଇଥିଲେ ବୋଲି କିପରି କୁହାଯିବ ? ତେଣୁ ଉଇଲ୍ ଡୁରାଣ୍ଟଙ୍କର ନିମ୍ନୋକ୍ତ ମନ୍ତବ୍ୟଟି ବିଶେଷ ପ୍ରଣିଧାନଯୋଗ୍ୟ । ସେ କହିଛନ୍ତି, "The least expected and the most profound effect of Alexander's conquest was the Orientalization of the European soul".



# ଅପରାହ୍ନର କାକଳି

## (ଖ୍ରୀ. ପୂ ୪ର୍ଥ ଶତାବ୍ଦୀର କଳା, ସାହିତ୍ୟ ଓ ଦର୍ଶନ)

* ଖ୍ରୀ· ପୂ ୪ର୍ଥ ଶତାବ୍ଦୀରେ ଶିଳ୍ପକଳାର ବିଶେଷ ଉନ୍ନତି ହୋଇଥିଲା ।
* ଦର୍ଶନକ୍ଷେତ୍ରରେ ଆମୋଦବାଦ ଓ ସନ୍ନ୍ୟାସଧର୍ମ ପ୍ରତିଦ୍ୱନ୍ଦ୍ୱିତା କଲେ ।
* ନାଟକ ଓ କବିତାର ଅଧୋଗତି ଘଟିଲା ।

କୌଣସି ଜାତିର ଲକ୍ଷ୍ୟହୀନ ଦୀର୍ଘକାଳର ଅନ୍ତର୍ବିବାଦ ଫଳରେ ଗ୍ରୀକ୍‌ଜାତିର ସୃଜନଶୀଳତା ବ୍ୟାହତ ହେବା ସ୍ୱାଭାବିକ୍ । ଖ୍ରୀ. ପୂ ଚତୁର୍ଥ ଶତାବ୍ଦୀରେ ଟ୍ରାଜେଡ଼ିର ମାନ ଅନେକ କମିଗଲା । ଏହି ଶତାବ୍ଦୀରେ ଅଧିକ ସଂଖ୍ୟକ କମେଡ଼ି ସୃଷ୍ଟି ହେଲେ ସତ, ମାତ୍ର କୌଣସି ମହାନ୍ କମେଡ଼ିଆନ୍ ଜନ୍ମ ହୋଇ ନ ଥିଲେ । ଯାହା କିଛି ଦୋଷତ୍ରୁଟି ସତ୍ତ୍ୱେ ଆରିଷ୍ଟୋଫେନିସ୍‌ଙ୍କ ସମକକ୍ଷ କମେଡ଼ିଆନ୍ ଆଉ ଗ୍ରୀସ୍‌ରୁ ବାହାରି ନାହାନ୍ତି । ଏଥେନ୍ସ ସଂକୀର୍ଣ୍ଣମନା ଓ ଅସହିଷ୍ଣୁ ରାଜନୀତିଜ୍ଞଙ୍କ ହାତରେ ପଡ଼ିବାରୁ କମେଡ଼ିରୁ ରାଜନୈତିକ ବ୍ୟଙ୍ଗବିଦ୍ରୂପ ଲୁଚିଗଲା ।

ଖ୍ରୀ. ପୂ ଚତୁର୍ଥ ଶତାବ୍ଦୀରେ ବାଗ୍ମିତାର ବିଶେଷ ଉନ୍ନତି ଘଟିଥିଲା । ସ୍ୱଳ୍ପ ପ୍ରତିଭାବାନ୍ ରାଜନୈତିକ କ୍ଷମତାଲୋଭୀମାନେ କୁହାଳିଆ ପଣରେ ଲୋକଙ୍କ ମନ କିଣିବାକୁ ଚେଷ୍ଟାକଲେ । ସମକାଳୀନ ବାଗ୍ମୀମାନଙ୍କ ମଞ୍ଚଗତ ସହିତ ଭଲଭାବେ ପରିଚିତ ପ୍ଲେଟୋ ବାଗ୍ମୀତାକୁ ଅତ୍ୟନ୍ତ କଟୂଭାଷାରେ ନିନ୍ଦା କରିଛନ୍ତି । ତାଙ୍କ ମତରେ ବାଗ୍ମିତା ହେଉଛି

ଲୋକଙ୍କର ଆବେଗ ଓ ଅନୁଭବ (ବିଚାର ବୁଦ୍ଧି)କୁ ମନେଇ ସେମାନଙ୍କର ଶ୍ରେଷ୍ଠ କରିବାର କୌଶଳ । ପ୍ଲେଟୋ ବାଗ୍ମିତାକୁ ଗୋଟିଏ ଜ୍ଞାନର ଆସନ ଦେଇନ୍ତି ନାହିଁ । ବାଗ୍ମିତା ଏକ କୌଶଳ ମାତ୍ର ।

ଗ୍ରୀସ୍‌ର ସର୍ବଶ୍ରେଷ୍ଠ ବାଗ୍ମି ଡିମୋସ୍ଥିନିଜ୍ (ଖ୍ରୀ. ପୂ ୩୮୪—୩୨୨)ଙ୍କ ସାଧନା ଓ ସିଦ୍ଧି ପ୍ରତି ଧ୍ୟାନ ଦେଲେ ବାଗ୍ମିତା ସମ୍ପର୍କରେ ପ୍ଲେଟୋଙ୍କ ମତାମତର ଯଥାର୍ଥତା ବୁଝିହୁଏ । ଡିମୋସ୍ଥିନିଜ୍ ଅନର୍ଗଳ ଭାବେ 'ଜ୍ୱାଳାମୟୀ ଭାଷଣ' ଦେଇ ପାରୁଥିଲେ । ତାଙ୍କ ସାଫଲ୍ୟର ଗୋପନ ରହସ୍ୟ ହେଉଛି ତାଙ୍କର ଅଭିନୟ ଢଙ୍ଗରଙ୍ଗ । ଦର୍ପଣ ସାମନାରେ ଛିଡ଼ା ହୋଇ ଘଣ୍ଟା ଘଣ୍ଟା ଧରି ଡିମୋସ୍ଥିନିଜ୍ ବକ୍ତୃତା ଅଭ୍ୟାସ କରୁଥିଲେ । ସାଧାରଣ ଲୋକଙ୍କ ପାଇଁ ତାଙ୍କର ବକ୍ତୃତା ଅତ୍ୟନ୍ତ ଆମୋଦ ଦାୟକ ମାତ୍ର ଶିକ୍ଷିତ ଲୋକଙ୍କ ଉପରେ ଏହାର ବିଶେଷ ପ୍ରଭାବ ନ ଥିଲା । ଦର୍ଶନରେ ଡିମୋକ୍ରିଟସ୍‌ଙ୍କର ପ୍ରବେଶ ନିତାନ୍ତ ଅଗଭୀର । ତାଙ୍କ ଠାରେ ରସବୋଧର ମଧ୍ୟ ଅଭାବ ଥିଲା ।

ବାଗ୍ମିତା ଶିକ୍ଷା ଦେବା ପାଇଁ ଏଥେନ୍‌ସ ଓ ଅନ୍ୟତ୍ର ଛତୁ ଫୁଟିଲା ପରି ସ୍କୁଲମାନ ଖୋଲିଲା । ହୋମର୍‌ଙ୍କ କବିତା ଚର୍ଚ୍ଚା ହେଉଥିବା ବିଦ୍ୟାଳୟମାନ କାବ୍ୟକୁ ବିଦାୟ ଦେଇ ବାଗ୍ମିତାର ପାଠ୍ୟକ୍ରମ ତିଆରି କଲେ । କହିବା ବାହୁଲ୍ୟ, ଏପରି ବାଗ୍ମିତା ସ୍କୁଲ୍ ବା ଗୁରୁଙ୍କର କୌଣସି ଅବଦାନ ନାହିଁ । ଏଥେନ୍‌ସ ଠାରେ ଆଇସୋକ୍ରେଟିଜ୍ (Isocrates ଖ୍ରୀ. ପୂ ୪୩୬—୩୩୮)ଙ୍କ ବାଗ୍ମିତା ସ୍କୁଲ୍ ଏହାର ଏକମାତ୍ର ବ୍ୟତିକ୍ରମ । ଅନ୍ୟମାନେ ବିଫଳ ହୋଇଥିବା ସ୍ଥଳେ ଆଇସୋକ୍ରେଟିଜ୍ ସଫଳ ହୋଇଥିବାର କାରଣ କଣ ? କାରଣ ହେଉଛି ତାଙ୍କର ଲାଜକୁଳା ପ୍ରକୃତି ଓ କ୍ଷୀଣସ୍ୱର ! ଏହି ଦୁଇଟି ଅସୁବିଧା ଯୋଗୁ ଆଇସୋକ୍ରେଟିଜ୍ ନିଜେ ବାଗ୍ମୀ ନ ହୋଇ ବାଗ୍ମିତାର ଶିକ୍ଷକ ହେଲେ । ବୃତ୍ତି ଦୃଷ୍ଟିରୁ ତାଙ୍କୁ ଅନେକ ଲିଖିତ ବକ୍ତୃତା ରଚନା କରିବାକୁ ପଡ଼ୁଥିଲା । ଆଇସୋକ୍ରେଟିଜ୍ ଜଣେ ଉଦାରଚେତା ବ୍ୟକ୍ତି । ଗ୍ରୀକ୍ ଜାତିର ମଙ୍ଗଳ

ବାଗ୍ମିତା ଶିକ୍ଷା ଦେବା ପାଇଁ ଆଇସୋକ୍ରେଟିଜ୍ ଏଥେନ୍‌ସରେ ଗୋଟିଏ ଆକାଡେମି ସ୍ଥାପନ କରିଥିଲେ । ଗ୍ରୀସ୍‌ର ସବୁ ଅଞ୍ଚଳରୁ ତାଙ୍କ ଆକାଡେମିକୁ ଛାତ୍ରମାନେ ଆସୁଥିଲେ । ପ୍ଲେଟୋଙ୍କ ପରି ଉତ୍ତମ ଶାସକ ତିଆରିବା ଆଇସୋକ୍ରେଟିଜ୍‌ଙ୍କର ମଧ୍ୟ ଲକ୍ଷ୍ୟ ଥିଲା । କିନ୍ତୁ ଦୁହିଁଙ୍କର ଆକାଡେମିର ପାଠ୍ୟକ୍ରମ ଥିଲା ସମ୍ପୂର୍ଣ୍ଣ ଭିନ୍ନ ।

ଚନ୍ତା ତାଙ୍କ ହୃଦୟକୁ ଅଧିକାର କରିଥିଲା । କୌଣସି ସଙ୍କଟ ବେଳାରେ ବା ଗୁରୁତ୍ୱପୂର୍ଣ୍ଣ ବିଷୟରେ ଗ୍ରୀକ୍ ଜାତି ବା ନଗରବାସୀଙ୍କୁ ଉଦ୍‌ବୋଧନ ଦେଇ ସେ ପ୍ରଚୁର ପଦ୍ୟ ଓ କ୍ଷୁଦ୍ର ଲେଖାମାନ ଲେଖିଥିଲେ । ଏହା ଫଳରେ, ଅଜାଣତରେ ଆଇସୋକ୍ରେଟିଜ୍ ହେଲେ ଏକ ନୂତନ ଗଦ୍ୟ ରଚନାର ପ୍ରବର୍ତ୍ତକ ।

'ସଫିଷ୍ଟଙ୍କ ବିରୁଦ୍ଧରେ' ନାମକ ତାଙ୍କର ଏକ ସୁପରିଚିତ ପାମ୍ଫଲେଟ୍‌ରେ ଆଇସୋକ୍ରେଟିଜ୍ କହିଛନ୍ତି, ଅର୍ଥ ବିନିମୟରେ ନିର୍ବୋଧକୁ ପଣ୍ଡିତ କରାଯାଇ ପାରିବ ନାହିଁ । ମାତ୍ର କିଛି ପାଉଣାଟି ପାଇଲେ ସଫିଷ୍ଟ ଯେ କୌଣସି ମୂର୍ଖମତିକୁ ବିଦ୍ୱାନ କରି ଦେବାକୁ ପ୍ରତିଶ୍ରୁତି ଦେଉଥିଲେ । ଆଇସୋକ୍ରେଟିଜ୍ ଛାତ୍ରର ପ୍ରତିଭା ଓ ଯୋଗ୍ୟତାକୁ ଗୁରୁତ୍ୱ ଦେଲେ । ନଗରର ଶାସନ ଦାୟିତ୍ୱ ବହନ କରି ଭଳି ଛାତ୍ରଙ୍କୁ ସୁଯୋଗ୍ୟ କରି ଗଢ଼ିବା ଥିଲା ତାଙ୍କର ଲକ୍ଷ୍ୟ । ଏହି ଲକ୍ଷ୍ୟରେ ପହଞ୍ଚିବା ପାଇଁ ପ୍ଲେଟୋ ତାଙ୍କ ଛାତ୍ରଙ୍କ ପାଇଁ ଗଣିତ ଓ ଦର୍ଶନର ଏକ ବ୍ୟାପକ ପାଠ୍ୟକ୍ରମ ପ୍ରସ୍ତୁତ କରିଥିଲେ । ମାତ୍ର ଆଇସୋକ୍ରେଟିଜ୍ ଦର୍ଶାଇଲେ, ସତ୍ୟ ଅନୁସନ୍ଧାନର ଅନ୍ତ ନାହିଁ । ଏପରି ନିଷ୍ଫଳ ଅନୁସନ୍ଧାନରେ ମାତି ଜଣେ ଶାସନ ଦାୟିତ୍ୱ ସମ୍ଭାଳିବା ପରି ଦକ୍ଷତା ଅର୍ଜନ କରି ନ ପାରେ । ନିଜ ଆକାଡେମିରେ ଆଇସୋକ୍ରେଟିଜ୍ କଳା, ସାହିତ୍ୟ ଓ ବାଗ୍ମିତାର ଶିକ୍ଷା ଉପରେ ଗୁରୁତ୍ୱ ଦେଇଥିଲେ ।

ଆଇସୋକ୍ରେଟିଜ୍ ଦେଖିପାରୁଥିଲେ ଯେ ଗ୍ରୀକ୍‌ଜାତି ଆତ୍ମହତ୍ୟା କରୁଛି । ବର୍ବରମାନେ ଗ୍ରୀସ୍‌କୁ ଚାରିପଟେ ଘେରିଥିବା ସ୍ଥଳେ ଗ୍ରୀକ୍‌ମାନେ ନିଜ ଭିତରେ ମରାମରି ହେଉଛନ୍ତି କାହିଁକି ? ଏଥେନ୍‌ସ ତା'ର ସହଯୋଗୀ ନଗରଗୁଡ଼ିକୁ ଶୋଷଣ କରୁଥିବାରୁ ଆଇସୋକ୍ରେଟିଜ୍ ଅତି ସାହସର ସହିତ ଏହାର ପ୍ରତିବାଦ କରିଥିଲେ । ସେ କହିଥିଲେ, ଏଥେନସର ସାମ୍ରାଜ୍ୟବାଦୀ ମନୋଭାବ ଗ୍ରୀସ୍‌କୁ ଧ୍ୱଂସ ଆଡ଼କୁ ଟାଣି ନେଉଛି । ପୁଣି ଅନ୍ୟଙ୍କର କର ଉପରେ ନିର୍ଭର କରିବା ଦ୍ୱାରା ଏଥେନ୍‌ସର ଗଣତନ୍ତ୍ର ଦୁର୍ବଳ ହେଉଛି । ତେବେ ଧର୍ମାକତାନ୍ତ୍ରିକ ସ୍ପାର୍ଟା ଗଣତାନ୍ତ୍ରିକ ଏଥେନ୍‌ସ ଠାରୁ ଗ୍ରୀସ୍‌ର ଅଧିକ କ୍ଷତି କରିଛି ବୋଲି ସେ ସ୍ୱୀକାର କରିଥିଲେ । ଆଇସୋକ୍ରେଟିଜ୍‌ଙ୍କର ଏହି ତୁଳନାତ୍ମକ ମୂଲ୍ୟାୟନ ଠିକ୍ ।

ଆଇସୋକ୍ରେଟିଜ୍ ଦର୍ଶାଇଥିଲେ ଯେ, ସବୁ ସୀମା ଲଙ୍ଘନ କରି ସ୍ୱାଧୀନତା ଓ ସମତାର ଜୟଗାନ କରିବା ଏଥେନ୍‌ସର କାଳ ହୋଇଛି । ସେ ଲେଖିଛନ୍ତି, "ନାଗରିକ-ମାନଙ୍କୁ ଏପରି ତାଲିମ୍ ଦିଆଯାଉଛି ଯେ ସେମାନେ ଔଦ୍ଧତ୍ୟକୁ ଗଣତାନ୍ତ୍ରିକ ଅଧିକାର,

ଅରାଜକତାକୁ ସ୍ୱାଧୀନତା, ନିର୍ଲ୍ଲଜ ପ୍ରଳାପକୁ ସମତା ଓ ଯାହା ଇଚ୍ଛା ତା କରିବାର ସୁଯୋଗକୁ ଆନନ୍ଦ ବୋଲି ମଣୁଛନ୍ତି ।" ଏଥେନ୍ସ କେବଳ ଗଣତନ୍ତ୍ରର ପରୀକ୍ଷା କରି ନ ଥିଲା, ଗଣତନ୍ତ୍ରର ଦୋଷଗୁଣ ବିଷୟରେ ମଧ୍ୟ ବେଶ୍ ସଚେତନ ହୋଇପାରିଥିଲା ।

ଆଇସୋକ୍ରେଟିଜ୍‌ଙ୍କ ରଚନା ଶୈଳୀର ପ୍ରଭାବ ବ୍ୟାପକ ଓ ସୁଦୂରପ୍ରସାରୀ । ସାଇପ୍ରସର ଏକାଙ୍ଗ ଚକ୍ରବର୍ତ୍ତୀ ଏଭାଗୋରାସ୍‌ଙ୍କର ଗୋଟିଏ ଜୀବନୀ ସେ ଲେଖିଥିଲେ । କାରଣ ଏଭାଗୋରାସ୍ ଜଣେ ପଣ୍ଡିତ ବ୍ୟକ୍ତି ଓ ଗ୍ରୀକ୍ ସଂସ୍କୃତିର ପୃଷ୍ଠପୋଷକ । ଆଇସୋକ୍ରେଟିଜ୍‌ଙ୍କୁ ଅନୁସରଣ କରି ଜେନୋଫୋନ୍ ( ସକ୍ରେଟିସ୍‌ଙ୍କ ଜୀବନୀ ଲେଖକ ) ଓ ଓ ଅନ୍ୟମାନେ ଜୀବନୀ ଲେଖା ଆରମ୍ଭ କରିଥିଲେ । ଆଇସୋକ୍ରେଟିଜ୍‌ଙ୍କ ନିର୍ଦ୍ଦେଶରେ ତାଙ୍କର ତିନିଜଣ ଶିଷ୍ୟ ଗ୍ରୀସ୍‌ର ଇତିହାସ ଓ ସଭ୍ୟତା ସମ୍ପର୍କରେ ତିନିଖଣ୍ଡ ମୂଲ୍ୟବାନ୍ ଗ୍ରନ୍ଥ ଲେଖିଛନ୍ତି । ଏହି ଗ୍ରନ୍ଥସମୂହ ତତ୍କାଳୀନ ଓ ପରବର୍ତ୍ତୀ ପଣ୍ଡିତମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ।

ମୋଟ ଉପରେ ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀରେ କବିତା ଓ ନାଟକର ମାନ ଅନେକ କମିଗଲା । ବରଂ ଏହି କାଳର ଗଦ୍ୟରଚନାକୁ ସନ୍ତୋଷଜନକ କୁହାଯିବ । କଳା ଓ ଦର୍ଶନ କ୍ଷେତ୍ରରେ ସ୍ରଷ୍ଟାମାନେ ଗ୍ରୀସ୍‌ର ପୂର୍ବ ଗୌରବକୁ ଅନେକାଂଶରେ ବଜାୟ ରଖି-ପାରିଥିଲେ । ଗ୍ରୀସ୍‌ରେ ଗୋଟାଏ ଖଣ୍ଡପ୍ରଳୟ ଘଟିଯିବା ସତ୍ତ୍ୱେ ଏହା ସମ୍ଭବ ହୋଇପାରିବା ସେ ଜାତିର ପ୍ରଚଣ୍ଡ ପ୍ରାଣଶକ୍ତିର ପରିଚୟ ଦିଏ । ଯୁଦ୍ଧର ଧକ୍କା ଓ ନାନା କାରଣରୁ ଗ୍ରୀକ୍ କଳାକାରମାନେ ପରମ୍ପରା, ରାଷ୍ଟ୍ର ଓ ଧର୍ମ ପ୍ରତି ଆନୁଗତ୍ୟରୁ ଅନେକାଂଶରେ ମୁକ୍ତ ହୋଇ ନୂଆ ଦିଗରେ ଗତି କଲେ ।

**ଚିତ୍ରକଳା :**

ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀରେ ଚିତ୍ରକଳାର ବିଶେଷ ଉନ୍ନତି ଘଟିଥିଲା । ପୂର୍ବରୁ ଚିତ୍ରକଳା ଏକ ଗୌଣକଳାର ଆସନରେ ଥିଲା । ଅଟ୍ଟାଳିକା ଓ ମନ୍ଦିର ଗାତ୍ରକୁ ସୁନ୍ଦର ଭାବେ ସଜାଇବା ମଧ୍ୟରେ ଏହା ଥିଲା ସୀମାବଦ୍ଧ । ଏହି ଶତାବ୍ଦୀରେ ଅନେକ ବଡ଼ ଚିତ୍ରକର ଜନ୍ମ ହୋଇ ଚିତ୍ରକଳାର ଗୌରବମୟ ଅଧ୍ୟାୟ ସୃଷ୍ଟି କଲେ । କସ୍ ଦ୍ୱୀପର

ଆପେଲିଜ୍ ଓ ରୋଡ଼ିଜ୍‌ର ପ୍ରୋଟୋଜେନିଜ୍ ଖ୍ରୀ.ପୂ ୪ର୍ଥ ଶତାବ୍ଦୀର ଦୁଇଜଣ ମହାନ୍ ଚିତ୍ରକର ।

ଆପେଲିଜ୍ ପାମ୍ଫିଲସ୍‌ଙ୍କ ଶିଷ୍ୟ । ବାରବର୍ଷ ତାଲିମ୍ ନେବାକୁ ପ୍ରସ୍ତୁତ ନ ଥିବା କୌଣସି ଶିଷ୍ୟଙ୍କୁ ପାମ୍ଫିଲସ୍ ଗ୍ରହଣ କରୁ ନ ଥିଲେ । ଏବଂ ଏଥିପାଇଁ ତାଙ୍କର ଦକ୍ଷିଣା ଥିଲା ଆଧୁନିକ ମୁଦ୍ରା ହିସାବରେ ଛଅ ହଜାର ଡଲାର୍ । ପାମ୍ଫିଲସ୍ ଚିତ୍ରକଳାକୁ ଏକ ସମ୍ମାନ-ଜନକ ଆସନକୁ ନେଇ ପାରିଥିଲେ । ତାଙ୍କର ସୁଯୋଗ୍ୟ ଶିଷ୍ୟ ଆପେଲିଜ୍‌ଙ୍କ ବେଳକୁ ଚିତ୍ରକଳା ଖୁବ୍ ଲୋକପ୍ରିୟ ହୋଇପାରିଥିଲା । ଆପେଲିଜ୍‌ଙ୍କ ଚିତ୍ରର ଏତେ ବେଶୀ ଚାହିଦା ଥିଲା ଯେ ତାଙ୍କର ଗୋଟିଏ ଚିତ୍ରର ମୂଲ୍ୟ ଦେବା ପାଇଁ ଗୋଟିଏ ଗୋଟିଏ ନଗରର ରାଜକୋଷ ଶୂନ୍ୟ ହୋଇଯାଉଥିଲା ।

ଫେନିଳ ସମୁଦ୍ର ଭିତରୁ ଉଠି ଆସୁଥିବା ଆଫ୍ରୋଡାଇଟ୍‌ଙ୍କର ଗୋଟିଏ ଚିତ୍ର ଆପେଲିଜ୍ ଆଙ୍କିଥିଲେ । ଚିତ୍ରଜଗତରେ ଏହାର ସ୍ଥାନ ଅତୁଳନୀୟ । ଗ୍ରୀସ୍‌ର ଉର୍ବଶୀ ଏବଂ ସୌନ୍ଦର୍ଯ୍ୟ ପ୍ରାକ୍‌ସିଲିଟୀଜ୍‌ଙ୍କ ଶିଳ୍ପୀ-ଚକ୍ଷୁର ଜ୍ୟୋତି ଫ୍ରାନିଙ୍କୁ ମଡେଲ୍ କରି ଆପେଲିଜ୍ ଏହି ଚିତ୍ର ଅଙ୍କନ କରିଥିଲେ ।

ଆପେଲିଜ୍ ଥିଲେ ଆଲେକ୍‌ଜାଣ୍ଡ୍ରର୍‌ଙ୍କର ପ୍ରିୟ ଚିତ୍ରକର । ତାଙ୍କର ଜଣେ ଅପୂର୍ବ ସୁନ୍ଦରୀ ପ୍ରେୟସୀର ଚିତ୍ର ଆଙ୍କିବାକୁ ଆଲେକ୍‌ଜାଣ୍ଡ୍ର ଥରେ ଆପେଲିଜ୍‌ଙ୍କୁ ବରାଦ୍ କଲେ । ଚିତ୍ରକର ଏହି ରୂପସୀର ପ୍ରେମରେ ପଡ଼ିଗଲେ । କଥାଟା ଆଲେକ୍‌ଜାଣ୍ଡ୍ର ଜାଣିପାରି ସେହି ରୂପସୀଙ୍କୁ ଆପେଲିଜ୍‌ଙ୍କ ହାତରେ ଅର୍ପଣ କଲେ । ତାଙ୍କର ଯେ ସମ୍ରାଟର ହୃଦୟ !

ଆପେଲିଜ୍‌ଙ୍କ ଷ୍ଟୁଡ଼ିଓ ବୁଲି ଦେଖିବାକୁ ଆଲେକ୍‌ଜାଣ୍ଡ୍ରର୍‌ଙ୍କର ମନ ହେଲା । ନିର୍ଧାର୍ଯ୍ୟ ଦିନ ସେ ଆସି ପହଞ୍ଚିଲେ । ମହାମାନ୍ୟ ଅତିଥିଙ୍କୁ ଚିତ୍ରକର ପାଛୋଟି ନେଲାବେଳେ ଚୁପ୍ କରି ଜଣାଇଦେଲେ, ଷ୍ଟୁଡ଼ିଓ ଭିତରେ ସମ୍ରାଟ ଚିତ୍ରକଳା ବ୍ୟତୀତ ଅନ୍ୟ ଯେ କୌଣସି ବିଷୟରେ କଥାବାର୍ତ୍ତା କରିବେ । କାରଣ ଚିତ୍ରକଳା ସମ୍ପର୍କରେ ସମ୍ରାଟଙ୍କ ଜ୍ଞାନ ଧରା ପଡ଼ିଗଲେ ରଙ୍ଗ ଘୋରିବା ଇତ୍ୟାଦି କାମରେ ନିଯୁକ୍ତ ଗୃହର ପିଲାମାନେ ହସି ପାରନ୍ତି ! ମୂର୍ଖ ବାଳକେ କ'ଣ ଜାଣନ୍ତି ସମ୍ରାଟ କିଏ ?

କେତେଗୁଡ଼ିଏ ଚିତ୍ର ଆଙ୍କିବାକୁ ଆଲେକ୍‌ଜାଣ୍ଡ୍ରର୍‌ଙ୍କ ଡାକରା ପାଇ ଆପେଲିଜ୍ ଯାଇଥିଲେ । ଚିତ୍ରଗୁଡ଼ିକ ଅଙ୍କା ସରିବା ପରେ ଆଲେକ୍‌ଜାଣ୍ଡର୍ ଗୋଟି ଗୋଟି କରି ଦେଖୁଥାନ୍ତି । ସବୁ ସୁନ୍ଦର । ବାରବାର କହୁଛି ନାହିଁ । ତେବେ ଗୋଟିଏ ଚିତ୍ର ପାଖରେ ଆଲେକ୍‌ଜାଣ୍ଡର୍ ଅଟକି ଗଲେ । ସେଇଟି ତାଙ୍କର ଅତି ପ୍ରିୟ ଘୋଡ଼ା ବୁସିଫାଲସ୍‌ର ଚିତ୍ର । ବୁସିଫାଲସ୍ ଠିକ୍ ଅବିକଳ ହୋଇଛି ତ ? ଚିତ୍ରକରଙ୍କୁ ତାଙ୍କ ମନୋଭାବ ଜଣାଇଲେ । ଆପେଲିଜ୍ କହିଲେ, ବୁସିଫାଲସ୍‌କୁ ପାଖକୁ ଅଣାଯାଉ । ସମ୍ରାଟ ଓ ଅନ୍ୟମାନେ ତା ସହିତ ଚିତ୍ରକୁ ମିଳେଇ ଦେଖନ୍ତୁ । ସେଇୟା ହେଲା । ମାତ୍ର ପାଖକୁ ଆସି ବୁସିଫାଲସ୍ ଚିତ୍ରକୁ ଅନେଇ ଚମକିଲା ଓ ହ୍ରେଷାରବ କଲା । ଏହା ଦେଖି ଆପେଲିଜ୍ ମନ୍ତବ୍ୟ କଲେ, "ମନେ-ହେଉଛି ସମ୍ରାଟଙ୍କ ଠାରୁ ସମ୍ରାଟଙ୍କ ଘୋଡ଼ାର କଳାଜ୍ଞାନ ଅଧିକ ।" ବିଶ୍ୱବିଜୟୀ ସମ୍ରାଟଙ୍କ ସହିତ ଚିତ୍ରଜଗତର ସମ୍ରାଟଙ୍କର ସହଜ କଥାବାର୍ତ୍ତା !

ସମକାଳୀନ ଚିତ୍ରକରଙ୍କ ମଧ୍ୟରେ ରୋଡ଼ସ୍ ଦ୍ୱୀପର ପ୍ରୋଟୋଜିନିଜ୍ ଥିଲେ ଆପେଲିଜ୍‌ଙ୍କର ସବୁଠାରୁ ବଡ଼ ପ୍ରତିଦ୍ୱନ୍ଦ୍ୱୀ । ଆଲେକ୍‌ଜାଣ୍ଡର୍‌ଙ୍କ ପରବର୍ତ୍ତୀ ମାସେଡନିଆର ରାଜା ଡିମେଟ୍ରିଅସ୍ ରୋଡ଼ସ୍ ଅଧିକାର କଲାବେଳେ ସବୁଲୋକ ପ୍ରାଣ ବିକଳରେ ପଳାଉଥିଲେ । ଅବିଚଳିତ ଭାବେ ନିଜ ଷ୍ଟୁଡ଼ିଓରେ କାମ କରୁଥିବା ପ୍ରୋଟୋଜିନିଜ୍ ଡିମେଟ୍ରିଅସ୍‌ଙ୍କ ଡାକରା ପାଇ ଗଲେ । ସେ କାହିଁକି ପଳାୟନ କଲେ ନାହିଁ ବୋଲି ରାଜା ପଚାରିଲେ । ଚିତ୍ରକର ଉତ୍ତର ଦେଲେ, "ମୁଁ ଜାଣେ ଆପଣ ରୋଡ଼ସ୍‌ବାସୀଙ୍କ ସହିତ ଯୁଦ୍ଧ କରୁଛନ୍ତି, କଳା ସହିତ ନୁହେଁ ।" ଚିତ୍ରକରଙ୍କର କେହି ଯେପରି କୌଣସି କ୍ଷତି ନ କରନ୍ତି ସେଥିପାଇଁ ଡିମେଟ୍ରିଅସ୍ ଜଗୁଆଳି ନିଯୁକ୍ତ କରି ଦେଇଥିଲେ । ସେ ଜଣେ କଳାପ୍ରିୟ ରାଜା କହିବା ବାହୁଲ୍ୟ ମାତ୍ର । କାଳେ ପ୍ରୋଟୋଜିନିଜ୍‌ଙ୍କର ଗୋଟିଏ ଚିତ୍ର ନଷ୍ଟ ହୋଇଯିବ, ସେଇ ଭୟରେ ଡିମେଟ୍ରିଅସ୍ ପ୍ରୋଟୋଜିନିଜ୍‌ଙ୍କ ସହରରେ ନିଆଁ ନ ଲଗାଇବାକୁ ତାଙ୍କ ସୈନ୍ୟଙ୍କୁ କଡ଼ା ନିର୍ଦ୍ଦେଶ ଦେଇଥିଲେ । ଯେଉଁ ଚିତ୍ରଟି ସେ ଦେଖିବାକୁ ଏତେ ଆଗ୍ରହୀ ଥିଲେ, ସେଇଟି ହେଉଛି ରୋଡ଼ସ୍‌ର ପ୍ରତିଷ୍ଠାତା ଇଆଲିଅସ୍‌ଙ୍କ ଚିତ୍ର । ପ୍ରୋଟୋଜିନିଜ୍‌ଙ୍କର ସବୁଠାରୁ ଶ୍ରେଷ୍ଠ ଓ ବିଖ୍ୟାତ ଚିତ୍ର ଏଇଟି । ଚାରି ପରସ୍ତ ରଙ୍ଗ ଦେଇ ସେ ଇଆଲିଅସ୍‌ଙ୍କ ଚିତ୍ର ଆଙ୍କିଥିଲେ । ଉଦ୍ଦେଶ୍ୟ ପରସ୍ତେ ରଙ୍ଗ ଛାଡ଼ିଗଲେ ମଧ୍ୟ ଚିତ୍ର ଦୀର୍ଘକାଳ ଅନ୍ତେ ନୂଆ ଦିଶୁଥିବ । ଏହି ଚିତ୍ରଟି ଆଙ୍କିଲାବେଳେ ଇଆଲିଅସ୍‌ଙ୍କ କୁକୁର ପାଟିର ଫେଣକୁ ଜୀବନ୍ତ ଭାବେ ଫୁଟାଇବାର

ବାରମ୍ବାର ଉଦ୍ୟମ ଚିତ୍ରକରଙ୍କର ବିଫଳ ହୋଇଥିଲା । ବିରକ୍ତ ହୋଇ ପ୍ରୋଟୋଜିନାଜ୍ ଗୋଟିଏ ସ୍ପଞ୍ଜ ଉଠାଇ ଆଣି ଚିତ୍ର ଉପରକୁ ଫିଙ୍ଗିଲେ । ଯାଉ ସେଇଟା ଚୁଲିକି ! ମାତ୍ର ଅଦ୍ଭୁତ କଥା, ସ୍ପଞ୍ଜଟି ଠିକ୍ ଜାଗାରେ ବାଜିଲା ଓ ଧକୋଉଥିବା କୁକୁର ପାଟି ଯେପରି ଫେଣାଏ, ଚିତ୍ର କୁକୁର ମୁହଁରୁ ସ୍ପଞ୍ଜରୁ ରଙ୍ଗ ଲାଗି ଅବିକଳ ସେହିପରି ଦିଶିଲା !

ଆପେଲିଜ୍ଙ୍କ ପାଖରେ ଖବର ପହଞ୍ଚିଲା ଯେ, ପ୍ରୋଟୋଜିନାଜ୍ ବଡ଼ ଅଭାବରେ ଚଳୁଛନ୍ତି । କିଛି ଗୋଟାଏ ବ୍ୟବସ୍ଥା କରିବାକୁ ସେ ରୋଡ଼ସ୍ ଯାତ୍ରା କଲେ । ରୋଡ଼ସ୍ ଦ୍ୱୀପରେ ଓହ୍ଲାଇ ସେ ପ୍ରୋଟୋଜିନାଜ୍ଙ୍କ ଷ୍ଟୁଡ଼ିଓରେ ପହଞ୍ଚି ଦେଖନ୍ତି ତ ଚିତ୍ରକର ନାହାନ୍ତି । ଗୋଟିଏ ବୁଢ଼ୀ ଘର ଜଗିଛି । ସେ ଅଚିହ୍ନା ଆଗନ୍ତୁକଙ୍କୁ ନାମ ପଚାରିଲା । କିଛି ନ କହି ଆପେଲିଜ୍ ତୁଳୀଟିଏ ଉଠାଇ ଆଣିଲେ ଓ ଗୋଟିଏ ଚିତ୍ରଫଳକ ଉପରେ ସରୁ ରେଖାଟିଏ ଟାଣିଦେଲେ । ଚିତ୍ର ଫିତ୍ର ନୁହେଁ, ଖାଲି ରେଖାଟିଏ । ହେଲେ ଓସ୍ତାଦ୍ ହାତରୁ ବାହାରିଛି ତ ! ପ୍ରୋଟୋଜିନାଜ୍ ଫେରି ଆସିଲା ପରେ ଚିତ୍ରଫଳକକୁ ଚାହିଁ ସ୍ତବ୍ଧ ହୋଇଗଲେ । ଆପେଲିଜ୍ ରୋଡ଼ସ୍‌ରେ ଆସି ପହଞ୍ଚିଛନ୍ତି ନିଶ୍ଚୟ ! ସେଇ ରେଖାରୁ ତାଙ୍କୁ ଠିକ୍ ସମ୍ବାଦ ମିଳିଗଲା । ପ୍ରୋଟୋଜିନାଜ୍ ତୁଳୀ ଧରିଲେ ଓ ଆପେଲିଜ୍ଙ୍କ ରେଖା ପାଖକୁ ଲାଗି ସୂକ୍ଷ୍ମତର ରେଖାଟିଏ ନିଜେ ଆଙ୍କିଦେଲେ । ପୂର୍ବର ଆଗନ୍ତୁକ ପୁଣି ଆସିଲେ ତାଙ୍କୁ ଚିତ୍ରଫଳକଟି ଦେଖାଇବାକୁ, ବୁଢ଼ୀକୁ ନିର୍ଦ୍ଦେଶ ଦେଇ ସେ ଷ୍ଟୁଡ଼ିଓ ଛାଡ଼ିଲେ ।

ଆପେଲିଜ୍ ଦ୍ୱିତୀୟବାର ଆସିଲେ ଓ ଚିତ୍ରଫଳକକୁ ଦେଖିଲେ । ତା ପରେ ଟିକିଏ ରଙ୍ଗ ତୁଳୀ ଉଠାଇ ଆଣି ଦୁଇ ରେଖା ମଝିରେ ଗୋଟିଏ ଅତି ସରୁରେଖା ଟାଣି-ଦେଲେ । ଯଥା ସମୟରେ ପ୍ରୋଟୋଜିନାଜ୍ ଫେରିଲେ । ମନ ତ ଯାଇ ଚିତ୍ରଫଳକ ପାଖରେ । ତାକୁ ଚାହିଁଦେବା ମାତ୍ରେ ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । କେଉଁ ଯାଦୁକର-ଶିଳ୍ପୀ ହାତର ଏଡ଼େ ସୂକ୍ଷ୍ମରେଖା ! ପ୍ରୋଟୋଜିନାଜ୍ ପାଗଳଙ୍କ ପରି ସମୁଦ୍ର ଆଡ଼କୁ ଧାଇଁଲେ । ବନ୍ଦରରେ ଦୁହିଁଙ୍କର ଭେଟ ହେଲା । ଦୁଇ କଳାକାରଙ୍କର ଗାଢ଼ ଆଲିଙ୍ଗନ ଭିତରେ ଗ୍ରେଟିଆ ଅହଙ୍କାର ଅସହାୟ ଭାବେ ମିଳାଇଗଲା ।

ଦୁଇ ଓସ୍ତାଦ୍ ଆର୍ଟିଷ୍ଟଙ୍କର ହାତଯଶର ନିଶାଣ ସ୍ୱରୂପ ଉକ୍ତ ଚିତ୍ରଫଳକଟିକୁ କଳାପ୍ରେମୀମାନେ ଦୀର୍ଘକାଳ ସାଇତି ରଖିଥିଲେ । ଜୁଲିଅସ୍ ସିଜର୍ ଗ୍ରୀସ୍‌କୁ ଏହାକୁ ନିଜ

ପ୍ରାସାଦକୁ ନେଇ ଯାଇଥିଲେ । ଅଗ୍ନିକାଣ୍ଡରେ ସିଜର୍‌ଙ୍କ ପ୍ରାସାଦ ସହିତ ଏହି ଅମୂଲ୍ୟ ଫଳକଟି ଭସ୍ମ ହୋଇଗଲା ।

ଗ୍ରୀକ୍ ଜଗତରେ ପ୍ରୋଟୋଜେନୀଜ୍‌ଙ୍କର ପ୍ରତିଭାର ଉପଯୁକ୍ତ ପୂଜା ହୋଇନାହିଁ ବୋଲି ଆପେଲିଜ୍ ଅନୁଭବ କରୁଥାନ୍ତି । ପୁଣି ଏଡ଼େବଡ଼ କଳାକାର କାହିଁକି ଅର୍ଥାଭାବରେ ପଡ଼ିବେ ? କିଛି ଗୋଟାଏ କରିବାକୁ ହେବ । ପ୍ରୋଟୋଜେନୀଜ୍‌ଙ୍କର କେତେଗୁଡ଼ିଏ ଚିତ୍ର କିଣିବାକୁ ଆପେଲିଜ୍ ଇଚ୍ଛା ପ୍ରକାଶ କଲେ । ପ୍ରୋଟୋଜେନୀଜ୍ ସେଥିପାଇଁ କେତେ ବା ଅର୍ଥ ଦାବୀ କରନ୍ତେ ? ଯାହାକିଛି ଦେଲେ ଚଳିବ । ଆପେଲିଜ୍ ନିଜେ ଚିତ୍ରଗୁଡ଼ିକର ମୂଲ୍ୟ ସ୍ଥିର କଲେ । ଆଧୁନିକ ମୁଦ୍ରା ହିସାବରେ ତିନିଲକ୍ଷ ଡଲାର୍ ! ପ୍ରୋଟୋଜେନୀଜ୍‌ଙ୍କ ଚିତ୍ରସବୁ କିଣି ନେବା ପାଇଁ ଆପେଲିଜ୍ ଦର କଷାକଷି କରୁଛନ୍ତି ବୋଲି ରୋଡ଼ଜ୍‌ରେ ପ୍ରଚାର ହୋଇଗଲା । ପୁଣି ଗୁଜବ୍ ଉଠିଲା, ଚିତ୍ରତକ କିଣିନେଇ ସେଗୁଡ଼ିକ ନିଜର କୃତିତ୍ୱ ବୋଲି ବାହାଦୁରୀ ନେବା ଆପେଲିଜ୍‌ଙ୍କ ମତଲବ । ସ୍ୱୟଂ ଆପେଲିଜ୍ ଥିଲେ ଏହି ଗୁଜବ୍‌ର ସ୍ରଷ୍ଟା ! ଲୋକଙ୍କ ଭିତରେ କଥାଟା ଖେଳିଗଲା ପରେ ଆପେଲିଜ୍‌ଙ୍କ ଉଦ୍ଦେଶ୍ୟ ପୂରଣ ହେଲା । ସେ ପର୍ଯ୍ୟନ୍ତ ପ୍ରୋଟୋଜେନୀଜ୍‌ଙ୍କ ପ୍ରତି ଉଦାସୀନ ଥିବା ରୋଡ଼ଜ୍‌ବାସୀ ଚାଲି ଉଠିଲେ । କେମନ୍ତ ! ଆମ ଆର୍ଟିଷ୍ଟଙ୍କ ଚିତ୍ରସବୁ ନେଇଯିବାକୁ ଏ ଭଦ୍ରଲୋକ ଆସିଛନ୍ତି ! ପୁଣି କି ପ୍ଲେଟଲୋକ ଦେଖ । ସବୁଗୁଡ଼ାକ ନିଜେ ଆଙ୍କିଛନ୍ତି ବୋଲି କହି ବୁଲିବେ ।

ଦିନେ ସକାଳୁ ପ୍ରୋଟୋଜେନୀଜ୍ ଦେଖନ୍ତି ତ ରୋଡ଼ଜ୍‌ବାସୀ ତାଙ୍କ ଦୁଆରେ ଭିଡ଼ କରିଛନ୍ତି । କଥା କ'ଣ ? ଆଉ କିଛି ନୁହେଁ, ଆପେଲିଜ୍ ଯେତିକି ଅର୍ଥ ଯାଚିଲେ ତା'ଠାରୁ ଅଧିକ ମୂଲ୍ୟରେ ଚିତ୍ରଗୁଡ଼ିକୁ କିଣିନେବା ଥିଲା ସେମାନଙ୍କ ଆଗମନର ଉଦ୍ଦେଶ୍ୟ । ସେଇଆ ହେଲା । ସର୍ବସାଧାରଣ ଦେଖିବାପାଇଁ ପ୍ରୋଟୋଜେନୀଜ୍‌ଙ୍କ ଚିତ୍ରଗୁଡ଼ିକ ଆର୍ଟ ଗ୍ୟାଲେରୀରେ ଅତି ଯତ୍ନରେ ରହିଲା ।

## ଭାସ୍କର୍ଯ୍ୟ :

ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀରେ ଗ୍ରୀକ୍ ଭାସ୍କର୍ଯ୍ୟ ଚରମ ବିକାଶ ଲାଭକଲା କହିଲେ ଅତ୍ୟୁକ୍ତି ହେବନାହିଁ । ଭାସ୍କର୍ଯ୍ୟ ପାଇଁ ଗ୍ରୀକ୍ ଶିଳ୍ପୀ ଜଗତ ବନ୍ଦନୀୟ । ସ୍ୱର୍ଣ୍ଣଯୁଗର ଶିଳ୍ପୀଙ୍କୁ

ଖ୍ରୀ. ପୂ ଚତୁର୍ଥ ଶତାବ୍ଦୀର ଶିଳ୍ପୀମାନେ ଟେକ୍କର ଦେଇଥିବା କେତେକ ଦୃଷ୍ଟିରୁ ଟେପି-ଯାଇଥିବା କିଛି କମ୍ ବିସ୍ମୟର କଥା ନୁହେଁ ।

ଖ୍ରୀ. ପୂ ଚତୁର୍ଥ ଶତାବ୍ଦୀରେ ଡୋରିକ୍ ଶିଳ୍ପ-ଶୈଳୀର ଆଦର କମିଗଲା । ଡୋରିକ୍ ଶୈଳୀର ସୌନ୍ଦର୍ଯ୍ୟ ତାର ସରଳତାରେ ନିହିତ । ମନ୍ଦିର ବା ଅଟ୍ଟାଳିକାରେ ଡୋରିକ୍ ସ୍ତମ୍ଭଗୁଡ଼ିକ ଯେପରି ବିଶାଳ ଓ ନିଦା, ସେହିପରି ଦୃଢ଼ । ଆୟୋନିୟ ଶିଳ୍ପ-ଶୈଳୀ ସୂକ୍ଷ୍ମ, ସାବଲୀଳ ଓ କମନୀୟ । ଆୟୋନିୟ-ସ୍ତମ୍ଭଗୁଡ଼ିକ ପତଳା ଓ ଡେଙ୍ଗା । ଏହି ଦୁଇ ନିର୍ମାଣ ଶୈଳୀର ଟେକ୍ନିକାଲ୍ ଦିଗଗୁଡ଼ିକୁ ଆଲୋଚନା କରିବା ଆମ ପକ୍ଷରେ ସମ୍ଭବ ନୁହେଁ । ଡୋରିକ୍ ଶୈଳୀ ନର୍ଡ଼ିକ (Nordic), ଆୟୋନିୟ ଶୈଳୀ ଓରିଏଣ୍ଟାଲ୍ । ଖ୍ରୀ. ପୂ ଷଷ୍ଠ ଶତାବ୍ଦୀରେ ଗ୍ରୀସ୍‌ର ପ୍ରଧାନ ଭୂଖଣ୍ଡରେ ଡୋରିକ୍ ଶୈଳୀ ପ୍ରଚଳିତ ଥିଲା । ଇଜିଆନ୍ ଉପକୂଳ ଓ ଏସୀୟ ଗ୍ରୀକ୍‌ନଗରଗୁଡ଼ିକରେ ଆୟୋନିୟ ଶୈଳୀ ଆଦୃତ ହେଉଥିଲା । ପାର୍ଶୀମାନେ ଆୟୋନିଆ ଅଧିକାର କରିନେବାରୁ ଏହି ଶତାବ୍ଦୀର ମଧ୍ୟଭାଗରେ ଶହ ଶହ ଆୟୋନିୟ କଳାକାର ଏଥେନ୍‌ସ ପଳାଇ ଆସିଥିଲେ । ଏହିପରି ଭାବେ ଏଥେନ୍‌ସରେ ଆୟୋନିୟ ଶିଳ୍ପ-ଶୈଳୀର ପ୍ରବେଶ ଓ ବିକାଶ ଘଟିଲା । ପେରିକ୍ଲିଜ୍‌ଙ୍କ ସମୟକୁ ଏଥେନ୍‌ସୀୟ ଶିଳ୍ପୀ ଆୟୋନିୟ ଶୈଳୀକୁ ସମ୍ପୂର୍ଣ୍ଣଭାବେ ଆୟତ୍ତ କରିପାରିଥିଲେ ।

ଡୋରିକ୍ ଓ ଆୟୋନିୟ ବ୍ୟତୀତ ଗ୍ରୀସ୍‌ରେ ଆଉ ଗୋଟିଏ ଶିଳ୍ପ-ଶୈଳୀର ଉଦ୍ଭବ ହୋଇଥିଲା । ସେଇଟି ହେଉଛି କରିନ୍ଥିଆନ୍ । ଖ୍ରୀ. ପୂ ପଞ୍ଚମ ଶତାବ୍ଦୀରେ ଜନ୍ମଲାଭ କରିଥିବା ଏହି ଶୈଳୀଟିର ବିଶେଷ ବ୍ୟବହାର ହୋଇନାହିଁ । ଜଣେ ଆୟୋନିୟ ଶିଳ୍ପୀ କରିନ୍ଥ ନଗରରେ ଗୋଟିଏ ମନ୍ଦିର ଗଢ଼ିଲାବେଳେ ଏହି ଶୈଳୀର ବ୍ୟବହାର କରିଥିଲେ । ତିନୋଟି ଶୈଳୀ ମଧ୍ୟରେ କରିନ୍ଥିଆନ୍ ଶୈଳୀଟି ସବୁଠାରୁ ଅଧିକ ଆଲଙ୍କାରିକ । ପରେ ରୋମାନ୍ ଶିଳ୍ପୀଙ୍କର ଏହି ଶୈଳୀ ବଡ଼ ପ୍ରିୟ ହୋଇଥିଲା । ଏଥେନ୍‌ସରେ ଖ୍ରୀ. ପୂ ଦ୍ୱିତୀୟ ଶତାବ୍ଦୀରେ ଆରମ୍ଭ ହୋଇ ଖ୍ରୀଷ୍ଟପର ଦ୍ୱିତୀୟ ଶତାବ୍ଦୀରେ ସମ୍ପୂର୍ଣ୍ଣ ହୋଇଥିବା ଜିଅସ୍‌ଙ୍କ ମନ୍ଦିର ଗ୍ରୀସ୍‌ରେ କରିନ୍ଥିଆନ୍ ଶୈଳୀର ଶ୍ରେଷ୍ଠ ନିଦର୍ଶନ ।

ଡୋରିଆନ୍ ଓ ଆୟୋନିୟ ଏହି ଦୁଇ ପ୍ରତିଦ୍ୱନ୍ଦ୍ୱୀ ଶିଳ୍ପ-ଶୈଳୀ ସମ୍ପର୍କରେ କୁହାଯାଇପାରେ ଯେ ଗୋଟିଏ ଶୈଳୀ ଗାଣିତିକ, ଅନ୍ୟଟି କବିତ୍ୱପୂର୍ଣ୍ଣ ।,ଗୋଟିଏ ପୌରୁଷକୁ

ଓ ଅନ୍ୟଟି ନାରୀତ୍ୱକୁ ଫୁଟାଇବା ପାଇଁ ଉପଯୁକ୍ତ । ଏପରି କହିବା ଦ୍ୱାରା ଶୌର୍ଯ୍ୟ, ବୀର୍ଯ୍ୟ, ତେଜ, ବଳଶାଳିତା ଇତ୍ୟାଦିକୁ ଆମେ ପୌରୁଷର ଅନ୍ତର୍ଗତ କରୁଛୁ । କୋମଳତା, ନମନୀୟତା, ଲାଳିତ୍ୟ ଇତ୍ୟାଦି ନାରୀପକ୍ଷରେ । କଳାକ୍ଷେତ୍ରରେ ଏପରି ଲିଙ୍ଗଭେଦ ସୃଷ୍ଟିକରିବା ହୁଏତ ଠିକ୍ ନୁହେଁ; କିନ୍ତୁ ଗ୍ରୀକ୍ ଶିଳ୍ପର ଇତିହାସ ଏହିପରି ଇଙ୍ଗିତ ଦିଏ । ଫିଡିଆସ୍ ଡୋରିକ୍ ଶିଳ୍ପ-ଶୈଳୀର ଶ୍ରେଷ୍ଠ ଶିଳ୍ପୀ । ତା ବୋଲି ତାଙ୍କର ମୂର୍ତ୍ତିରେ ଲାଳିତ୍ୟ ନାହିଁ ବୁଝିବା ଭୁଲ୍ । କିନ୍ତୁ ଫିଡିଆସ୍ ସମେତ ଖ୍ରୀ· ପୂ ପଞ୍ଚମ ଶତାବ୍ଦୀର ଶିଳ୍ପୀମାନେ ଅପୂର୍ବ ପୁରୁଷ ମୂର୍ତ୍ତିମାନ ଗଢ଼ିଲେ । ବିଭିନ୍ନ ଭଙ୍ଗୀର ବ୍ୟାୟାମବୀର, ସେମାନଙ୍କର ବଳିଷ୍ଠ ଶରୀର—ମୋଟ ଉପରେ ପୁରୁଷର ସୌନ୍ଦର୍ଯ୍ୟକୁ ପ୍ରଥମେ ଗ୍ରୀକ୍‌ଶିଳ୍ପୀ ନିହାଣମୁନରେ ଫୁଟାଇଲେ । ଖ୍ରୀ. ପୂ ପଞ୍ଚମ ଶତାବ୍ଦୀର ପୁରୁଷ ମୂର୍ତ୍ତିମାନ ଉଲଗ୍ନ, ନାରୀମୂର୍ତ୍ତି ବସ୍ତ୍ରାବୃତ । ନାରୀମୂର୍ତ୍ତି ବସ୍ତ୍ରାବୃତ ହେବାର କାରଣ ନାରୀର ସୌନ୍ଦର୍ଯ୍ୟ ପ୍ରତି ଶିଳ୍ପୀ ଆକୃଷ୍ଟ ହୋଇ ନ ଥିଲେ ବା ତାର ଶରୀରର ସ୍ଥାପତ୍ୟ ପ୍ରତି ଧ୍ୟାନ ଦେଇ ନ ଥିଲେ । ଏହି ଶତାବ୍ଦୀରେ ନାରୀ ମୂର୍ତ୍ତିଙ୍କର ସଂଖ୍ୟାଥିଲା ମଧ୍ୟ ଅନେକ କମ୍ । ନାରୀର ତନୁଶ୍ରୀ ଓ ରୂପମାଧୁରୀ ପ୍ରତି ଖ୍ରୀ. ପୂ ଚତୁର୍ଥ ଶତାବ୍ଦୀର ଶିଳ୍ପୀମନ ଆକୃଷ୍ଟ ହେଲା । ଏହି ଶତାବ୍ଦୀରେ ଚିତ୍ର ଓ ମୂର୍ତ୍ତିରେ ନାରୀ ହେଲେ ବିବସ୍ତ୍ରା, ପୁରୁଷ ବସ୍ତ୍ରାବୃତ !

ବଳିଷ୍ଠ ଯୁବକଙ୍କର ଉଲଗ୍ନ ଶରୀର ଅନୁଧ୍ୟାନ କରିବା ପାଇଁ ଗ୍ରୀକ୍-ଶିଳ୍ପୀ ବ୍ୟାୟାମାଗାର ଓ କ୍ରୀଡ଼ା ପ୍ରତିଯୋଗିତାରେ ସୁଯୋଗ ପାଉଥିଲେ ।

ଗ୍ରୀକ୍ କଳା କ୍ଷେତ୍ରରେ ଏହା ଏକ ବଡ଼ ପରିବର୍ତ୍ତନ । ଗ୍ରୀକ୍-ଶିଳ୍ପୀ ନାରୀସୌନ୍ଦର୍ଯ୍ୟ ପ୍ରତି କାହିଁକି ଏତେ ବିଳମ୍ବରେ ଆକୃଷ୍ଟ ହେଲେ ତାହା ମଧ୍ୟ ଏକ ବିସ୍ମୟ । ପ୍ରାକ୍‌ସିଟିଲିଜ୍ ନାରୀ ସୌନ୍ଦର୍ଯ୍ୟର ମହାନ୍ ରୂପକାର । ସେ ଏଥେନ୍‌ସ୍‌ବାସୀ । ତାଙ୍କର ଜନ୍ମତାରିଖ ଠିକଣା ଭାବେ ଜଣାନାହିଁ । ତେବେ ଖ୍ରୀ. ପୂ ୩୫୦ ବେଳକୁ ପ୍ରାକ୍‌ସିଟିଲିଜ୍ ଜଣେ ଖ୍ୟାତିସମ୍ପନ୍ନ ଭାସ୍କର୍ଯ୍ୟ । ସେ ଓ ତାଙ୍କର ପ୍ରେମିକା ଫ୍ରାଇନଙ୍କ ସମ୍ପର୍କରେ ଆମେ ପୂର୍ବରୁ କହିଛୁ । ପ୍ରାକ୍‌ସିଟିଲିଜ୍‌ଙ୍କ ପୂର୍ବରୁ ଗ୍ରୀକ୍ ଜାତି ବିଭିନ୍ନ କ୍ଷେତ୍ରରେ ଜଗତକୁ କେତେ ବିପୁଳ ଦାନ ନ ଦେଇଛି ! ନାରୀ ସୌନ୍ଦର୍ଯ୍ୟର ମହିମା ବୁଝିବାକୁ ସେ ଜାତିକୁ ଏତେକାଳ ଲାଗିଲା !

ଆମାଜନ୍‌ର ବୀର ରମଣୀଙ୍କ ସହିତ ଗ୍ରୀକ୍‌ମାନଙ୍କର ଯୁଦ୍ଧ ଲାଗି ରହିଥିଲା । ଆମାଜନ୍‌ର ନାରୀଗଣ ପୁରାଣର ବଂଶଧର ନୁହନ୍ତି ! ସେଇ ଦୀର୍ଘାଙ୍ଗୀ ଓ ହୃଷ୍ଟପୁଷ୍ଟ ନାରୀଜାତି

ପୁରୁଷକୁ ଉନ୍ମାଦିତ କଲାପରି ଅପୂର୍ବ ସୁନ୍ଦରୀ । ଟ୍ରୟ ଯୁଦ୍ଧରେ ଆମାଜନ୍ ଟ୍ରୟ ପକ୍ଷରେ ରହି ଲଢ଼ିଥିଲା । ସେମାନଙ୍କ ରାଣୀ ଯୁଦ୍ଧବିଦ୍ୟାରେ ଏପରି ପ୍ରବୀଣା ଯେ ମହାବୀର ଆକିଲ୍ସଙ୍କ ସହିତ ସେ ଦୀର୍ଘକାଳ ଲଢ଼ିଥିଲେ । ଶେଷରେ ଆକିଲ୍ସଙ୍କ ହାତରେ ତାଙ୍କର ପ୍ରାଣ ଗଲା । ମୃତା ରାଣୀଙ୍କୁ ନିରେଖି ଆକିଲ୍ସ ତାଙ୍କ ସୌନ୍ଦର୍ଯ୍ୟରେ ମୋହିତ ହେଲେ ଓ ଅନୁତାପରେ ବିଳାପ କରିବାକୁ ଲାଗିଲେ । ଆକିଲ୍ସଙ୍କ ବିଳାପର କୌଣସି ପ୍ରଭାବ କିନ୍ତୁ ପରବର୍ତ୍ତୀ କାଳର ଗ୍ରୀକ୍ଙ୍କ ଉପରେ ପଡ଼ି ନ ଥିଲା । କାରଣ ଆମାଜନ୍‌ର ନାରୀଙ୍କୁ ଦେଖି ସେମାନଙ୍କ ମନରେ ଆଉ କୌଣସି ଭାବ ନ ଆସି ଯୁଦ୍ଧ ଭାବଟି ଆସୁଥିଲା !

ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀର ଶିଳ୍ପୀମାନେ ଯେ କେବଳ ନାରୀମୂର୍ତ୍ତି ଗଢ଼ିଲେ ବା ଚିତ୍ର ଆଙ୍କିଲେ ତା ନୁହେଁ । ନାରୀ ପୁରୁଷ ନିର୍ବିଶେଷରେ ସେମାନଙ୍କ ମୂର୍ତ୍ତିରେ ଭାବ ଓ ବ୍ୟକ୍ତିତ୍ୱ ଫୁଟିଲା । ପୂର୍ବ ଶତାବ୍ଦୀର ଶିଳ୍ପୀ ମାନସରେ ମଣିଷର କେତୋଟି ଛାଞ୍ଚ ପ୍ରସ୍ତୁତ ହୋଇଥିଲା । ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀର ଶିଳ୍ପୀ ସେହି ସବୁ ଛାଞ୍ଚ ଭାଙ୍ଗି ପ୍ରତ୍ୟେକ ମୂର୍ତ୍ତିକୁ ବ୍ୟକ୍ତିତ୍ୱସମ୍ପନ୍ନ କରି ଗଢ଼ିଲା । ପୁରୁଷ ମୂର୍ତ୍ତିରେ ବଳିଷ୍ଠ ଶରୀର ଓ ଶକ୍ତ ମାଂସପେଶୀକୁ ପ୍ରାଧାନ୍ୟ ନ ଦେଇ ତାର ମୁଣ୍ଡ ଓ ମୁଖମଣ୍ଡଳକୁ ପ୍ରାଧାନ୍ୟ ଦିଆଗଲା । ଦୃପ୍ତ, ସାମରିକ ଠାଣି ଛାଡ଼ି କେତେକ ପୁରୁଷ ମୂର୍ତ୍ତି ସହଜ ଭାବେ ବାଡ଼ିଟିରେ ଭରା ଦେଇ ବା ଗଛକୁ ଆଉଜି ଛିଡ଼ାହେଲେ ।

ଗ୍ରୀକ୍ କଳାରେ ଏହି ଯୁଗ ପରିବର୍ତ୍ତନର ପ୍ରଧାନ ପୁରୋଧା ହେଉଛନ୍ତି ପ୍ରାକ୍ସିଟିଲିଜ୍ । ନିହାଣ ମୂନରେ ପଥରକୁ ଲଳିତ-ଲବଙ୍ଗ-ଲତା କରିବା ପାଇଁ ଗ୍ରୀକ୍ ଶିଳ୍ପୀର ସାଧନା ପ୍ରାକ୍ସିଟିଲିଜ୍ଙ୍କ ହାତରେ ପୂର୍ଣ୍ଣତା ଲାଭ କରିଥିଲା । ନାରୀର ଯେଉଁଭଳି କାନ୍ତକୋମଳ ମନୋହାରିଣୀ ମୂର୍ତ୍ତି କେତୋଟି ସେ ଗଢ଼ିଗଲେ ପାଶ୍ଚାତ୍ୟ ଭୂଖଣ୍ଡରେ ତାର ତୁଳନା ପୂର୍ବରୁ ନ ଥିଲା ବା ଭବିଷ୍ୟତରେ ହୋଇଛି କି ନାହିଁ ସନ୍ଦେହ । ସେ ମାର୍ବଲ୍ ତଥା ବ୍ରୋଞ୍ଜରେ ମୂର୍ତ୍ତି ଗଢ଼ୁଥିଲେ । ଗ୍ରୀସରେ ପ୍ରାକ୍ସିଟିଲିଜ୍ଙ୍କର ଏତେ ଚାହିଦା ଥିଲା ଯେ ତାଙ୍କ ଠାରୁ କାମ ନେବା ପାଇଁ ଗ୍ରୀକ୍ ନଗରଗୁଡ଼ିକ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହେଉଥିଲା । ଫ୍ରାନ ପ୍ରାକ୍ସିଟିଲିଜ୍ଙ୍କର ପ୍ରେରଣାଦାୟୀ । ଆଫ୍ରୋଡାଇଟ୍‌ଙ୍କର ଗୋଟିଏ ମୂର୍ତ୍ତି ଖୋଦେଇ କରିବାକୁ କସ୍ ନଗର ଶିଳ୍ପୀଙ୍କୁ ବରାଦ ଦେଇଥିଲା । ଫ୍ରାନଙ୍କ ସାହାଯ୍ୟରେ ସେ ଏହା ସମ୍ପୂର୍ଣ୍ଣ କଲେ । ମାତ୍ର ଦିଗମ୍ବର ସୌନ୍ଦର୍ଯ୍ୟର ଦେବୀଙ୍କୁ ରଖିବାକୁ କସ୍ ବାସୀଙ୍କର ଅପବାଦ ହେତୁ ହେଲା । ଏହା ଜାଣିପାରି ପ୍ରାକ୍ସିଟିଲିଜ୍ ସେମାନଙ୍କ ପାଇଁ ବସ୍ତ୍ର ପରିହିତା ଆଉ ଗୋଟିଏ ମୂର୍ତ୍ତି ଗଢ଼ି-

ଫେରଲେ । ପ୍ରଥମ ମୂର୍ତ୍ତିକୁ କସ୍‌ର ପଞ୍ଚୋର୍ଣ୍ଣୀ ଦ୍ୱୀପ ନଡସ୍ କିଣିନେଲା । ଏହି ମୂର୍ତ୍ତିକୁ ଦେଖିବାକୁ ସମଗ୍ର ଭୂମଧ୍ୟସାଗରୀୟ ଅଞ୍ଚଳରୁ ଦର୍ଶକମାନେ ନଡସ୍ ଯାଉଥିଲେ । ଆଫ୍ରୋଡାଇଟ୍‌ଙ୍କ ମୂର୍ତ୍ତି ପାଇଁ ଶ୍ରେଷ୍ଠ ଓ ଅପରିଚିତ ନଗର ନଡସ୍ ବିଖ୍ୟାତ ହୋଇଗଲା ।

ବଓସିଆର ଗୋଟିଏ ଶ୍ରେଷ୍ଠ ସହର ଥେସ୍‌ପିଆ ଫ୍ରାନଙ୍କର ଜନ୍ମସ୍ଥାନ । ତାଙ୍କ ପ୍ରତି ପ୍ରେମର ନିଦର୍ଶନ ସ୍ୱରୂପ ଫ୍ରାନ ଶିଳ୍ପୀଙ୍କୁ ଥେସ୍‌ପିଆରେ ରଖିବା ପାଇଁ ଗୋଟିଏ ମୂର୍ତ୍ତି ମାଗିଲେ । ଫ୍ରାନଙ୍କୁ ତାଙ୍କ ପସନ୍ଦ ମୁତାବକ ମୂର୍ତ୍ତି ବାଛି ନେବାକୁ ପ୍ରାକ୍‌ସିଟିଲିଜ୍ କହିଲେ । ଫ୍ରାନ ଦେଖିଲେ, ବାଛିବା କାମଟି ବଡ଼ କଷ୍ଟ । ତେଣେ ଗୋଟିଏ ବୁଦ୍ଧି ପାଞ୍ଚିଲେ । ଶିଳ୍ପୀଙ୍କ ପାଖରେ ଦଉଡ଼ି ପହଞ୍ଚି ଧଇଁସଇଁ ହୋଇ କହିଲେ ଯେ ତାଙ୍କର ଘର ପୋଡ଼ିଯାଉଛି । ପ୍ରାକ୍‌ସିଟିଲିଜ୍ ଅସ୍ତବ୍ୟସ୍ତ ହୋଇ କହିଲେ, "ଯଦି ମୋ 'ସାଟୀର୍' ବା 'ଏରସ୍' ପୋଡ଼ିଯାଏ, ତେବେ କଥା ସରିଲା ।" ଏମିତି କଥା ଶୁଣିବା ଥିଲା ଫ୍ରାନଙ୍କର ଉଦ୍ଦେଶ୍ୟ । ଗ୍ରୀସ୍‌ର କନ୍ଦର୍ପ ଦେବତା ଏରସ୍‌ଙ୍କ ମୂର୍ତ୍ତି ସେ ମାଗିନେଲେ ।

ସ୍କୋପାସ୍ ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀର ଅନ୍ୟତମ ମହାନ୍ ଭାସ୍କର୍ଯ୍ୟ । ସେ ପ୍ରାକ୍‌ସିଟିଲିଜ୍‌ଙ୍କ ସମକକ୍ଷ ଶିଳ୍ପୀ ବୋଲି କୁହାଯାଇ ପାରେ । ଫିଡ଼ିଆସ୍‌ଙ୍କଠାରୁ ମାଇକେଲାନ୍‌ଜେଲୋଙ୍କ ପର୍ଯ୍ୟନ୍ତ ପାଖ ଦୁଇହଜାର ବର୍ଷ ମଧ୍ୟରେ ପ୍ରାକ୍‌ସିଟିଲିଜ୍ ବା ସ୍କୋପାସ୍‌ଙ୍କ ଶିଳ୍ପୀ ଆଉ ଜନ୍ମ ହୋଇନାହାନ୍ତି । ତେବେ ସ୍କୋପାଜ୍‌ଙ୍କ ଦୁର୍ଭାଗ୍ୟ ଯେ ତାଙ୍କର ଅଧିକାଂଶ ମୂର୍ତ୍ତି ଭାଙ୍ଗି ହଜି ଯାଇଛି । ଟିଗିଆଠାରେ ସେ ଦେବୀ ଏଥେନାଙ୍କର ଗୋଟିଏ ମନ୍ଦିର ଗଢ଼ିଥିଲେ । ଏହି ମନ୍ଦିରରେ ଡୋରିକ୍, ଆୟୋନିୟ ଓ କରିନ୍ଥିଆନ୍—ତିନୋଟିଯାକ ଶିଳ୍ପୀ-ଶୈଳୀ ଦେଖିବାକୁ ମିଳେ । ଏଥେନା ମନ୍ଦିରର କେତେକ ଭଗ୍ନମୂର୍ତ୍ତି ସ୍କୋପାସ୍‌ଙ୍କର ବସ୍ତୁପୂର୍ଣ୍ଣର ପ୍ରତିଭାର ସାକ୍ଷ୍ୟ ବହନ୍ତି । ସ୍କୋପାସ୍ ଓ ପ୍ରାକ୍‌ସିଟିଲିଜ୍‌ଙ୍କ ମଧ୍ୟରେ ଗୋଟିଏ ବଡ଼ ପାର୍ଥକ୍ୟ ରହିଛି । ପ୍ରାକ୍‌ସିଟିଲିଜ୍ ସୌନ୍ଦର୍ଯ୍ୟର ପୂଜାରୀ, ଉଚ୍ଛଳ ଯୌବନର କବି । ମଣିଷର ଦୁଃଖ ଓ କାରୁଣ୍ୟ ସ୍କୋପାସ୍‌ଙ୍କୁ ଅଭିଭୂତ କରୁଥିଲା ।

ଅନ୍ୟତମ ମହାନ୍‌ଶିଳ୍ପୀ ସ୍କୋପାସ୍‌ଙ୍କ ଶିଳ୍ପୀ-ଦୃଷ୍ଟି ପ୍ରାକ୍‌ସିଟିଲିଜ୍‌ଙ୍କଠାରୁ ଭିନ୍ନ । ସେ ଜୀବନର କାରୁଣ୍ୟ ଓ ବିଷାଦର ଶିଳ୍ପୀ ।

ସିହ୍ୱଅନ୍ (କରିନ୍ଥ ଓ ଆର୍‌ଗସ୍ ନିକଟବର୍ତ୍ତୀ) ଲିସିପସ୍ ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀର ଅନ୍ୟତମ ବଶିଷ୍ଟ ଶିଳ୍ପୀ । ଜଣେ ସାଧାରଣ କାରିଗରରୁ ଉଠି ସେ ଜଣେ ବଡ଼ ଶିଳ୍ପୀ

ହୋଇପାରୁଥିଲେ । ପ୍ରତିକୃତି ନିର୍ମାଣ କରିବା ତାଙ୍କର ବୈଶିଷ୍ଟ୍ୟ । ଶିଳ୍ପୀ ଗଢ଼ିଥିବା ଆଲେକ୍‌ଜାଣ୍ଡ୍ରର୍‌ଙ୍କର ଗୋଟିଏ ପ୍ରତିକୃତି ଦେଖି ଆଲେକ୍‌ଜାଣ୍ଡର୍ ମୁଗ୍‌ଧ ହୋଇଥିଲେ । ଆପେଲିଜ୍‌ଙ୍କ ପରି ଲିସିପସ୍‌ଙ୍କୁ ଆଲେକ୍‌ଜାଣ୍ଡ୍ରର୍‌ଙ୍କ ଦରବାରରେ ରାଜଶିଳ୍ପୀର ମର୍ଯ୍ୟାଦା ମିଳିଥିଲା ।

ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀର କେତେକ ଅଜ୍ଞାତ ଶିଳ୍ପୀଙ୍କର ଅତି ଚମତ୍କାର ମୂର୍ତ୍ତି ସବୁ ଆବିଷ୍କୃତ ହୋଇଛି । ନିଡସ୍‌ଠାରେ ଊନବିଂଶ ଶତାବ୍ଦୀରେ ମିଳିଥିବା ଡିମିଟର୍‌ଙ୍କର ଗୋଟିଏ ମୂର୍ତ୍ତିକୁ କଳାପ୍ରେମୀମାନେ ଗ୍ରୀକ୍‌କଳାର ଶ୍ରେଷ୍ଠ ନିଦର୍ଶନ ମନେ କରନ୍ତି । କନ୍ୟା ପର୍ସିଫୋନ୍‌ଙ୍କ ପ୍ରତି ହୋଇଥିବା ବଳାତ୍କାର କଥା ଶୁଣି ହୋଇ ଡିମିଟର୍ ନୀରବରେ ଅଶ୍ରୁପାତ କରୁଛନ୍ତି । ଏହି ମୂର୍ତ୍ତିରେ ମାଆର ଦୁଃଖ ଓ ବିଷାଦର ଯେଉଁ ସଂଯତ ପରି-ପ୍ରକାଶ ସମ୍ଭବ ହୋଇଛି ତାହା ଅତୁଳନୀୟ । ଅନେକ ମହାନ୍ କଳାକାର ଓ ସେମାନଙ୍କ କୃତିକୁ ଯେ କାଳ ଲୁଚାଇ ଦେଇଛି ସେଥିରେ ସନ୍ଦେହ ନାହିଁ ।

ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀରେ ନିର୍ମିତ ହାଲିକାର୍ନାସସ୍‌ର ଅଧିପତି ମସୋଲସ୍‌ଙ୍କ ସମାଧି ମନ୍ଦିରଟି ସୁବିଖ୍ୟାତ । ସେହି ସମାଧି ମନ୍ଦିର ପ୍ରାଚୀନ ଜଗତର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଗୋଟିଏ । ମସୋଲସ୍‌ଙ୍କ ନାମାନୁସାରେ ମସୋଲିୟମ୍ (Mausoleum—ଏହାର ଅର୍ଥ ସମାଧି ମନ୍ଦିର) ଶବ୍ଦର ଉତ୍ପତ୍ତି । ପାରସ୍ୟ ସମ୍ରାଟଙ୍କ ଗଭର୍ଣ୍ଣରଭାବେ ମସୋଲସ୍ ଆୟୋନିଆ ଆସିଥିଲେ । ସେ ଜଣେ କଳାପ୍ରିୟ ବ୍ୟକ୍ତି । ନିଜ ରାଜ୍ୟ ଓ ଆୟୋନିଆର ଆଉ କେତେକ ଅଞ୍ଚଳରେ ସେ କଳାର ବିକାଶକୁ ଉତ୍ସାହିତ କରିଥିଲେ । ତାଙ୍କ ମୃତ୍ୟୁ ପରେ ରାଣୀଙ୍କ ନିମନ୍ତ୍ରଣପାଇ ମସୋଲସ୍‌ଙ୍କ ସମାଧି ମନ୍ଦିର ନିର୍ମାଣ କରିବାକୁ ଗ୍ରୀସ୍‌ର ସବୁ ବଡ଼ ଶିଳ୍ପୀ ଆସିଥିଲେ । ଧଳା ମାର୍ବଲ୍ ପଥରର ଏହି ଆୟତାକାର ମନ୍ଦିରର ଅଙ୍ଗସଜ୍ଜା କରିଥିଲେ ସ୍କୋପାସ୍, ପ୍ରାକ୍‌ସିଟିଲିଜ୍ ବ୍ରାଇଆକ୍‌ସିସ୍ ଓ ଟିମୋଥିଅସ୍‌ଙ୍କ ପରି ମହାନ୍ ଶିଳ୍ପୀମାନେ । ମନ୍ଦିର ଭିତରେ ସୁନ୍ଦର ସୁନ୍ଦର ମୂର୍ତ୍ତି ଶୋଭା ପାଉଥିଲେ । ଭୂମିକମ୍ପରେ ଏହି ମନ୍ଦିରର ଖ୍ୟାତି ସମଗ୍ର ପାଶ୍ଚାତ୍ୟ ଭୂଖଣ୍ଡରେ ଖେଳି ଯାଇଥିଲା । ମସୋଲିୟମ୍‌ର ଭଗ୍ନାବଶେଷ ଭିତରୁ ଇଂରେଜମାନେ ଊନବିଂଶ ଶତାବ୍ଦୀରେ ମସୋଲସ୍‌ଙ୍କର ଗୋଟିଏ ଅକ୍ଷତ ମୂର୍ତ୍ତି ଉଦ୍ଧାର କରିଛନ୍ତି ।

ଇଫିସସ୍‌ରେ ଆର୍ଟିମିଜ୍‌ଙ୍କର ବୃହତ୍ ମନ୍ଦିରଟି ମଧ୍ୟ ପ୍ରାଚୀନ ଜଗତର ସପ୍ତାଶ୍ଚର୍ଯ୍ୟ ମଧ୍ୟରେ ଗଣ୍ୟ । ପ୍ରଥମ ମନ୍ଦିର ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ନିର୍ମିତ ହୋଇ କିଛି ବର୍ଷ ପରେ

କୌଣସି କାରଣରୁ ଧ୍ୱଂସ ପାଇଲା । ଆଲେକ୍‌ଜାଣ୍ଡର୍‌ଙ୍କ ଜନ୍ମବର୍ଷ ପୁଣି ଦ୍ୱିତୀୟ ମନ୍ଦିର ପୋଡ଼ିଯିବାରୁ ନଗରବାସୀ ତୃତୀୟଥର ପାଇଁ ମନ୍ଦିର ତୋଳା ଆରମ୍ଭ କଲେ । ମନ୍ଦିର ନିର୍ମାଣର ସମସ୍ତ ଖର୍ଚ୍ଚ ବହନ କରିବାକୁ ଆଲେକ୍‌ଜାଣ୍ଡର୍ ଆଗେଇ ଆସିଥିଲେ । ଗୋଟିଏ ସର୍ତ୍ତରେ ଅବଶ୍ୟ । ତାହା ହେଉଛି ନିର୍ମାତା ଭାବେ ତାଙ୍କ ନାମ ମନ୍ଦିର ଗାତ୍ରରେ ଲେଖାଯିବ । ଏହା ଏକ ଅସମ୍ମାନଜନକ ପ୍ରସ୍ତାବ । ତେବେ ନଗରବାସୀ ଚତୁରତାର ସହିତ ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ । ସେମାନେ ଦର୍ଶାଇଲେ, ଆଲେକ୍‌ଜାଣ୍ଡର୍ ନିଜେ ଜଣେ ଦେବତା । ଜଣେ ଦେବତା ଆଉ ଜଣଙ୍କ ପାଇଁ ମନ୍ଦିର ଗଢ଼ିବା ଶୋଭା ପାଇବ ନାହିଁ । ଆଲେକ୍‌ଜାଣ୍ଡର୍‌ଙ୍କର ପ୍ରିୟ ଶିଳ୍ପୀ ଡିନୋକ୍ରେଟିଜ୍ ଏହି ମନ୍ଦିରର ନକ୍‌ସା ପ୍ରସ୍ତୁତ କରିଥିଲେ । ଏହା ଗ୍ରୀସ୍‌ର ବୃହତ୍ତମ ମନ୍ଦିର ଓ କାରୁକାର୍ଯ୍ୟ ଦୃଷ୍ଟିରୁ ଶ୍ରେଷ୍ଠ ମନ୍ଦିରଙ୍କ ମଧ୍ୟରେ ଗଣ୍ୟ ।

**ଦର୍ଶନ :**

ଯୁଦ୍ଧ ବିଧ୍ୱସ୍ତ ଗ୍ରୀସ୍‌ରେ କଳା ସୃଷ୍ଟିର ଉଚ୍ଚମାନ କିପରି ରହିପାରିଲା ତାହା ଏକ ବିସ୍ମୟ । ଯୁଦ୍ଧର ବିଶେଷ ପ୍ରଭାବ ପଡ଼ି ନ ଥିବା ନିଡ଼ସ୍, ହାଲିକାର୍ନାସସ୍ ଓ ଇଫିସସ୍ ପ୍ରଭୃତି ନଗରରେ ମହାନ୍ କଳାସୃଷ୍ଟିର ଉଦ୍ୟମ ଅବ୍ୟାହତ ରହିପାରିଥିଲା । କଳାର ମାନ ମୋଟା-ମୋଟି ଅତୁଟ ରହି ପାରିବାର ଆଉ କେତେକ ଜଣା ଅଜଣା ସୂକ୍ଷ୍ମ କାରଣ ଥାଇପାରେ । ମାତ୍ର ଖ୍ରୀ. ପୂ ଚତୁର୍ଥ ଶତାବ୍ଦୀରେ ଦର୍ଶନ ରାଜ୍ୟ ତଥାପି କମ୍ପମାନ ହେଉଥିବାର କାରଣଟି ସ୍ପଷ୍ଟ । ସକ୍ରେଟିସ୍ ଯେଉଁ ବିପୁଳ ଆଲୋଡ଼ନ ସୃଷ୍ଟି କଲେ ତାଙ୍କ ଅନ୍ତେ ତାହା ଥମିଯିବାର ନୁହେଁ । ସେ ଅନେକ ପ୍ରଶ୍ନ ଉତ୍‌ଥାପନ କଲେ କିନ୍ତୁ କୌଣସି ଗୋଟିକର ଉତ୍ତର ଦେଲେ ନାହିଁ । ସେହି ସବୁ ପ୍ରଶ୍ନର ମୁକାବିଲା କରିବାକୁ ଦାର୍ଶନିକମାନେ ବାହାରିଲେ ।

ଅଭ୍ରାନ୍ତ ଜ୍ଞାନଲାଭ ବଡ଼ କଠିନ ବୋଲି ସକ୍ରେଟିସ୍ ଚେତାଇ ଦେଇଗଲେ । ଏହାର ଦୁଇ ପ୍ରକାର ପ୍ରଭାବ ପଡ଼ିଲା । ପ୍ଲେଟୋ ଅଭ୍ରାନ୍ତ ଜ୍ଞାନଲାଭ ପାଇଁ କଠୋର ସାଧନା କଲେ । ତାଙ୍କ ପାଇଁ ଗଣିତ ହେଲା ଜ୍ଞାନର ଆଦର୍ଶ । ଫର୍ମମାନେ ଜ୍ଞାନର ବସ୍ତୁ । ପ୍ଲେଟୋଙ୍କ ନେତୃତ୍ୱରେ ଆକାଡେମି ଜ୍ଞାନ ସାଧନାର ପୀଠ ହେଲା । କିନ୍ତୁ ଜ୍ଞାନଲାଭ ଅସମ୍ଭବ ବୋଲି କେତେକ ଦାର୍ଶନିକ ଧରିନେଲେ । ସିରେନିକ୍‌ମାନେ କହିଲେ ଜ୍ଞାନର ପିଛା ପଡ଼ିବା ବୃଥା, ସୁଖର ସନ୍ଧାନ ଜୀବନର ଲକ୍ଷ୍ୟ । ସିନିକ୍ କହିଲା, ସନ୍ନ୍ୟାସ ଜୀବନ ବଞ୍ଚିବା ହେଉଛି ପ୍ରଜ୍ଞା ।

ସେଥିରୁ ଜ୍ଞାନ ମିଳିବ । ମେଗାରିକ୍ ସକ୍ରେଟିସ୍‌ଙ୍କୁ ଯୁକ୍ତିତର୍କର ଯାଦୁକର ବୋଲି ଧରିନେଲେ । ତା ପାଇଁ ତର୍କରେ ଧୂରନ୍ଧର ହେବା ଜ୍ଞାନ ହେଲା । ଇଉକ୍ଲିଡ଼ିଜ୍‌ଙ୍କ ମୃତ୍ୟୁ ପରେ ତାଙ୍କର ବିଚକ୍ଷଣ ଶିଷ୍ୟ ଷ୍ଟିଲ୍‌ପୋ (ଖ୍ରୀ· ପୂ ୩୮୦—୩୦୦) ମେଗାରିକ୍ ସ୍କୁଲର ନେତୃତ୍ୱ ନେଲେ । ଷ୍ଟିଲ୍‌ପୋ ଦର୍ଶାଇଲେ, ପ୍ରତ୍ୟେକ ଦର୍ଶନବାଦକୁ ଯୁକ୍ତିବଳରେ ଖଣ୍ଡନ କରିଯାଇପାରିବ । ତେଣୁ ଆଧ୍ୟାତ୍ମିକ ଚିନ୍ତାର ବିଶେଷ ମୂଲ୍ୟ ନାହିଁ । ଦାର୍ଶନିକ ଚିନ୍ତା ଅପେକ୍ଷା ପ୍ରାଜ୍ଞ ସରଳ ଜୀବନ ବଞ୍ଚିବାର ସାଧନାକୁ ଅଧିକ ଗୁରୁତ୍ୱ ଦେବା ଉଚିତ । ଧନ, ଯଶ ଓ ମାନ ପାଇବାର ଲୋଭରୁ ମୁକ୍ତ ହେବା ହିଁ ସରଳ ଜୀବନ । ମେଗାରିକ୍ ସ୍କୁଲ୍‌କୁ ଷ୍ଟିଲ୍‌ପୋ ସିନିକ୍‌ଙ୍କ ଆଡ଼କୁ ଟାଣିନେଲେ । ମେଗାରର ପତନ ପରେ ତାଙ୍କର କି କ୍ଷତି ଘଟିଛି ଓ ସେ କଅଣ ହରାଇଛନ୍ତି ବୋଲି ପଚରା ଯିବାରୁ ଅନାସକ୍ତ ଷ୍ଟିଲ୍‌ପୋ ଉତ୍ତର ଦେଇଥିଲେ, "ଜ୍ଞାନ ବ୍ୟତୀତ ମୋର କେବେ କିଛି ନ ଥିଲା ଓ ତାକୁ କେହି ନେଇ ପାରିବେ ନାହିଁ ।" ଷ୍ଟିଲ୍‌ପୋଙ୍କ ପରିଣତ ବୟସରେ ଶିଷ୍ୟମାନେ ତାଙ୍କୁ ଷ୍ଟୋଇକ୍ ଦର୍ଶନବାଦର ପ୍ରତିଷ୍ଠାତା ଭାବେ ଗ୍ରହଣ କରିଥିଲେ । ଇତିହାସ ଅବଶ୍ୟ ଏହି ଆସନ ଜିନୋଙ୍କୁ ଦେଇଛି । ତେବେ ଏ କଥାଟି ସତ୍ୟ ଯେ ପୂର୍ବ ଶତାବ୍ଦୀରୁ ଆରମ୍ଭ ହୋଇଥିବା ସିନିକ୍ ଓ ମେଗାରିକ୍ ଉପନଦୀ ଦୁଇଟି ଷ୍ଟୋଇକ୍ ମହାନଦୀରେ ମିଶିଗଲେ ।

> ଜ୍ଞାନ ଗୋଟିଏ ବଡ଼ ବ୍ୟାପକ ଓ ଗୋଳମାଳିଆ ଶବ୍ଦ । ସବୁ ମେଟାଫିଜିକାଲ୍ ଜ୍ଞାନର ଅସାରତା ଦେଖିବା ମଧ୍ୟ ଜ୍ଞାନ । ଷ୍ଟିଲ୍‌ପୋ ଏହିପରି ଜ୍ଞାନୀ ।

ଜିନୋ (ଖ୍ରୀ. ପୂ ୩୩୬—୨୬୪) ଷ୍ଟୋଇକ୍‌ଙ୍କର ଅବତାର ପୁରୁଷ (ଏକ୍ଲିଆଟିକ୍ ଦର୍ଶନର ବିଶିଷ୍ଟ ପ୍ରବକ୍ତା ଜିନୋ ଗ୍ରୀସ୍‌ର ଆଉଜଣେ ମହାନ୍ ବ୍ୟକ୍ତି) । ସାଇପ୍ରସ୍ ତାଙ୍କର ଜନ୍ମଭୂମି । ବାଣିଜ୍ୟ କରି ବୁଦ୍ଧିମାନ୍ ଜିନୋ ଅଳ୍ପକାଳ ମଧ୍ୟରେ ଧନୀ ହୋଇଗଲେ । ଥରେ ବାଣିଜ୍ୟ ଉଦ୍ଦେଶ୍ୟରେ ଏଥେନ୍‌ସ ଯିବା ବାଟରେ ଜିନୋଙ୍କ ଜାହାଜ ବୁଡ଼ିଗଲା । କୌଣସି ପ୍ରକାରେ ପ୍ରାଣ ବଞ୍ଚାଇ ଜିନୋ ଶୂନ୍ୟ ହସ୍ତରେ ଏଥେନ୍‌ସରେ ପହଞ୍ଚିଲେ । କିଛି କାମ ନ ଥିବାରୁ ଗୋଟିଏ ଗ୍ରନ୍ଥାଳୟରେ ପଶି ଜିନୋଫୋନ୍‌ଙ୍କ ମେମୋରେବିଲିଆ ଗ୍ରନ୍ଥଟି ପଢ଼ୁଥାନ୍ତି । ବହିଟିରେ ସକ୍ରେଟିସ୍‌ଙ୍କ ଚରିତ ତାଙ୍କୁ ମୁଗ୍ଧ କଲା । ଗ୍ରନ୍ଥାଳୟର ମାଲିକଙ୍କୁ ପଚାରିଲେ, "ସକ୍ରେଟିସ୍‌ଙ୍କ ପରି ମଣିଷ ଆଜିକାଲି କେଉଁଠି ମିଳିବେ ?" ସେତିକିବେଳେ ସିନିକ୍ ଦାର୍ଶନିକ କ୍ରେଟିଜ୍ ସେ ବାଟେ ଯାଉଥିଲେ । ଗ୍ରନ୍ଥାଳୟ ମାଲିକ କ୍ରେଟିଜ୍‌ଙ୍କୁ ଦେଖାଇ ଦେଇ ତାଙ୍କୁ

ଭେଟିବାକୁ ଜେନୋଙ୍କୁ ଉପଦେଶ ଦେଲେ । କ୍ରେଟିକ୍‌ଙ୍କ ସଂସ୍ପର୍ଶରେ ଆସି ଜେନୋ କହିଥିଲେ, "ଜାହାଜ ଡୁବିରୁ ମୋର ପ୍ରଚୁର ଲାଭ ହେଲା ।"

ଜେନୋଙ୍କ ପରି ଆରିଷ୍ଟିପସ୍‌ଙ୍କ ଜାହାଜ ଥରେ ସମୁଦ୍ରରେ ବୁଡ଼ି ଯାଇଥିଲା । ସମାନ ଘଟଣା, ଅଭିରୁଚି ଓ ମାନସିକ ଗଠନରେ ଅଲଗା ଦୁଇଜଣ ବ୍ୟକ୍ତି ସେଥିରୁ ଉଠାଇଥିବା ଫାଇଦା ତେଣୁ ଖୁବ୍ ଭିନ୍ନ ।

ପ୍ଲେଟୋଙ୍କୁ ଅନୁସରଣ କରି କ୍ସେନୋଫୋନ୍ କେତୋଟି ସକ୍ରେଟିସୀୟ ଡାଏଲଗ୍ ରଚନା କରିଥିଲେ । ଦର୍ଶନରେ କ୍ସେନୋଫୋନ୍‌ଙ୍କର ଗଭୀର ପ୍ରବେଶ ନ ଥିଲା । ତେବେ ସକ୍ରେଟିସ୍‌ଙ୍କ ଚରିତ ବର୍ଣ୍ଣିତ ହୋଇଥିବା ମେମୋରେବିଲିଆ ଏକ ଜଣାଶୁଣା ଗ୍ରନ୍ଥ ।

କ୍ରେଟିକ୍ ଜେନୋଙ୍କର ପ୍ରଥମ ଗୁରୁ କିନ୍ତୁ ଏକମାତ୍ର ଗୁରୁ ନୁହନ୍ତି । ସିନିକ୍‌ଙ୍କ ନିକଟରେ ଜେନୋ ଋଣ ସ୍ୱୀକାର କରନ୍ତି । ତାଙ୍କର ପ୍ରଥମ ଗ୍ରନ୍ଥ 'ରିପବ୍ଲିକ୍' (ପ୍ଲେଟୋଙ୍କ ବହିର ନାମାନୁସାରେ ସେ ଏହି ବହିରେ ଆଦର୍ଶ ସମାଜର ଚିତ୍ର ପ୍ରଦାନ କରିଛନ୍ତି)ରେ ଜେନୋ ଟଙ୍କା, ବ୍ୟକ୍ତିଗତ ସମ୍ପତ୍ତି, ବିବାହ, ଧର୍ମ ଓ ଆଇନ୍‌କୁ ଆଦର୍ଶ ସମାଜରୁ ବହିଷ୍କାର କରିଛନ୍ତି । ଏହା ପୁରାପୁରି ସିନିକ୍ ଦୃଷ୍ଟିଭଙ୍ଗୀ । ସିନିକ୍‌ଙ୍କର ଏବଂବିଧ ଆଦର୍ଶ ଆକାଶକୁସୁମ ଓ ସମାଜକୁ ସୁଧାରିବାର ବାସ୍ତବ ଚିନ୍ତା ସିନିକ୍‌ଙ୍କର ଅଭାବ ରହିଛି ଅନୁଭବ କରି ଜେନୋ କିଛିକାଳ ଜେନୋକ୍ରେଟିକ୍‌ଙ୍କ ଆକାଡେମିରେ ଅଧ୍ୟୟନ କରିଥିଲେ । ଜେନୋ ହେରାକ୍ଲିଟସ୍‌ଙ୍କର କେତେକ ଚିନ୍ତା (ମଣିଷର ଆତ୍ମା ହେଉଛି ସ୍ୱର୍ଗୀୟ ଅଗ୍ନି, ସୃଷ୍ଟିର ବିଧାନମାନ ଶାଶ୍ୱତ ଇତ୍ୟାଦି) ଦ୍ୱାରା ମଧ୍ୟ ପ୍ରଭାବିତ । ତେବେ ସକ୍ରେଟିସ୍‌ଙ୍କ ପାଖରେ ସେ ସବୁଠାରୁ ଅଧିକ ଋଣ ଓ ସକ୍ରେଟିସ୍ ହିଁ ଷ୍ଟୋଇକ୍‌ବାଦର ଉତ୍ସ ବୋଲି ଜେନୋ ଦାବୀ କରନ୍ତି ।

ବହୁବର୍ଷର ଗଭୀର ଅଧ୍ୟୟନ ଓ ଚିନ୍ତା ପରେ ଜେନୋ ଏଥେନ୍ସର ଷ୍ଟୋଆ ପୋଇକୋ ଠାରେ ତାଙ୍କର ଦର୍ଶନ 'ସ୍କୁଲ୍' ଖୋଲିଲେ । ଷ୍ଟୋଆ ଠାରେ ଚର୍ଚ୍ଚା ହେଉଥିବା ଦର୍ଶନବାଦ ଷ୍ଟୋଇକ୍ ନାମରେ ପରିଚିତ । ଚାଳିଶ ବର୍ଷ କାଳ ଧନୀ ଦରିଦ୍ର ନିର୍ବିଶେଷରେ ଜେନୋ ଶିଷ୍ୟମାନଙ୍କୁ ଶିକ୍ଷା ଦେଇଥିଲେ । କେବଳ ଜଣେ ଦର୍ଶନ ଗୁରୁ ଭାବେ ନୁହେଁ,

ନିରାଡମ୍ବର ଓ ସଂଯତ ଜୀବନଯାପନର ସାଧନାରୁ କଦାପି ବିଚ୍ୟୁତ ହୋଇ ନ ଥିବାରୁ ସାରା ଗ୍ରୀସରେ ଜେନୋଙ୍କର ଉଚ୍ଚ ସମ୍ମାନ ଥିଲା । ଆଧୁନିକ ସିନିକାଲ୍ ଦୃଷ୍ଟିକୋଣ ସମ୍ପର୍କରେ ଆମେ ଯେଉଁ ଧାରଣା ପୋଷଣ କରୁ ତାର ବଶବର୍ତ୍ତୀ ହୋଇ ପ୍ରାଚୀନ ଷ୍ଟୋଇକ୍‌ଙ୍କର ବିଚାର କରିବା ଗୋଟିଏ ବଡ଼ ଭୁଲ୍ । ସିନିକ୍‌ବାଦର ଅଭ୍ୟୁଦୟ ଠାରୁ ଗଣିଲେ ଷ୍ଟୋଇକ୍ ଭାବଧାରା ପାଞ୍ଚ ଶହ ବର୍ଷ ଗ୍ରୀସ୍‌ରେ ବଞ୍ଚିଥିଲା । ଏହାର ଗୁରୁତ୍ୱ ଦୃଷ୍ଟିରୁ ଆମେ ଷ୍ଟୋଇକ୍ ଦୃଷ୍ଟିଭଙ୍ଗୀ ଓ ଏପିକୁରସୀୟ ଆମୋଦବାଦ ସମ୍ପର୍କରେ ଆଉ ଏକ ସ୍ୱତନ୍ତ୍ର ଅଧ୍ୟାୟରେ ଆଲୋଚନା କରିବୁ ।

ଏପିକୁରସ୍‌ଙ୍କ ଆମୋଦବାଦ ଷ୍ଟୋଇକ୍‌ବାଦର ପ୍ରତିଦ୍ୱନ୍ଦ୍ୱୀ । ଏପିକୁରସ୍ (ଖ୍ରୀ. ପୂ. ୩୪୨—୨୭୦) ସାମୋସ୍ ଠାରେ ଜନ୍ମ ହୋଇଥିଲେ । ପ୍ରାପ୍ତବୟସ୍କ ନ ହେଉଣୁ ସେ ଦର୍ଶନ ପ୍ରେମରେ ପଡ଼ିଲେ । ଊଣେଇଶ ବର୍ଷ ବୟସରେ ଏଥେନ୍‌ସ ଆସି ପ୍ଲେଟୋଙ୍କ ଆକାଡେମିରେ ବର୍ଷେ କଟାଇଥିଲେ । ମାତ୍ର ପ୍ଲେଟୋ ବା ଆରିଷ୍ଟୋଟ୍‌ଲ୍‌ଙ୍କ ଅପେକ୍ଷା ଡେମୋକ୍ରିଟସ୍‌ଙ୍କ ପ୍ରତି ତାଙ୍କର ଅଧିକ ସମ୍ମାନ ଥିଲା । ଏପିକୁରସ୍ ବସ୍ତୁବାଦୀ ନୁହନ୍ତି ମାତ୍ର ତାଙ୍କର ଆମୋଦବାଦ ବସ୍ତୁବାଦ ଉପରେ ପ୍ରତିଷ୍ଠିତ । ସେ ସିରେନକ୍‌ଙ୍କର ଦର୍ଶନକୁ ଅଧିକ ମାର୍ଜିତ ଓ ଗମ୍ଭୀର କରାଇଲେ । ସିରେନକ୍‌ର ସୁଖ ମୁଖ୍ୟତଃ ଦୈହିକ ଆମୋଦ ଜନିତ । ଏପିକୁରସ୍ ଦୈହିକ ସୁଖକୁ ମାନିବା ସହିତ ଜ୍ଞାନ ସାଧନାର ସୁଖକୁ ମଧ୍ୟ ମୂଲ୍ୟ ଦେଲେ । ଶେଷୋକ୍ତ ସୁଖକୁ ମୂଲ୍ୟ ଦେଉଥିବାରୁ ସିରେନକ୍ ଅପେକ୍ଷା ଏପିକୁରସ୍ ସକ୍ରେଟିସ୍‌ଙ୍କର ନିକଟତର ।

ଏପିକୁରସ୍‌ଙ୍କର ଆମୋଦବାଦ ଲୋକଙ୍କୁ ଉଚ୍ଛୃଙ୍ଖଳ କରିବ ବୋଲି ଆଶଙ୍କା କରି ଷ୍ଟୋଇକ୍ ସଂଯତ ଜୀବନର ବନ୍ଦନା କଲା ।

ଏପିକୁରସ୍‌ଙ୍କର ବ୍ୟକ୍ତିତ୍ୱ ଓ ରୁଚି ତାଙ୍କ ଦର୍ଶନ ଅନୁଯାୟୀ । ଷ୍ଟୋଇକ୍ ନିଃସଙ୍ଗ । ଏକୁଟିଆ ବଞ୍ଚିବାର ମନୋବଳକୁ ସେ ସମ୍ମାନ କରେ । ଏପିକୁରସ୍ ବଡ଼ ବନ୍ଧୁବତ୍ସଳ । ଶିଷ୍ୟମାନେ ତାଙ୍କର ଅତି ପ୍ରିୟ । ଗୋଟାଏ ଗୋଟାଏ ନଗରର ସବୁ ଲୋକ ଏପିକୁରସ୍‌ଙ୍କର କିଣାକିଙ୍କର ହୋଇଯାଉଥିଲେ । ଖ୍ୟାତ ହେବା ପୂର୍ବରୁ ଏପିକୁରସ୍ ଛୋଟ ଛୋଟ ନଗରରେ ଯାଇ ରହୁଥିଲେ ଓ ତାଙ୍କ ଦର୍ଶନ ଲୋକଙ୍କୁ ବୁଝାଉଥିଲେ । ତାଙ୍କର କଥାବାର୍ତ୍ତା, ବ୍ୟବହାର ଓ ଚରିତ୍ର ଲାମ୍ପସାକସ୍ ନାମକ ଗୋଟିଏ ନଗରର ଅଧିବାସୀଙ୍କୁ ମୁଗ୍ଧ କଲା ।

ଏତେ ସୁନ୍ଦର ମଣିଷ ଓ ଏତେ ବଡ଼ ଜ୍ଞାନୀଙ୍କୁ ସେମାନଙ୍କର ଶ୍ରେଷ୍ଠ ନଗରରେ ଆବଦ୍ଧ କରି ରଖିବା ଖୁବ୍ ସ୍ୱାର୍ଥପରତା ହେବ ବୋଲି ବିଚାରି ନଗରବାସୀ ଏଥେନ୍ସରେ ଘରଦ୍ୱାର ଥିବା ଗୋଟିଏ ବଡ଼ ବଗିଚା କିଣି ଏପିକୁରସ୍‌ଙ୍କୁ ଉପହାର ଦେଇଥିଲେ । ସେଇଠି ଏପିକୁରସ୍ ଖୋଲିଲେ ଏକ ଆବାସିକ ବିଦ୍ୟାଳୟ । ପଇଁତିରିଶ ବର୍ଷ ବୟସରୁ ମୃତ୍ୟୁପର୍ଯ୍ୟନ୍ତ ସେହିଠାରେ ସେ ଆଗ୍ରହୀ ଶିଷ୍ୟମାନଙ୍କୁ ଦର୍ଶନ ଶିକ୍ଷା ଦେଉଥିଲେ ।

ଏପିକୁରସ୍‌ଙ୍କ ବନ ବିଦ୍ୟାଳୟକୁ ଲୋକେ କହୁଥିଲେ, 'ପ୍ରୀତିର ଉପନିବେଶ' । ଏହାର ପ୍ରବେଶ ଦ୍ୱାରରେ ଲେଖାଥିଲା, "ହେ ବନ୍ଧୁ ! ଏ ସ୍ଥାନରେ ଆପଣଙ୍କ ରହଣି ସୁଖକର ହେବ । କାରଣ ଏଠାରେ ସୁଖକୁ ସର୍ବୋଚ୍ଚ ମୂଲ୍ୟ ଦିଆଯାଏ ।"

ମଣିଷ ମନରୁ ଦେବତାଙ୍କ ପ୍ରତି ଅଯଥା ଭୟ ଦୂର କରିବାକୁ ଏପିକୁରସ୍ ଚେଷ୍ଟା କରିଥିଲେ । କାରଣ ଭୟଗ୍ରସ୍ତ ମଣିଷ ପକ୍ଷରେ ସୁଖ ଆସ୍ୱାଦନ କରିବା ସମ୍ଭବ ହୁଏ ନାହିଁ । ତେବେ ଭୟମୁକ୍ତ, ଆମୋଦ ଲୋଭୀ ମଣିଷ ଅବାଟକୁ ଯାଇପାରେ ଆଶଙ୍କା କରି ଏପିକୁରସ୍ ଶିଷ୍ୟମାନଙ୍କୁ ଉପଦେଶ ଦେଇଥିଲେ, "ମନେରଖ, ତମ ଉପରେ ଜଣେ ସର୍ବଦା ଆଖି ରଖିଛି ।" ସମ୍ମାନଜନକ ଜୀବନ ବଞ୍ଚିବାର ସୁଖ ପ୍ରତି ଏପିକୁରସ୍ ଦୃଷ୍ଟି ଆକର୍ଷଣ କରିଥିଲେ ।

ସାଂସାରିକ ଜଞ୍ଜାଳ ଭିତରୁ ଏପିକୁରସ୍ ଆପଣାକୁ ଯଥାସମ୍ଭବ ମୁକ୍ତ ରଖିଥିଲେ । ତାଙ୍କର ଖାଦ୍ୟପେୟ ମଧ୍ୟ ଥିଲା ବଡ଼ ସରଳ । ଏପିକୁରସ୍‌ଙ୍କ ଜୀବନଗ୍ରନ୍ଥର ଶେଷ ଅଧ୍ୟାୟରେ ତାଙ୍କ ଦର୍ଶନ ଜୀବନ୍ତ ହୋଇ ଫୁଟିଛି । ଶେଷ ଜୀବନରେ ପଥୁରି ରୋଗରେ ଏପିକୁରସ୍ ବଡ଼ ଯନ୍ତ୍ରଣା ଭୋଗୁଥାନ୍ତି । ସେହି ଯନ୍ତ୍ରଣା ଭିତରେ ମୃତ୍ୟୁଶଯ୍ୟାରେ ପଡ଼ି ରହି ବନ୍ଧୁ ଓ ଶିଷ୍ୟଙ୍କ ସହିତ ଅତୀତରେ ବିତାଇଥିବା ସୁଖକର ଦିନଗୁଡ଼ିକୁ ମନେ ପକାଇ ଏପିକୁରସ୍‌ଙ୍କୁ ବଡ଼ ସନ୍ତୋଷ ଲାଗୁଥିଲା । ମୃତ୍ୟୁଶଯ୍ୟାରୁ ଅନୁପସ୍ଥିତ ଶିଷ୍ୟମାନଙ୍କ ଉଦ୍ଦେଶ୍ୟରେ ସେ ଲେଖିଥିଲେ, "ଆଜି ମୁଁ ତୁମମାନଙ୍କ ପାଖକୁ ଲେଖି ପାରୁଥିବାରୁ ବଡ଼ ସନ୍ତୋଷ ଅନୁଭବ କରୁଛି । ଆଜିର ଦିନଟି ମୋ ଜୀବନର ଅନ୍ତିମ ଦିନ । ପଥୁରି ରୋଗ ଫଳରେ ଭିତରର ଯନ୍ତ୍ରଣା ଚରମ ସୀମାରେ ପହଞ୍ଚିଛି । କିନ୍ତୁ ତାରି ଭିତରେ ଆମମାନଙ୍କର ମିଳନ ଓ କଥାବାର୍ତ୍ତା ମନେ ପଡ଼ୁଥିବାରୁ ଆନନ୍ଦ ଲାଗୁଛି । ତମେ ସବୁ ମୋ ପ୍ରତି ଓ ଦର୍ଶନ ପ୍ରତି

ଯାଆବନ ଅନୁରକ୍ତ ରହିଛ । ତେଣୁ ଅଧିକା କ'ଣ ଲେଖିବି ? ତମମାନଙ୍କୁ ଶୋଭା ପାଇଲା ଭଳି ମେଟ୍ରୋଡରସ୍ ପିଲଙ୍କର ଯତ୍ନ ନେବ ।" ( ମେଟ୍ରୋଡରସ୍ ଏପିକୁରସ୍‌ଙ୍କର ପ୍ରଧାନ ଶିଷ୍ୟ) ।

ଏପିକୁରସ୍‌ଙ୍କର ଲେଖା ଓ ବାଣୀକୁ ତାଙ୍କର ହଜାର ହଜାର ଗୁଣମୁଗ୍ଧ ଶିଷ୍ୟ ଶିଷ୍ୟା କଣ୍ଠସ୍ଥ କରିଥିଲେ । ଗୁରୁଙ୍କ ମୃତ୍ୟୁ ପରେ ତାଙ୍କ ଦୃଷ୍ଟି ସେମାନଙ୍କ ଉପରେ ନିବଦ୍ଧ ଭାବି ଶିଷ୍ୟମାନେ ବଞ୍ଚିଥିଲେ ।

ଏପିକୁରସ୍‌ଙ୍କ ପରି ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ଜେନୋଙ୍କର ଦର୍ଶନ ତାଙ୍କ ଜୀବନର ଶେଷ ଅଧ୍ୟାୟରେ ହିଁ ସବୁଠାରୁ ଚମତ୍କାର ଭାବେ ଫୁଟିଛି । ବୀର ପରି ମୃତ୍ୟୁର ସମ୍ମୁଖୀନ ହେବାକୁ ଷ୍ଟୋଇକ୍ କହେ । ସେ ଆତ୍ମହତ୍ୟାକୁ ପାପ ବୋଲି ମାନେ ନା । ଶେଷଜୀବନରେ ସିନିକ୍ ଡାଇଓଜିନିଜ୍ କ୍ରମଶଃ ଖାଦ୍ୟ କମେଇ ସଚେତନ ଭାବେ ପ୍ରାଣ ବିସର୍ଜନ କରିଥିଲେ । ଆଉ ଜେନୋ ? ନବେ ବର୍ଷର ବୃଦ୍ଧ ଜେନୋ ଅଧ୍ୟାପନା ସାରି ଫେରିବା ବାଟରେ ଜୋର୍‌ରେ ପଡ଼ିଗଲେ । ତାଙ୍କର ଗୋଟିଏ ପାଦ ଆଙ୍ଗୁଠି ଭାଙ୍ଗିଗଲା । ସେହି ସ୍ଥାନରେ ପଡ଼ି ରହି ପର ପାରିର ଅଜ୍ଞାତ ରଜାଙ୍କୁ ଶୁଣେଇ କହିଲେ, "ମତେ ଏପରି କାହିଁକି ଡାକୁଛ ? ହଉ ଯାଉଛି ।" ତାତ୍ପର୍ଯ୍ୟ ହେଉଛି, 'ଠିକଏ ଇସାରାରେ ତ ମୁଁ ଚାଲିଯିବା ଲୋକ—ଏମିତି ଗୋଟାଏ କଡ଼ା ନୋଟିସ୍ କ'ଣ ?' ଜେନୋ ସେଇଠି ନିଜ ଗଳାକୁ ଚିପି ଧରି ପ୍ରାଣ ଛାଡ଼ିଲେ ।

ପ୍ଲେଟୋଙ୍କ ସମ୍ବନ୍ଧରେ ଆମେ ପୂର୍ବରୁ କିଛି ଆଲୋଚନା କରିଛୁ । ପ୍ଲେଟୋଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ଆକାଡେମିର ଶହ ଶହ ପ୍ରତିଭାବାନ୍ ଯୁବକ ଗୋଟିଏ ଦର୍ଶନଧାରାକୁ ଜୀବନର ଆଦର୍ଶରୂପେ ଗ୍ରହଣ କରିଥିଲେ । କେବଳ ଦର୍ଶନବାଦ ନୁହେଁ, ଜୀବନ ଯାପନର ଏକ ଆଦର୍ଶ ଭାବେ ଆମେ ଆମୋଦବାଦ, ଷ୍ଟୋଇକ୍‌ବାଦ, ପ୍ଲେଟୋନିଜିମ୍ ଓ ଆରିଷ୍ଟୋଟ୍‌ଲିୟ ଜୀବନଧାରା ସମ୍ବନ୍ଧରେ 'ଏକ ସ୍ୱତନ୍ତ୍ର ଅଧ୍ୟାୟରେ ଆମେ ଆଲୋଚନା କରିବୁ । ଏଠାରେ କେବଳ ଦାର୍ଶନିକ ଭାବେ ଆରିଷ୍ଟୋଟ୍‌ଲ୍‌ଙ୍କ ଭୂମିକା ସମ୍ପର୍କରେ କିଛି କୁହାଯାଉଛି ।

ଥ୍ରେସ୍‌ର ଷ୍ଟାଜିରସ୍ ନାମକ ସ୍ଥାନରେ ଆରିଷ୍ଟୋଟ୍‌ଲ୍ (ଖ୍ରୀ. ପୂ ୩୮୪—୩୨୨) ଜନ୍ମଲାଭ କରିଥିଲେ । ଆରିଷ୍ଟୋଟ୍‌ଲ୍‌ଙ୍କ ପିତା ସେ କାଳର ଜଣେ ବିଶିଷ୍ଟ ଚିକିତ୍ସକ । ସେ

ଥିଲେ ଫିଲିପ୍‌ଙ୍କ ପିତାଙ୍କର ରାଜବୈଦ୍ୟ । ଆରିଷ୍ଟୋଟଲ୍‌ କିଛିକାଳ ଫିଲିପ୍‌ଙ୍କ ବିଶ୍ୱବିଖ୍ୟାତ ପୁତ୍ର ଆଲେକଜାଣ୍ଡର୍‌ଙ୍କ ଗୃହଶିକ୍ଷକ ଥିଲେ । ପିତାଙ୍କଠାରୁ ଆରିଷ୍ଟୋଟଲ୍‌ ପାଇଥିଲେ ଗୋଟିଏ ବୈଜ୍ଞାନିକ ମନ । ଅଥଚ ବିଜ୍ଞାନବିରୋଧୀ ପ୍ଲେଟୋଙ୍କର ଶିଷ୍ୟ ହେବାପାଇଁ ତାଙ୍କର ଯୋଗ ଥିଲା । ଆକାଡେମିରେ ଅଧ୍ୟୟନ କରିବା ପାଇଁ ଆରିଷ୍ଟୋଟଲ୍‌ କୋଡ଼ିଏ ବର୍ଷ ବୟସରେ ଏଥେନ୍‌ସ ଯାଇଥିଲେ । ତା ପୂର୍ବରୁ ପିତାଙ୍କଠାରୁ ଶରୀର ବ୍ୟବଚ୍ଛେଦ ସମ୍ପର୍କରେ ସେ କିଛି ଶିକ୍ଷା ପାଇଥିଲେ । ପ୍ଲେଟୋ ବସ୍ତୁଜଗତକୁ ହେୟଜ୍ଞାନ କରୁଥିଲେ ଓ ବସ୍ତୁଜଗତ ସମ୍ବନ୍ଧରେ ତାଙ୍କର କୌଣସି ଅନୁସନ୍ଧିତ୍ସା ନ ଥିଲା । ବିଜ୍ଞାନଭିତ୍ତିବାଦୀ ଡିମୋକ୍ରିଟସଙ୍କ ପ୍ରତି ପ୍ଲେଟୋଙ୍କ ଘୃଣା ସୁବିଦିତ । ପ୍ଲେଟୋଙ୍କର ଗଣିତଜ୍ଞ-ବୈଜ୍ଞାନିକ ବନ୍ଧୁ ଆର୍କିଟାସ୍‌ ଓ ପରବର୍ତ୍ତୀ କାଳରେ ଜଣେ ମହାନ୍‌ ଗଣିତଜ୍ଞ ତଥା ଜ୍ୟୋତିର୍ବିଜ୍ଞାନୀ ଭାବେ ପରିଗଣିତ ତାଙ୍କର ଛାତ୍ର ଇଉଡୋକ୍‌ସସ୍‌ ମିଶି ଯନ୍ତ୍ରବିଜ୍ଞାନରେ କେତେକ ପରୀକ୍ଷା କରୁଥିବାର ସମ୍ବାଦ ପାଇ ପ୍ଲେଟୋ କ୍ରୋଧ ପ୍ରକାଶ କରିଥିଲେ । କହିବାର କଥା, ଏହିପରି ବିଜ୍ଞାନବିଦ୍ୱେଷୀ ଗୁରୁଙ୍କ ପାଖରେ ଆରିଷ୍ଟୋଟଲ୍‌ କୋଡ଼ିଏ ବର୍ଷ ଶିଷ୍ୟ ଭାବେ କଟାଇଲେ । ଏହାର ଫଳ ସ୍ୱରୂପ, ଆରିଷ୍ଟୋଟଲ୍‌ଙ୍କ ଭିତରେ ଥିବା ବିଜ୍ଞାନୀ ପ୍ଲେଟୋଙ୍କ ବିରୁଦ୍ଧରେ ସାରାଜୀବନ ବିଦ୍ରୋହ କରିଛି କିନ୍ତୁ ବିଜୟୀ ହୋଇପାରିନାହିଁ ।

> ପ୍ଲେଟୋଙ୍କ ପରି ପାଶ୍ଚାତ୍ୟ ଜଗତ ଉପରେ ଆରିଷ୍ଟୋଟଲ୍‌ଙ୍କ ପ୍ରଭାବ କଳନା କରିବା କଷ୍ଟକର । ୟୁରୋପରେ ରେନେସାଁ ଆସିବା ପାଇଁ ଆରିଷ୍ଟୋଟଲ୍‌ଙ୍କ ରଚନାବଳୀର ଉଲ୍ଲେଖଯୋଗ୍ୟ ଭୂମିକା ରହିଛି ।

ଆରିଷ୍ଟୋଟଲ୍‌ଙ୍କ ପ୍ରତିଭା ଓ ଅଧ୍ୟବସାୟ ଅତିଶୀଘ୍ର ପ୍ଲେଟୋଙ୍କ ଦୃଷ୍ଟିଆକର୍ଷଣ କରିଥିଲା । ଦୀର୍ଘ କୋଡ଼ିଏ ବର୍ଷ କାଳ ସେ ଆକାଡେମିରେ କେବଳ ଅଧ୍ୟୟନ କରିଥିଲେ ତା ନୁହେଁ, ଆରିଷ୍ଟୋଟଲ୍‌ ଜୀବବିଜ୍ଞାନରେ ଗବେଷଣାକୁ ଅନେକ ଦୂର ଆଗେଇ ନେଇଥିଲେ । ଏହା ବ୍ୟତୀତ ଆକାଡେମିରେ ସେ ବାଗ୍ମିତା ଶିକ୍ଷା ଦେଉଥିଲେ । ପ୍ଲେଟୋଙ୍କ ପରେ ତାଙ୍କର ଗଣିତ ଅନୁରାଗୀ ଶିଷ୍ୟ ସ୍ପିଉସିପସ୍‌ ଆକାଡେମିର ଅଧ୍ୟକ୍ଷ ହେବାରୁ ଅସନ୍ତୁଷ୍ଟ ଆରିଷ୍ଟୋଟଲ୍‌ ଆକାଡେମି ଛାଡ଼ିଲେ । ଆକାଡେମିରେ ଦର୍ଶନକୁ ଗଣିତରେ ପରିଣତ କରିବା ନିରବଚ୍ଛିନ୍ନ ଉଦ୍ୟମ ତାଙ୍କର ଆଉ ସହ୍ୟ ହେଲାନାହିଁ ।

ଆକାଡେମିରେ ହର୍ମିଆସ୍‌ ଥିଲେ ଆରିଷ୍ଟୋଟଲ୍‌ଙ୍କର ସହାଧ୍ୟାୟୀ । ଜଣେ ଦାସର ଆସନରୁ ଉଠି ସେ ଆର୍ଟାନିୟସ୍‌ର ରାଜା ହୋଇଥିଲେ । ତାଙ୍କର ନିମନ୍ତ୍ରଣ ରକ୍ଷା କରି

ଆରିଷ୍ଟୋଟଲ୍ ଆଟାର୍ନିୟସ୍ ଗଲେ ଓ ସେଠାରେ ହର୍ମିଆସ୍ଙ୍କ କନ୍ୟା ପିଥିଆସ୍ଙ୍କୁ ବିବାହ କରିଥିଲେ । ଗୋଟିଏ ଝିଅ ଜନ୍ମକଲା ପରେ ପିଥିଆସ୍ଙ୍କର ମୃତ୍ୟୁ ହେଲା । ଏହାପରେ ଆରିଷ୍ଟୋଟଲ୍ ଜଣେ ସ୍ତ୍ରୀଟିଙ୍କୁ ସ୍ତ୍ରୀଭାବେ ଗ୍ରହଣ କରିଥିଲେ । ତେବେ ପିଥିଆସ୍ଙ୍କ ପ୍ରତି ତାଙ୍କର ଗଭୀର ପ୍ରେମ ଶେଷପର୍ଯ୍ୟନ୍ତ ଅକ୍ଷୁଣ୍ଣ ଥିଲା । ତାଙ୍କର ପାଖରେ କବର ପାଇବା ପାଇଁ ଆରିଷ୍ଟୋଟଲ୍ ମୃତ୍ୟୁଶଯ୍ୟାରେ ଜଣାଇଥିଲେ ।

ଆରିଷ୍ଟୋଟଲ୍ ଥ୍ରେସ୍ ଛାଡ଼ିବା ପୂର୍ବରୁ ସମବୟସ୍କ ଫିଲିପ୍ ସହିତ ତାଙ୍କର ଭେଟ ହୋଇଥିବା ସମ୍ଭବ । ଆଲେକ୍‌ଜାଣ୍ଡର୍ ଜନ୍ମ ହେବା ପରେ ଏହି ସମ୍ବାଦ ଆରିଷ୍ଟୋଟଲ୍‌ଙ୍କୁ ଜଣାଇ ଫିଲିପ୍ ତାଙ୍କ ପାଖକୁ ଲେଖିଥିଲେ, "..ମୋର ଗୋଟିଏ ପୁଅ ହୋଇଛି । ମୁଁ ଦେବତାମାନଙ୍କ ପାଖରେ କୃତଜ୍ଞ—ପୁଅଟିଏ ପାଇଥିବା ଯୋଗୁ ଯେତେ ନୁହେଁ ତା ଠାରୁ ଅଧିକ ଆପଣଙ୍କ ସମୟରେ ସେ ଜନ୍ମ ହୋଇଛି ବୋଲି । ମୁଁ ଆଶାକରୁଛି ଆପଣଙ୍କ ତତ୍ତ୍ୱାବଧାନରେ ବଢ଼ି ସେ କୁଳ ଉଜ୍ଜ୍ୱଳ କରିବ ଓ ସିଂହାସନର ଯୋଗ୍ୟ ଉତ୍ତରାଧିକାରୀ ହେବ ।" ପରେ ଆରିଷ୍ଟୋଟଲ୍ ତେର ବର୍ଷର ବାଳକ ଆଲେକ୍‌ଜାଣ୍ଡର୍‌ଙ୍କର ଶିକ୍ଷାଦାୟିତ୍ୱ ଗ୍ରହଣ କରିଥିଲେ । ଭବିଷ୍ୟତରେ ଜଗତବିଖ୍ୟାତ ହୋଇଥିବା ଶିଷ୍ୟଙ୍କ ଉପରେ ଏତେବଡ଼ ଜ୍ଞାନୀ ଗୁରୁଙ୍କର କି ପ୍ରଭାବ ପଡ଼ିଥିଲା ତାହା ସଠିକ୍‌ଭାବେ କଳନା କରିବା କଷ୍ଟକର । ତେବେ ଗ୍ରୀକ୍‌କଳା ଓ ସଂସ୍କୃତି ପ୍ରତି ବାଳକ ଆଲେକ୍‌ଜାଣ୍ଡର୍‌ଙ୍କ ମନରେ ଆରିଷ୍ଟୋଟଲ୍ ଗଭୀର ଅନୁରାଗ ସୃଷ୍ଟି କରିଥିବା ସ୍ୱାଭାବିକ୍ କଥା ।

ଆଲେକ୍‌ଜାଣ୍ଡର୍‌ଙ୍କୁ ପଢ଼ାଇବା ସମୟରେ ଆଣ୍ଟିପାର୍‌ଙ୍କ ସହିତ ଆରିଷ୍ଟୋଟଲ୍‌ଙ୍କର ଘନିଷ୍ଠ ବନ୍ଧୁତ୍ୱ ହୋଇଥିଲା । ପରେ ଆଲେକ୍‌ଜାଣ୍ଡର୍ ଆଣ୍ଟିପାର୍‌ଙ୍କୁ ଗ୍ରୀସ୍‌ର ଶାସକଭାବେ ନିଯୁକ୍ତ କରିଥିଲେ । ଫଳରେ ଆରିଷ୍ଟୋଟଲ୍‌ଙ୍କର ଅନେକ କାମ ସୁବିଧାରେ ହୋଇ ଯାଉଥିଲା ।

ଖ୍ରୀ. ପୂ ୩୩୫ରେ ଆରିଷ୍ଟୋଟଲ୍ ଏଥେନ୍ସ ଫେରି ତାଙ୍କର ଆକାଡେମି ସ୍ଥାପନ କରିବାରେ ଲାଗିପଡ଼ିଲେ । ଆପୋଲୋ ଲାଇସିଅମ୍ (ଜଣେ ଜଣେ ଦେବତା ଏପରି ସ୍ଥାନୀୟ ନାମ ଗ୍ରହଣ କରିଥାନ୍ତି)ଙ୍କର ମନୋରମ ତୋଟାରେ ଆକାଡେମି ଆରମ୍ଭ ହେଲା । ଏହି କାରଣରୁ ଆରିଷ୍ଟୋଟଲ୍‌ଙ୍କ ଆକାଡେମି ଲାଇସିଅମ୍ ନାମରେ ପରିଚିତ । ଲାଇସିଅମ୍‌ର ପ୍ରାକୃତିକ

ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ସକ୍ରେଟିସ୍ ଅନେକ ସମୟରେ ସେ ସ୍ଥାନକୁ ବୁଲି ଯାଉଥିଲେ । ଶିଷ୍ୟମାନଙ୍କୁ ଶିକ୍ଷା ଦେଇ ଦେଇ ଆରିଷ୍ଟୋଟଲ୍ ଉଠିପଡ଼ି ଚାଲିବାକୁ ଆରମ୍ଭ କରନ୍ତି । ପଛେ ପଛେ ଶିଷ୍ୟମାନେ । ଛୋଟ ମଧ୍ୟରେ ବୁଲିଚାଲି କରି ଶିଷ୍ୟଙ୍କୁ ସବୁ ତତ୍ତ୍ୱମାନ ବୁଝାଉଥିବାରୁ ଆରିଷ୍ଟୋଟଲଙ୍କ ଦର୍ଶନ Peripatic ନାମରେ ପରିଚିତ ।

ଲାଇସିଅମ୍‌ରେ ସକାଳ ଓଳି ଲଜିକ୍ ଓ ମେଟାଫିଜିକ୍ସ ଶିକ୍ଷା ଦିଆଯାଉଥିଲା । ଅପରଓଳି ବାଗ୍ମିତା, ନୀତିଶାସ୍ତ୍ର ଓ ରାଜନୀତିବିଜ୍ଞାନ ପରି ଜନପ୍ରିୟ ବିଷୟରେ ବକ୍ତୃତା ହେଉଥିଲା । ତାହା ଶୁଣିବା ପାଇଁ ବହୁ ସଂଖ୍ୟକ ଆଗ୍ରହୀ ଶିଷ୍ୟ ଭିଡ଼ ହେଉଥିଲେ ।

ଆକାଡେମିରେ ଆରିଷ୍ଟୋଟଲ୍ ଅନେକ ମୂଲ୍ୟବାନ୍ ପାଣ୍ଡୁଲିପି ସଂଗ୍ରହ କରିଥିଲେ । ତାଙ୍କ ଲାଇବ୍ରେରିଟି ଗ୍ରୀସ୍‌ର ପ୍ରଥମ ବଡ଼ ଲାଇବ୍ରେରି । ପ୍ରାକୃତିକ ବିଜ୍ଞାନର ଗବେଷଣା ପାଇଁ ଗୋଟିଏ ମିଉଜିୟମ୍ ଗଢ଼ିବା ତାଙ୍କର ଅନ୍ୟତମ କୃତିତ୍ୱ । ଆଲେକ୍‌ଜାଣ୍ଡର୍ ଏହି ମିଉଜିୟମ୍‌କୁ ଆର୍ଥିକ ସାହାଯ୍ୟ ଦେଉଥିଲେ । ଏହା ବ୍ୟତୀତ କୌଣସି ଚିତ୍ତାକର୍ଷକ ବସ୍ତୁ ପାଇଲେ ଆରିଷ୍ଟୋଟଲ୍‌ଙ୍କ ପାଖରେ ଆଣି ପହଞ୍ଚାଇ ଦେବାକୁ ରାଜ୍ୟର ବ୍ୟାଧ, ଶିକାରୀ ଓ ଧୀବରମାନଙ୍କୁ ନିର୍ଦ୍ଦେଶ ଥିଲା । ଲାଇସିଅମ୍‌ରେ ପ୍ରାକୃତିକ ବିଜ୍ଞାନ, ଆଇସୋକ୍ରେଟିଜ୍‌ଙ୍କ ଆକାଡେମିରେ ବାଗ୍ମିତା ଓ ପ୍ଲେଟୋଙ୍କ ଆକାଡେମିରେ ଗଣିତକୁ ପ୍ରାଧାନ୍ୟ ଦିଆଯାଉଥିଲା ।

ଆଲେକ୍‌ଜାଣ୍ଡର୍‌ଙ୍କ ମୃତ୍ୟୁ ପରେ ଏଥେନ୍‌ସରେ ମାସେଡନିଆ ବିରୋଧୀ ମନୋଭାବ ପ୍ରବଳ ହେଲା । ଆରିଷ୍ଟୋଟଲ୍ ଏହାର ଶିକାର ହେଲେ । ଅନ୍ୟ ଦୁଇ ଆକାଡେମିର ଲୋକେ ଆରିଷ୍ଟୋଟଲ୍‌ଙ୍କ ନାମରେ ମିଥ୍ୟା ଅପବାଦମାନ ସୃଷ୍ଟି କଲେ । ତାଙ୍କ ବିରୁଦ୍ଧରେ ଦେବତାଙ୍କୁ ଅମାନ୍ୟ କରୁଥିବାର ଚିରାଚରିତ ଅଭିଯୋଗ ଆସିଲା । "ଦର୍ଶନ ପ୍ରତି ଦୁଇଥର ପାପାଚାର" କରିବାର ସୁଯୋଗ (ଥରେ ସକ୍ରେଟିସ୍‌ଙ୍କ କ୍ଷେତ୍ରରେ) ଏଥେନ୍‌ସବାସୀଙ୍କୁ ନ ଦେବାକୁ ସ୍ଥିର କରି ଆରିଷ୍ଟୋଟଲ୍ ଏଥେନ୍‌ସ ଛାଡ଼ିଲେ । ଏହାର ବର୍ଷକ ପରେ ତାଙ୍କର ମୃତ୍ୟୁ ହେଲା ।

ସାଧାରଣ ଲୋକଙ୍କ ମଧ୍ୟରେ ଜ୍ଞାନର ପ୍ରସାର ଉଦ୍ଦେଶ୍ୟରେ ଆରିଷ୍ଟୋଟଲ୍ ସତେଇଶ ଖଣ୍ଡ ଡାଏଲଗ୍ ରଚନା କରିଥିଲେ । ପ୍ଲେଟୋଙ୍କର ଡାଏଲଗ୍ ରଚନାର ଉଦ୍ଦେଶ୍ୟ ମଧ୍ୟ

ଏଛୟୁ। ଦୁହିଁଙ୍କର ରଚନାମାନ ସେମାନଙ୍କର ଜ୍ଞାନସାଧକ ଗ୍ରନ୍ଥଙ୍କ ପାଇଁ ଉଦ୍ଦିଷ୍ଟ ନ ଥିଲା। ତେବେ ଆରିଷ୍ଟୋଟଲ୍ ତାଙ୍କର ଡାଏଲଗ୍‌ଗୁଡ଼ିକ ପାଇଁ ପ୍ରାଚୀନ ଜଗତରେ ଖ୍ୟାତିଲାଭ କରିଥିଲେ। ତାଙ୍କର ସବୁ ଡାଏଲଗ୍ ରୋମାନ୍ ଆକ୍ରମଣ ସମୟରେ ନଷ୍ଟ ହୋଇଗଲା। ଡାଏଲଗ୍‌ମାନ ନଷ୍ଟ ହୋଇ ସେ ଅଧ୍ୟାପନା ଉଦ୍ଦେଶ୍ୟରେ ପ୍ରସ୍ତୁତ କରିଥିବା 'ଲେକ୍‌ଚର ନୋଟ୍'ରୁ କିଛି ବଞ୍ଚି ରହିଛି। ପ୍ଲେଟୋଙ୍କ କ୍ଷେତ୍ରରେ ଏହାର ଓଲଟା କଥା ଘଟିଲା। ତାଙ୍କର ନୋଟ୍‌ସବୁ ନଷ୍ଟ ହେଲା ଓ ଡାଏଲଗ୍‌ମାନ ବଞ୍ଚିଗଲେ।

ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀରୁ ଆରିଷ୍ଟୋଟଲ୍‌ଙ୍କୁ ଜଣେ ବିରାଟ ଦାର୍ଶନିକ ଭାବେ ଗଣିବାର ପରମ୍ପରା ଚାଲି ଆସୁଛି। ମାତ୍ର ସେ ଏକାଧାରରେ ଜଣେ ଦାର୍ଶନିକ ଓ ବୈଜ୍ଞାନିକ। ଆରିଷ୍ଟୋଟଲ୍ ଲଜିକ ଶାସ୍ତ୍ରର ଜନକ। ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଲଜିକ୍‌ରେ ଆଉ କୌଣସି ମୌଳିକ ସୃଷ୍ଟି ହୋଇପାରି ନ ଥିଲା। ତାଙ୍କର ଲଜିକ୍ ଗ୍ରନ୍ଥକୁ ମାନବ ଜାତି ଦୁଇ ହଜାର ବର୍ଷ ଧରି ଅଧ୍ୟୟନ କରିଛି। ଚିନ୍ତାର ଶୃଙ୍ଖଳିତ ହେବା ଯେପରି ଆବଶ୍ୟକ ସେହିପରି ପରିଚ୍ଛନ୍ନ ଓ ନିର୍ଭୁଲ ହେବା ମଧ୍ୟ ଦରକାର। ଏ ବିଷୟରେ ଆରିଷ୍ଟୋଟଲ୍ ଗଭୀର ଭାବେ ସଚେତନ ଥିଲେ।

ଆରିଷ୍ଟୋଟଲ୍ କେବଳ ବଡ଼ ଦାର୍ଶନିକ ନୁହନ୍ତି, ଜଣେ ବଡ଼ ବୈଜ୍ଞାନିକ ମଧ୍ୟ। ସେ ଲଜିକ୍‌କୁ ଏକ ବିଜ୍ଞାନ ରୂପେ ପ୍ରତିଷ୍ଠା କରିଗଲେ। ଜୀବବିଜ୍ଞାନକୁ ତାଙ୍କର ଦାନ ମହାନ୍।

ଗଣିତ ଓ ପଦାର୍ଥ ବିଜ୍ଞାନରେ ଆରିଷ୍ଟୋଟଲ୍‌ଙ୍କର ପ୍ରତିଭା ନ ଥିଲା। ତଥାପି ପଦାର୍ଥ ବିଜ୍ଞାନର ଅନେକ ପ୍ରଶ୍ନ ଯଥା— ସ୍ଥାନ, କାଳ, ଗତି, ବେଗ ପ୍ରଭୃତି ବିଷୟ ତାଙ୍କର ଚିନ୍ତାକୁ ଅଧିକାର କରିଥିଲା। ଜୀବବିଜ୍ଞାନରେ ସେ ଆଗ୍ରହୀ ଥିଲେ ଓ ବିଜ୍ଞାନର ଏହି ବିଭାଗକୁ ଆରିଷ୍ଟୋଟଲ୍‌ଙ୍କ ଅବଦାନ ବିପୁଳ। ଶିଷ୍ୟମାନଙ୍କ ସାହାଯ୍ୟରେ ସମଗ୍ର ଇଜିଆନ୍ ଉପକୂଳ ଅଞ୍ଚଳର ପ୍ରାଣୀ ଓ ବୃକ୍ଷଲତାଙ୍କ ସମ୍ପର୍କରେ ସେ ସବିଶେଷ ଅଧ୍ୟୟନ କରିଥିଲେ।

ଦାର୍ଶନିକ ଭାବେ ଆରିଷ୍ଟୋଟଲ୍‌ଙ୍କର ମୌଳିକ ଚିନ୍ତା ମନୋବିଜ୍ଞାନ, ନୀତିଶାସ୍ତ୍ର, ମେଟାଫିଜିକ୍‌ସ, ରାଜନୀତିବିଜ୍ଞାନ, ବାଗ୍ମିତା ଓ କାବ୍ୟତତ୍ତ୍ୱକୁ ସମୃଦ୍ଧ କରିଛି। ଜ୍ଞାନର ଏତେଗୁଡ଼ିଏ ବିଭାଗକୁ ତାଙ୍କର କି ନିର୍ଦ୍ଦିଷ୍ଟ ଅବଦାନ ରହିଛି ଏହି ସୀମିତ ପରିସର ମଧ୍ୟରେ ତାହା ଆଲୋଚନା କରିବା ସମ୍ଭବ ନୁହେଁ। ତାଙ୍କର ଦାର୍ଶନିକ ଦୃଷ୍ଟିରେ ମଣିଷର ସ୍ୱରୂପ

କିପରି ସେ ସମ୍ପର୍କରେ ଏଠାରେ କିଛି ସୂଚନା ଦିଆଯାଉଛି । ଜଣେ ପ୍ରାଣୀବିଜ୍ଞାନୀ ଭାବେ ଆରିଷ୍ଟୋଟଲ୍ ମଣିଷକୁ ଅଧ୍ୟୟନ କରିନାହାନ୍ତି । ସେ ଦାର୍ଶନିକ ଦୃଷ୍ଟିରେ ମଣିଷକୁ ଦେଖିଛନ୍ତି । ମଣିଷର ସାଇକି (Psyche) ବୃକ୍ଷ ଓ ପ୍ରାଣୀଙ୍କ ଠାରୁ ଭିନ୍ନ ହୋଇଥିବାରୁ ତାକୁ ସେମାନଙ୍କ ସହିତ ସମପର୍ଯ୍ୟାୟଭୁକ୍ତ କରାଯାଇ ପାରିବ ନାହିଁ । ଗ୍ରୀକ୍ ଶବ୍ଦ ସାଇକିରୁ ଇଂରାଜୀ ସାଇକୋଲୋଜି ଶବ୍ଦର ସୃଷ୍ଟି । 'Soul' ସାଇକିର ଏକ ଅସନ୍ତୋଷଜନକ ଅନୁବାଦ । ସାଇକି ଜୀବଠାରେ ନିହିତ ତାର ଭାଗ୍ୟ ଓ ବିକାଶର ନିର୍ଦ୍ଧାରକ ତତ୍ତ୍ୱ । ସାଇକିର ତିନୋଟି ଅଙ୍ଗ—ପୌଷ୍ଟିକ ( Nutritive ), ସଂବେଦନଶୀଳ (Sensitive) ଓ ବିଚାରଶୀଳ । ଉଦ୍ଭିଦର ସାଇକି କେବଳ ପୌଷ୍ଟିକ । ପ୍ରାଣୀର ଉଭୟ ପୌଷ୍ଟିକ ଓ ସଂବେଦନଶୀଳ । ମନୁଷ୍ୟର ସାଇକି ପୌଷ୍ଟିକ, ସଂବେଦନଶୀଳ ତଥା ବିଚାରଶୀଳ ।

ବାକ୍ସ ଭିତରେ ରତ୍ନ ଅଳଙ୍କାର ପରି ସାଇକି ଶରୀର ଭିତରେ ନାହିଁ । ସାଇକି ଶରୀର ସହିତ ଓତଃପ୍ରୋତ ଭାବେ ମିଶିକରି ରହିଛି । ବିଶ୍ୱବ୍ରହ୍ମାଣ୍ଡ ଓ ଈଶ୍ୱରଙ୍କ ମଧ୍ୟରେ ଏହିପରି ସମ୍ପର୍କ । ଈଶ୍ୱର ବ୍ରହ୍ମାଣ୍ଡର ଅନ୍ତର୍ନିହିତ ସ୍ୱଭାବ ତଥା ଅନ୍ତିମ ଲକ୍ଷ୍ୟ । ସେ ସବୁ କାରଣର କାରଣ ଅର୍ଥାତ୍ ଆଦିକାରଣ । ସେ ନିଜେ ଗତିଶୂନ୍ୟ କିନ୍ତୁ ସବୁ ଗତିର ଗତି (Prime Mover Unmoved) । ବୃକ୍ଷ ଯେପରି ସ୍ୱଭାବତଃ ଆଲୋକ ଆଡ଼କୁ ଉଠେ ସେହିପରି ବିଶ୍ୱ ତା ମାର୍ଗରେ ଚାଲୁଛି । ବିଶ୍ୱ ଚଳନର ନିୟମ ହେଉଛନ୍ତି ଈଶ୍ୱର । ଆରିଷ୍ଟୋଟଲ୍ କହନ୍ତି, ଈଶ୍ୱର ହେଉଛନ୍ତି ଶୁଦ୍ଧଚିନ୍ତା, ଶାଶ୍ୱତ ବିଚାର । ମଣିଷଠାରେ ନିହିତ ବିଚାର ଈଶ୍ୱରଙ୍କର ଅଂଶ ।

ମଣିଷ କିପରି ଜୀବନଯାପନ କରିବା ଉଚିତ୍ ? ଏ ପ୍ରଶ୍ନର କି ଉତ୍ତର ଆରିଷ୍ଟୋଟଲ୍ ଦିଅନ୍ତି ତାହା ଅନ୍ୟତ୍ର ଆଲୋଚନା କରିବୁ ।



# ଚାରୋଟି ଗ୍ରୀକ୍ ଜୀବନ-ଦର୍ଶନ

* ଏପିକୁରିଆନ୍ ଆମୋଦବାଦୀ ।
* ଷ୍ଟୋଇକ୍ ସନ୍ନ୍ୟାସୀ ।
* ପ୍ଲେଟୋନିକ୍ ଜ୍ଞାନଯୋଗୀ ।
* ଆରିଷ୍ଟୋଟ୍‌ଲ୍‌ଙ୍କ ମଧ୍ୟମପନ୍ଥୀ ।

ଏପିକୁରସ୍, ଜେନୋ, ପ୍ଲେଟୋ ଓ ଆରିଷ୍ଟୋଟ୍‌ଲ୍ ଗ୍ରୀସ୍‌ର ଚାରିଜଣ ବଡ଼ ଦାର୍ଶନିକ କେବଳ ନୁହନ୍ତି । ଏପିକୁରସ୍ ଓ ଜେନୋଙ୍କ ସମକକ୍ଷ ଆଉ କେତେକ ଦାର୍ଶନିକ ଗ୍ରୀସ୍‌ରୁ ବାହାରିଥିଲେ । ମାତ୍ର ଏ ଦୁହିଁଙ୍କର ଚିନ୍ତାଧାରାକୁ ହଜାର ହଜାର ଗ୍ରୀକ୍ ଜୀବନର ଆଦର୍ଶ ରୂପେ ଗ୍ରହଣ କରିଥିଲେ । କେବଳ ପ୍ରାଚୀନ ଗ୍ରୀସ୍‌ରେ କାହିଁକି, ରୂପ ବଦଳେଇ ଏ ଦୁହିଁଙ୍କର ଜୀବନ-ଦର୍ଶନ ଆଜିପର୍ଯ୍ୟନ୍ତ ବଞ୍ଚିଛି । ରହସ୍ୟବାଦୀ ପିଥାଗୋରସ୍‌ଙ୍କର ମଧ ବହୁ ଶିଷ୍ୟ ଥିଲେ । ମାତ୍ର ତାଙ୍କ ଜୀବନାଦର୍ଶର ସମାଧି ଗ୍ରୀସ୍‌ରେ ହିଁ ଘଟିଥିଲା । କିନ୍ତୁ ବାହୁଲ୍ୟ, ଇନ୍ଦ୍ରିୟ ଲାଲସାକୁ ବଶୀଭୂତ ରଖି ଜ୍ଞାନର ସାଧନା କରିବାକୁ ପ୍ଲେଟୋ ଯେଉଁ ଆହ୍ୱାନ ଦେଲେ, ଏପର୍ଯ୍ୟନ୍ତ ତାହା ବୁଦ୍ଧିମାନ୍ ବ୍ୟକ୍ତିଙ୍କୁ ଆକୃଷ୍ଟ କରୁଛି ।

ଉପରୋକ୍ତ ଚାରିଜଣ ଦାର୍ଶନିକଙ୍କ ମଧ୍ୟରୁ ଆରିଷ୍ଟୋଟ୍‌ଲ୍‌ଙ୍କୁ ବାଦ୍ ଦେଇ ବାକି ତିନିଜଣ ସକ୍ରେଟିସ୍‌ଙ୍କୁ ଆପଣାର ବୋଲି ଦାବୀ କରନ୍ତି । ଆମର ଉଦ୍ଦେଶ୍ୟ ଦୃଷ୍ଟିରୁ ସକ୍ରେଟିସ୍‌ଙ୍କ ଜୀବନାଦର୍ଶ ( ସକ୍ରେଟିସ୍ ନିଜେ ତାଙ୍କ ଜୀବନାଦର୍ଶ ପ୍ରଚାର କଲେ ନାହିଁ ) ସମ୍ବନ୍ଧରେ ଆମେ ଏ ଅଧ୍ୟାୟରେ କିଛି ଆଲୋଚନା କରୁନାହୁଁ । ପୁଣି ଏପିକୁରସ୍ ଓ ଜେନୋ,

ପ୍ଲେଟୋ ଆରିଷ୍ଟୋଟଲ୍‌ଙ୍କ ପରବର୍ତ୍ତୀ ଦାର୍ଶନିକ ହୋଇଥିଲେ ମଧ୍ୟ ଆମୋଦବାଦ ଓ ଷ୍ଟୋଇକ୍‌ବାଦ ଅପେକ୍ଷାକୃତ ସରଳ ହୋଇଥିବାରୁ ଆମେ ଏ ଦୁଇଟି ଜୀବନଧାରା ସମ୍ବନ୍ଧରେ ପ୍ରଥମେ ଆଲୋଚନା କରୁଛୁ ।

ଏପିକୁରସ୍‌ଙ୍କ ମତରେ ସୁଖର ମୂଲ୍ୟ ମଣିଷ ପାଇଁ ସବୁଠାରୁ ଅଧିକ । ତେବେ ଜୀବନରେ ଜ୍ଞାନର ଭୂମିକା ଅବଶ୍ୟ ରହିଛି । ସୁଖର ସନ୍ଧାନ ଦେବା ଜ୍ଞାନର ଉଦ୍ଦେଶ୍ୟ । ଭୟ ଦ୍ୱାରା ଆକ୍ରାନ୍ତ ମଣିଷ ସୁଖ ପାଇ ପାରେନା । ତେଣୁ ଏପିକୁରସ୍ ମଣିଷ ମନରୁ କୁସଂସ୍କାର ଓ ଦେବତାଙ୍କ ପ୍ରତି ଭୟ ଦୂର କରିବାକୁ ଚେଷ୍ଟା କରିଥିଲେ । କିଛି ଭୁଲ୍ କଲେ ଦେବତାମାନେ ଦଣ୍ଡ ଦେବାକୁ ଜଗି ବସିଛନ୍ତି—ଏହିପରି ବିଶ୍ୱାସ ପୋଷଣ କରୁଥିବା ବ୍ୟକ୍ତି ସୁଖ ଠାରୁ ବହୁ ଦୂରରେ । ଏପିକୁରସ୍ ଦେବତାଙ୍କୁ ଅସ୍ୱୀକାର କରୁ ନ ଥିଲେ । ପୃଥିବୀ ଠାରୁ ଅନେକ ଦୂରରେ ବିଶ୍ୱବ୍ରହ୍ମାଣ୍ଡର କେଉଁଠିକୋଣରେ ଦେବତାମାନେ ଅଛନ୍ତି । କିନ୍ତୁ ଏ କ୍ଷୁଦ୍ର ପୃଥିବୀ ବା ମଣିଷଙ୍କ ବ୍ୟାପାରରେ ମୁଣ୍ଡ ପୂରାଇବା ସେମାନଙ୍କର କାମ ନୁହେଁ ।

ପ୍ରଚଳିତ ଧର୍ମକୁ ଏହିପରି ପ୍ରତ୍ୟାଖ୍ୟାନ କରିବା ସହିତ ଏପିକୁରସ୍ ମେଟାଫିଜିକ୍‌ସକୁ ଆକ୍ରମଣ କରିଥିଲେ । ସେ କହିଥିଲେ ଯେ ଅତୀନ୍ଦ୍ରିୟ ବସ୍ତୁ ବା ଜଗତ ( ଯଦି ସେପରି କିଛି ଥାଏ ) ସମ୍ବନ୍ଧରେ କିଛି ଜାଣିବା ପାଇଁ ବିଚାର ଅକ୍ଷମ । କାରଣ ବିଚାର ଇନ୍ଦ୍ରିୟଙ୍କ ଅନୁଭୂତି ଉପରେ ନିର୍ଭରଶୀଳ । ଇନ୍ଦ୍ରିୟଗ୍ରାହ୍ୟ ଘଟଣାଙ୍କୁ ନେଇ ବିଚାରର କାରବାର । ଇନ୍ଦ୍ରିୟଙ୍କୁ ଭିତ୍ତି କରିଥିବାରୁ ଜ୍ଞାନ ଅନିଶ୍ଚିତ । ଏପିକୁରସ୍‌ଙ୍କର କୌଣସି ସୃଷ୍ଟିତତ୍ତ୍ୱ ନ ଥିଲା । ତେବେ ସେ ଡିମୋକ୍ରିଟସ୍‌ଙ୍କ ତତ୍ତ୍ୱକୁ ବିଶ୍ୱାସ କରୁଥିଲେ । ଆଟମମାନଙ୍କ ସମବାୟରେ ଗଢ଼ା ଜଗତର ସୃଷ୍ଟି ଓ ସ୍ଥିତି ଆକସ୍ମିକ । ମାନସ ଏକପ୍ରକାର ବସ୍ତୁ ମାତ୍ର । ଅନ୍ତରାତ୍ମା ଅତି ସୂକ୍ଷ୍ମ ବସ୍ତୁ ଓ ଶରୀର ସହିତ ଏହାର ମୃତ୍ୟୁ ଘଟେ । କହିବା ବାହୁଲ୍ୟ, ଏପିକୁରସ୍‌ଙ୍କ ଦୃଷ୍ଟିଭଙ୍ଗୀ ଜଣେ ଆମୋଦବାଦୀ ଅନୁଯାୟୀ ଅଟେ ।

ମେଟାଫିଜିକ୍‌ସକୁ ଆକ୍ରମଣ କରି ଏପିକୁରସ୍ ଯେଉଁ ପଦେ ଯୁକ୍ତି ଉତ୍ଥାପନ କଲେ, ଦୁଇ ହଜାର ବର୍ଷ ପରେ ସେଇଭଳି ଯୁକ୍ତିକୁ କେନ୍ଦ୍ର କରି ଲକ୍ ଓ ଲାଇବ୍‌ନିଜ୍‌ଙ୍କ ମଧ୍ୟରେ ଘମାଘୋଟ ଲଢ଼େଇ ହେଲା ।

ସୁଖକୁ ଜୀବନର ଲକ୍ଷ୍ୟ କହିବାର ଅର୍ଥ ନୁହେଁ, ଯେ ମଣିଷ ସଦାବେଳେ ମଉଜ ମଜ୍‌ଲିସ୍‌ରେ ମାତିଥିବ । ଶାରୀରିକ ବ୍ୟାଧି, ମାନସିକ ଦୁଃଶ୍ଚିନ୍ତା ଓ ଯନ୍ତ୍ରଣାରୁ ମୁକ୍ତ ରହିବା

ସୁଖ ମଧ୍ୟରେ ଗଣ୍ୟ । ମଦ୍ୟପ, ଲମ୍ପଟ ଓ ପେଟୁ ସୁଖୀ ନୁହନ୍ତି । ଦେହ ଓ ମନକୁ ସୁସ୍ଥ ରଖିବା ପାଇଁ ଅନାବଶ୍ୟକ ଓ କ୍ଷତିକାରକ କାମନା ବର୍ଜନୀୟ । ଏପିକ୍ୟୁରସ୍ କହନ୍ତି, "ଯଦି ତମେ ଜଣକୁ ସୁଖୀ କରିବାକୁ ଚାହଁ, ତେବେ ତା ଧନ ବଢ଼ାଅ ନାହିଁ, କାମନା କମାଇ ଦିଅ ।"

"ଯଦି ଜଣେ ନିଜର ଧନ ସମ୍ପଦରେ ସନ୍ତୁଷ୍ଟ ନୁହେଁ ତେବେ ତାକୁ ପୃଥିବୀର ଅଧୀଶ୍ୱର କରିଦେଲେ ମଧ୍ୟ ତା ଦୁଃଖ ଘୁଞ୍ଚିବ ନାହିଁ ।"

"ଗୋଟିଏ ପୂର୍ଣ୍ଣ ମାଠିଆରେ ପାଣି ଢାଳିବା ଯାହା ଆବଶ୍ୟକୀୟ ସମ୍ପତ୍ତି ଠାରୁ ଅଧିକ ବଢ଼ାଇବା ସେଇୟା ।"

"ଦାରିଦ୍ର୍ୟକୁ ସହାସ୍ୟ ବଦନରେ ବରଣ କରିବା ଏକ ସମ୍ମାନଜନକ ବିଷୟ ।"

ଏପିକ୍ୟୁରସ୍‌ଙ୍କର ଏହିସବୁ ଉକ୍ତିରୁ ସ୍ପଷ୍ଟ ଯେ, ଯଥେଚ୍ଛା ଇନ୍ଦ୍ରିୟ ସମ୍ଭୋଗ ବା ପ୍ରଚୁର ସମ୍ପଦକୁ ସେ ସୁଖର କାରଣ ମନେକରନ୍ତି ନାହିଁ । କାମନାର ସୁନିର୍ବାଚନ ଉପରେ ସୁଖ ନିର୍ଭର କରେ । ପ୍ରଚୁର ସମ୍ପଦ ନୁହେଁ, ସହୃଦୟ ବନ୍ଧୁର ଆବଶ୍ୟକତା ଜୀବନରେ ସର୍ବାଠାରୁ ଅଧିକ । ପୁଣି ଆମୋଦିତ ହେବା ଏକ କଳା—ଏହା ଠିକଣା ମନୋବୃତ୍ତିର ଅପେକ୍ଷା ରଖେ । "ନିର୍ବୋଧ ବ୍ୟକ୍ତି ଅସ୍ଥିର ଓ ବିରକ୍ତିକର, ତାକୁ ସର୍ବଦା ଭବିଷ୍ୟତ ଚିନ୍ତା ଘାରୁଥାଏ ।" ଏପିକ୍ୟୁରସ୍ ଏ କଥା କହିବାର ତାତ୍ପର୍ଯ୍ୟ, ଯେଉଁ ବ୍ୟକ୍ତି ଭବିଷ୍ୟତର ଚିନ୍ତାରେ ଆକ୍ରାନ୍ତ ସେ ବର୍ତ୍ତମାନର ସୁଖ ଆନନ୍ଦକୁ ଗ୍ରହଣ କରି ପାରିବ ନାହିଁ ।

ଖ୍ରୀ. ପୂ ପ୍ରଥମ ଶତାବ୍ଦୀର ରୋମାନ୍ କବି ଲୁକ୍ରିଟିଅସ୍ ଏପିକ୍ୟୁରସ୍‌ଙ୍କର ଜଣେ ବଡ଼ ଭକ୍ତ । ଏପିକ୍ୟୁରସ୍‌ଙ୍କ ଭାବନାକୁ ରୂପ ଦେଇ ଲୁକ୍ରିଟିଅସ୍ ମହାନ୍ ଦାର୍ଶନିକ କବିତା ରଚନା କରିଛନ୍ତି । ପ୍ରସିଦ୍ଧ ଲାଟିନ୍ କବି ହୋରେସ୍ (ଖ୍ରୀ. ପୂ ପ୍ରଥମ ଶତାବ୍ଦୀ) ମଧ୍ୟ ଏପିକ୍ୟୁରସ୍‌ଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଓମର୍ ଖାୟାମ୍‌ଙ୍କର ଅନେକ କବିତାରେ ଏପିକ୍ୟୁରସୀୟ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । ତାଙ୍କର ସୁବିଦିତ ନିମ୍ନୋକ୍ତ କେତୋଟି ଧାଡ଼ିରେ ଏପିକ୍ୟୁରସୀୟ ଦୃଷ୍ଟିକୋଣର ଚମତ୍କାର କାବ୍ୟିକ ରୂପ ଫୁଟିପାରିଛି—

A book of vereses underneath the Bough
A Jug of wine, a Loaf of Bread—and Thou

Beside me singing in the wilderness
Oh, wilderness were paradise enew.

Ah, my Beloved, fill the Cup that clears
To day of the past regrets and Future fears

ଓମର୍‌ଙ୍କ କବିତାରେ ଏଇ ମୂହୂର୍ତ୍ତର ସୁଖାନୁଭୂତି ଠାରୁ ଆଉ ସବୁକିଛି ସାନ । ଆମୋଦରେ ମଜ୍ଜିଯିବାରେ ପରମ ତୃପ୍ତି । ଉପସ୍ଥିତ ଆମୋଦ ପ୍ରମୋଦରେ ବୁଡ଼ିଯିବାର ଉଲ୍ଲାସ ଠାରୁ ଅଧିକ କିଛି ମହତ୍ତର ଉପାଦାନ ଓମର୍‌ଙ୍କ କବିତା ବା ଏପିକୁରସ୍‌ଙ୍କ ଦର୍ଶନରେ ନାହିଁ ! ବିଂଶ ଶତାବ୍ଦୀର ଜଣେ ବିଶିଷ୍ଟ କବି ହ୍ୱିଇଟ୍‌ମ୍ୟାନ୍ ଏପିକୁରସୀୟ ଜୀବନଦର୍ଶନର ବନ୍ଦନା କରନ୍ତି ମାତ୍ର ତାଙ୍କ କବିତା ଏହି ଦାର୍ଶନିକଙ୍କ ଭାବଧାରାକୁ ଅତିକ୍ରମ କରେ । ଗୋଟିଏ କବିତାରେ ଜୀବନର ସୁଖୋଲ୍ଲାସର ସଙ୍ଗୀତ ଗାଇ ସାରିବା ପରେ ହ୍ୱିଇଟ୍‌ମ୍ୟାନ୍ ଲେଖୁଛନ୍ତି,

For not life's joys alone I sing, repeating—
the joy of death
... .. .........
...... ...........
O to have life henceforth a poem of new joys.

ଏଇ ଜୀବନର ଆନନ୍ଦଗୀତ ଗାଉ ଗାଉ ଜୀବନୋତ୍ତର ଜୀବନର ସୁଖସ୍ୱପ୍ନ ଦେଖିବାର ଅନୁଭୂତି ବା ଚିନ୍ତା ଏପିକୁରସ୍‌ଙ୍କୁ ସ୍ପର୍ଶ କରି ନ ଥିଲା । ଏଠି ହ୍ୱିଇଟ୍‌ମ୍ୟାନ୍‌ଙ୍କ ଦୃଷ୍ଟାନ୍ତ ଦେବାର କାରଣ ପରବର୍ତ୍ତୀ କାଳରେ ଅନେକ ବିଶିଷ୍ଟ କବି ବା ଭାବୁକ ଏପିକୁରସୀୟ ଚିନ୍ତା ଦ୍ୱାରା ସଜ୍ଞାନରେ ଅନୁପ୍ରାଣିତ ହେବା ସଙ୍ଗେ ସଙ୍ଗେ ଏପିକୁରସୀୟ ଚିନ୍ତାକୁ ଅତିକ୍ରମ କରିଛନ୍ତି । ହ୍ୱିଇଟ୍‌ମ୍ୟାନ୍‌ଙ୍କ ପରି ଷ୍ଟିଭେନ୍‌ସନ୍ ମଧ୍ୟ ଏପିକୁରସ୍‌ଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇଛନ୍ତି ଓ ତାଙ୍କୁ ଅତିକ୍ରମ କରିଛନ୍ତି ।

ସଂସାରର ଜଞ୍ଜାଳ ଭିତରେ ଘାଣ୍ଟି ନ ହୋଇ, ଆପଣାକୁ ଦୁଃଖ ଓ ଜଗନ୍ନଦର ଚରଭୂଇଁ ରୂପେ ନ ଗଢ଼ି ସୁଖରେ କାଳାତିପାତ କରିବାର ଜୀବନଦର୍ଶନର ଆଦ୍ୟଗୁରୁ ଭାବେ ଏପିକୁରସ୍ ସ୍ୱୀକୃତ । 'ଯାବତ୍ ଜୀବେତ୍ ସୁଖମ୍ ଜୀବେତ୍' ନୀତିଟିରେ ବିମତ ହେବାର

ବିଶେଷ କରୁ ନାହିଁ । ତେବେ ସୁଖ କ'ଣ ? —ସେ ପ୍ରଶ୍ନକୁ ଘାଣ୍ଟିଲେ ଗଣ୍ଡଗୋଳ ଆରମ୍ଭ ହେବ । ଋଣ କରି ଘିଅ ପିଇବା କଥା ଆହୁରି ଗୋଳମାଳିଆ ।

ଇଂରେଜ ଦାର୍ଶନିକ ହର୍ବର୍ଟ ସ୍ପେନ୍‌ସର୍ (୧୮୨୦—୧୯୦୩)ଙ୍କର ଜୀବନଦର୍ଶନ ଏପିକ୍ୟୁରସ୍‌ଙ୍କ ଚିନ୍ତାର ଆଧୁନିକ ସଂସ୍କରଣ କହିଲେ ଅତ୍ୟୁକ୍ତି ହେବନାହିଁ । ସାମାଜିକ ନୀତିନିୟମ ନ ଭାଙ୍ଗି ବ୍ୟକ୍ତି କିପରି ସୁଖର ସନ୍ଧାନ କରି ପାରିବ ସ୍ପେନ୍‌ସର ତାହା ତାଙ୍କର "ଡାଟା ଅଫ୍ ଏଥିକ୍‌ସ"ରେ ଆଲୋଚନା କରିଛନ୍ତି । ସାମାଜିକ ନୀତିନିୟମର ବିରୁଦ୍ଧାଚରଣ ନ କରିବା ସୁଖଲାଭର ପ୍ରଥମ ସର୍ତ୍ତ । ସକାଳୁ ବିଛଣା ଛାଡ଼ିବା ଠାରୁ ରାତିରେ ବିଶ୍ରାମ ନେବା ପର୍ଯ୍ୟନ୍ତ ମଣିଷର ଗୋଟିଏ ଦିନର କାର୍ଯ୍ୟକଳାପରୁ ଜୀବନ ପ୍ରତି ତାର ଆଭିମୁଖ୍ୟ ଧରି ପଡ଼ିଯାଏ । ଯେଉଁ ବ୍ୟକ୍ତି ଗାଢ ନିଦ୍ରାପରେ ସକାଳୁ ବିଛଣା ଛାଡ଼େ, ନିତ୍ୟକର୍ମ ସାରି ତାଜା ହୁଏ, ଗୀତ ପଦେ ଗୁଣୁ ଗୁଣୁ ହେଉ ହେଉ ପୋଷାକ ପିନ୍ଧେ, ଆତ୍ମବିଶ୍ୱାସର ସହିତ କର୍ମ-କ୍ଷେତ୍ରକୁ ବାହାରିପଡ଼େ ଓ ନିଜ କାର୍ଯ୍ୟରେ ସନ୍ତୋଷ ଅନୁଭବ କରି ଦିନକରି ଖଟଣି ପରେ ହାଲୁକା ହୋଇ ଆସି ଘରେ ପହଞ୍ଚେ, ସେ ସୁଖରେ ବଞ୍ଚିବାର ଦର୍ଶନକୁ ଜୀବନ୍ୟାସ ଦେଇଛନ୍ତି ବୋଲି କୁହାଯିବ । ଘରେ ପହଞ୍ଚି ସନ୍ଧ୍ୟାଟି ବନ୍ଧୁମେଳରେ ବା ପରିବାରର ଲୋକଙ୍କ ସହିତ ହସଖୁସିରେ କଟାଇବା ପାଇଁ ତାଙ୍କର ଯଥେଷ୍ଟ ଶକ୍ତି ଆଉ ଉତ୍ସାହ ଥାଏ । ଦୁଃଖୀ ମଣିଷର ସବୁ ଓଲଟା । କ୍ଲାନ୍ତ, ଅବସନ୍ନ ହୋଇ ସେ ସନ୍ଧ୍ୟାରେ ଫେରେ ଓ ହାଣ୍ଡି-ପରି ମୁହଁ କରି ଦିନଯାକର ବିଫଳତା କାହାଣୀ ଘରଲୋକଙ୍କୁ ଶୁଣାଏ । ଆଧୁନିକ କାଳରେ ଅନେକ ମଣିଷ ଭିଡ଼ କାମ ଯୋଗୁ ନୁହଁ, ହାଲୁକା ଓ ପ୍ରଫୁଲ୍ଲ ହୋଇ ପାରିବାର ଅକ୍ଷମତା ଯୋଗୁ କ୍ଲାନ୍ତ ହୁଅନ୍ତି । ଶକ୍ତି ବାହାରେ ସଫଳତା ପ୍ରତି ଲୋଭ, ଉଚ୍ଚାଭିଳାଷ ମଣିଷକୁ ପେଷି ଦିଏ । ଏପରି ମଣିଷଙ୍କ ଭିନ୍ନ ଆଉ ପ୍ରକାରେ ମଣିଷ କିପରି ଜୀବନକୁ ଉପଭୋଗ କରିବାରୁ ବଞ୍ଚିତ ହୁଅନ୍ତି ସ୍ପେନ୍‌ସର୍ ତାହାର ଏକ ଉଦାହରଣ ଦେଇଛନ୍ତି । ସେ ଆମର ଅତି ପରିଚିତା । ଭଦ୍ରମହିଳା ବିଜୁଳି ପରି ଦିନଯାକ ଘର କାମରେ ଲାଗିଥାନ୍ତି । ରୋଷେଇବାସ କରିବା, ପିଲାଙ୍କୁ ଖୁଆଇ ପିଆଇ ସ୍କୁଲ ପଠାଇବା, ସାନବଡ଼ ସମସ୍ତଙ୍କର ଦେହପା'ର ଯତ୍ନନେବା, ଅତିଥି ଅଭ୍ୟାଗତଙ୍କ ତର୍ଚ୍ଚା କରିବା ଇତ୍ୟାଦି ଘରର ଯାବତୀୟ ବିଷୟ ତାଙ୍କୁ ସମ୍ଭାଳିବାକୁ ପଡ଼େ । ଦଣ୍ଡେ ଫୁରସତ୍ ମିଳେନା କହିବା ଠାରୁ ସେ ଦଣ୍ଡେ ଫୁରସତ୍ ନିଅନ୍ତି ନାହିଁ କହିବା ଅଧିକ ଠିକ୍ ହେବ । ଏହାର ଫଳ କ'ଣ ହୁଏ ? ଦିନେ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି-

ପଡ଼େ ଓ ସେ ଦୀର୍ଘକାଳ ଯନ୍ତ୍ରଣା ଧରନ୍ତି । ତାଙ୍କ ସମେତ ପରିବାର ଯାକ ସମସ୍ତେ ଘାଣ୍ଟି ହୁଅନ୍ତି । ଏପରି ଗୃହିଣୀ ଆମର ଅଜଣା ନୁହନ୍ତି । ଖାଲି ଆଶ୍ଚର୍ଯ୍ୟ ଲାଗେ ଯେ ବିଲାତରେ ସ୍ପେନ୍‌ସର ସାହେବ ଓଡ଼ିଆଣୀଙ୍କୁ ଭେଟିଲେ କିପରି ! ଗବେଷଣା ପାଇଁ ବଡ଼ ମୂଲ୍ୟବାନ୍ ବିଷୟ !

ସବୁ ଝଞ୍ଜାଳ ଓ ଦାୟିତ୍ୱ ସତ୍ତ୍ୱେ କିଛିସମୟ ପାଇଁ ହାଲୁକା ହୋଇପାରିବା ଗୋଟିଏ ବଡ଼ କଥା । ଆଜି ଯଦି ଏପିକୁରସ୍‌ଙ୍କ ଦର୍ଶନର କିଛି ବାର୍ତ୍ତା ଥାଏ କିମ୍ବା ଏପିକୁରସ୍‌ଙ୍କ ଚିନ୍ତାରୁ ଆମେ ଯଦି କିଛି ସାରକଥା ଗ୍ରହଣ କରିବାକୁ ବାଛୁ, ତେବେ ତାହା ହେଉଛି— କର୍ମ ବୋଝରେ ଭାଙ୍ଗି ପଡ଼ ନାହିଁ । ଉଚ୍ଚାଭିଳାଷର ଶିକାର ହୁଅନାହିଁ । ଉପସ୍ଥିତ ମଉଜ ବେଳେ ସବୁ ଝଞ୍ଜାଳ ଓ ଦାୟିତ୍ୱକୁ ଭୁଲିଯାଅ । ଆମୋଦବାଦୀଙ୍କୁ ଚେତେଇ ଦିଆଯାଇଛି, ଜୀବନଟା ଗୋଲାପଫୁଲର ଶଯ୍ୟା ନୁହେଁ । ଠିକ କଥା । ମାତ୍ର ତମକୁ ଯଦି କିଛି ସମୟ ଗୋଲାପ ଶଯ୍ୟାଟିଏ ମିଳିଲା, ସେତିକି ସମୟ ତାକୁ ଉପଭୋଗ କରିପାରୁ ନାହିଁ କାହିଁକି ? ଗୋଲାପ ଶଯ୍ୟାରେ ପଡ଼ି ମଧ୍ୟ ତମେ କଣ୍ଟକ ଶଯ୍ୟାକୁ ସ୍ମରଣ କରି ସେହି ପୀଡ଼ାରେ ଘାରି ହେଉଛ ?

ଏପିକୁରସ୍‌ଙ୍କୁ ସମାଲୋଚନା କରିବା ପୂର୍ବରୁ ତାଙ୍କ ଚିନ୍ତାର ମହତ୍ତ୍ୱ ଭଲଭାବେ ହୃଦୟଙ୍ଗମ କରିବା ଆବଶ୍ୟକ । ଏକଥା ସତ ଯେ, ଏପିକୁରସ୍‌ଙ୍କ ଦର୍ଶନର ବିଶେଷ ଉଚ୍ଚତା ନାହିଁ । ମଣିଷକୁ ନାନା କାମନାବାସନାର ସମଷ୍ଟି ଭାବେ ଏପିକୁରସ୍ ଦେଖିଥିଲେ । ପ୍ରକୃତରେ ମଣିଷ କିନ୍ତୁ ଅନେକ କିଛି ଅଧିକ ଓ ରହସ୍ୟମୟ । ତାର ବିରଳ ଓ ମୂଲ୍ୟବାନ୍ ସୁଖାନୁଭୂତି ଭୋଗର ସୀମା ବାହାରେ । ମହାନ୍ ସ୍ୱାର୍ଥତ୍ୟାଗୀ, ମହାନ୍ ଆଦର୍ଶରେ ଆପଣାକୁ ଉତ୍ସର୍ଗ କରିଥିବା ମଣିଷ ସ୍ୱର୍ଗୀୟ ଆନନ୍ଦ ପାଏ । ଏପରି ଆନନ୍ଦ ସମ୍ପର୍କରେ ଏପିକୁରସ୍ ନୀରବ । ସହଜ ଓ ସାଧାରଣ ସୁଖ ପାଖକୁ ସିଧା ରାସ୍ତା ଅଛି ମାତ୍ର ଗଭୀର ଆନନ୍ଦ, ଚିତ୍ତର ଉତ୍ତରଣକାରୀ ଆନନ୍ଦଲାଭର ପଥ ଅଙ୍କାବଙ୍କା ।

## ଷ୍ଟୋଇକ୍ ଜୀବନଧାରା :

ଏପିକୁରସ୍ ଓ ତାଙ୍କର ସମ୍ପ୍ରଦାୟ ବ୍ୟକ୍ତିକେନ୍ଦ୍ରିକ ଆମୋଦର ଅନୁସରଣ କରିବାକୁ ଉତ୍ସାହିତ କଲେ । ଗୁଣର ଉନ୍ନତି ପାଇଁ ଜଣକର ସଂଯମ ଓ ସ୍ୱାର୍ଥତ୍ୟାଗର ମୂଲ୍ୟ ବିଷୟରେ

ଭଲଭାବରେ ସଚେତନ ଗ୍ରୀକ୍‌ଜାତି ମଧ୍ୟରେ ଏପରି ଦର୍ଶନବାଦର ପ୍ରତିକ୍ରିୟା ସୃଷ୍ଟି ହେବା ସ୍ୱାଭାବିକ୍ । ଆମୋଦବାଦ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠାଇଲେ ଜେନୋ ।

ଏପିକୁରିଆନ୍‌ଙ୍କ ପରି ଷ୍ଟୋଇକ୍‌ଙ୍କର ମେଟାଫିଜିକ୍‌ସ ପ୍ରତି ଆଗ୍ରହ ନ ଥିଲା । ଏପି-କୁରିଆନ୍ ପରି ସେ ମଧ୍ୟ କହିଲା ଯେ, ଜ୍ଞାନ ଇନ୍ଦ୍ରିୟନିର୍ଭର । ମାତ୍ର ଇନ୍ଦ୍ରିୟ ଜ୍ଞାନ ପାଖରେ ପହଞ୍ଚାଇ ଦେବାକୁ ଅକ୍ଷମ । କାରଣ ଅନୁଭୂତିକୁ ଆବେଗ ବିକୃତ କରିପାରେ । ଏହା ବନ୍ଦ କରିବା ଈଶ୍ୱରର ଭୂମିକା । ଈଶ୍ୱରଙ୍କୁ ସ୍ଥାନ ପ୍ରତିପାଦ କରୁଥିବା ଏପିକୁରିଆନ୍‌କୁ ଷ୍ଟୋଇକ୍ ଏହି ଜବାବ୍ ଦେଲା । ଉଭୟଙ୍କର ମେଟାଫିଜିକ୍‌ସ ସେମାନଙ୍କର ଜୀବନଦର୍ଶନ ଅନୁଯାୟୀ । ଏପିକୁରସ୍ କହନ୍ତି, ସୃଷ୍ଟି ଆକସ୍ମିକ । ବସ୍ତୁ ତଥା ଜୀବ ଆଟମ୍‌ମାନଙ୍କର ଆକସ୍ମିକ ସମ୍ମେଳନରୁ ଜାତ । ଷ୍ଟୋଇକ୍ କହେ, ଜଗତ ଓ ମଣିଷ ଉଭୟେ ଏକାଧାରରେ ପାର୍ଥିବ ତଥା ସ୍ୱର୍ଗୀୟ । ମଣିଷଠାରେ ବିଶ୍ୱକୁ ନିୟନ୍ତ୍ରଣ କରୁଥିବା ଈଶ୍ୱର (ଅନ୍ୟ ଭାଷାରେ ଈଶ୍ୱର)ଙ୍କର ଅଂଶ ରହିଛି । ଜେନୋଙ୍କର ଦୁଇଜଣ ଅତି ବିଦ୍ୱାନ ଶିଷ୍ୟ ଷ୍ଟୋଇକ୍ ଦର୍ଶନକୁ ବୁଝାଇ ବହୁ ଗ୍ରନ୍ଥ ରଚନା କରିଥିଲେ । ସେ ସବୁ ଲେଖାର ଅଳ୍ପ ଅଂଶ ନଷ୍ଟ ନ ହୋଇ ରହିଛି ।

ସୁଖଲୋଭୀ ଏପିକୁରିଆନ୍‌କୁ ଠୋକର୍ ଦେଇ ଷ୍ଟୋଇକ୍ କହିଲା, ମଣିଷର ସୁଖର ବା ଦୁଃଖର ଅନୁଭୂତି କିଛି ପାଇବା ବା ଘଟିବା ଉପରେ ନିର୍ଭର କରେନା —ନିର୍ଭର କରେ ମନ ଉପରେ । ପଦେ କଥାରେ, ମନର ମୂଳେ ଏ ଜଗତ । ପ୍ରଚୁର ଟଙ୍କା, ବିରାଟ କୋଠାବାଡ଼ି ଓ ଅନ୍ୟ ସବୁ ପ୍ରକାର ସମ୍ପଦକୁ ମଣିଷ ଯେପରି ଗ୍ରହଣ ବା ବ୍ୟବହାର କରେ, ତା ଉପରେ ସେମାନଙ୍କ ମୂଲ୍ୟ ନିର୍ଭରଶୀଳ । ଘଟଣାମାନ ନିରପେକ୍ଷ ଓ ମଣିଷର ମନ ସେମାନଙ୍କୁ ଯେଉଁ ରଙ୍ଗରେ ରଙ୍ଗାଏ ସେମାନେ ସେହି ରଙ୍ଗ ନିଅନ୍ତି । ଷ୍ଟୋଇକ୍ କହେ, ବାହ୍ୟ ଘଟଣାଙ୍କୁ ସମ୍ପୂର୍ଣ୍ଣ ଭାବେ ଉପେକ୍ଷା କର । ପାଇବା ନ ପାଇବାକୁ ଦେହକୁ ନିଅନାହିଁ । କାରଣ ଧନ, ମାନ, ଯଶ ଇତ୍ୟାଦି ପାଇବା ମଣିଷ ହାତର କଥା ନୁହେଁ । ଯେଉଁ ଜିନିଷ ତମ ଅକ୍ତିଆରରେ ନାହିଁ ଓ ଯାହା ମିଳିବା ଅନ୍ୟମାନଙ୍କ ଉପରେ ନିର୍ଭରଶୀଳ, ତାକୁ ନେଇ କାହିଁକି କଷ୍ଟ ପାଉଛ ? କେବଳ ତ କଷ୍ଟ ପାଉନାହଁ, ଆଶା କରୁଥିବା ଜିନିଷ ନ ପାଇ ଭାଗ୍ୟକୁ ନିନ୍ଦୁଛ, ଦେବତାଙ୍କୁ ଦୋଷ ଦେଉଛ । ଏହି ମର୍ମରେ ରୋମାନ୍ ଷ୍ଟୋଇକ୍ ଇପିକ୍‌ଟିଟସ୍ (ଖ୍ରୀଷ୍ଟପର ୭୦—୧୨୦) ଚେତାଇ ଦେଇଛନ୍ତି, "ତୁମର ହେତୁକେ, ଯଦି ତୁମେ ହେତୁକକୁ ନିଜର ମନେକର ଓ ଯାହା

ଅନ୍ୟର ସେ ଆଡ଼କୁ ନ ଅନାଅ, ତେବେ କେହି ତମ ଶତ୍ରୁ ହେବେ ନାହିଁ ବା କ୍ଷତି କରିବେ ନାହିଁ । ତୁମକୁ କେହି ଦୋଷ ଦେବେ ନାହିଁ ବା ତମେ କାହାକୁ ଦୋଷ ଦେବନାହିଁ ।"

ସିନିକ୍ କେତେ ଅଳ୍ପରେ ଚଳିପାରେ ଡାଇଓଜିନିଜ୍ ତାର ଦୃଷ୍ଟାନ୍ତ । ତେବେ ସିନିକ୍ ପରି ଷ୍ଟୋଇକ୍ ତାର ଦାରିଦ୍ର୍ୟକୁ ନେଇ ଏତେଟା ଗର୍ବ କରେନା । ଦୁଃଖ-ଯନ୍ତ୍ରଣା ଓ ବିଧାତାର ଅଭିଶାପ ପ୍ରତି ସେ ଅନାସକ୍ତ । ସମ୍ପଦ ଓ ବିପଦ, ସ୍ୱାସ୍ଥ୍ୟ ଓ ରୋଗ-ବ୍ୟାଧି, ଜୀବନ ଓ ମୃତ୍ୟୁକୁ ସେ ସମାନଭାବେ ଗ୍ରହଣ କରେ । ଷ୍ଟୋଇକ୍‌ର ଫକୀର ହୋଇ ବୁଲିବା ଏକ ଆବଶ୍ୟକତା ନୁହେଁ । ରୋମ୍‌ର ସମ୍ରାଟ ମାର୍କସ୍ ଅରେଲିଅସ୍ (ଦ୍ୱିତୀୟ ଶତାବ୍ଦୀ) ଜଣେ ବିଶିଷ୍ଟ ଷ୍ଟୋଇକ୍ । ସଂସାରକୁ ଏକ ନିର୍ଦ୍ଦିଷ୍ଟ ବାଗରେ ଗ୍ରହଣ କରିବା ଷ୍ଟୋଇକ୍‌ର ଲକ୍ଷଣ । ସେ ଧନୀ ବା ଗରିବ ହେବା ଗୌଣ ବିଷୟ । ରୋମ୍‌ର ଅନ୍ୟତମ ବିଶିଷ୍ଟ ଷ୍ଟୋଇକ୍ ଇପିକ୍‌ଟିଟସ୍ ଜଣେ ଦାସ । ଜୀବନର ଦୁଃଖ ଯନ୍ତ୍ରଣାକୁ ସହଜଭାବେ ଗ୍ରହଣ କରିନେଇଥିବା ଏହି ଦାର୍ଶନିକଙ୍କର ସରଳ ଉକ୍ତିଗୁଡ଼ିକ ବଡ଼ ହୃଦୟସ୍ପର୍ଶୀ ।

"ଦୁର୍ଭାଗ୍ୟ ଆସିଗଲେ ଭାଙ୍ଗିପଡ଼ନା, ବିରକ୍ତ ହୋଇଯାଅନା; ଦୁର୍ଭାଗ୍ୟକୁ ଭାଇପରି ଗ୍ରହଣ କରିନେଲେ ତାହା ସୌଭାଗ୍ୟରେ ପରିଣତ ହୁଏ ।" ଇପିକ୍‌ଟିଟସ୍ ଏହିପରି ବାକ୍ୟ ଉଚ୍ଚାରଣ କରିବାର ଅଧିକାଂଶ । ଥରେ ଇପିକ୍‌ଟିଟସ୍ ଦଣ୍ଡ ଦେବାକୁ ଯାଇ ନିର୍ଦ୍ଦୟ ମୁନିବ ତାଙ୍କର ଗୋଟିଏ ଗୋଡ଼ ମୋଡ଼ିବାରେ ଲାଗିଲେ । ଇପିକ୍‌ଟିଟସ୍ ଶାନ୍ତଭାବେ କହିଲେ, "ଆଉ ଅଧିକ ମୋଡ଼ିଲେ ଗୋଡ଼ଟା ଭାଙ୍ଗିଯିବ ।" ସତକୁ ସତ ତାଙ୍କର ଗୋଡ଼ ଭାଙ୍ଗିଗଲା । 'ମୁଁ କହୁ ନ ଥିଲି' କହି ସେ ହସିଦେଲେ ।

ବିପଦ ମଣିଷର କଷଟି ପଥର । ଇପିକ୍‌ଟିଟସ୍ କହନ୍ତି, ବିପଦରେ ପଡ଼ିଲେ ଈଶ୍ୱର ତମକୁ ବିପଦ ଆଣି ଜୁଟାଇଛନ୍ତି ବୋଲି ମନେରଖିବ । କାହିଁକି ସେ ବିପଦରେ ପକାନ୍ତି ? ତମକୁ ଜଣେ ଅଲିମ୍ପିକ୍ ବିଜୟୀ କରିବା ଉଦ୍ଦେଶ୍ୟରେ । କଷ୍ଟ ନ ସହି, ଚ୍ୟାଲେଞ୍ଜର ମୁକାବିଲା ନ କରି କେହି ବିଜୟୀ ବୀର ହୋଇପାରେନା ।

ଦୁଃଖ ଯନ୍ତ୍ରଣାକୁ ଭ୍ରୂକ୍ଷେପ ନ କରିବା ଠାରୁ ଷ୍ଟୋଇକ୍ ଦର୍ଶନ ଅନେକ କିଛି ଅଧିକ । ଷ୍ଟୋଇକ୍‌ବାଦ ଜୀବନ ଓ ବିଶ୍ୱ ପ୍ରତି ଏକ ଅଖଣ୍ଡ ଦୃଷ୍ଟିକୋଣ । ଗ୍ରୀସ୍‌ରେ ଧର୍ମର ବନ୍ଧନ

ଶିଥିଳ ହୋଇଯାଇଥିବା ଯୁଗରେ ଷ୍ଟୋଇକ୍‌ମାନେ ମଙ୍ଗଳମୟ ଈଶ୍ୱରଙ୍କର ବିଧାନକୁ ସମ୍ମାନ କରିବାକୁ ଆହ୍ୱାନ କଲେ । ସେମାନଙ୍କର ବୈରାଗ୍ୟ ଧାର୍ମିକ ଜନୋଚିତ । ନୈଷ୍ଠିକ ଜୀବନ ଯାପନ କରୁଥିବା ଷ୍ଟୋଇକ୍‌ଙ୍କର ପ୍ରଭାବ ଧର୍ମବିଶ୍ୱାସ ହରାଇଥିବା ସମାଜ ଉପରେ ପଡ଼ୁଥିଲା । ଫସାସିମାନେ ଯାହାକୁ ଦୁର୍ଭାଗ୍ୟ ମଣନ୍ତି ଷ୍ଟୋଇକ୍ ତାକୁ କିଛି ଗୁରୁତ୍ୱ ଦିଏନା । ସମ୍ପଦ, ବିପଦ; ସୌଭାଗ୍ୟ, ଦୁର୍ଭାଗ୍ୟ; ସବୁ ବାହ୍ୟ । କେବଳ ନିଷ୍ଠା, ସାଧୁତା ମଣିଷର ଅସଲ ସମ୍ପଦ । "ଯେପରି ସୂର୍ଯ୍ୟ ଉଦୟ ହେଲେ ତାରାମାନେ ଲୁଚି ଯାଆନ୍ତି, ସେହିପରି ମଣିଷର ଦୁଃଖ, ଯନ୍ତ୍ରଣା ଓ ଅଭାବକୁ ସାଧୁତାର ଆଲୋକ ଲୁଚାଇ ଦିଏ ।"

ଷ୍ଟୋଇକ୍‌ର ଧର୍ମଭାବ ଗଭୀର । ବିଶ୍ୱକୁ ସେ ଈଶ୍ୱରଙ୍କର ସାକାର ରୂପ ଭାବେ ଗ୍ରହଣ କରେ । ବିଶ୍ୱବିଧାନମାନ ଈଶ୍ୱରଙ୍କ ଇଚ୍ଛାର ପରିପ୍ରକାଶ । ତାଙ୍କର ଇଚ୍ଛା ଓ ବିଧାନକୁ ମୁଣ୍ଡପାତି ଗ୍ରହଣ କରିନେବା ହେଉଛି ନୈତିକତା । ଷ୍ଟୋଇକ୍ କହେ, ବିଶ୍ୱବିଧାନ ସର୍ବଦା ମଙ୍ଗଳଦାୟକ । ଜଣେ ବ୍ୟକ୍ତି ବିଶ୍ୱର ସାମାନ୍ୟ ଅଂଶ । ବ୍ୟକ୍ତିର ଦୁଃଖ ଯନ୍ତ୍ରଣା ଦେଖି ବିଶ୍ୱବିଧାନକୁ ନିନ୍ଦା କରିବା ମଣିଷର ଭ୍ରମ । ସମୁଦାୟ ବିଶ୍ୱର ହିତକାରକ ବିଶ୍ୱବିଧାନ ବ୍ୟକ୍ତିବିଶେଷର କ୍ଷତି କରିପାରେ । ମାତ୍ର ଏହା ଦେଖି ବିଶ୍ୱବିଧାନକୁ ନିନ୍ଦିବା ଠିକ୍ ନୁହେଁ । ଧରନ୍ତୁ ଜଣେ ବ୍ୟକ୍ତି ଗଛ ଉପରୁ ଖସିପଡ଼ିଲେ ଓ ତାଙ୍କର ଗୋଡ଼ ଭାଙ୍ଗିଗଲା । ଦୁଃଖଦାୟକ ଘଟଣା । ମାତ୍ର ଏହି କାରଣରୁ ମାଧ୍ୟାକର୍ଷଣ ନିୟମକୁ ନିନ୍ଦିବା ଠିକ୍ ହେବ କି ? ଏ କଥା ସତ ଯେ ମାଧ୍ୟାକର୍ଷଣ ନିୟମ ନ ଥିଲେ କେହି ଗଛରୁ ପଡ଼ନ୍ତେ ନାହିଁ । ମାତ୍ର ମାଧ୍ୟାକର୍ଷଣ ନିୟମ ବିନା ଜଗତ କିପରି ଚଳନ୍ତା ? ଯେଉଁ ନିୟମ ଯୋଗୁ ଗ୍ରହମାନେ କକ୍ଷଚ୍ୟୁତ ହେଉ ନାହାନ୍ତି, ବିଶ୍ୱର ଅଗଣିତ ନକ୍ଷତ୍ର ସ୍ଥାନଚ୍ୟୁତ ହେଉ ନାହାନ୍ତି, ଯେଉଁ ନିୟମ ଯୋଗୁ ଆକାଶରୁ ମେଘ ଝରେ, ସମୁଦ୍ରରେ ଜୁଆର ଉଠେ, ତାକୁ ମନ୍ଦ କିପରି କହିବା ? ହଜାରେ ଗଛ ଚଢ଼ାଳୀଙ୍କ ମଧ୍ୟରୁ ଜଣେ ଖସିପଡ଼େ । ସେହି ଲୋକଟି ଯଦି ମୁଁ ହୁଏ, ତେବେ ଦୁର୍ଘଟଣାଟିକୁ ଗ୍ରହଣ ନ କରି ମାଧ୍ୟାକର୍ଷଣ ନିୟମକୁ ନିନ୍ଦିବି ? ପରମ ରହସ୍ୟ-ମୟ ବ୍ରହ୍ମାଣ୍ଡପତିଙ୍କର ଇଚ୍ଛାକୁ ମାନି ନେଇ ଭଙ୍ଗା ଗୋଡ଼ରେ ଜୀବନର ଅବଶିଷ୍ଟ ଅଂଶ କଟାଇଦେବା ପରିପକ୍ୱ ବିଚାରଶୀଳ ମଣିଷର କର୍ତ୍ତବ୍ୟ ନୁହେଁ କି ? କହିବା ବାହୁଲ୍ୟ ତାଙ୍କର ଇଚ୍ଛାକୁ ସହାସ୍ୟବଦନରେ ମାନିନେବା ପ୍ରକୃତ ଧାର୍ମିକର ଲକ୍ଷଣ । ପ୍ରଭୁ ଯିଶୁଙ୍କର ଆବିର୍ଭାବ ପୂର୍ବରୁ ପାଶ୍ଚାତ୍ୟ ମଣିଷଙ୍କ ଠାରେ ଧର୍ମ ଭାବର ଉଦୟ ଆମେ ଷ୍ଟୋଇକ୍‌ଙ୍କ ଠାରେ ଦେଖିବାକୁ ପାଉ ।

ଷ୍ଟୋଇକ୍ ଭାଗ୍ୟବାଦୀ । ବିଧାତାର ଇଚ୍ଛା ବ୍ୟତୀତ କିଛି ଘଟେ ନାହିଁ ବୋଲି ତାର ଗଭୀର ବିଶ୍ୱାସ । ତାର ବ୍ୟକ୍ତିଗତ ଦୁର୍ଭାଗ୍ୟ ପଛରେ କିଛି ବୃହତ୍ତର କଲ୍ୟାଣ ନିହିତ ଥାଇପାରେ ବୋଲି ସେ ବିଶ୍ୱାସ କରେ । ସେ ଭାଗ୍ୟବାଦୀ ହେଲେ ମଧ୍ୟ ଅକର୍ମା ବା ଦାୟିତ୍ୱହୀନ ନୁହେଁ । ବରଂ ଦୟାମାୟା ନ ରଖି ସେ କର୍ତ୍ତବ୍ୟ କରିଯାଏ । ଥରେ ଜିନୋଙ୍କର ଜଣେ ଦାସ ଚୋରି କଲାବେଳେ ଧରା ପଡ଼ିଲା । ଚୋରିର ଦଣ୍ଡ ମାଡ଼ । ଦାର୍ଶନିକ ମୁନିବଙ୍କ ପାଖରେ ରହି ଦାସ ବି କିଛି ଦର୍ଶନ ତତ୍ତ୍ୱ ଶିଖିଯାଇଥାଏ । ମାଡ଼ ଦାଉରୁ ରକ୍ଷା ପାଇବାକୁ ବିକଳରେ କହିଲା, "ମୋର ଭୁଲ୍ କ'ଣ ଆଜ୍ଞା ! ଚୋରି କରିବା ମୋ କପାଳରେ ଲେଖା ଥିଲା ।" ମାଡ଼ ଚାଲୁରଖି ଜିନୋ ଉତ୍ତର ଦେଲେ, "ଆଜି ତତେ ପିଟିବା ମୋ କପାଳ ଲିଖନ !"

ବ୍ୟକ୍ତିଗତ ଦୁଃଖ ଦୁର୍ଦ୍ଦଶା ଯଦି ମନ୍ଦ ନୁହେଁ ତେବେ ଷ୍ଟୋଇକ୍‌ର ବିଚାରରେ ମନ୍ଦ କ'ଅଣ ? ମାନବୀୟ ଉତ୍କୃଷ୍ଟତା ହରାଇବା ହେଉଛି ମନ୍ଦ । ଉତ୍କୃଷ୍ଟତା ମଣିଷର ଅସଲ ସମ୍ପଦ । ମାରକସ୍‌ଙ୍କ ଉଦାହରଣ ଦେଇ କହିଲେ, ଯେଉଁ ଘୋଡ଼ାର ସୁନ୍ଦର ସାଜ ଅଛି ସେ ଉତ୍କୃଷ୍ଟ ନୁହେଁ; ଯେ ଭଲ ଦୌଡ଼ିପାରେ ସେ ଉତ୍କୃଷ୍ଟ । ସେହିପରି ଧନ ସମ୍ପଦ ଥିବା ମଣିଷ ଉତ୍କୃଷ୍ଟ ନୁହେଁ । ଉତ୍ତମ ଗୁଣ ସମ୍ପନ୍ନ ମଣିଷ ହେଉଛି ଉତ୍କୃଷ୍ଟ । ଧନ, ସ୍ୱାସ୍ଥ୍ୟ ବା ପ୍ରିୟଜନକୁ ହରାଇବା ଅପେକ୍ଷା ନିଜର ଉତ୍କୃଷ୍ଟତା ହରାଇବା ମଣିଷର ଅସଲ କ୍ଷତି ।

ବ୍ୟକ୍ତିଗତ ଦୁର୍ଭାଗ୍ୟକୁ ଷ୍ଟୋଇକ୍ ବୃହତ୍ତର କଲ୍ୟାଣର କାରଣ ବା ସୋପାନ ଭାବେ ଦେଖିଥାଏ । ତା ବିଚାରରେ ଦୁର୍ଭାଗ୍ୟ ମନ୍ଦ ନୁହେଁ, ମଣିଷପଣିଆ ହରେଇବା ହେଉଛି ମନ୍ଦ । ସୁଖ ଦୁଃଖ ମଣିଷର ଦୃଷ୍ଟିଭଙ୍ଗୀ ଉପରେ ନିର୍ଭର କରେ ।

ଆଧୁନିକ କାଳର ତଥାକଥିତ ଷ୍ଟୋଇକ୍ ଓ ସିନିକ୍‌ମାନଙ୍କୁ ଦେଖି ପ୍ରାଚୀନ ଷ୍ଟୋଇକ୍ ବା ସିନିକ୍‌ଙ୍କ ସମ୍ପର୍କରେ କିଛି ଧାରଣା ପୋଷଣ କରିବା ବଡ଼ ଭୁଲ୍ ହେବ । କହିବା ବାହୁଲ୍ୟ ଯେ କେଉଁ କଥାର କିଛି ମୂଲ୍ୟ ନାହିଁ ଏବଂ ମଣିଷର ସବୁ ସ୍ୱପ୍ନ, ଆକାଂକ୍ଷା ଓ କର୍ମ ବିଫଳ ହେବ ବୋଲି ଧରି ନେଇଥିବା ବିତସ୍ପୃହ ଜୀବ ପ୍ରାଚୀନ କାଳର ସିନିକ୍ ନୁହେଁ । ସେହିପରି କୌଣସି ଦୁଃଖ କଷ୍ଟକୁ ଭ୍ରୂକ୍ଷେପ ନ କରିବା ଠାରୁ ପ୍ରାଚୀନ ଷ୍ଟୋଇକ୍‌ର ଜୀବନଦୃଷ୍ଟି ଅନେକ କିଛି ଅଧିକ ।

ମହାନ୍ ଦାର୍ଶନିକ କାଣ୍ଟ ପ୍ରାଚୀନ ଷ୍ଟୋଇକ୍‌ବାଦର ଆଧୁନିକ ପ୍ରବକ୍ତା । ସେ ସ୍ପଷ୍ଟ କହନ୍ତି, ଜୀବନର ମୂଲ୍ୟ ଓ ମର୍ଯ୍ୟାଦା ସମ୍ପଦ, ସୌଭାଗ୍ୟ ବା ପ୍ରତିଭା ଉପରେ ନିର୍ଭର କରେନା—ନିର୍ଭର କରେ ସାର୍ବଜନୀନ ନିୟମ ପ୍ରତି ଆମର ଆନୁଗତ୍ୟ ଉପରେ । "କେବଳ ମଙ୍ଗଳମୟଙ୍କର ଇଚ୍ଛା ବ୍ୟତୀତ ପରମ କଲ୍ୟାଣ କିଛି ନାହିଁ । ବିତ୍ତର ବୃଦ୍ଧି ଓ ଆଉ ସବୁ ମାନସିକ ବିଭବ କିମ୍ବା ସାହସ, ଦୃଢ଼ତା, ନିଷ୍ଠା ପ୍ରଭୃତି ସଦ୍‌ଗୁଣ—କିଛି ହେଲେ ସର୍ବସ୍ଥାନ ଭାବେ କଲ୍ୟାଣକର ନୁହେଁ ।" ମଙ୍ଗଳମୟଙ୍କ ଇଚ୍ଛାର ଅନୁକୂଳ ହେବା ଉପରେ ଧନ, ଗୁଣ ବା ପ୍ରତିଭାର ମୂଲ୍ୟ ନିର୍ଭର କରେ । ବିଧିର ବିଧାନ ପାଖରେ ନତମସ୍ତକ ରହି ମଣିଷ ଯେଉଁ କର୍ମ କରେ କେବଳ ତାହାହିଁ ଉତ୍ତମ ।

ଷ୍ଟୋଇକ୍ ଦର୍ଶନରେ କିଛି ଚିରନ୍ତନ ସତ୍ୟ ଥିବାରୁ ତାହା କାଳୋତ୍ତୀର୍ଣ୍ଣ ହୋଇ-ପାରିଛି । ତଥାପି ଷ୍ଟୋଇକ୍‌ଙ୍କର ସୀମାବଦ୍ଧତାକୁ ଅସ୍ୱୀକାର କରି ହେବନାହିଁ । ଲୋକନିନ୍ଦା, ସମାଲୋଚନା କିମ୍ବା ଅପବାଦ ଷ୍ଟୋଇକ୍‌କୁ ଆଘାତ କରି ପାରେନା । ଦୈବଦଣ୍ଡକୁ ସେ ସ୍ଥିର ଚିତ୍ତରେ ଗ୍ରହଣ କରେ । ପ୍ରଶଂସନୀୟ ବିଷୟ ନିଶ୍ଚୟ । ତେବେ ପାର୍ଥିବ ଓ ଅପାର୍ଥିବ ସମ୍ପଦ ପ୍ରତି ଉଦାସୀନ ହେବା ଗୋଟିଏ କଥା ଓ ମାନବୀୟ ସମ୍ପର୍କ ପ୍ରତି ଉଦାସୀନ ହେବା ଏକ ଭିନ୍ନ କଥା । ସମ୍ପଦ ବିପଦ ପ୍ରତି ଅନାସକ୍ତ ରହିବା ସହିତ ଷ୍ଟୋଇକ୍ ତାର ବ୍ୟକ୍ତିଗତ ସମ୍ପର୍କରେ ନିରାସକ୍ତ ଓ ନିର୍ମମ । ଏହି କାରଣରୁ କଳହପ୍ରିୟା ସ୍ତ୍ରୀଟିଏ ପାଇଥିବା ବ୍ୟକ୍ତିକୁ ଷ୍ଟୋଇକ୍‌ବାଦ ସୁହାଏ !

ସମ୍ପଦ ଓ ବିପଦ, ସ୍ୱାସ୍ଥ୍ୟ ଓ ବ୍ୟାଧିକୁ ସମାନ ଭାବେ ଗ୍ରହଣ କରିବା ଏକ ଅବାସ୍ତବ ଓ ଏକପାଖିଆ ଦୃଷ୍ଟିକୋଣ । ଷ୍ଟୋଇକ୍ ନିୟତିର ଅପରିବର୍ତ୍ତନୀୟ, ନୈର୍ବ୍ୟକ୍ତିକ ଓ କଠୋର ବିଧାନକୁ ପୂଜା କରେ । ନିୟତି ତାର ଈଶ୍ୱର । ତାଙ୍କ ପାଖରେ ଦୟା, କରୁଣା ବା କ୍ଷମା ନାହିଁ । ମଣିଷର ଦୁର୍ଭାଗ୍ୟକୁ ପରମ ଦୟାଳୁ ଈଶ୍ୱର ବଦଳାଇ ପାରନ୍ତି—ଈଶ୍ୱରଙ୍କ ପାଖରେ ସମର୍ପିତ ବ୍ୟକ୍ତି ଦୁର୍ଭାଗ୍ୟରୁ ରକ୍ଷା ପାଇପାରେ—ଏପରି ଚିନ୍ତା ଷ୍ଟୋଇକ୍‌ର କଳ୍ପନା ବାହାରେ ଥିଲା । ଯିଶୁଖ୍ରୀଷ୍ଟଙ୍କ ଆବିର୍ଭାବ ପରେ ଯାଇଁ ଈଶ୍ୱରଙ୍କର ଦୟା ଓ କରୁଣା ପାଶ୍ଚାତ୍ୟ ମଣିଷର ଅନୁଭବ ପରିସର ଭିତରକୁ ଆସିଲା ।

## ମଙ୍ଗଳାକାଂକ୍ଷା ଜ୍ଞାନୀ :

ସୁଖର ସନ୍ଧାନ କରିବାକୁ ଏପିକୁରସ୍ ଉତ୍ସାହିତ କଲେ । ଷ୍ଟୋଇକ୍ ଦୃଷ୍ଟିରେ ଶାରୀରିକ ଦୁଃଖକଷ୍ଟ ସହିପାରିବା ହେଲା ପୌରୁଷ । ଯଥାସମ୍ଭବ ଅଧିକ ଆମୋଦପ୍ରମୋଦରେ ବୁଡ଼ି ରହିବା କ'ଣ ଜୀବନର ଲକ୍ଷ୍ୟ ? କିମ୍ବା ଦୁଃଖ ନ ଭେଦିବା ପରି ନିଜ ଚାରିପଟେ ଗୋଟାଏ ବ୍ୟୂହ ସେ ଗଢ଼ିନେବା ଉଚିତ ? ଏ ଦୁଇଟି ଠାରୁ ପ୍ଲେଟୋଙ୍କର ମତ ଅଲଗା ! ସୁଖ ସର୍ବଦା ବରଣୀୟ ବା ଦୁଃଖ ବର୍ଜନୀୟ ବୋଲି ସେ ମନେ କରନ୍ତି ନାହିଁ । ଉତ୍ତମ ଜୀବନର ସହାୟକ ହେଲେ ପରି ସୁଖ କେବଳ ସ୍ୱାଗତଯୋଗ୍ୟ । ସେହିପରି ଦୁଃଖ ମଧ୍ୟ ବରଣୀୟ । ଜୀବନକୁ ଉନ୍ନତ ଓ ମହାନ୍ କଲାଭଳି ଦୁଃଖର ମଧ୍ୟ ଆବଶ୍ୟକତା ରହିଛି । ସୁଖ ଓ ଦୁଃଖ, ପ୍ରାଚୁର୍ଯ୍ୟ ଓ ଅଭାବର ମୂଲ୍ୟ ଆପେକ୍ଷିକ । ଜୀବନକୁ ଉଚ୍ଚ ଓ ମହାନ୍ କରିବା ଦିଗରେ ସେମାନେ ଯେଉଁଭଳି ଭୂମିକା ନିର୍ବାହ କରନ୍ତି ସେଥିରୁ ସେମାନଙ୍କର ମୂଲ୍ୟ ନିର୍ଣ୍ଣୟ ହୁଏ । ବୀଣାତାରକୁ ଠିକଣା ଭାବେ ଟଙ୍କାରିଲେ ସଙ୍ଗୀତ ବାହାରେ । ମାତ୍ର ଯଥେଚ୍ଛା ଟଣାଓଟରା ଦ୍ୱାରା ସଙ୍ଗୀତ ସୃଷ୍ଟି ହୁଏନା । ବରଂ ତାର ଛିଡ଼ି ଯାଇପାରେ । ସେହିପରି ଜୀବନକୁ ମଙ୍ଗଳମୟ କରି ଗଢ଼ି ତୋଳିବା ପାଇଁ ଆମୋଦକୁ ସୁନିୟନ୍ତ୍ରିତ କରିବା ଆବଶ୍ୟକ । ଦୁଃଖ ସହିବା କ୍ଷେତ୍ରରେ ମଧ୍ୟ ଗୋଟାଏ ବାଛବିଚାର ଅଛି । ରୋଗ ଦୂର କରୁଥିବାରୁ ମଣିଷ ପିତା ଔଷଧ ସେବନ କରେ । ମାତ୍ର ଅପରିମିତ ଔଷଧ ସେବନର ଫଳ ବିଷମୟ ନୁହେଁ କି ?

ସୁଖସାଗରରେ ମାତିବାର ଯେଉଁ ରଙ୍ଗୀନ ଚଷମା ଆମୋଦକାମୀ ପିନ୍ଧେ, ସେଥିରେ ଜୀବନ ଓ ସଂସାର ବଡ଼ ସଂକୀର୍ଣ୍ଣ ହୋଇଯାଏ । ସେହିପରି ଦୁଃଖ ଯନ୍ତ୍ରଣା ସମ୍ଭାଳିବାର ଦୁର୍ଗ ଭିତରୁ ଜୀବନର ଖଣ୍ଡିତ ସ୍ୱରୂପ ହିଁ ଦିଶେ । ପ୍ଲେଟୋ ମଣିଷ ଜୀବନକୁ ମହତ୍ତ୍ୱପୂର୍ଣ୍ଣ କରି ଗଢ଼ିବାର ମାର୍ଗ ଖୋଜିଲେ । ଏଥିପାଇଁ ମଣିଷ ଜୀବନର ସ୍ୱରୂପ ଓ ସଂସାର ଭିତରେ ତାର ସ୍ଥିତି ସମ୍ପର୍କରେ ତାଙ୍କୁ ଗଭୀର ଚିନ୍ତା କରିବାକୁ ପଡ଼ିଲା । ମଣିଷ ଜୀବନ କିପରି ସାର୍ଥକ ହେବ ଓ ସେଥିପାଇଁ ବାଟ କଅଣ ନ ଜାଣି ସୁଖଲାଭକୁ ଜୀବନର ଲକ୍ଷ୍ୟ କରିନେବା ଏକ ଲଘୁଚିତ୍ତର । ଜୀବନକୁ ଉନ୍ନତ ଓ ଉତ୍କୃଷ୍ଟ କରିବା ପାଇଁ ପ୍ଲେଟୋ ଆହ୍ୱାନ କଲେ । କିପରି

ତାହା ସମ୍ଭବ ? କାହିଁକି ମଣିଷ ଶ୍ରେୟକୁ ଖୋଜେ ? ଏହିପରି ପ୍ରଶ୍ନଗୁଡ଼ିକୁ ପ୍ଲେଟୋ ବିଭିନ୍ନ ଦିଗରୁ ବିଶ୍ଳେଷଣ କରିଛନ୍ତି ।

କେଉଁ ବ୍ୟକ୍ତି ଯଥୋଚିତ ପଥରେ ଚଳେ ସେ ପ୍ରଶ୍ନ ରିପବ୍ଲିକ୍ ଗ୍ରନ୍ଥ ଆରମ୍ଭରେ ଉତ୍ଥାପନ କରାଯାଇଛି । ମାତ୍ର ଏହାର ସିଧାସଳଖ ଉତ୍ତର ନ ଦେଇ ପ୍ଲେଟୋ ଆଦର୍ଶ ସମାଜର ଚିତ୍ର ଆଙ୍କିଛନ୍ତି । କାରଣ ତାଙ୍କ ବିଚାରରେ ସମାଜର ନ୍ୟାୟ ବ୍ୟକ୍ତି ଜୀବନର ନ୍ୟାୟର ବୃହତ୍ତର ରୂପ । ସମାଜରେ ନ୍ୟାୟକୁ ଠାବ କରିପାରିଲେ ଆମେ ବ୍ୟକ୍ତିର ନ୍ୟାୟ କଅଣ ଜାଣିପାରିବା । ଅନ୍ୟ ଭାଷାରେ ଆଦର୍ଶ ସମାଜର ସ୍ୱରୂପ ନିର୍ଣ୍ଣୟ ଫଳରେ (ତାର କ୍ଷୁଦ୍ର ସଂସ୍କରଣ) ଆଦର୍ଶ ବ୍ୟକ୍ତିର ସ୍ୱରୂପ ଦେଖିହେବ ।

ସମାଜରେ ବିଭିନ୍ନ ଶ୍ରେଣୀର ଲୋକ ଅଛନ୍ତି । ଯେଉଁ ସମାଜରେ ପ୍ରତ୍ୟେକ ଶ୍ରେଣୀ ତାର ଦାୟିତ୍ୱ ଠିକଣା ଭାବେ ତୁଲାଏ ଓ ସମାଜ ଠାରୁ ନିଜର ଉଚିତ ପ୍ରାପ୍ୟ ପାଏ ସେ ସମାଜ ଆଦର୍ଶ ସ୍ଥାନୀୟ । ଆଦର୍ଶ ସମାଜରେ ଗୋଟିଏ ଶ୍ରେଣୀ ଆପଣାର ସ୍ୱାର୍ଥ ଜଗିବା ପରିବର୍ତ୍ତେ ସମୂହ କଲ୍ୟାଣ ପ୍ରତି ଧ୍ୟାନ ରଖିଥାନ୍ତି । ଆଦର୍ଶ ସମାଜର ଏତେ ସରଳ ସଂଜ୍ଞାଟି ଭିତରେ କେତେ ଗଭୀର ସତ୍ୟ ନିହିତ ଅଛି ତାହା ଆମେ ସହଜେ ବୁଝିପାରୁ । କାରଣ ଆଜିର ପୃଥିବୀରେ ସବୁଠି ପ୍ରତ୍ୟେକ ଶ୍ରେଣୀ ତା'ର ହକ୍ ଠାରୁ ଅଧିକ ଦାବୀ କରୁଛି । 'ଆମର ଦାବୀ ପୂରଣ ହେଉ' ଧ୍ୱନିରେ ଭାରତବର୍ଷର ଗଗନପବନ ପ୍ରକମ୍ପିତ । 'ଦେଶ ଯାଉଥିଲେ ଯାଉ' ପଦଟି ଅବଶ୍ୟ ଉହ୍ୟ । ଶ୍ରେଣୀ ସଂଘର୍ଷ ଜନିତ ବିଶୃଙ୍ଖଳା ଓ ଅଶାନ୍ତି ନାନା ରୂପରେ ବ୍ୟାପୁଛି ।

ସମାଜ ପରି ବ୍ୟକ୍ତିର ବିଭିନ୍ନ ଅଂଶ ରହିଛି । ମଣିଷ ଅନ୍ତରାତ୍ମାର ତିନୋଟି ଅଙ୍ଗ ହେଉଛନ୍ତି କ୍ଷୁଧା (ଇନ୍ଦ୍ରିୟ କ୍ଷୁଧା ଓ କାମନାବାସନା), ତେଜ (Spirit) ଓ ବିଚାର । ମଣିଷର ଲଢ଼ୁଆ ଉପାଦାନକୁ ପ୍ଲେଟୋ 'ତେଜ' କହନ୍ତି । ତେଜ ମଣିଷକୁ ଅନ୍ୟାୟ ବିରୁଦ୍ଧରେ ଚଳାଏ । କ୍ରୋଧ ଓ ପ୍ରତିହିଂସାର କାରଣ ହେଉଛି ତେଜ । କ୍ଷୁଧା ଓ ତେଜ ନିଜ ନିଜର ସୀମା ଭିତରେ ରହିଲେ ଜୀବନ କଲ୍ୟାଣମୟ ହୁଏ । ଆଦର୍ଶ ସମାଜରେ ଯେପରି ବିଭିନ୍ନ ଶ୍ରେଣୀ ଜ୍ଞାନୀ ଶାସକଶ୍ରେଣୀର ଅଧୀନରେ ଥାଆନ୍ତି ସେହିପରି ଆଦର୍ଶ ବ୍ୟକ୍ତିର କ୍ଷୁଧା ଓ ତେଜ ବିଚାରର ଅଧୀନ । ମଣିଷ କାହିଁକି ଉତ୍ତମ ସୁନ୍ଦର ଖାଦ୍ୟ ପାଇଁ ଲାଳାୟିତ ନ

ହେବ ତାର କିଛି କାରଣ ନାହିଁ । ମାତ୍ର ଖାଦ୍ୟର ପରିମାଣକୁ ନ ଜଗିଲେ ପେଟରୋଗର ବାହାରିବ । ଚରିତ୍ରର ଭୂମିକା ଏଇଠି । ସେହିପରି ଚରିତ୍ରହୀନ ଭାବେ ଗୋଟାଏ ତୁଚ୍ଛ କାରଣ ପାଇଁ ଲଢ଼େଇ କରି ଦୁଃଖ କଷ୍ଟ ସହିବା ବା ଜୀବନ ଦେବା ମଣିଷର ନିର୍ବୋଧତା ।

ଗ୍ରୀକ୍‌ଶବ୍ଦ arete ର ଅନୁବାଦ ଇଂରାଜୀରେ Virtue ବା Excellence । ଓଡ଼ିଆରେ ଏହାର ଅନୁବାଦ କରାଯାଉଛି ଉତ୍କୃଷ୍ଟତା । ଏହାର ଭାବାର୍ଥ କେତୋଟି ଉଦାହରଣରୁ ବୁଝି ହେବ । ଭଲଭାବେ କାଟିବା ଛୁରୀର ଉତ୍କୃଷ୍ଟତା, ବ୍ୟାଧି ଆରୋଗ୍ୟ କରିବା ଡାକ୍ତରର ଉତ୍କୃଷ୍ଟତା, ଇତ୍ୟାଦି ।

ମଣିଷ ବିଜ୍ଞ ଓ ଚରିତ୍ରବାନ୍ ହେବା ଅବଶ୍ୟ କଠିନ ସାଧନାର ବିଷୟ । ଗ୍ରୀକ୍‌ମାନେ ବିଚାରୁଥିଲେ ଯେ ମଣିଷର ଉତ୍କୃଷ୍ଟତା ଚାରୋଟି । ଯଥା—ନ୍ୟାୟ, ସଂଯମ, ସାହସ ଓ ପ୍ରଜ୍ଞା । ସକ୍ରେଟିସ୍ ଓ ପ୍ଲେଟୋ ଆପାତତଃ ଗୋଟିଏ ନୂଆ କଥା କହିଲେ । ସେମାନେ କହିଲେ, ଅସଲ ଉତ୍କୃଷ୍ଟତା ମାତ୍ର ଗୋଟିଏ । ସେଇଟି ହେଉଛି ପ୍ରଜ୍ଞା । ଅନ୍ଧାଧୂନ୍ଆ ଭାବେ ବିପଦକୁ ଡେଇଁବା ସାହସ ନୁହେଁ । ଏପରି ସାହସ (ହୁଣ୍ଡାମି) ଅଜ୍ଞାନତା ଦେଖାଏ । ସେହିପରି କଠୋର ନିୟମ ପାଳନ ଠାରୁ ସଂଯମ ଅନେକ କିଛି ଅଧିକ । ପ୍ରଜ୍ଞାର ସବୁ ଉତ୍କୃଷ୍ଟତା ରହିଛି । ବାଲ୍ୟାବସ୍ଥାରୁ ପ୍ରତିଭାବାନ୍ ବାଳକଙ୍କୁ ଶିକ୍ଷାଦେଇ କିପରି ବିଜ୍ଞ ଶାସକ ଗଢ଼ିବାକୁ ହେବ ତାର ସବିଶେଷ ଆଲୋଚନା ରିପବ୍ଲିକ୍‌ରେ କରାଯାଇଛି ।

ଏ ସୃଷ୍ଟି ତଥା ମାନବ ଜୀବନ ଲକ୍ଷ୍ୟହୀନ ନୁହେଁ । ଜ୍ଞାନୀ ମାନବଜୀବନର ଉଦ୍ଦେଶ୍ୟ ବୁଝିଥାଏ । ସେ ମଙ୍ଗଳ (Good)ର ଦ୍ରଷ୍ଟା । ପ୍ଲେଟୋଙ୍କ ଦୃଷ୍ଟିରେ କୌଣସି ନିର୍ଦ୍ଦିଷ୍ଟ ବିଷୟରେ ବିଶେଷ ଜ୍ଞାନଲାଭ କରିବା ଶିକ୍ଷାର ଲକ୍ଷ୍ୟ ନୁହେଁ । ମଙ୍ଗଳ ଦର୍ଶନ କରାଇବା ପରି ଦିବ୍ୟଦୃଷ୍ଟି ପ୍ରଦାନ କରିବା ଶିକ୍ଷାର ଅନ୍ତିମ ଲକ୍ଷ୍ୟ ।

କାମନା ବାସନା ଓ ଆବେଗ ଦ୍ୱାରା ଅଣାୟତ୍ତ ହୋଇ ମଣିଷ କିପରି ସଂସାର ମଧ୍ୟରେ ବାଟବଣା ହୁଏ ସେ ବିଷୟରେ ପ୍ଲେଟୋ ଗଭୀର ଭାବେ ସଚେତନ ଥିଲେ । ଭୋଗ-ବିଳାସରେ ମାତିଲେ ଇନ୍ଦ୍ରିୟଗଣ ତୃପ୍ତ ହୁଅନ୍ତି ଓ ମଣିଷ ସୁଖ ପାଏ । ସେ ସୁଖ କିନ୍ତୁ କ୍ଷଣିକ । ଅନେକ ଜିନିଷ ପାଇଁ ମଣିଷ ଅନ୍ତରାତ୍ମାର କ୍ଷୁଧା ଅଛି ଓ ତାହା ପୂରଣ ହୋଇ-ପାରିଲେ ସ୍ଥାୟୀ ସୁଖ ମିଳେ । ଅନିତ୍ୟ ପଛରେ ଧାଇଁ ନିତ୍ୟକୁ ହରାଉଥିବା ମଣିଷ କିପରି

ଅଜ୍ଞାନ-ଜାଲରେ ପଡ଼ି ଧନ୍ଦି ହେଉଥାଏ ସେ କଥା ପ୍ଲେଟୋ ଦେଖାଇ ଦିଅନ୍ତି । ଉଚିତରୂପେ ଜୀବନ ବଞ୍ଚିବା ପାଇଁ ପ୍ଲେଟୋଙ୍କ ମାହାତ୍ମ୍ୟ ଯେପରି ଯୁଗ ଯୁଗ ଧରି ସମଗ୍ର ମାନବଜାତିକୁ ଉଦ୍‌ବୁଦ୍ଧ କରିଛି ତାର ତୁଳନା ନାହିଁ ।

## ଆରିଷ୍ଟୋଟଲ୍‌ଙ୍କ ମଧ୍ୟମ ପନ୍ଥା :

ଏପିକୁରସ୍‌ଙ୍କ ଦୃଷ୍ଟିରେ ଆମୋଦର ମୂଲ୍ୟ ସବୁଠାରୁ ଅଧିକ । ଲଗାମହୀନ ଭାବେ ଆମୋଦର ଅନୁସରଣ କରିବାକୁ ସେ ଅବଶ୍ୟ ବାରଣ କରନ୍ତି । ସେଇଟା କେବଳ ଗୁଣର କଥା । ମନେ କରନ୍ତୁ ଏପିକୁରସ୍ ପରଲୋକର ବିଚାରପତି । "ତୁମେ କିପରି ବଞ୍ଚିଥିଲ ?" ଉତ୍ତରରେ ଜଣେ ଯଦି ଏପିକୁରସ୍‌ଙ୍କୁ କହେ, 'ମୁଁ ମଉଜ ମଜଲିସ୍‌ରେ ମାତିଥିଲି' ତେବେ ଅଧିକ ଖୋଳତାଡ଼ ନ କରି ସେ ତାକୁ ସ୍ୱର୍ଗକୁ ପଠାଇଦେବେ । ମିତବ୍ୟୟତାକୁ କଡ଼ାକଡ଼ି ଭାବେ ପାଳନ କରିଥିବା ବ୍ୟକ୍ତି ଷ୍ଟୋଇକ୍ ଦାର୍ଶନିକଙ୍କ ଠାରୁ ସ୍ୱର୍ଗକୁ ଟିକେଟ୍. ପାଇଯିବ । ପ୍ଲେଟୋଙ୍କର ଭିତର ଭାବ ବୁଝିବା କଷ୍ଟକର ନୁହେଁ । ସେ ଆମୋଦକୁ ସିଧାସଳଖ ନିନ୍ଦା କରିନାହାନ୍ତି । କେଉଁ ଆମୋଦ କ୍ଷତିକାରକ ତାହା ଜାଣିବା ପରି ବିଚାର ମଣିଷର ରହିବା ଆବଶ୍ୟକ ବୋଲି ସେ କହନ୍ତି । କିନ୍ତୁ ନିଜ ଜୀବନରେ ପ୍ଲେଟୋ ଥିଲେ ଭୋଗବିଳାସ ପ୍ରତି ବୀତସ୍ପୃହ । ପ୍ଲେଟୋ ଯଦି ପରଲୋକର ବିଚାରପତି ହୋଇ ଥାଆନ୍ତେ ତେବେ ଜଣେ ମଉଜ-ପ୍ରିୟ ଲୋକର ଆଉ କିଛି କଥା ନ ଶୁଣି ତାକୁ ନର୍କକୁ ପଠାନ୍ତେ । ଜଣେ ଦାର୍ଶନିକଙ୍କ ଦର୍ଶନରୁ ତାଙ୍କର ମନୋଭାବ ବୁଝିନେବା କଷ୍ଟକର ନୁହେଁ ।

ଆରିଷ୍ଟୋଟ୍‌ଲ୍‌ଙ୍କ ବିଚାର ଏ ସମସ୍ତଙ୍କ ଠାରୁ ଭିନ୍ନ ହୁଅନ୍ତା । ଧରନ୍ତୁ ଆରିଷ୍ଟୋଟ୍‌ଲ୍ ବିଚାରକ ଆସନରେ ବସିଛନ୍ତି । ଜଣେ ଆସାମୀ ଆମୋଦ ପିଛା ପଡ଼ିଥିଲା ବୋଲି ଜଣା-ପଡ଼ିଲା । ଗୋଟାଏ ଲୋକ ସମ୍ପର୍କରେ ଏତିକି ଜାଣି ସେ କିଛି ରାୟ ଦେବେ ନାହିଁ । ଆହୁରି ଜଣାପଡ଼ିଲା, ଲୋକଟା କେତେକ ନୈତିକ ନିୟମ ଭଙ୍ଗ କରିଛି । ଏହା ମଧ୍ୟ ରାୟ ଦେବା ପାଇଁ ଯଥେଷ୍ଟ ନୁହେଁ । ସେ ଲୋକ ତାର ଭାଇବନ୍ଧୁ, କୁଟୁମ୍ବ ଓ ସମାଜ ସହିତ କିପରି ସମ୍ପର୍କ ରଖିଥିଲା ଆରିଷ୍ଟୋଟ୍‌ଲ୍ ତାହା ପଚାରିବେ । ଜଣେ ଯଦି ଜୀବନକାଳ ଭିତରେ ଭଲ ସ୍ୱାମୀଟିଏ ହୋଇଛି, ବାପ ମାଙ୍କର ସେବା କରିଛି, ପୁଅଝିଅଙ୍କୁ ସ୍ନେହ କରିଛି, ଦେଶ ପାଇଁ ଚିନ୍ତିତ ହୋଇଛି, ବୈଜ୍ଞାନିକ ହୋଇଥିଲେ ବିଜ୍ଞାନ ପିଛା ମନପ୍ରାଣ ଦେଇ ଲାଗିଛି, ତେବେ

ସେ କେତେ ନିୟମ ଭାଙ୍ଗିଛି ବା ବିଳାସରେ ମାତିଛି ସେ ତାଲିକା ଆଡ଼କୁ ନ ଚାହିଁ ଆରିଷ୍ଟୋଟଲ୍ ତାକୁ ସ୍ୱର୍ଗକୁ ପଠାଇବେ ।

ତମେ ଏ ସଂସାରରେ ଆଜି କାହା ପାଇଁ ଚିନ୍ତିତ ? କାହାର ଦାୟିତ୍ୱ ବହନ କର ? ତମର କିଛି ବୃହତ୍ତର ଲକ୍ଷ୍ୟ ଅଛି ? କଳା, ସାହିତ୍ୟ ବା ବିଜ୍ଞାନକୁ ନେଇ ତମେ ମାତ ? ଦେଶ ଓ ଦଶର ହିତ ପାଇଁ କଷ୍ଟ ସହିବାକୁ ପ୍ରସ୍ତୁତ ଥାଅ ? ବୃହତ୍ତର କଥା ଛାଡ଼, ତମ କ୍ଲବ କିପରି ଫୁଟବଲ୍ ଖେଳରେ ନାଆଁ କରିବ ସେଥିପାଇଁ ତମେ ଭାବିତ ହୁଅ ? ଏହିସବୁ ପ୍ରଶ୍ନର ଉତ୍ତରରୁ ଆରିଷ୍ଟୋଟଲ୍ ତମ ବ୍ୟକ୍ତିତ୍ୱର ବିକାଶ ମାପିବେ । ଯେଉଁ ବ୍ୟକ୍ତି ଯେତେ ମହତ୍ ଲକ୍ଷ୍ୟ ଓ ଉଚ୍ଚ ଆଦର୍ଶ ସହିତ ଜଡ଼ିତ ତାଙ୍କର ଅନ୍ତର ସେତିକି ବିକଶିତ । ତମେ ଯଦି କାହାର ଭାର ବହନ କରିନାହଁ, ଶ୍ରେଷ୍ଠତର କୌଣସି ଲକ୍ଷ୍ୟ ସହିତ ଜଡ଼ିତ ହୋଇନାହଁ, ତେବେ ପରଲୋକରେ ତମର କି ଗତି ହେବ ସେ ପ୍ରଶ୍ନ ପଛକୁ ଥାଉ । ଆରିଷ୍ଟୋଟଲ୍ କହିବେ, ତମେ ଏଇ ଜନ୍ମରେ ଜଣେ ତୁଚ୍ଛ ମଣିଷ ଓ ଇହଲୋକରେ ତମର ଜୀବନ ବୃଥା ।

ପଣ୍ଡିତମାନଙ୍କ ଭାଷାରେ କହିଲେ, ଆରିଷ୍ଟୋଟଲ୍ ମଣିଷର ସାମାଜିକ ସ୍ୱଭାବ ଉପରେ ଗୁରୁତ୍ୱ ଦେଲେ । ଜଣେ ମଣିଷ ଗୋଟିଏ ଦ୍ୱୀପ ନୁହେଁ । ଅନ୍ୟ କାହା ସହିତ କିଛି ସମ୍ପର୍କ ନ ଥିବା ଏକାନ୍ତ ଭାବେ ନିଜସ୍ୱ ଚିନ୍ତା ଓ ସମସ୍ୟା ଭିତରେ ବନ୍ଦୀ ବ୍ୟକ୍ତିକୁ ବର୍ଣ୍ଣନା କରିବାକୁ ଥିବା ଗ୍ରୀକ୍ ଶବ୍ଦରୁ ଇଂରାଜୀର 'ଇଡିଅଟ୍' ଶବ୍ଦଟି ସୃଷ୍ଟି ହୋଇଛି । କୌଣସି ବ୍ୟକ୍ତି ତା ନିଜର ଡାକ୍ତର ନୁହେଁ ବା କବିତା ଲେଖିବା ପାଇଁ ନିଜେ ଗୋଟାଏ ଭାଷା ସୃଷ୍ଟି କରେ ନାହିଁ । ମଣିଷ ଅନ୍ୟମାନଙ୍କ ଜ୍ଞାନ ଉପରେ ନିର୍ଭର କରେ । ସେମାନଙ୍କର ଇଚ୍ଛା, ପ୍ରତ୍ୟାଶା ଓ ରୁଚିକୁ ନେଇ ଚଳେ । କୁହାଯାଇ ପାରେ ଯେ, ଅନ୍ୟମାନଙ୍କୁ ଭ୍ରୂକ୍ଷେପ ନ କରି ବିପ୍ଳବୀ ଅମଡ଼ାବାଟରେ ଯାଏ । ଏ କଥା ଠିକ୍ ନୁହେଁ । ପ୍ରକୃତ ବିପ୍ଳବୀ ଅନ୍ୟମାନଙ୍କୁ ତା ବାଟରେ ଚଳାଇବାର ଲକ୍ଷ୍ୟ ରଖିଥାଏ । ପୁରୁଣା ମାର୍ଗକୁ ଅଚଳ କରିଦେଇ ଗୋଟାଏ ନୂଆ ମାର୍ଗ ଫିଟାଇବା ତାର ଉଦ୍ଦେଶ୍ୟ ।

ସ୍ୱଭାବତଃ ମଣିଷ ସାମାଜିକ । ତା'ର ଲକ୍ଷ୍ୟ ଯେତିକି ବୃହତ୍ତର, ସମ୍ପର୍କମାନ ଯେତିକି ଗଭୀର, ସେ ସେତେ ମହାନ୍ । ଯେଉଁ ବ୍ୟକ୍ତି ଗୋଟିଏ ବୃହତ୍ତର ଲକ୍ଷ୍ୟକୁ ଧ୍ରୁବତାରା

କଣନ୍ତି, ତା ଜୀବନ ତଦନୁଯାୟୀ ଗଠିତ ହୁଏ । ଏହା ବ୍ୟକ୍ତିର, ଜଣକର ସଦ୍‌ଗତି ଗତିର ସଦ୍‌ଗତି ସହିତ ଛନ୍ଦାଛନ୍ଦି ।

ମଣିଷ ଏକ ସାମାଜିକ ପ୍ରାଣୀ—ଆରିଷ୍ଟୋଟଲ୍‌ଙ୍କ ବିଚାରରେ ଏ ଉକ୍ତିଟି ଅର୍ଦ୍ଧସତ୍ୟ । ମଣିଷର ଲକ୍ଷ୍ୟ ତାର ଅହଂରୁ ଉତ୍ତୀର୍ଣ୍ଣ ହୋଇଥିବାରୁ ସେ ସାମାଜିକ । ପୁଣି ଜୀବନର ଉତ୍କର୍ଷତା ତା ଅନ୍ତରର ସ୍ଥିତି ଉପରେ ନିର୍ଭର କରୁଥିବାରୁ ସେ ଜଣେ ବ୍ୟକ୍ତି । ଆରିଷ୍ଟୋଟଲ୍ ମଣିଷର ଏଇ ଅନ୍ୟ ପଟଟି ମଧ୍ୟ ଦେଖିଥିଲେ । ତାର ନିଜସ୍ୱ ଲକ୍ଷ୍ୟ ଓ ଆଦର୍ଶ ଯୋଗୁ ମଣିଷ ବ୍ୟକ୍ତି ହୁଏ । ମଣିଷର କର୍ମମାନ ବ୍ୟକ୍ତି ନିରପେକ୍ଷ ନୁହନ୍ତି । ତେଣୁ ପାପକର୍ମ ଓ ପୁଣ୍ୟକର୍ମର ଗୋଟିଏ ଗୋଟିଏ ତାଲିକା ପ୍ରସ୍ତୁତ କରିଯାଇ ପାରିବ ନାହିଁ । କର୍ତ୍ତାକୁ ଛାଡ଼ି କର୍ମର ବିଚାର ହୋଇ ପାରେନା । ଗୋଟିଏ କର୍ମ ପଛରେ କର୍ତ୍ତାର କି ଲକ୍ଷ୍ୟ ଓ ମତଲବ ରହିଛି ସେଇଥିରୁ କର୍ମ ଭଲ କି ମନ୍ଦ ନିର୍ଣ୍ଣିତ ହେବ । ଉଦାହରଣ ସ୍ୱରୂପ, ଚିରକୁମାରୀ ରହିବା ଭଲ ନା ବିବାହ କରିବା ଭଲ ? ଏପରି ପ୍ରଶ୍ନର ବ୍ୟକ୍ତି ନିରପେକ୍ଷ ଉତ୍ତର ନାହିଁ । ଜଣେ ନାରୀର ଲକ୍ଷ୍ୟ ଉପରେ ( ଏକମାତ୍ର ସନ୍ତାନ ଭାବେ ପିତାମାତାଙ୍କ ଦାୟିତ୍ୱ ସମ୍ଭାଳିବାକୁ କିମ୍ବା ସ୍ୱେଚ୍ଛାଚାରିଣୀ ହେବାକୁ ଇଚ୍ଛା କରି ସେ ବିବାହ କରି ନ ପାରେ ) ସେ ଚିରକୁମାରୀ ରହିବା ଭଲ ବା ମନ୍ଦ ସେ କଥା ନିର୍ଭର କରେ ।

ବଞ୍ଚିବା ପାଇଁ ଗୋଟିଏ ଲକ୍ଷ୍ୟ ପାଇବା, ଜୀବନ ପଥରେ ଅଗ୍ରସର ହେବା ପାଇଁ ମଣିଷକୁ ଧ୍ରୁବତାରା ମିଳିଯିବା ବଡ଼ ସୌଭାଗ୍ୟର ବିଷୟ । ସୁଖଲାଭ ଜୀବନର ଲକ୍ଷ୍ୟ—ଏ ବିଷୟରେ ଆରିଷ୍ଟୋଟଲ୍ ଏପିକ୍ୟୁରସ୍‌ଙ୍କ ସହିତ ଏକମତ । ମାତ୍ର ତାଙ୍କ ଦୃଷ୍ଟିରେ ସୁଖର ସ୍ୱରୂପ ଖୁବ୍ ଭିନ୍ନ । ନିଜର ବୌଦ୍ଧିକ ବା ସାମାଜିକ ଲକ୍ଷ୍ୟ ପୂରଣ କରିବା ଦିଗରେ ଲାଗିପଡ଼ିବାରେ ମଣିଷର ସୁଖ । ଗୁଲି ଖାଇବା ଚୋରର ପକ୍ଷରେ ସୁଖକର ନୁହେଁ କିନ୍ତୁ ଦେଶର ମୁକ୍ତି ପାଇଁ ଲଢ଼ୁଥିବା ଶହୀଦ୍ ପକ୍ଷରେ ଗୁଲିମାଡ଼ର ସ୍ୱାଦ ଭିନ୍ନ । କାର୍ଲେ କହନ୍ତି, ଯେଉଁ ମଣିଷ ନିଜ ଜୀବନର ଲକ୍ଷ୍ୟ ବୁଝି ତଦନୁଯାୟୀ କାମ କରୁଛି, ସେ ଭାଗ୍ୟବାନ୍ । ଏପରି ଚିନ୍ତା ଆରିଷ୍ଟୋଟଲୀୟ ।

ଆରିଷ୍ଟୋଟଲ୍ କହନ୍ତି, ମଣିଷ ମହତ୍ତ୍ୱ ଲକ୍ଷ୍ୟକୁ ଜୀବନର ଧ୍ରୁବତାରା କରି ବଞ୍ଚିବା ଉଚିତ୍ । ମହତ୍ ଲକ୍ଷ୍ୟ ପୂରଣ ପାଇଁ ମନ, ଧନ, ଜନ ଇତ୍ୟାଦିର ପ୍ରୟୋଜନ ହୋଇପାରେ ।

ଲକ୍ଷ୍ୟପୂରଣର ଉପାୟଗୁଡ଼ିକୁ ହୀନ ମନେକଲେ ଚଳିବ ନାହିଁ । ଧନ ସମ୍ପଦକୁ ତୁଚ୍ଛ ମଣିବାର କାରଣ କ'ଣ ? ଆରିଷ୍ଟୋଟଲ୍‌ଙ୍କର ଏପରି ଦୃଷ୍ଟିକୋଣ ତାଙ୍କର ପୂର୍ବବର୍ତ୍ତୀ ଦାର୍ଶନିକଙ୍କ ତୁଳନାରେ ଅଧିକ ସୁସ୍ଥ ଓ ବାସ୍ତବ । ସେ ପଚାରନ୍ତି, କିଛି ଧନ ନ ଥିଲେ ମଣିଷ କାମ କରିବ କିପରି ? ଧରନ୍ତୁ ଜଣେ ଗବେଷକ । ସେ ସୁଖ ସ୍ୱାଚ୍ଛନ୍ଦ୍ୟ ନ ପାଇଲେ ତାଙ୍କର କର୍ମଦକ୍ଷତା କମିଯିବ ନାହିଁ କି ? ଜଣେ ମନ୍ତ୍ରୀଙ୍କର ଫୋନ୍, ଗାଡ଼ି, ଭଲ ଘର ଓ ଲୋକବାକ ଦରକାର । ତେବେ ଏ ସବୁ ହେଲା ଲକ୍ଷ୍ୟ ହାସଲର ଉପକରଣ । ଅଧିକାଂଶ ଲୋକ ଗାଡ଼ିବାଡ଼ି ଇତ୍ୟାଦିକୁ ଅସଲ ଲକ୍ଷ୍ୟ ବୋଲି ଧରି ନିଅନ୍ତି । ଧନ ଅର୍ଜନକୁ ଏକ ଲକ୍ଷ୍ୟ କରିନେବା କଥା ଆଦୌ ଆରିଷ୍ଟୋଟଲ୍‌ଙ୍କ ସମର୍ଥନ ପାଏନା ।

ଯୋଲ୍‌ଫାଙ୍କିଆ ଏପିକୁରିଆନ୍ ବେଶୀ ସମ୍ପତ୍ତି ଗ୍ରହେନା । ତା'ର ପରିବାର ନ ରହିଲେ ଭଲ । ସ୍ଥାୟୀ ଘର ବାନ୍ଧିବା ତାକୁ ଅଡ଼ୁଆ । ଷ୍ଟୋଇକ୍ ଘରଦ୍ୱାର ଓ ସମ୍ପତ୍ତି ପ୍ରତି ଉଦାସୀନ । ପ୍ଲେଟୋ ଦାର୍ଶନିକ ଉପରେ ଶାସନ ଦାୟିତ୍ୱ ଅର୍ପଣ କରି ତାକୁ ଧନ ସମ୍ପଦ ଓ ପରିବାରରୁ ବଞ୍ଚିତ କରିଛନ୍ତି । ତାଙ୍କର ବିଶ୍ୱାସ, ଧନ ମଣିଷକୁ କଳୁଷିତ କରେ ।

ମୋଟକଥା, ପ୍ରଥମତଃ, ମଣିଷ ଜୀବନର ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହିବା ଦରକାର । ସଂସାରର ଗୋଟିଏ ଅଂଶକୁ ସେ ଯେପରି ଗଢ଼ିବାକୁ ଚାହୁଁଛି ତାହାର ବାସ୍ତବ ରୂପାୟନ ପାଇଁ ତାକୁ ଲାଗି ପଡ଼ିବାକୁ ହେବ । ଦ୍ୱିତୀୟ କଥା ହେଉଛି ଆବଶ୍ୟକୀୟ ଉପାଦାନ ସଂଗ୍ରହ । ଲକ୍ଷ୍ୟ ସାଧନ ପାଇଁ ଉତ୍ତମ ସ୍ୱାସ୍ଥ୍ୟ ଓ ଧନ ସମ୍ପତ୍ତି ଆବଶ୍ୟକ । କେତେଜଣଙ୍କ ସହିତ ଭଲ ସମ୍ପର୍କ ଓ ବନ୍ଧୁତା ରହିବା ଦରକାର । କିଛି ପ୍ରତିପତ୍ତି ଓ ରାଜନୈତିକ କ୍ଷମତା ହୁଏ ତ ଦରକାର ପଡ଼ିପାରେ । ଏ ସବୁର ଅଧିକାରୀ ତାକୁ ହେବାକୁ ପଡ଼ିବ ।

ତୃତୀୟତଃ, ଆରିଷ୍ଟୋଟଲ୍‌ଙ୍କ ଦୃଷ୍ଟିରେ ଲକ୍ଷ୍ୟ ପୂରଣ ଓ ଉପକରଣ ଅଧିକାରୀ ହେବା ମଧ୍ୟରେ ସମନ୍ୱୟ ରକ୍ଷା କରିବା ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ । ମଣିଷକୁ ଉଭୟ ତାର ଲକ୍ଷ୍ୟ ଓ ଉପକରଣ ସଂଗ୍ରହ ପ୍ରତି ଧ୍ୟାନ ଦେବାକୁ ହୁଏ । ଏ ଦୁହିଁଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରି ତାକୁ ଗୋଟିଏ ମଧ୍ୟମ ପଥରେ ଗତି କରିବାକୁ ହେବ । ମଧ୍ୟମ ପନ୍ଥାଟି କିପରି ତାର ଏକ ଉଦାହରଣ ନିଆଯାଉ । ଜଣେ ଛାତ୍ର ପରୀକ୍ଷା ପାଇଁ ଦିନ ରାତି ପଢ଼ୁଛି । ପରୀକ୍ଷାରେ ଭଲ କରିବା ତାର ଲକ୍ଷ୍ୟ । ମାତ୍ର ସବୁବେଳେ ପଢ଼ିଲେ ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିବ । ଅତ୍ୟଧିକ

ଉତ୍କଣ୍ଠା ଯୋଗୁ ପାଠ ମନେ ରହିବ ନାହିଁ । ତେଣୁ ପଢ଼ିବା ସହିତ ଚିତ୍ତ ବିନୋଦନ ମଧ୍ୟ ଦରକାର । ଚିତ୍ତ ବିନୋଦନ କରିବା ପାଇଁ ସେ କ'ଣ ପରୀକ୍ଷା ପୂର୍ବଦିନ ରାତି ଉଜାଗର ରହି କୌଣସି ସଙ୍ଗୀତ ଆସରରେ ବସିଯିବ ? ତା ନୁହେଁ । ପଢ଼ାପଢ଼ି ଓ ଚିତ୍ତ ବିନୋଦନ ମଧ୍ୟରେ ସମନ୍ୱୟ ରକ୍ଷା କରି ତାକୁ ମଧ୍ୟମ ପନ୍ଥାରେ ଯିବାକୁ ହେବ । କହିବା ବାହୁଲ୍ୟ, ଦିନକୁ ଦଶ ଘଣ୍ଟା ପାଠପଢ଼ା ଓ ଦୁଇଘଣ୍ଟା ବୁଲାବୁଲି—ମଧ୍ୟମପନ୍ଥା ନିର୍ଣ୍ଣୟର ଏପରି ଏକ ରୁଟିନ୍‌ଗତ ବ୍ୟାପାର ନୁହେଁ । ଏହା ଏକ ସୂକ୍ଷ୍ମ ଓ ବ୍ୟକ୍ତିଗତ ବ୍ୟାପାର । ଏହାର ଅଭାବରେ ମଣିଷ ଏକବାଗିଆ ହୋଇପଡ଼େ । ଧରନ୍ତୁ ଜଣେ ଜ୍ଞାନପିପାସୁ ଅଧ୍ୟାପକ ଚବିଶ ଘଣ୍ଟା ବହି ପାଖରେ ବସନ୍ତି । ସେ ଖୁବ୍ ଜ୍ଞାନ ଅର୍ଜନ କରିଛନ୍ତି କିନ୍ତୁ କୂପ ଭିତରୁ ଖସି ପାରିବାର ଜ୍ଞାନ ତାଙ୍କର ନାହିଁ । ସାମାଜିକ ଦାୟିତ୍ୱବୋଧ ଓ ସାମାଜିକ ସମସ୍ୟା ସହିତ ସମ୍ପର୍କ ଅଭାବରୁ ତାଙ୍କ ଜ୍ଞାନର ଉପଯୁକ୍ତ ବିନିଯୋଗ ହୋଇପାରେ ନାହିଁ । ମଧ୍ୟମ ପନ୍ଥାଟିଏ ନ ପାଇବାର ଫଳ ଏହିପରି ।

ଏ ତ ଗୋଟିଏ ଉଦାହରଣ । ଜୀବନ ପଥରେ ପ୍ରତି ପଦକ୍ଷେପରେ ଆମକୁ ମଧ୍ୟମ-ପନ୍ଥାଟି ଦେଖି ଗତି କରିବାକୁ ହେବ । ଜୀବନର ସ୍ୱର୍ଣ୍ଣପଥ (ଆରିଷ୍ଟୋଟଲ୍‌ଙ୍କ ଭାଷାରେ Golden mean)ଟିକୁ ପାଇବାରେ ମାନବୀୟ ଉତ୍କୃଷ୍ଟତା ସାହାଯ୍ୟ କରନ୍ତି । ପ୍ରଜ୍ଞା, ସଂଯମ ଇତ୍ୟାଦି ଗୁଡ଼ିଏ ଗ୍ରୀକ୍ ମାନବୀୟ ଉତ୍କୃଷ୍ଟତା ସମ୍ବନ୍ଧରେ ଆରିଷ୍ଟୋଟଲ୍‌ଙ୍କର ଚିନ୍ତାରେ ଅନେକ ମୌଳିକତା ଅଛି । ଏଠାରେ ତାହା ଆଲୋଚନା କରିବାର ଅବକାଶ ନାହିଁ ।

ପାରମ୍ପରିକ ଗୁଡ଼ିଏ ଉତ୍କୃଷ୍ଟତା ବ୍ୟତୀତ ମଣିଷ ଜୀବନକୁ ଆଉ ଗୋଟିଏ ଜିନିଷ ମହାନ୍ କରିଥାଏ । ତାହା ହେଉଛି ବନ୍ଧୁତ୍ୱ । ବନ୍ଧୁତ୍ୱ ଜୀବନକୁ କେବଳ ମହାନ୍ ନୁହେଁ, ସରସ ଓ ସୁନ୍ଦର କରେ । ଯେଉଁଭଳି ସୁନ୍ଦର ଓ ମର୍ମସ୍ପର୍ଶୀ ଭାଷାରେ ଆରିଷ୍ଟୋଟଲ୍ ବନ୍ଧୁତ୍ୱର ବନ୍ଦନା କରିଛନ୍ତି, ତାହା ବାସ୍ତବିକ୍ ଅତୁଳନୀୟ । ପ୍ରତ୍ୟେକ ବ୍ୟକ୍ତିତ୍ୱ ତାର ନିଜସ୍ୱ ପଥରେ ଅଗ୍ରସର ହୋଇ ବିକଶିତ ହୁଏ । ଦୁଇଜଣ ବ୍ୟକ୍ତିଙ୍କର ଜୀବନର ଲକ୍ଷ୍ୟ ଓ ଆଗ୍ରହ ପ୍ରତି ସମ୍ମାନବୋଧରୁ ସେମାନଙ୍କ ମଧ୍ୟରେ ବନ୍ଧୁତ୍ୱର ଡୋର ଲାଗିଯାଏ । ଅର୍ଥାତ୍ ମଣିଷ ଯେତେ ବିଶାଳ ବ୍ୟକ୍ତିତ୍ୱସମ୍ପନ୍ନ ହେଉପଛେ, ବନ୍ଧୁ ବିନା ସେ ଏକୁଟିଆ । କଥାଟା ଖଟ୍‌କା ଲାଗୁଛି ? ବିଶାଳ ବ୍ୟକ୍ତିତ୍ୱସମ୍ପନ୍ନ ମଣିଷ ଏକୁଟିଆ ହେବା ସମ୍ଭବ ? ଆରିଷ୍ଟୋଟଲ୍‌ଙ୍କ ବିଚାରରେ

ଉଚିତ । ଯେଉଁ ମଣିଷର ଲକ୍ଷ୍ୟ ମହତ୍ ଓ ଉଚ୍ଚ, ତାର ଭାଗୀଦାର୍ ହେବାକୁ ଆଉ ଜଣେ ମଣିଷ୍ ଆଗେଇ ଆସେ ଓ ଦୁହିଁଙ୍କ ମଧ୍ୟରେ ବନ୍ଧୁତ୍ୱ ପ୍ରତିଷ୍ଠା ହୁଏ । ଏହା ଅସଲ ବନ୍ଧୁତ୍ୱର ଭିତ୍ତି । ଅଧମ ବ୍ୟକ୍ତି ଅନ୍ୟମାନଙ୍କ ମେଳରେ ପଶେ, ସେମାନଙ୍କ ସାନ୍ନିଧ୍ୟ ଲୋଡ଼େ କିନ୍ତୁ ଆପଣାକୁ ସଖ୍ୟ ଦେଇ ପାରେନା ! କଥାଟି ବଡ଼ ଗହନ । ଅଧମ ବ୍ୟକ୍ତି ଭିତରେ ଏପରି କିଛି ନାହିଁ ଯାହା ପ୍ରତି ସେ ନିଜେ ଆକୃଷ୍ଟ, ଯାହାକୁ ସେ ନିଜେ ଭଲପାଏ । ତେଣୁ ଅନ୍ୟମାନେ ତାକୁ ଭଲପାଇବେ କିପରି ? ଯେଉଁ ବ୍ୟକ୍ତି ନିଜ ଭିତରେ କିଛି ଆଲୋକ ଦେଖିପାରେ ସେହି କେବଳ ଅନ୍ୟକୁ ଆକୃଷ୍ଟ କରିପାରିବ । ଅର୍ଥାତ୍ ବନ୍ଧୁ ପାଇବାକୁ ହେଲେ ଉତ୍କୃଷ୍ଟ ମଣିଷ ହେବା ଦରକାର । ଏବଂ ତନା ବନ୍ଧୁତାରେ ଜୀବନ ସୁଖକର ହୋଇ ନ ପାରେ ।

ମଣିଷ ଜୀବନ ପରି ବନ୍ଧୁତ୍ୱର ଅନେକ ସ୍ତର ଅଛି । ଏକାଠି ଚେସ୍ ଖେଳିବା, ସିନେମା ଦେଖିବା ପ୍ରଭୃତି ଲଘୁ ବନ୍ଧୁତ୍ୱର ଦୃଷ୍ଟାନ୍ତ । ଏପରି କ୍ଷେତ୍ରରେ ଆମୋଦର ଭାଗୀଦାର ହୋଇ ଦୁଇ ଜଣ ସୁଖ ପାଆନ୍ତି । ବୃତ୍ତି ଓ ବ୍ୟବସାୟରେ ଉନ୍ନତି କରିବା ପାଇଁ ବନ୍ଧୁ ହୋଇଥିବା ଦୁଇ ବ୍ୟକ୍ତିଙ୍କର ବନ୍ଧୁତ୍ୱ ଏହାଠାରୁ ଉଚ୍ଚ । କାରଣ ଗ୍ରେଟିଆଟିଏ ହେଲେ ମଧ୍ୟ ଗୋଟାଏ ଲକ୍ଷ୍ୟ ସେମାନଙ୍କ ବନ୍ଧୁତ୍ୱର ଭିତ୍ତି । ସମାନ ବୌଦ୍ଧିକ ଅଭିରୁଚି ଓ ସାମାଜିକ ଆଦର୍ଶ ପ୍ରତିଷ୍ଠାକୁ ଭିତ୍ତି କରି ଗଢ଼ିଉଠିଥିବା ବନ୍ଧୁତ୍ୱ ମହାନ୍ । ତେବେ ସମାନ ଆଧ୍ୟାତ୍ମିକ ଲକ୍ଷ୍ୟ ନେଇ ବଞ୍ଚିଥିବା ଦୁଇ ବନ୍ଧୁଙ୍କର ବନ୍ଧୁତ୍ୱ ସର୍ବଶ୍ରେଷ୍ଠ ।

କହିବା ବାହୁଲ୍ୟ, ଗ୍ରୀକ୍‌ମାନେ ଥିଲେ ବଡ଼ ବନ୍ଧୁପ୍ରିୟ । ହୋମର୍‌ଙ୍କ କାବ୍ୟରେ ବନ୍ଧୁମାନଙ୍କର ମିଳିତ ଆମୋଦପ୍ରମୋଦ ଓ ସୁଖଦୁଃଖର ମର୍ମସ୍ପର୍ଶୀ ବର୍ଣ୍ଣନା ଦେଖିବାକୁ ମିଳେ ।



## ନୂତନ ବତୀଘର

* ✳ ଆଲେକ୍‌ଜାଣ୍ଡରଙ୍କ ଅନ୍ତେ ଗ୍ରୀକ୍ ସଂସ୍କୃତି ନୂଆ ନୂଆ ମୂଲକରେ ପ୍ରସାରିତ ହେଲା ।
* ✳ ସଂସ୍କୃତିର କେନ୍ଦ୍ର ଏଥେନ୍‌ସରୁ ଉଠିଆସିଲା ଆଲେକ୍‌ଜାଣ୍ଡ୍ରିଆ ।
* ✳ ଗ୍ରୀକ୍ ଜାତିର ଅନ୍ତର୍ନିହିତ ସୃଜନୀଶକ୍ତି କମିଲା ।

ଆଲେକ୍‌ଜାଣ୍ଡର୍‌ଙ୍କ ପରବର୍ତ୍ତୀ ଗ୍ରୀକ୍ ଜାତିର ଏକ ଶୃଙ୍ଖଳିତ ଇତିହାସ ପାଇବା ସମ୍ଭବ ନୁହେଁ । କାରଣ ଆଲେକ୍‌ଜାଣ୍ଡର୍‌ଙ୍କ ବିଶାଳ ସାମ୍ରାଜ୍ୟରେ ଗ୍ରୀକ୍‌ମାନେ ଖେଳେଇ ହୋଇଗଲେ । ଗ୍ରୀସ୍‌ରେ ନଗର ରାଷ୍ଟ୍ରର ଦିନ ସରିଗଲା । ଗଣତାନ୍ତ୍ରିକ ଶାସନ ପଦ୍ଧତି ଓ ଜୀବନଧାରାର ଇତି ଘଟିଲା । ଗୋଟିଏ ନଗରରେ ବିଭିନ୍ନ ଜାତିର ଲୋକ ମିଶାମିଶି ହୋଇ ରହିବାରୁ ପ୍ରତ୍ୟେକ ନଗର ହୋଇ ଉଠିଲା ଆନ୍ତର୍ଜାତିକ ।

ସାଧାରଣତଃ ଧରାଯାଏ, ଆଲେକ୍‌ଜାଣ୍ଡର୍‌ଙ୍କ ପରେ ଗ୍ରୀକ୍-ସଂସ୍କୃତି-ସୂର୍ଯ୍ୟ ଅସ୍ତ ଗଲେ । ଏ କଥା ଠିକ୍ ନୁହେଁ । ଆଲେକ୍‌ଜାଣ୍ଡର୍‌ଙ୍କ ବିଶାଳ ସାମ୍ରାଜ୍ୟରେ ଖେଳେଇ ହୋଇଯାଇ ଗ୍ରୀକ୍ ସଂସ୍କୃତି ତାର ଉପଯୁକ୍ତ ଐତିହାସିକ ଭୂମିକା ତୁଲାଇଲା । ସଂସ୍କୃତିର ଜନ୍ମ, ବିକାଶ ଓ ମୃତ୍ୟୁ ସମ୍ବନ୍ଧରେ ପଣ୍ଡିତମାନେ ନାନା ମତ ଦିଅନ୍ତି । ତେବେ କୌଣସି ମହାନ୍ ସଂସ୍କୃତି ହଠାତ୍ ମରେନାହିଁ । ଗୋଟିଏ ଦୃଷ୍ଟିରୁ ମରିବା କଥାଟି ଭୁଲ୍ । ସଂସ୍କୃତି ରୂପାନ୍ତରିତ ହୁଏ । ତାର ପୁନର୍ଜନ୍ମ ଘଟେ । ଗୋଟିଏ ସଂସ୍କୃତି-ନଦୀ, ମାନବ-ମହାସାଗରରେ ମିଶିଯାଏ । ଗ୍ରୀକ୍ ସଂସ୍କୃତିର ଅସ୍ତକାଳୀନ ଗୋଧୂଳିବେଳା କିନ୍ତୁ ବିଳମ୍ବିତ । ସେହି ବିଳମ୍ବିତ ଗୋଧୂଳିରେ

ଆମେ କାହିଁ ମିଞ୍ଜି ମିଞ୍ଜି ତାର କେବଳ ଦେଖୁନା, ଉଜ୍ଜ୍ୱଳ ସୂର୍ଯ୍ୟଟିଏ ମଧ୍ୟ ଆମକୁ ଅବାକ୍ କରି ଦେଇପାରେ ।

ପିରୋନ :

ଦର୍ଶନ କ୍ଷେତ୍ରରେ ଆଲେକ୍‌ଜାଣ୍ଡର୍‌ଙ୍କ ସମସାମୟିକ ଦୁଇଜଣ ବିଶିଷ୍ଟ ଦାର୍ଶନିକ ଏପିକୁରସ୍ ଓ ଜେନୋଙ୍କ ସମ୍ବନ୍ଧରେ ଆମେ ପୂର୍ବରୁ ଆଲୋଚନା କରିଛୁ । ପିରୋ (Pyrrho ଖ୍ରୀ. ପୂ ୩୬୫—୨୭୫) ସେହି ସମୟର ଆଉଜଣେ ବିଶିଷ୍ଟ ଦାର୍ଶନିକ । ଆଲେକ୍‌ଜାଣ୍ଡର୍‌ଙ୍କ ସହିତ ସେ ଭାରତକୁ ଆସିଥିଲେ ଓ କିଛିକାଳ ଭାରତୀୟ ସନ୍ନ୍ୟାସୀଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ପିରୋ ସଂଶୟବାଦର ଜନକ ଭାବେ ପରିଚିତ । ଭାରତରୁ ଜନ୍ମଭୂମି ଏଲିସ୍‌କୁ ଫେରିବା ପରେ ପିରୋ ଗୋଟିଏ ଦର୍ଶନ ସ୍କୁଲ୍ ଖୋଲିଲେ ଓ ନିଜର ଉତ୍କଟ ଦାରିଦ୍ର୍ୟକୁ ଭ୍ରୂକ୍ଷେପ ନ କରି ସେ ଦର୍ଶନ ଚର୍ଚ୍ଚାରେ ମଜ୍ଜି ରହିଲେ ।

ପିରୋଙ୍କ ମତରେ ଇନ୍ଦ୍ରିୟଗଣ ବା ବିଚାର ମଣିଷକୁ ଅଭ୍ରାନ୍ତଜ୍ଞାନ ପ୍ରଦାନ କରିବାକୁ ଅକ୍ଷମ । ବିଚାର କାମନାର ଓକିଲ ମାତ୍ର । ପ୍ରତ୍ୟେକ ଯୁକ୍ତିର ପ୍ରତିଯୁକ୍ତି ରହିଛି । ମଣିଷର ମତଲବ ଅନୁସାରେ ଗୋଟିଏ ବସ୍ତୁ ଶ୍ରେଷ୍ଠ ବା ବଡ଼, ସୁନ୍ଦର ବା ଅସୁନ୍ଦର ଦିଶିପାରେ । ଗୋଟିଏ ଜାତିର ବିଧିବିଧାନ ଅନ୍ୟ ଜାତିଠାରୁ ଅଲଗା । ଏପରି ସ୍ଥଳେ କୌଣସି ମତରେ ଅଟଳ ରହିବା କିମ୍ବା କୌଣସି ମତ ପାଇଁ ଲଢ଼ିବା ଅର୍ଥହୀନ । ମଣିଷ ତା ଦେଶର ଓ ସମୟର ଚଳଚଳଣି, ରୀତିନୀତିକୁ ମାନିନେବା ଉଚିତ । କାରଣ ସବୁକଥା ସମପରିମାଣରେ ସତ୍ୟ ବା ମିଥ୍ୟା ହୋଇଥିବାରୁ ନିଜ ସମାଜର ବିରୁଦ୍ଧାଚରଣ କରି ଅଯଥା ଅଶାନ୍ତିକୁ ଡାକି ଆଣିବା ନିର୍ବୋଧତା । ସଂସାରରେ ସବୁ ଅନିଶ୍ଚିତ । ଏପରିକି ବଞ୍ଚିରହିବା ଭଲ ଓ ମୃତ୍ୟୁ ମନ୍ଦ ବୋଲି ନିଶ୍ଚିତଭାବେ କୁହାଯାଇପାରିବ ନାହିଁ । ଏପରି ସ୍ଥଳେ ସଂସାରକୁ ବା ନିଜ ସମାଜକୁ ବଦଳେଇବାକୁ ଚେଷ୍ଟା ନ କରି 'ସବୁ ସହିଯାଅ ଓ ଶାନ୍ତିରେ ରୁହ' । ଏଇ ତ ଥିଲା ପିରୋଙ୍କର ଆଦର୍ଶ । ହିନ୍ଦୁ ଜୀବନାଦର୍ଶନର ଏତିକି ମାତ୍ର କଥା ସେ ବୁଝିଥିଲେ । ଏଲିସ୍‌ରେ ପିରୋଙ୍କର ଏପରି ସମ୍ମାନ ଥିଲା ଯେ ତାଙ୍କ ଖାତିରରେ ନଗରବାସୀ ଦାର୍ଶନିକମାନଙ୍କୁ କରମୁକ୍ତ କରିଥିଲେ ।

ବୁଦ୍ଧଙ୍କୁ ପିରୋ କେତେ ବୁଝିଥିଲେ ଓ ବୁଝିବାର ସୁଯୋଗ ପାଇଥିଲେ ସେ କଥା ଜଣା ନ ଥିଲେ ମଧ୍ୟ ବୁଦ୍ଧ ସନ୍ନ୍ୟାସୀଙ୍କ ଦ୍ୱାରା ସେ ପ୍ରଭାବିତ ହୋଇଥିବା କଥାଟି ତାତ୍ପର୍ଯ୍ୟ-ପୂର୍ଣ୍ଣ । ସୂକ୍ଷ୍ମ ସ୍ତରରେ ଆଲେକ୍‌ଜାଣ୍ଡର୍‌ଙ୍କ ବିଜୟର ପ୍ରତିଶୋଧ ପ୍ରାଚ୍ୟ କିପରି ନେଇଛି ପିରୋ ତାର ଏକ ଦୃଷ୍ଟାନ୍ତ । ଅଭ୍ରାନ୍ତ ଜ୍ଞାନ ସମ୍ଭବ, ମଣିଷ ସତ୍ୟ ଲାଭ କରିପାରିବ—ଗ୍ରୀସୀୟ ଦାର୍ଶନିକ ଦୃଷ୍ଟିକୋଣ ଏହିପରି ଗଢ଼ା ହୋଇଥିଲା । ପ୍ଲେଟୋ ଓ ଆରିଷ୍ଟୋଟ୍‌ଲ୍‌ଙ୍କ ମଧ୍ୟରେ ସବୁ ପାର୍ଥକ୍ୟ ସତ୍ତ୍ୱେ ଦୁହେଁ ଗୋଟିଏ କଥାରେ ଏକମତ ଯେ ସାଧନା ବଳରେ ଅଭ୍ରାନ୍ତ ଜ୍ଞାନ ମିଳିବ । ଏହିପରି ଦୃଢ଼ ଦାର୍ଶନିକ ପ୍ରତ୍ୟୟ ପିରୋଙ୍କ ଆଘାତ ଫଳରେ ଦୋହଲିଗଲା । ଆହୁରି ବଡ଼ ଆଘାତ ଆସିଥିଲା ଷ୍ଟୋଇକ୍‌ଙ୍କ ଠାରୁ । ଷ୍ଟୋଇକ୍ ନିର୍ଭୁଲ ଓ ନିରାପଦ ଗ୍ରୀକ୍ ଦର୍ଶନ ସୌଧର ଝରକା ଭାଙ୍ଗିଦେଲା । ଇହୁଦୀ ଜାତିର ଜନ୍ମ ଜେନୋ ପ୍ରାଚ୍ୟର ଗୁପ୍ତଚର ଭୂମିକାରେ ଅବତୀର୍ଣ୍ଣ । ଜେନୋଙ୍କର ଭାବନା ଗ୍ରୀକ୍ ଦାର୍ଶନିକ ଚିନ୍ତା ଅପେକ୍ଷା ପ୍ରାଚ୍ୟ ଧର୍ମର ଅଧିକ ନିକଟବର୍ତ୍ତୀ ।

ବୁଦ୍ଧିର ଉପରେ ଭରସା ରଖି ଅଭ୍ରାନ୍ତ ଜ୍ଞାନଲାଭର ସାଧନା ଯଦି ଗ୍ରୀକ୍ ଦର୍ଶନର ପ୍ରଧାନ ଧାରା ହୁଏ, ତେବେ ଗୋଟିଏ ବିପରୀତ-ମୁଖୀ ଉପଧାରାର ସ୍ଥିତି ସ୍ପଷ୍ଟ । ଏଲିଆଟିକ୍ ଜେନୋଙ୍କର ପ୍ରହେଳିକାମାନ ବୁଦ୍ଧିର ଶକ୍ତି ଉପରେ ସଂଶୟ ଆଣିଲେ । ଗର୍ଜିଆସ୍ ଓ ପ୍ରୋଟାଗୋରାସ୍ ବୁଦ୍ଧିର ଉପରକୁ ସଂଶୟର ତୀର ନିକ୍ଷେପ କରିଛନ୍ତି । ଏପରିକି ଉପଧାରାକୁ ପୁଷ୍ଟ କରିବାରେ ସକ୍ରେଟିସ୍‌ଙ୍କ ଅବଦାନ ରହିଛି ।

ଗ୍ରୀସ୍‌ରେ ଧର୍ମ ଓ ଦର୍ଶନ ମଧ୍ୟରେ ଦ୍ୱନ୍ଦ୍ୱର ତିନୋଟି ପର୍ଯ୍ୟାୟ ବାରି ହୋଇପଡ଼େ । ସକ୍ରେଟିସ୍‌ଙ୍କ ପୂର୍ବର ଦାର୍ଶନିକମାନେ ଧର୍ମକୁ ଗୌଣ ମଣିଲେ । ସେମାନେ ଧର୍ମ ପ୍ରତି ଉଦାସୀନ । ଆରିଷ୍ଟୋଟ୍‌ଲ୍ ଧର୍ମର ଆବଶ୍ୟକତା ବୁଝୁଥିଲେ । ଧର୍ମ ସ୍ଥାନରେ ଏକ ବୁଦ୍ଧିସମ୍ମତ ନୈତିକତା ସ୍ଥାପନ କରିବାକୁ ଆରିଷ୍ଟୋଟ୍‌ଲ୍ ଓ ପ୍ଲେଟୋ ଉଦ୍ୟମ କରିଛନ୍ତି । ତୃତୀୟ ପର୍ଯ୍ୟାୟରେ ସଂଶୟବାଦୀ ଓ ଷ୍ଟୋଇକ୍ ଧର୍ମକୁ ପ୍ରତ୍ୟାବର୍ତ୍ତନର ବାଟ ଫିଟାଇଲେ । ପିରୋ ଦର୍ଶନ ପ୍ରତି ସଂଶୟୀ । ସେ ବରଂ ସାଧାରଣ ଲୋକଙ୍କର ପୁରାତନ ଧର୍ମବିଶ୍ୱାସ ଆଡ଼କୁ ଢଳିଛନ୍ତି । ଆଉ କିଛିକାଳ ଅନ୍ତେ ଆସିଲେ ନିଓ ପ୍ଲେଟୋନିକ୍ ଦାର୍ଶନିକ । ମନେହୁଏ ନିଓ ପ୍ଲେଟୋନିକ୍ ଖ୍ରୀଷ୍ଟିଆନ୍‌ର ଜାଆଁଳା ଭାଇ । ଧର୍ମର ଗଣ୍ଡିଭିତରୁ ବିଦ୍ରୋହକରି ପଳାଇ ଆସିଥିବା ଗ୍ରୀକ୍ ଦର୍ଶନ ଏହିପରି ଭାବେ ପୁଣି ତାର ମାଆ କୋଳକୁ ଫେରିଗଲା ।

କଳା :

କବିତା ଓ ନାଟକ କ୍ଷେତ୍ରରେ ଗ୍ରୀସ୍ ଆଉ ସୋଫୋକ୍ଲିଜ୍ ସମୟର ଉଚ୍ଚତାକୁ ଉଠିପାରି ନ ଥିଲା । କିନ୍ତୁ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ମଧ୍ୟ ଗ୍ରୀକ୍‌କଳାର ଉଚ୍ଚମାନ ବଜାୟ ରହିଛି । କାଠ ଓ ହାଡ଼ ଦାନ୍ତର ଦକ୍ଷ କାରିଗର ଓ ତାରକସି କାମରେ ନିପୁଣ ବଣିଆମାନେ ଆଲେକଜାଣ୍ଡର୍‌ଙ୍କ ବିଶାଳ ସାମ୍ରାଜ୍ୟରେ ନୂଆ ନୂଆ ଦେଶକୁ ଗଲେ । ଚିତ୍ରକଳା କ୍ଷେତ୍ରରେ ଆପେଲିଜ୍ ଓ ପ୍ରୋଟୋଜିନିଜ୍, ଭାସ୍କର୍ଯ୍ୟ କ୍ଷେତ୍ରରେ ପ୍ରାକ୍‌ସିଟିଲିଜ୍ ଓ ସ୍କୋପାସ୍ ଆଲେକଜାଣ୍ଡର୍‌ଙ୍କର ସମସାମୟିକ ମହାନ୍ ଶିଳ୍ପୀ । ଈଶ୍ୱର ସର୍ବକାଳୀନ କଳାକାରଙ୍କ ସମାବେଶରେ ସେମାନଙ୍କ ଆସନ ପ୍ରଥମ ଧାଡ଼ିରେ । ପରେ କୁଆଡ଼ି ଆପେଲିଜ୍ ବା ପ୍ରୋଟୋଜିନିଜ୍‌ଙ୍କ ପରି ବିଶିଷ୍ଟ ଚିତ୍ରକର ବାହାରି ନାହାନ୍ତି । ମାତ୍ର ଗ୍ରୀକ୍ ଚିତ୍ରକଳାର ପ୍ରାଣଶକ୍ତି ଅତୁଟ ରହିଛି । ନୂତନ ସାମ୍ରାଜ୍ୟରେ ବିତ୍ତଶାଳୀ ହୋଇ ଉଠୁଥିବା ଲୋକେ ବଡ଼ କୋଠାବାଡ଼ି ନିର୍ମାଣ କରି ସେଗୁଡ଼ିକୁ ଶୋଭିବନ୍ତ କରିବା ପାଇଁ ପ୍ରଚୁର ପାରିଶ୍ରମିକ ଦେଇ ଚିତ୍ରକରମାନଙ୍କୁ ନିଯୁକ୍ତ କରୁଥିଲେ ।

ଏହି କାଳରେ କେବଳ ଦେବଦେବୀ ଓ ପୌରାଣିକ ବିଷୟରୁ ଦୃଷ୍ଟି ଫେରାଇ ସୃଜନଶୀଳ ଶିଳ୍ପୀମାନସ ଅତି ସାଧାରଣ ବସ୍ତୁଙ୍କ ପ୍ରତି ଆକୃଷ୍ଟ ହେଲା । ଭିକାରୀ, ମୋଚି ପରି ସାଧାରଣ ମଣିଷ, ପକ୍ଷୀ, ଧାନଦରିଦ୍ର ଓ ଇତର ପଶୁଙ୍କୁ ଆଙ୍କିବା ପ୍ରତି ସେମାନେ ଧ୍ୟାନ ଦେଲେ । ସେ କାଳରେ ଏପରି ଆଧୁନିକ ଦୃଷ୍ଟିଭଙ୍ଗୀ । ଗୋଟାଏ ବଡ଼ ଧରଣର ପରିବର୍ତ୍ତନ ଯୋଗୁ ଆଲେକଜାଣ୍ଡର୍‌ଙ୍କ ପରବର୍ତ୍ତୀ ଗ୍ରୀସ୍‌ରେ ରକ୍ଷଣଶୀଳତା ଅନେକ ପରିମାଣରେ କମିଯାଇ ଗୋଟାଏ ନୂତନ ଯୁଗ ସୃଷ୍ଟି କରିଥିଲା । ଏକ ନୂଆ ପୃଥିବୀର ବାସିନ୍ଦା ଭାବେ ସଚେତନ ଗ୍ରୀକ୍‌ମାନେ ଆପଣାକୁ ଆଧୁନିକ ମଣିବା ସ୍ୱାଭାବିକ ।

ଆଲେକଜାଣ୍ଡର୍‌ପରେ ଯୁଗରେ ପରିମାଣ ଦୃଷ୍ଟିରୁ ମନ୍ଦିର, ଅଟ୍ଟାଳିକା ଓ ମୂର୍ତ୍ତି ନିର୍ମାଣ କ୍ଷେତ୍ରରେ ଅଭୂତପୂର୍ବ ଉନ୍ନତି ଘଟିଥିଲା । ଗ୍ରୀକ୍‌ମାନେ ବଡ଼ ବୀର, ନେତା ଓ କବିଙ୍କର ମୂର୍ତ୍ତି ଗଢ଼ାଇବା ପ୍ରତି ଗୁରୁତ୍ୱ ଦେଲେ । ସୌଭାଗ୍ୟ, ଶାନ୍ତି ଓ କୃପା ପରି ଅମୂର୍ତ୍ତ ଧାରଣାକୁ ଗ୍ରୀକ୍ ଶିଳ୍ପୀ ନିହାଣମୁନରେ ରୂପଦାନ ଦେଲା । ସିକ୍ୟନ୍‌ର ଶିଳ୍ପୀ ଉଟିକାଇଡ଼ିଜ୍ (ଖ୍ରୀ. ପୂ. ୪ର୍ଥ ଶତାବ୍ଦୀ)ଙ୍କର ଟାଇକ ଅର୍ଥାତ୍ ସୌଭାଗ୍ୟର ପ୍ରତିମୂର୍ତ୍ତିଟି ବିଖ୍ୟାତ ।

ପିଲୋପୋନେସିଅସ୍‌ର ମହାନ୍ ଶିଳ୍ପୀ ଡାମୋଫୋନ୍ (ଖ୍ରୀ. ପୂ. ୨ୟ ଶତାବ୍ଦୀ) ଡିମିଟର୍, ପର୍ସେଫୋନ ଓ ଆର୍ଟିମିସ୍‌ଙ୍କର ଅପୂର୍ବ ମୂର୍ତ୍ତିମାନ ଗଢିଲେ ।

ଭାସ୍କର୍ଯ୍ୟ କ୍ଷେତ୍ରରେ ଗ୍ରୀସ୍‌ର ବିପୁଳ ସମ୍ପଦକୁ ଆହୁରି ବଢାଇଲା ପରି ଆତ୍ମପ୍ରକାଶ କରିଥିଲା ରୋଡ଼ସ୍ । ଖ୍ରୀ. ପୂ. ତୃତୀୟ ଶତାବ୍ଦୀର ରୋଡ଼ସ୍ ଭାସ୍କର୍ଯ୍ୟର ନୂଆ ଦିଗନ୍ତ ଉଦ୍‌ଘାଟନ କଲା । ଏହି ଶତାବ୍ଦୀରେ ଶତାଧିକ ବିଶାଳ ମୂର୍ତ୍ତିମାନ ଦ୍ୱୀପଟିରେ ମୁଣ୍ଡ ଟେକିଲେ । ଏମାନଙ୍କ ମଧ୍ୟରୁ ଯେ କୌଣସି ଗୋଟିଏ ରୋଡ଼ସ୍‌କୁ ବିଖ୍ୟାତ କରିବାପାଇଁ ଯଥେଷ୍ଟ ହୋଇଥାଆନ୍ତା । ବିଶାଳ ମୂର୍ତ୍ତିଙ୍କ ମଧ୍ୟରେ ସୂର୍ଯ୍ୟଦେବତା ହେଲିଅସ୍‌ଙ୍କର ବ୍ରୋଞ୍ଜ ମୂର୍ତ୍ତିଟି ସୁବିଖ୍ୟାତ । ଖ୍ରୀ. ପୂ. ୨୮୦ ବେଳକୁ ନିର୍ମିତ ଏହି ମୂର୍ତ୍ତିର ଉଚ୍ଚତା ଶହେ ଫୁଟ । ମୂର୍ତ୍ତି ଗୋଟିଏ ହାତରେ ଟେକି ଧରିଥିବା ଆଲୋକବର୍ତ୍ତିକା ରୋଡ଼ସ୍‌ର ସ୍ୱାଧୀନତାର ପ୍ରତୀକ । ପ୍ରାଚୀନ ଜଗତର ସପ୍ତାଶ୍ଚର୍ଯ୍ୟ ମଧ୍ୟରେ ଏହା ଅନ୍ତର୍ଗତ ।* ଆଧୁନିକ କାଳର ଷ୍ଟାଚ୍ୟୁ ଅଫ୍ ଲିବର୍ଟି (ଏହାର ଉଚ୍ଚତା ୧୫୧ ଫୁଟ) ସହିତ ଏହାର ସାମଞ୍ଜସ୍ୟ ଅଛି । ଭୂମିକମ୍ପ ଯୋଗୁ ମାତ୍ର ପଚାଶ ଷାଠିଏ ବର୍ଷ ପରେ ହେଲିଅସ୍ ଭାଙ୍ଗି ପଡ଼ିଲେ । ସେ ବିଶାଳ ମୂର୍ତ୍ତିର ବୁଢ଼ା ଆଙ୍ଗୁଠିଟିକୁ କୁଣ୍ଢାଇ ଧରିବା ମଣିଷ ପକ୍ଷରେ ସମ୍ଭବ ନୁହେଁ । ହେଲିଅସ୍‌ଙ୍କୁ ନିର୍ମାଣ କରିବା ଲାଗି ବାରବର୍ଷ ସମୟ ଲାଗିଥିଲା । ଏତିକି ସମୟ ମଧ୍ୟରେ କୋଣାର୍କର ସୂର୍ଯ୍ୟମନ୍ଦିର ଶେଷ ହୋଇଥିଲା ।

ରୋଡ଼ସ୍‌ର ଆଉ ଏକ ଶିଳ୍ପକୃତି ଲଓକୁନ୍ ହେଲିଅସ୍ ପରି ବିଖ୍ୟାତ । ଷୋଡ଼ଶ ଶତାବ୍ଦୀ ଆରମ୍ଭରେ ମାଟି ତଳୁ ଉଦ୍ଧାର କରାଯାଇଥିବା ରୋମାନ୍ ସମ୍ରାଟ ଟିଟସ୍‌ଙ୍କ ରାଜ-ପ୍ରାସାଦରୁ ଲଓକୁନ୍ ମିଳିଛି । ରେନେସାଁ ଯୁଗରେ ଆବିଷ୍କୃତ ମାର୍ବଲ୍ ଖୋଦିତ ଏହି

---

* ପ୍ରାଚୀନ ଜଗତର ଅନ୍ୟ ଛଅଟି ଆଶ୍ଚର୍ଯ୍ୟ ହେଉଛନ୍ତି :

(୧) ମିଶରର ପିରାମିଡ଼, (୨) ବେବିଲୋନ୍‌ର ଝୁଲନ୍ତା ବଗିଚା, (୩) ଅଲିମ୍ପିଆରେ ଫିଡ଼ିଆସ୍‌ଙ୍କ ଦ୍ୱାରା ନିର୍ମିତ ଜିଅସ୍‌ଙ୍କ ମୂର୍ତ୍ତି, (୪) ଇଫିସସ୍ ଠାରେ ଆର୍ଟିମିସ୍‌ଙ୍କ ମନ୍ଦିର, (୫) ହାଲିକାର୍ନାସସ୍‌ଙ୍କ ମଉସୋଲିୟମ୍, (୬) ଆଲେକ୍‌ଜାଣ୍ଡ୍ରିଆର ଲାଇଟ୍‌ହାଉସ୍ । ପ୍ରଥମ ଦୁଇଟିକୁ ଛାଡ଼ିଦେଲେ ବାକିମାନଙ୍କ ବିଷୟରେ ଯଥା ସ୍ଥାନରେ ଆଲୋଚନା ହୋଇଛି ।

ମୂର୍ତ୍ତିଟି ଇଟାଲୀୟ ଶିଳ୍ପୀମାନଙ୍କୁ ଯଥେଷ୍ଟ ପ୍ରେରଣା ଦେଇଥିଲା । ଲାଓକୁନ୍ ଜଣେ ଟ୍ରୋଜାନ୍ ପୁରୋହିତ । ଗ୍ରୀକ୍‌ମାନେ ଥୋଇ ପକାଇଥିବା କାଠଘୋଡ଼ାକୁ ନଗର ଭିତରକୁ ନ ନେବା ପାଇଁ ଲାଓକୁନ୍ ଟ୍ରୟବାସୀଙ୍କୁ ପ୍ରବର୍ତ୍ତାଇଥିଲେ । ଲାଓକୁନ୍ ମିଥ୍ୟାବାଦୀ ଓ ସେହି କାରଣରୁ ସେ କପରି ଦଣ୍ଡିତ ହେଉଛନ୍ତି ଟ୍ରୟବାସୀଙ୍କୁ ତାହା ଦେଖାଇବା ପାଇଁ ଦେବୀ ଏଥେନା ଗୋଟିଏ ସର୍ପ ପଠାଇଲେ ! ଏହି ସର୍ପ ଲାଓକୁନ୍‌ର ଦୁଇ ପୁଅଙ୍କୁ ପ୍ରଥମେ ଧରିଥିଲା । ପୁଅଙ୍କୁ ଉଦ୍ଧାର କରିବାକୁ ଧାଇଁ ଯାଉଥିବା ଲାଓକୁନ୍‌କୁ ଲାଞ୍ଜରେ ଗୁଡ଼ାଇନେଇ ସର୍ପ ବାପ ପୁଅ ତିନିଙ୍କୁ ମୋଡ଼ି ପକାଇଲା । ମରଣ ଯନ୍ତ୍ରଣାରେ କାତର ଲାଓକୁନ୍ ଓ ତାର ଦୁଇପୁଅ ମାର୍ବଲ୍‌ରେ ରୂପ ପାଇଛନ୍ତି ତିନିଜଣ ଶିଳ୍ପୀଙ୍କ ନିହାଣରେ ।

ଆଲେକ୍‌ଜାଣ୍ଡ୍ରିଆର ଅନେକ ସୁନ୍ଦର ମୂର୍ତ୍ତି ଧ୍ୱଂସ ପାଇଯାଇଛି । ତଥାପି ଆଲେକ୍‌ଜାଣ୍ଡରୋତ୍ତର ଯୁଗରେ ଏତେ ସଂଖ୍ୟକ ମହାନ୍ ଶିଳ୍ପକୃତି ଉଦ୍ଧାର କରାଯାଇଛି ଯେ ଗ୍ରୀକ୍ ସଂସ୍କୃତିର ଗୋଧୂଳିବେଳାରେ ସେମାନଙ୍କର ସୃଷ୍ଟି ଆମକୁ ବିସ୍ମିତ କରେ ।

ଖ୍ରୀ. ପୂ ତୃତୀୟ ଶତାବ୍ଦୀରେ ଏସିଆ ମାଇନର ପର୍‌ଗମଅମ୍ (ବର୍ତ୍ତମାନର ତୁର୍କୀ ଅନ୍ତର୍ଗତ) ସ୍ଥାପତ୍ୟ କ୍ଷେତ୍ରରେ ବିଶେଷ ଉନ୍ନତି କରିଥିଲେ । ପର୍‌ଗମଅମ୍‌ର ବୀର ଓ କଳାପ୍ରିୟ ରାଜା ଆଟାଲସ୍ ଗଲ୍‌ମାନଙ୍କ ଆକ୍ରମଣକୁ ପଣ୍ଡ କରି ଦେଇଥିଲେ । ତେଣୁ ତାଙ୍କ ଅମଳରେ ଯୁଦ୍ଧ ଓ ଯୋଦ୍ଧା କଳାର ମୁଖ୍ୟ ବିଷୟ ହୋଇପଡ଼ିଲା । ପର୍‌ଗମଅମ୍‌ର ଶିଳ୍ପୀମାନେ ଶତ୍ରୁ ଗଲ୍‌ଙ୍କର ଦୋଷଗୁଣକୁ ନିରପେକ୍ଷ ଭାବେ ରୂପଦାନ କରିଥିବା ଏକ ସୁସ୍ଥ ଓ ଉଦାର ସାଂସ୍କୃତିକ ବାତାବରଣର ପରିଚୟ ଦିଏ । ପର୍‌ଗମଅମ୍‌ରେ ଖୋଦିତ ଭଗ୍ନ ମସ୍ତକ ଜିଅସ୍ ଓ ଅପୂର୍ବ ଲଳିତ ପ୍ରତିମା ଦେବୀ ହେକାଟେ ଶ୍ରେଷ୍ଠ ଗ୍ରୀକ୍ କଳାର ଅନ୍ତର୍ଭୁକ୍ତ । ଏହି କାଳରେ କେଉଁ ଅଜ୍ଞାତ ଶିଳ୍ପୀ ଗଢ଼ିଥିବା 'ଲୁଡୋଭିସି ହେରା' ନାମରେ ପରିଚିତ ଦେବୀ ହେରାଙ୍କର ମୂର୍ତ୍ତି (ରୋମ୍ ମିଉଜିୟମ୍‌ରେ ସୁରକ୍ଷିତ) ଦେଖି ଯୁବକ ଗେଟେ ଅଭିଭୂତ ହୋଇଥିଲେ ।

ଆଲେକ୍‌ଜାଣ୍ଡର୍‌ଙ୍କ ପରବର୍ତ୍ତୀ ଯୁଗରେ ଆଫ୍ରୋଡାଇଟ୍‌ଙ୍କର ଭକ୍ତଙ୍କ ସଂଖ୍ୟା ବଢ଼ିବା ଅନୁପାତରେ ଶିଳ୍ପୀମନ ତାଙ୍କ ଆଡ଼କୁ ଅଧିକ ଆକୃଷ୍ଟ ହୋଇଥିଲା ।

୧୮୨୦ରେ ମିଲୋସ୍ ଦ୍ୱୀପ (ସାଇକ୍ଲାଡ଼ିଜ୍ ଅନ୍ତର୍ଗତ)ରୁ ଉଦ୍ଧାର କରାଯାଇଥିବା ଆଫ୍ରୋଡାଇଟ୍‌ଙ୍କର ପ୍ରତିମୂର୍ତ୍ତି ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ଗଢ଼ା । ଖ୍ରୀ. ପୂ. ତୃତୀୟ ଶତାବ୍ଦୀରେ ଅନାମଧେୟ, କ୍ଷୁଦ୍ର ଇଜିଆନ୍ ଦ୍ୱୀପ ସାମୋଥ୍ରେସ୍ ନାଇକ୍ ବା ଭିକ୍‌ଟିରିଙ୍କର ଅଦ୍ଭୁତ ସୁନ୍ଦର ମୂର୍ତ୍ତି ଗଢ଼ିଦେଇ ଜଗତ ବିଖ୍ୟାତ ହୋଇଛନ୍ତି । ଏଇଟି ବୋଧହୁଏ ସେ ଶତାବ୍ଦୀର ସର୍ବଶ୍ରେଷ୍ଠ ମୂର୍ତ୍ତି । ବିଜୟର ଦେବୀ ଗୋଟିଏ ଦ୍ରୁତଗାମୀ ଜାହାଜରୁ ଲମ୍ଫ ଦେଇ କୂଳଆଡ଼କୁ ଧାବମାନ । ତାଙ୍କର ବିଶାଳ ପକ୍ଷରେ ସତେଜ ଠାଣିହୋଇ ଯୁଦ୍ଧ ଜାହାଜ ଲଢ଼ିବା ପାଇଁ ଗ୍ଭଲିଛି କୂଳକୁ । ପ୍ରତିକୂଳ ବାୟୁରେ ଦେବୀଙ୍କର ବସ୍ତ୍ର ଇତଃସ୍ତତ । ମୂର୍ତ୍ତିରେ ଦେବୀଙ୍କର ମାତୃରୂପ ଫୁଟିଛି । କ୍ଷଣସ୍ଥାୟୀ ଯୌବନର ଅଧିକାରିଣୀ କୋମଳାଙ୍ଗୀ ନାରୀ ପରିବର୍ତ୍ତେ ପୁରୁଷକୁ ତେଜସ୍ୱିତା ପ୍ରକାଶ କରିବାକୁ ଆହ୍ୱାନ କରୁଥିବା ଚିରନ୍ତନ ନାରୀକୁ ଦର୍ଶକ ଏହି ମୂର୍ତ୍ତି ଭିତରେ ଭେଟେ ।

ମିଲୋସ୍‌ର ଆଫ୍ରୋଡାଇଟ୍‌ଙ୍କ ରୋମାନ୍ ନାମକରଣ ହେଉଛି 'ଭେନସ୍ ଡି ମିଲୋ' । ଗ୍ରୀକ୍ ଆଫ୍ରୋଡାଇଟ୍ ଓ ରୋମ୍‌ର ଭେନସ୍ ଏକ ବୋଲି ରୋମାନ୍‌ମାନେ ଗ୍ରହଣ କରିଥିଲେ । ମିଲୋସ୍‌ର ଆଫ୍ରୋଡାଇଟ୍ ଓ ସାମୋଥ୍ରେସ୍‌ର ନାଇକ ଉଭୟେ ପ୍ୟାରିସ୍‌ର ଲୁଭର୍ ମିଉଜିୟମ୍‌ରେ ସୁରକ୍ଷିତ । ବିଶ୍ୱବିଖ୍ୟାତ ମୋନାଲିସା ଲୁଭର୍ ମିଉଜିୟମ୍‌ର ଗର୍ବ । ଏହାର ଅମୂଲ୍ୟ ସମ୍ପଦ ଭାବେ ମୋନାଲିସା ଓ ନାଇକ୍ ସମାନ ଆସନର ଅଧିକାରୀ ।

ସ୍ଥାପତ୍ୟ କ୍ଷେତ୍ରରେ ଆଲେକ୍‌ଜାଣ୍ଡର୍‌ଙ୍କ ପରବର୍ତ୍ତୀ ଗ୍ରୀକ୍ ଶିଳ୍ପୀର ସୃଜନ ପ୍ରତିଭା ଅତୁଟ ରହିଥିବାର ପ୍ରମାଣ ଏହିସବୁ ମୂର୍ତ୍ତିରୁ ମିଳେ ।

## ସାହିତ୍ୟ :

ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀରୁ ଗ୍ରୀକ୍ ସାହିତ୍ୟର ମାନ କ୍ରମଶଃ ହ୍ରାସ ପାଇଲା । ୟୁରିପିଡ଼ୀଜ୍ ଗ୍ରୀସ୍‌ର ଶେଷ ମହାନ୍ ଟ୍ରାଜେଡ଼ିକାର । ଆରିଷ୍ଟୋଫେନ୍‌ସଙ୍କ ସମକକ୍ଷ କମେଡ଼ିଆନ୍ ତାଙ୍କ ପରେ ଆଉ କାହାରି ନାହାନ୍ତି । ତେବେ ଧନ ସମ୍ପଦ ବଢ଼ିବା ଫଳରେ ଥିଏଟରର ବହୁଳ ପ୍ରସାର ଘଟିଲା । ଅଭିନେତାଙ୍କର ଉପାର୍ଜନ ବେଶ୍ ବଢ଼ିଲା । ଛୋଟ ଛୋଟ ସହରରେ ମଧ୍ୟ ରଙ୍ଗମଞ୍ଚ ସବୁ ମୁଣ୍ଡ ଟେକିଲେ ।

ନାଟକ କ୍ଷେତ୍ରରେ ଏଥେନ୍ସ ତା'ର ଶ୍ରେଷ୍ଠତ୍ୱ ବଜାୟ ରଖିଥିଲା । ଦୁଇ ହଜାର ବର୍ଷ ପରର ପୃଥିବୀବାସୀ ସ୍ମରଣ ରଖିଲା ପରି ଦୁଇଜଣ କମେଡ଼ିଆନ୍ ଏଥେନ୍ସରୁ ବାହାରି-ଥିଲେ ; ଫିଲମନ୍ ଓ ମେନାଣ୍ଡର୍ । ନାଟକୋତ୍ସବରେ ଫିଲମନ୍ ଅଧିକ ଥର ପୁରସ୍କୃତ ହୋଇଥିଲେ । ମାତ୍ର ତାଙ୍କର ସମସ୍ତ ଲେଖା ନଷ୍ଟ ହୋଇଯାଇଛି । ମେନାଣ୍ଡରଙ୍କର କିଛି ଲେଖା ବଞ୍ଚି ରହିଛି । ପରବର୍ତ୍ତୀ ଯୁଗର ଗ୍ରୀକ୍‌ମାନେ ମେନାଣ୍ଡର୍‌ଙ୍କୁ ଫିଲମନ୍‌ଙ୍କ ଠାରୁ ଅଧିକ ଉଚ୍ଚସ୍ଥାନ ଦିଅନ୍ତି ।

ମେନାଣ୍ଡର ଶହେ ଖଣ୍ଡେରି ନାଟକ ଲେଖିଥିଲେ । ମାତ୍ର ତାଙ୍କର କୌଣସି ନାଟକ ପୂର୍ଣ୍ଣାଙ୍ଗ ଅବସ୍ଥାରେ ମିଳନାହିଁ । ଯେତିକି ଉଦ୍ଧାର ପାଇଛି ସେଥିରୁ ତାଙ୍କର ମାର୍ଜିତ ଶୈଳୀ ଓ ସରସ ସଂଳାପର ପରିଚୟ ମିଳେ । ଦୈନନ୍ଦିନ ଜୀବନର ସାଧାରଣ ଘଟଣାକୁ ମେନାଣ୍ଡର୍ ଜୀବନ୍ତ ଓ ନିଖୁଣ ଭାବେ ଚିତ୍ରଣ କରି ପାରନ୍ତି । ତାଙ୍କର ଏପରି ପ୍ରତିଭା ଲକ୍ଷ୍ୟ କରି ଖ୍ରୀ. ପୂ ଦ୍ୱିତୀୟ ଶତାବ୍ଦୀର ସମାଲୋଚକ ଆରିଷ୍ଟୋଫେନ୍ସ ମନ୍ତବ୍ୟ କରିଥିଲେ, "ହେ ମେନାଣ୍ଡର୍ ! ଆହେ ଜୀବନ ! ତମ ଭିତରୁ କିଏ କାହାର ଅନୁକରଣ କରେ ?"

"Conscience makes cowards of the bravest man" ଓ ଏହିପରି ମେନାଣ୍ଡର୍‌ଙ୍କର କେତେକ ଧାଡ଼ି ପ୍ରବାଦରେ ପରିଣତ ହୋଇଛି । କବିଙ୍କର ନାମ ଗୋପ୍ୟ ହୋଇ ମିନାଣ୍ଡର୍‌ଙ୍କର ନିମ୍ନୋକ୍ତ କବିତା ପଂକ୍ତିର ପ୍ରସାର ଘଟିଛି ।

When the gods love, die young; that man is blest
Who having viewed at ease this solemn show
of sun, stars, ocean, fire doth quickly go
Back to his home with calm uninjured breast.

ଏହି କବିତା ଯେପରି ତାଙ୍କରି ଠାରେ ଫଳିଲା ଓ ମେନାଣ୍ଡର୍ ପ୍ରାୟ ପଚାଶ ବର୍ଷ ବୟସରେ ପ୍ରାଣତ୍ୟାଗ କଲେ । ମେନାଣ୍ଡର୍ 'କେବଳ ବଡ଼ କବି ନୁହନ୍ତି, ସେ ଜଣେ ଉଚ୍ଚ-କୋଟୀର ମଣିଷ । ମେନାଣ୍ଡର ଓ ଫିଲମନ୍‌ଙ୍କ ମୃତ୍ୟୁ ପରେ (ଖ୍ରୀ. ପୂ ୨୬୨) ଗ୍ରୀକ୍ ନାଟକରେ

ଗୋଟାଏ ଶୂନ୍ୟତା ଆସିଲା । ପ୍ରତିଭାବାନ୍ ନାଟ୍ୟକାର ନ ବାହାରିବାରୁ ରଙ୍ଗମଞ୍ଚରେ ପୁରାତନ ନାଟକ ଗୁଡ଼ିକର ପୁନରାବୃତ୍ତି ଚାଲିଲା ।

ଏହି କାଳରେ କବିତାର ଅବସ୍ଥା ନାଟକ ଠାରୁ ଉନ୍ନତ ନୁହେଁ । କବିତାରେ ଫେସନ୍ ଓ କୃତ୍ରିମତା ବଢ଼ିଲା । ତେବେ ସହରୀ ସଭ୍ୟତାର ବିସ୍ତାର ସହିତ ଦେଖାଗଲା ଯେ ମନକୁ ଛୁଇଁଲା ପରି କିଛି ପଲ୍ଲୀ କବିତା ବାହାରୁଛନ୍ତି । ପୂର୍ବରୁ କବିମାନେ ଗ୍ରାମାଞ୍ଚଳରେ ବାସ କରୁଥିଲେ । ପ୍ରକୃତି କୋଳରେ ବଢ଼ୁଥିବାରୁ ପ୍ରକୃତିର ସୌନ୍ଦର୍ଯ୍ୟ ପ୍ରତି ସେମାନେ ସଚେତନ ନ ଥିଲେ । ଗୋଟିଏ ବସ୍ତୁକୁ ଦେଖିବା ପାଇଁ ଦର୍ଶକ ଓ ସେହି ବସ୍ତୁ ମଧ୍ୟରେ କିଛି ବ୍ୟବଧାନ ରହିବା ଦରକାର । ରାଜାନୁଗ୍ରହ ପାଇବାକୁ ସହରକୁ ଉଠି ଯାଇଥିବା କବିମାନେ ପଲ୍ଲୀ ସୌନ୍ଦର୍ଯ୍ୟର ଅଭାବ ଅନୁଭବ କଲେ । ପଲ୍ଲୀର ବଣ ପାହାଡ଼, ଶସ୍ୟକ୍ଷେତ୍ର ଓ ସରଳ ଜୀବନକୁ ଝୁରି ହେଉଥିବାରୁ ଏହିମାନଙ୍କୁ ନେଇ ସେମାନେ କବିତା ଲେଖିଲେ ।

ଏଇ ପ୍ରକୃତି କବିମାନଙ୍କ ଭିତରୁ ଜଣେ ବଡ଼ କବି ବାହାରିଥିଲେ । ସେ ହେଉଛନ୍ତି ସିସିଲିର ଥିଓକ୍ରିଟସ୍ । ସିସିଲିର ମନୋରମ ପ୍ରାକୃତିକ ସୌନ୍ଦର୍ଯ୍ୟ ଭିତରେ ଥିଓକ୍ରିଟସ୍ ବଢ଼ିଥିଲେ । କସ୍ ଦ୍ୱୀପରେ ମଧ୍ୟ ସେ କିଛିକାଳ ଅତିବାହିତ କରିଥିଲେ । ଦ୍ୱିତୀୟ ଟଲେମିଙ୍କ ଶୁଭଦୃଷ୍ଟି ତାଙ୍କ ଉପରେ ପଡ଼ିବାରୁ ଥିଓକ୍ରିଟସ୍ ଆଲେକ୍‌ଜାଣ୍ଡ୍ରିଆରେ ରହିଗଲେ । ଆଲେକ୍‌ଜାଣ୍ଡ୍ରିଆର ଧୂଳି, ଗରମ, ଗହଳଚହଳ ଭିତରେ ତାଙ୍କର କବି ହୃଦୟ ସିସିଲି ଓ କସ୍‌ର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଝୁରି ହେଲା । କିମ୍ବଦନ୍ତୀକୁ ଭିତ୍ତି କରି ସେ ଯେଉଁସବୁ କବିତା ଲେଖିଛନ୍ତି ସେ ଗୁଡ଼ିକରେ ପ୍ରକୃତିର ବର୍ଣ୍ଣନା ଗ୍ରୀକ୍ କବିତାରେ ଅଭୂତପୂର୍ବ ।

ଆଲେକ୍‌ଜାଣ୍ଡରଙ୍କ ପରବର୍ତ୍ତୀ ଯୁଗରେ ଗଦ୍ୟ ସାହିତ୍ୟର ଅନେକ ପରୀକ୍ଷାନିରୀକ୍ଷା ହୋଇଥିଲା । ବଡ଼ ଧରଣର ସାମାଜିକ ପରିବର୍ତ୍ତନ ଓ ଦିଗ୍‌ବଳୟର ପ୍ରସାରଣ ଗଦ୍ୟର ବିକାଶ ପାଇଁ ଅନୁକୂଳ । ପ୍ରବନ୍ଧ, ଜୀବନୀ ଓ ବିଭିନ୍ନ ଜ୍ଞାନବିଜ୍ଞାନରୁ ବିଷୟବସ୍ତୁ ବାଛି ରଚନାମାନ ଲେଖାଗଲା ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ । ପ୍ରଥମ ଟଲେମି ଓ ତାଙ୍କ ଦେଖାଦେଖି ଆଉ କେତେଜଣ ରାଜା ନିଜେ ତାଙ୍କର ଯୁଦ୍ଧ ଅଭିଯାନର ବିବରଣୀ ଲେଖିଲେ । ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜ୍ୟରେ ସିଲିଉକସ୍‌ଙ୍କ ରାଷ୍ଟ୍ରଦୂତ ମେଗାସ୍ଥିନିଜ୍ ଭାରତବର୍ଷ ଉପରେ ଖଣ୍ଡେ ବହି ଲେଖି (ଖ୍ରୀ. ପୂ ୩୦୦) ଗ୍ରୀକ୍ ଜଗତରେ ଚହଳ ପକାଇ ଦେଇଥିଲେ । ଅନେକ

ଐତିହାସିକ ଗ୍ରନ୍ଥ ଲେଖାଥିଲେ ସତ, ତେବେ ଥୁସିଡିଡୀଜ୍ ଓ ହିରୋଡୋଟସ୍‌ଙ୍କ ସମକକ୍ଷ କେବଳ ଜଣେ ମହାନ୍ ଐତିହାସିକ ବାହାରିଥିଲେ ଆଲେକ୍‌ଜାଣ୍ଡର୍‌ଙ୍କ ପରବର୍ତ୍ତୀ କାଳରେ । ତାଙ୍କର ନାମ ପଲିବିଅସ୍ (ଖ୍ରୀ. ପୂ ୨୦୨—୧୨୦) । ଜନ୍ମସ୍ଥାନ ଆର୍କାଡିଆ । ପଲିବିଅସ୍‌ଙ୍କ ବାପା ଆର୍କାଡିଆର ଜଣେ ବିଶିଷ୍ଟ ବ୍ୟକ୍ତି ଥିଲେ ଓ ରୋମ୍‌ର ରାଷ୍ଟ୍ରଦୂତ ଭାବେ କାମ କରିଥିଲେ । ପିଲାଦିନୁ ଏକ ରାଜନୈତିକ ବାତାବରଣ ଭିତରେ ପଲିବିଅସ୍ ବଢ଼ିଥିଲେ । ଏହା ବ୍ୟତୀତ ବହୁ ଦୁର୍ଲ୍ଲଭ ଅଭିଜ୍ଞତା ଅର୍ଜନ କରିବାର ସୁଯୋଗ ତାଙ୍କ ଜୀବନରେ ଆସିଥିଲା । ଜଣେ ସୈନିକ ଭାବେ ରୋମ୍‌ର ବିଭିନ୍ନ ସ୍ଥାନରେ ସେ ଲଢ଼ିଥିଲେ । ପଲିବିଅସ୍‌ଙ୍କର ବିପୁଳ ଅଭିଜ୍ଞତା, ପ୍ରତ୍ୟକ୍ଷ ଜ୍ଞାନ ଓ ଅନ୍ତର୍ଦୃଷ୍ଟି ତାଙ୍କୁ ଜଣେ ମହାନ୍ ଐତିହାସିକ ରୂପେ ଗଢ଼ିଥିଲା ।

## ସଂସ୍କୃତିର ନୂତନ ପୀଠ :

ଖ୍ରୀ. ପୂ ୬ଷ୍ଠ ଶତାବ୍ଦୀରେ ଆୟୋନିଆରେ ଗ୍ରୀକ୍ ସଂସ୍କୃତିର ଜାଗରଣ ଘଟିଥିଲା । ଖ୍ରୀ. ପୂ ପଞ୍ଚମ ଶତାବ୍ଦୀରେ ଏହାର ଚରମ ବିକାଶ ହେଲା ଏଥେନ୍‌ସରେ । ପିଲୋ-ପୋନେସିଅସ୍ ଯୁଦ୍ଧ ପରଠାରୁ ଏଥେନ୍‌ସର ପ୍ରାଣଶକ୍ତି ଧିମେଇଲା । ଆଲେକ୍‌ଜାଣ୍ଡର୍‌ଙ୍କ ପରେ ଗ୍ରୀକ୍ ସଂସ୍କୃତି ପୁଣି ମୂଳ ଭୂଖଣ୍ଡରେ ଗୁପ୍ତ ହୋଇ ମୁଣ୍ଡ ଟେକିଲା ଅନେକ ଦୂରରେ—ଆଲେକ୍‌-ଜାଣ୍ଡ୍ରିଆରେ ।

ତାଙ୍କର ଦିଗ୍‌ବିଜୟ କାଳରେ ଆଲେକ୍‌ଜାଣ୍ଡର୍ ବିଭିନ୍ନ ସ୍ଥାନରେ ପ୍ରାୟ ସତୁରୀଟି ନଗର ସ୍ଥାପନ କରିଥିଲେ । ସେମାନଙ୍କ ମଧ୍ୟରୁ ଅନେକଙ୍କର ନାମକରଣ କରାଯାଇଥିଲା ଆଲେକ୍‌ଜାଣ୍ଡ୍ରିଆ । ମିଶରର ଆଲେକ୍‌ଜାଣ୍ଡ୍ରିଆ ବ୍ୟତୀତ ଅନ୍ୟଗୁଡ଼ିକ ବହୁ କାଳରୁ ବିସ୍ମୃତ । ମିଶର ଠାରେ ଆଲେକ୍‌ଜାଣ୍ଡର୍ ଆଲେକ୍‌ଜାଣ୍ଡ୍ରିଆର ପରିକଳ୍ପନା କରି ନଗର ନିର୍ମାଣର ପ୍ରାଥମିକ କାର୍ଯ୍ୟ ଆରମ୍ଭ କରିଥିଲେ । ତାଙ୍କ ଅନ୍ତେ ଏହି ଐତିହାସିକ ନଗରକୁ ପୂର୍ଣ୍ଣାଙ୍ଗ ରୂପ ଦେଲେ ଟଲେମି ।

ଉତ୍ତରାଧିକାରୀ ବାଛିବାକୁ ଆଲେକ୍‌ଜାଣ୍ଡର୍‌ଙ୍କୁ ଅନୁରୋଧ କରାଯାଇଥିଲା ତାଙ୍କର ମୃତ୍ୟୁଶଯ୍ୟାରେ । ସିଧାସଳଖ ଉତ୍ତର ନ ଦେଇ ଆଲେକ୍‌ଜାଣ୍ଡର୍ କହିଲେ, "ସବୁଠାରୁ ଶକ୍ତିଶାଳୀକୁ" । ଏତେବଡ଼ ସାମ୍ରାଜ୍ୟର ଅଧିକାରୀ ହେଲାଭଳି ଜଣେ ଶକ୍ତିଶାଳୀ ବାହାରି ନ ଥିଲା । ଆଲେକ୍‌ଜାଣ୍ଡର୍‌ଙ୍କର ପାଞ୍ଚଜଣ ମାସେଡୋନୀୟ ସେନାପତି ସାମ୍ରାଜ୍ୟକୁ ବାଣ୍ଟି ନେଲେ ।

ଆଣ୍ଟିପେଟର୍‌ଙ୍କ ଭାଗରେ ପଡ଼ିଲା ମାସେଡୋନିଆ ଓ ଗ୍ରୀସ୍ । ଲାଇସେକିଆ ପାଇଲେ ଥ୍ରେସ୍, ଆଣ୍ଟିଗୋନସ୍ ନେଲେ ଏସିଆ ମାଇନର୍, ସିଲିଉକସ୍ ବେବିଲୋନ୍‌ର ଓ ଟଲେମି ମିଶରର ଅଧିପତି ହେଲେ ।



[ ପ୍ରଥମ ଟଲେମିଙ୍କର ଗୋଟିଏ ମୁଦ୍ରାରେ ଅଙ୍କିତ ତାଙ୍କ ଚିତ୍ର ।]

ସୁମେରିଆ, ପାରସ୍ୟ, ବେବିଲୋନ୍, ଆସିରିଆ ଓ ସିରିଆକୁ ଗୋଟିଏ ରାଜ୍ୟର ଅନ୍ତର୍ଭୁକ୍ତ କରି ସିଲିଉକସ୍ ଅନେକ ଭଲ କାମ କରିଥିଲେ । ମାନବ ସଭ୍ୟତାକୁ ସିଲିଉକସ ବଂଶର ଅବଦାନ ରହିଛି । ମାତ୍ର ଜଗତକୁ ଚମତ୍କୃତ କଲାପରି ଗ୍ରୀକ୍ ସଂସ୍କୃତିର ନୂତନ ପର୍ଯ୍ୟାୟ ଆରମ୍ଭ ହେଲା ଆଲେକ୍‌ଜାଣ୍ଡ୍ରିଆରେ ।

ଟଲେମି ଆଲେକ୍‌ଜାଣ୍ଡର୍‌ଙ୍କର ସବୁଠାରୁ ଦକ୍ଷ ଓ ବୁଦ୍ଧିମାନ୍ ଉତ୍ତରାଧିକାରୀ । ସେ ଯେପରି ବଡ଼ ଯୋଦ୍ଧା, ସେହିପରି ଉତ୍ତମ ସୁଶାସକ । ରାଜ୍ୟଭାର ଗ୍ରହଣ କରି ମିଶରର କୃଷି, ଶିଳ୍ପ ଓ ବାଣିଜ୍ୟର ବିକାଶ ପ୍ରତି ସେ ଧ୍ୟାନ ଦେଇଥିଲେ । ନିଜର ଚେଷ୍ଟା ବଳରେ ଟଲେମି ସିରିନ୍, କ୍ରିଟ୍, ସାଇକ୍ଲାଡିଜ୍ ଦ୍ୱୀପପୁଞ୍ଜ, ସାଇପ୍ରସ୍, ସିରିଆ ଓ ପାଲେଷ୍ଟାଇନ୍‌କୁ ତାଙ୍କ ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । ଏହିସବୁ ସ୍ଥାନରେ ତାଙ୍କର ସୁଶାସନ ଜାରି ରହିଥିଲା ।

ମିଶରର କୃଷି, ଶିଳ୍ପ ଓ ବାଣିଜ୍ୟ ସରକାରୀ ସାହାଯ୍ୟ ଓ ତଦାରଖରେ ଚାଲିବା ଫଳରେ ରାଜ୍ୟର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହୋଇଥିଲା । ଆଲେକ୍‌ଜାଣ୍ଡ୍ରିଆକୁ ଏକ ସମୃଦ୍ଧିଶାଳୀ ନଗର ଓ ସାଂସ୍କୃତିକ କେନ୍ଦ୍ର ରୂପେ ଗଢ଼ିବା ପାଇଁ ଟଲେମିମାନେ ମୁକ୍ତ ହସ୍ତରେ ଖର୍ଚ୍ଚ କରିଥିଲେ । ଏପରି ବିଭବଶାଳୀ ଓ ମନୋରମ ନଗର ପୂର୍ବରୁ କେବେ ଦେଖା ନ ଥିଲା । ଆଲେକ୍‌ଜାଣ୍ଡ୍ରିଆରେ ବସବାସ କରିବାକୁ ଟଲେମି ସବୁଜାତିର ଲୋକଙ୍କୁ ସ୍ୱାଗତ କରୁଥିଲେ । ଏସିଆର ଅନେକ ଦେଶର ଲୋକ ଆଲେକ୍‌ଜାଣ୍ଡ୍ରିଆର ବାସିନ୍ଦା ହୋଇ ରହିଗଲେ । ବିଶେଷତଃ ଅନେକ ଇହୁଦୀ ଆଲେକ୍‌ଜାଣ୍ଡ୍ରିଆରେ ଘର ବାନ୍ଧିଲେ ।

ଆଲେକ୍‌ଜାଣ୍ଡ୍ରିଆ ପ୍ରାଚୀନ ଜଗତର ସର୍ବଶ୍ରେଷ୍ଠ ବନ୍ଦର । ସୁଦୂର ଭାରତବର୍ଷରୁ ଆରମ୍ଭ କରି ଇଂଲଣ୍ଡ, ସ୍ପେନ ଓ ଆଫ୍ରିକାର ବାଣିଜ୍ୟ ଜାହାଜ ଆଲେକ୍‌ଜାଣ୍ଡ୍ରିଆ ଆସୁଥିଲା । ଭାରତବର୍ଷରୁ ଯାଉଥିବା ଚୂଲାର ବେଶ୍ ଚାହିଦା ଥିଲା ସେ କାଳରେ । ଚୂଲାବସ୍ତା ଭିତରେ ଭାରତରୁ ଗୋଟିଏ ନୂଆ ଜୀବ ଆଲେକ୍‌ଜାଣ୍ଡ୍ରିଆ ଦେଇ ୟୁରୋପରେ ପ୍ରବେଶ କଲା । ସେଇଟି ହେଉଛି ମୂଷିକ ।

ଆଲେକ୍‌ଜାଣ୍ଡ୍ରିଆକୁ ଲାଗି କରି ଫାରୋସ୍ ଦ୍ୱୀପରେ ଟଲେମି ଉପଦେଷ୍ଟା ନାବିକମାନଙ୍କୁ ସାହାଯ୍ୟ କରିବା ପାଇଁ ଏକ ବିରାଟ ଲାଇଟ୍‌ହାଉସ୍ ନିର୍ମାଣ କରିଥିଲେ । ଏହାର ଉଚ୍ଚତା ତିନିଶହ ସତୁରି ଫୁଟ । ପ୍ରତିଫଳନକାରୀ ଦର୍ପଣମାନ ଖଞ୍ଜା ହୋଇଥିବା ଏହି ଲାଇଟ୍‌ହାଉସ୍‌ରୁ ଆଲୋକ ସମୁଦ୍ର ଭିତରେ ଅନେକ ଦୂର ପର୍ଯ୍ୟନ୍ତ ଦିଶୁଥିଲା । ଆଲେକ୍‌ଜାଣ୍ଡ୍ରିଆର ଲାଇଟ୍-ହାଉସ୍ ପ୍ରାଚୀନ ଜଗତର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଅନ୍ୟତମ । ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ଷୋହଳ ଶହ ବର୍ଷ ଧରି ଏହା ବିଶ୍ୱର ସର୍ବଶ୍ରେଷ୍ଠ ଲାଇଟ୍ ହାଉସ୍ ହେବାର ଗୌରବ ଲାଭ କରିଛି ।



[ ମିଶରର କେଶବିନ୍ଧା ନାରୀଙ୍କର ବିଭିନ୍ନ ପ୍ରକାରର ସୁନ୍ଦର କେଶ ବନ୍ଧନ ଶୈଳୀ ( ଟେରା କୋଟା ମୂର୍ତ୍ତି ) ]

ବାଣିଜ୍ୟର ଦ୍ରୁତ ବିକାଶ ଫଳରେ ଆଲେକ୍‌ଜାଣ୍ଡ୍ରିଆ ହୋଇଉଠିଲା କୁବେରପୁରୀ । ଆମୋଦ ପ୍ରମୋଦର ଏତେ ସୁବିଧା ଥିଲା ଯେ ଏପିକୁରିଆନ୍‌ମାନେ ଏହାକୁ ବୈକୁଣ୍ଠ ମଣିଲେ । ସୁନ୍ଦର କୋଠାବାଡ଼ି, ମୂଲ୍ୟବାନ୍ ପୋଷାକପତ୍ର, ଗହଣା, ସୁସ୍ୱାଦୁ ଖାଦ୍ୟ, ଉତ୍କୃଷ୍ଟ ମଦ୍ୟ ଓ ଅପ୍‌ସରାଙ୍କ ପରି ନାରୀ—ଏ ସବୁର ଅଭାବ ନଥିଲା । ଆଲେକ୍‌ଜାଣ୍ଡ୍ରିଆରେ ନାରୀଙ୍କର ସ୍ୱାଧୀନତା ଗ୍ରୀକ୍ ଜଗତରେ ଅଭୂତପୂର୍ବ । ନାରୀମାନେ ବଜାରରେ ସ୍ୱଚ୍ଛନ୍ଦରେ ବୁଲି କିଣା ବିକି କରୁଥିଲେ । ଧନୀଘରର ନାରୀଙ୍କର ଆଡ଼ମ୍ବରପୂର୍ଣ୍ଣ ବେଶଭୂଷା ଗୋଟିଏ ଗ୍ରୀକ୍‌ନଗରରେ ଅକଳ୍ପନୀୟ । ଘର କୋଣରେ ଆବଦ୍ଧ ନ ରହି ନାରୀମାନେ ରାଜନୀତି ଓ ବିଭିନ୍ନ ବିଷୟରେ ମୁଣ୍ଡ ପୂରାଇଲେ । ଦ୍ୱିତୀୟ ଟଲେମି ରାଜ୍ୟ ସମ୍ଭାଳିବା ଦାୟିତ୍ୱ ତାଙ୍କ ସ୍ତ୍ରୀଙ୍କ ଉପରେ ଛାଡ଼ି ଦେଇ କଳା, ସାହିତ୍ୟ ଓ ନିଜ ଖିଆଲ୍‌କୁ ନେଇ ମାତୁଥିଲେ ।

ଦ୍ୱିତୀୟ ଟଲେମିଙ୍କ ଖିଆଲ୍‌ର ଏକ ଚମତ୍କାରକ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖଯୋଗ୍ୟ । ଆଲେକ୍‌ଜାଣ୍ଡ୍ରିଆରେ ଗୋଟିଏ ବଡ଼ ଚିଡ଼ିଆଖାନା ଥିଲା । ସେଇଟି ନଗରର ଅନ୍ୟତମ ଗୌରବ । ବିଭିନ୍ନ ଦେଶରୁ ବଛା ବଛା ପ୍ରାଣୀ ସଂଗ୍ରହ କରି ପ୍ରଥମ ଟଲେମି ଚିଡ଼ିଆଖାନା ବସାଇଥିଲେ । ଦ୍ୱିତୀୟ ଟଲେମିଙ୍କର ସିଂହାସନ ଆରୋହଣ ଉତ୍ସବକାଳରେ ନାନାଜାତିର ପଶୁଙ୍କର ଗୋଟିଏ ବିରାଟ ପଟୁଆର ନଗର ପରିକ୍ରମା କଲା । ସେ ପଟୁଆରରେ ଥିଲେ ଛଅଶହଟି ପିଞ୍ଜରାବଦ୍ଧ ବିରାଟ ସିଂହ, ଚଉଦଶହଟି ତୁଷାର ଧବଳ ଭାରତୀୟ ବୃଷଭ ଅନେକ ଚିତା-ବାଘ, ଗଣ୍ଡାର, ହାତୀ, ଧଳା ଭାଲୁ, ଜିରାଫ, ଜେବ୍ରା, ଘୁଷୁରି ଓ ଅଢ଼େଇ ହଜାର ବିଭିନ୍ନ ଜାତିର କୁକୁର !

ଏଥେନ୍‌ସରୁ ବହିଷ୍କୃତ ଡେମିଟ୍ରିଅସ୍ ନାମକ ଜଣେ ବାଗ୍ମୀଙ୍କ ପ୍ରସ୍ତାବ ଅନୁସାରେ ପ୍ରଥମ ଟଲେମି ଆଲେକ୍‌ଜାଣ୍ଡ୍ରିଆ ଠାରେ ବିଶ୍ୱବିଶ୍ରୁତ ମିଉଜିୟମ୍ ଆରମ୍ଭ କରିଥିଲେ । ଏହି ମିଉଜିୟମ୍ ଟଲେମି ବଂଶକୁ ଇତିହାସରେ ଅମର କରି ରଖିଛି । ଦ୍ୱିତୀୟ ଟଲେମି ମିଉଜିୟମ୍ ପାଇଁ ରାଜକୋଷ ଉନ୍ମୁକ୍ତ କରିଦେଲେ । ରାଜପ୍ରାସାଦର ଅନତିଦୂରରେ ଏହାର ଅବସ୍ଥିତି । ଜ୍ଞାନ ଗବେଷକମାନଙ୍କର ରହିବା ଓ ଖାଇବାର ସୁବନ୍ଦୋବସ୍ତ ମିଉଜିୟମରେ କରାଯାଇଥିଲା । ସେଠାରେ ଅଧ୍ୟୟନରତ ଗବେଷକମାନେ ( ସମସ୍ତେ ଗ୍ରୀକ୍ ) ରାଜକୋଷରୁ ଦରମା ପାଉଥିଲେ । ଆଲେକ୍‌ଜାଣ୍ଡ୍ରିଆ ଠାରେ ମିଉଜିୟମ୍ ପ୍ରତିଷ୍ଠିତ ହେବା ପୂର୍ବରୁ କଳା, ସାହିତ୍ୟ ଓ ବିଜ୍ଞାନର ଉନ୍ନତି କଳ୍ପେ କୌଣସି ସ୍ଥାନରେ କିଛି ରାଷ୍ଟ୍ରୀୟ ଅନୁଷ୍ଠାନ ନ ଥିଲା ।

ମିଉଜିୟମ୍‌ର ଲାଇବ୍ରେରୀଟି ଅତୁଳନୀୟ । ଏହାର ଗ୍ରନ୍ଥ ସଂଖ୍ୟା ପାଞ୍ଚଲକ୍ଷ । ସବୁ ବଶିଷ୍ଟ ଗ୍ରୀକ୍ ଲେଖକ, କବି, ନାଟ୍ୟକାରଙ୍କର ରଚନା ଏହି ଲାଇବ୍ରେରୀରେ ସୁରକ୍ଷିତ ଥିଲା । ଆଲେକ୍‌ଜାଣ୍ଡର୍‌ଙ୍କ ଅନେ ଗ୍ରୀକ୍ ଭାଷା ଓ ସାହିତ୍ୟକୁ ଗୋଟିଏ ସାମ୍ରାଜ୍ୟ ମିଳଗଲା । ବୃହତ୍ତର ପାଠକ ସମାଜର ସୁବିଧା ପୂରଣ କରିବା ପାଇଁ ମୂଳ ରଚନାରୁ ଉତାରିବାକୁ ଶହ ଶହ ଲିଖନକାରୀ ବାହାରିଲେ । ତୃତୀୟ ଟଲେମିଙ୍କ ନିର୍ଦ୍ଦେଶ ଅନୁସାରେ ଆଲେକ୍‌ଜାଣ୍ଡ୍ରିଆକୁ ଆସୁଥିବା ପ୍ରତ୍ୟେକ ପାଣ୍ଡୁଲିପିକୁ ପ୍ରଥମେ ଲାଇବ୍ରେରୀରେ ଦାଖଲ କରିବାକୁ ହେଉଥିଲା । ଲାଇବ୍ରେରୀରେ ଏହାର ନକଲ କରାଯାଏ । ମୂଳ ପାଣ୍ଡୁଲିପିଟି ଲାଇବ୍ରେରୀରେ ରହେ ଓ ମାଲିକକୁ ନକଲ କପି ଫେରସ୍ତ ମିଳେ । ଆଧୁନିକ ମୁଦ୍ରା ହିସାବରେ ନଅ ହଜାର ଡଲାର୍ ଜମା ଦେଇ ତୃତୀୟ ଟଲେମି ଏଥେନ୍‌ସରୁ ଏସ୍କିଲସ୍, ସୋଫୋକ୍ଲିଜ୍ ଓ ୟୁରିପିଡିଜ୍‌ଙ୍କ ନାଟକଗୁଡ଼ିକୁ ଧାର ଆଣିଥିଲେ । ସବୁ ଉତାରି ସରିବା ପରେ ମୂଳ ପାଣ୍ଡୁଲିପିଗୁଡ଼ିକ ରଖି ଏଥେନ୍‌ସକୁ ନକଲ କପିମାନ ଫେରାଇ ଦିଆଗଲା । ଏହା ସହିତ ଖବର ଗଲା, ଏଥେନ୍‌ସ ଜମା ଅର୍ଥ ଫେରସ୍ତ ଦେବା ଅନାବଶ୍ୟକ । ମୂଳ ପାଣ୍ଡୁଲିପିର ଚାହିଦା ଏପରି ବଢ଼ିବାରୁ ଠକ ପାଣ୍ଡୁଲିପି ବିକ୍ରେତାମାନେ ବାହାରିଲେ । ଗୋଟିଏ ପାଣ୍ଡୁଲିପିକୁ ରଙ୍ଗ ଇତ୍ୟାଦି ଦେଇ ପୁରୁଣା କରିବାର କୌଶଳ ଶିଖିବାକୁ ଠକଙ୍କୁ କା କେତେବେଳ ! ଇଲିଆଡ୍, ଓଡ଼ିସି ସମେତ ଅନେକ ଗ୍ରନ୍ଥର ଶୁଦ୍ଧ ସଂସ୍କରଣ ମିଉଜିୟମ୍‌ର ବିଶିଷ୍ଟ ପଣ୍ଡିତମାନେ କରିଥିଲେ । ଗ୍ରୀକ୍ ଭାଷା ଉପରେ ଅନେକ ଗବେଷଣା ମିଉଜିୟମ୍‌ରେ ହେଉଥିଲା । ବାକ୍ୟର ପ୍ରଥମ ଅକ୍ଷରକୁ ବଡ଼କରି ଲେଖିବା ଓ ବିରାମ ଚିହ୍ନ ପ୍ରୟୋଗ ବିଧି ସ୍ଥିର କରିବା କାମ ମିଉଜିୟମ୍‌ରେ ହୋଇଥିଲା ।

ଗ୍ରନ୍ଥର ଆଦର ବଢ଼ିବାରୁ ଲେଖକ ହେବା ପାଇଁ ଅଧିକ ଲୋକ ବାହାରିଲେ । ମାତ୍ର ସାହିତ୍ୟ ଏକ ସାଧନା ଓ ଜୀବନର ବ୍ରତ ହୋଇ ନ ରହି ଗୋଟିଏ ପେଷା ହେଲା । ବୃଥା ପାଣ୍ଡିତ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଓ ପ୍ରଚୁର ଗୁଳିଲା । କବିତା ହେଲା କୃତ୍ରିମ । ସାଧୁ ସାହିତ୍ୟ-ପ୍ରେମୀମାନେ ବୁଝିପାରିଲେ ଯେ ଗ୍ରୀକ୍ ସୃଜନପ୍ରତିଭାର ଅବକ୍ଷୟ ଘଟିଛି । ଅତୀତ ଯୁଗ ସାହିତ୍ୟର ସଂଗ୍ରହ, ସଙ୍କଳନ, ବ୍ୟାଖ୍ୟା ଓ ଆଲୋଚନାକୁ ସେମାନେ କର୍ତ୍ତବ୍ୟ ଭାବେ ଧରି-ନେଲେ । ଉଚ୍ଚାଙ୍ଗ ସାହିତ୍ୟର ମୂଲ୍ୟ ବୁଝାଇବାର ଚେଷ୍ଟା ଫଳରେ ସମାଲୋଚନାର ଧାର ଖୋଲିଗଲା । ଏ କଥା ନିଃସନ୍ଦେହ ଯେ ଦୁଇହଜାର ବର୍ଷ ପରେ ଗ୍ରୀକ୍ ସାହିତ୍ୟର ଯେତେଟି

ଅମୂଲ୍ୟ ରତ୍ନ ଅଜ୍ଞାତ ଗର୍ଭରୁ ଉଦ୍ଧାର କରାଯାଇଛି, ସେ ସବୁ ଆଲେକ୍‌ଜାଣ୍ଡ୍ରିଆର ପଣ୍ଡିତ, ଗବେଷକଙ୍କ ସାଇତାଧନର ଅଂଶବିଶେଷ ।

ଗ୍ରୀକ୍ ସୃଜନ ପ୍ରତିଭା କମିଗଲା ସତ; କିନ୍ତୁ ଇହୁଦୀ ଜାତି ସମ୍ମୁଖରେ ଗ୍ରୀକ୍ ସାହିତ୍ୟ ଭଣ୍ଡାର ଖୋଲିଯିବା ଫଳରେ ଇହୁଦୀ ଜାତିର ସୃଜନ ପ୍ରତିଭା ଉଦ୍ଦୀପିତ ହୋଇଥିଲା । ଗ୍ରୀକ୍ ଇହୁଦୀମାନେ ହିବ୍ରୁ ଓ ଗ୍ରୀକ୍ ଉଭୟ ଭାଷାରେ ପ୍ରବୀଣ ଥିଲେ । ଓଲ୍ଡ଼ ଟେଷ୍ଟାମେଣ୍ଟର ଉତ୍କୃଷ୍ଟ ଅଂଶସବୁ ଏମାନଙ୍କ ଦ୍ୱାରା ରଚିତ । ଡାନିଏଲ୍, ସାମ୍‌ଜ (Psalm) ପ୍ରଭୃତି ଓଲ୍ଡ଼ ଟେଷ୍ଟାମେଣ୍ଟର ଉତ୍କୃଷ୍ଟ ଅଂଶସବୁ ଏମାନଙ୍କ ଦ୍ୱାରା ରଚିତ । ପ୍ରଭୁ ଯିଶୁଙ୍କର ଆଗମନ ସାଙ୍ଗକୁ ଗ୍ରୀକ୍, ଇହୁଦୀ ଓ ପାର୍ଶୀ ଧର୍ମଭାବନାକୁ ସମନ୍ୱିତ କରି ଇହୁଦୀଜାତି ମହାନ୍ ଧର୍ମ ଗ୍ରନ୍ଥ ସୃଷ୍ଟି କଲା ।

## ବିଜ୍ଞାନ :

ସାହିତ୍ୟ, କଳା ବା ଦର୍ଶନ କୌଣସିଟିରେ ଖ୍ରୀ. ପୂ. ତୃତୀୟ ଶତାବ୍ଦୀ ଅତୀତ ଯୁଗର ଉଚ୍ଚତାକୁ ଅତିକ୍ରମ କରି ପାରି ନ ଥିଲା । ମାତ୍ର ବିଜ୍ଞାନର ଅଭୂତପୂର୍ବ ଉନ୍ନତି ହେଲା ଏହି ଶତାବ୍ଦୀରେ । ଜ୍ଞାନବିଜ୍ଞାନର ଗବେଷଣା ପାଇଁ କେତେଜଣ ରାଜାଙ୍କ ଠାରୁ ଆଶାତୀତ ଉତ୍ସାହ ମିଳିଲା । ବେବିଲୋନୀୟ ଜ୍ୟୋତିର୍ବିଜ୍ଞାନୀମାନଙ୍କର ପର୍ଯ୍ୟବେକ୍ଷଣ ଓ ଗବେଷଣା ଫଳାଫଳ ଟିପା ଯାଇଥିବା ଫଳକମାନ ସଂଗ୍ରହ କରି ଆଲେକ୍‌ଜାଣ୍ଡର୍ ଏସୀୟ ଉପକୂଳସ୍ଥ ଗ୍ରୀକ୍ ନଗର ଗୁଡ଼ିକୁ ପଠାଇଥିଲେ । ଆଲେକ୍‌ଜାଣ୍ଡ୍ରିଆ ମିଉଜିୟମ୍‌ରେ ସ୍ବରଶ୍ରେଣୀର ବିଦ୍ୱାନ ଅଧ୍ୟୟନ-ରତ ଥିଲେ । ଲେଖକ, ଜ୍ୟୋତିର୍ବିଜ୍ଞାନୀ, ପଦାର୍ଥବିଜ୍ଞାନୀ ଓ ଗଣିତଜ୍ଞ ।

ନୂଆ ନୂଆ ଦେଶ ସହିତ ପରିଚୟ, ଭାବର ଆଦାନପ୍ରଦାନ ଓ ବାଣିଜ୍ୟର ବିକାଶ ଫଳରେ ଧର୍ମର ବନ୍ଧନରୁ ମୁକୁଳିଥିବା ଗ୍ରୀକ୍‌ମାନସ ବିଜ୍ଞାନକ୍ଷେତ୍ରରେ ଅଗ୍ରଗତି କରିବା ପାଇଁ ଅନୁକୂଳ ବାତାବରଣ ପାଇଲା । ଦର୍ଶନ ଏପରି ସମୃଦ୍ଧ ହୋଇ ସାରିଥିଲା ଯେ ସେ ଦିଗରେ ଆଉ ଅଗ୍ରଗତି କରିବାର ସୁଯୋଗ ନ ଥିଲା । ଆଦ୍ୟରୁ ଗ୍ରୀକ୍‌ଦର୍ଶନର ତିନୋଟି ଧାରା ସ୍ପଷ୍ଟ । ଭୌତିକ, ପାରଭୌତିକ ( Meta Physical ) ଓ ନୈତିକ । ପ୍ଲେଟୋ, ଆରିଷ୍ଟୋଟଲ୍ ଓ ଜେନୋ ଯଥାକ୍ରମେ ପାରଭୌତିକ, ଭୌତିକ ଓ ନୈତିକଧାରାର ମୂର୍ତ୍ତି ମାଣିଲେ । ଆରିଷ୍ଟୋଟଲ୍‌ଙ୍କ ଅନ୍ତେ ଭୌତିକ ଦର୍ଶନ ବିଜ୍ଞାନରେ ପରିଣତ ହେଲା ।

ପ୍ଲେଟୋଙ୍କ ଅନ୍ତେ ମେଟାଫିଜିକ୍ସ ଆଗକୁ ବଢ଼ି ନ ପାରି ପିରୋଙ୍କ ମାଧ୍ୟମରେ ସଂଶୟବାଦରେ ପହଞ୍ଚିଲା । ଜେନୋଙ୍କ ଷ୍ଟୋଇକ୍‌ବାଦ ଶେଷରେ ହଜିଗଲା ଖ୍ରୀଷ୍ଟଧର୍ମରେ ।

ଇଉକ୍ଲିଡ୍ ଓ ଆର୍କିମେଡ଼ିସ୍ ବିଶ୍ୱର ଦୁଇଜଣ ଶ୍ରେଷ୍ଠ ଗଣିତଜ୍ଞ ଓ ବୈଜ୍ଞାନିକ ଭାବେ ଗଣ୍ୟ । ଦୁଇହଜାର ବର୍ଷ ଧରି ଇଉକ୍ଲିଡ୍‌ଙ୍କର ଜ୍ୟାମିତି ସାରା ପୃଥିବୀର ସବୁ ସ୍କୁଲରେ ପାଠ୍ୟପୁସ୍ତକ ଭାବେ ଚଳୁଛି । ତାଙ୍କ ସମ୍ବନ୍ଧରେ କିନ୍ତୁ ଇତିହାସ କିଛି ଖବର ରଖିପାରିନାହିଁ । ସେ ଗ୍ରୀକ୍ ବା ମିଶରୀୟ ସେତିକ ମଧ୍ୟ ଠିକଣା ଭାବେ ଜଣାନାହିଁ । ତେବେ ସେ ଆଲେକ୍‌ଜାଣ୍ଡ୍ରିଆରେ ବାସ କରୁଥିଲେ ଓ ଆଗ୍ରହୀ ଛାତ୍ରଙ୍କୁ ଜ୍ୟାମିତି ଶିକ୍ଷା ଦେଉଥିଲେ । "ଜ୍ୟାମିତି ପଢ଼ି ଲାଭ କ'ଣ ?" ଜଣେ ଛାତ୍ରର ଏହି ପ୍ରଶ୍ନର ଉତ୍ତରରେ ଇଉକ୍ଲିଡ୍ ତାଙ୍କ ଦାସକୁ ଡାକି କହିଥିଲେ, "ଏହାଙ୍କୁ କିଛି ଅର୍ଥ ଦିଅ । ବିନା ଲାଭରେ ସେ କିଛି ଶିକ୍ଷା କରିବାକୁ ନାରାଜ ।"

ପିଥାଗୋରସ୍‌ଙ୍କ ଠାରୁ ତାଙ୍କ ପର୍ଯ୍ୟନ୍ତ ଦୁଇ ଶତାବ୍ଦୀ ମଧ୍ୟରେ ଜ୍ୟାମିତିର ଆବିଷ୍କାର ସବୁକୁ ବିଧିବଦ୍ଧ ଭାବେ ସଂଯୋଜନା କରି ଜ୍ୟାମିତିକୁ ଶୃଙ୍ଖଳିତ ରୂପଦାନ କରିବା ଇଉକ୍ଲିଡ୍‌ଙ୍କର କୃତିତ୍ୱ । ସେ ନିଜେ ଜ୍ୟାମିତିର ଅନେକ ଉପପାଦ୍ୟର ପ୍ରମାଣ କରିଥିଲେ । ଏଲିମେଣ୍ଟସ୍ ନାମରେ ପରିଚିତ ତାଙ୍କର ମହାନ୍ ଜ୍ୟାମିତି ଗ୍ରନ୍ଥ ତେରଖଣ୍ଡରେ ବିଭକ୍ତ ।

ଆର୍କିମେଡ଼ିସ୍ ପ୍ରାଚୀନ ଜଗତର ସର୍ବଶ୍ରେଷ୍ଠ ବୈଜ୍ଞାନିକ । ଯେଉଁ ମୁଷ୍ଟିମେୟ ବ୍ୟକ୍ତି ପୃଥିବୀରେ ବିଜ୍ଞାନର ମୂଳଦୁଆ ପକାଇଛନ୍ତି, ସେମାନଙ୍କ ମଧ୍ୟରେ ଆର୍କିମେଡ଼ିସ୍ ଅନ୍ୟତମ । ନିଉଟନ୍‌ଙ୍କର ଦୁଇହଜାର ବର୍ଷ ପୂର୍ବରୁ ନିଉଟନ୍‌ଙ୍କର ବୈଜ୍ଞାନିକ ଆବିଷ୍କାର ସମ୍ବନ୍ଧରେ କିଛି ଧାରଣା କରିପାରିଥିବା ଆର୍କିମେଡ଼ିସ୍‌ଙ୍କର ବିସ୍ମୟଜନକ ପ୍ରତିଭାର ପରିଚୟ ଦିଏ । ଆର୍କିମେଡ଼ିସ୍ କେବଳ ବୈଜ୍ଞାନିକ ନୁହନ୍ତି, ତାଙ୍କର ଗାଣିତିକ ପ୍ରତିଭା ମଧ୍ୟ ଅଭୁତ । ଆଧୁନିକ କାଳର କେତେକ ପଣ୍ଡିତ ତାଙ୍କୁ 'ଜ୍ୟାମିତିର ହୋମର୍' ଉପାଧି ଦେଇଛନ୍ତି । 'ପାଇ'ର ମୂଲ୍ୟ ନିରୂପଣ, ପାରାବୋଲା, ଏଲିପ୍ସ ପ୍ରଭୃତି ବକ୍ରର ଦୈର୍ଘ୍ୟ ଓ ସେମାନଙ୍କ ଦ୍ୱାରା ଆବଦ୍ଧ କ୍ଷେତ୍ରର କ୍ଷେତ୍ରଫଳ ସେ କାଳରୁ (କାଲ୍‌କୁଲସ୍‌ର ଆବିଷ୍କାର ପୂର୍ବରୁ) ନିର୍ଣ୍ଣୟ କରିପାରିବା ତାଙ୍କ ପ୍ରତିଭାର ପ୍ରମାଣ । 'ଆର୍କିମେଡ଼ିସ୍‌ଙ୍କ ନିୟମ' ନାମରେ ଖ୍ୟାତ ତତ୍ତ୍ୱଟି ହାଇଡ୍ରୋ-ଷ୍ଟାଟିକ୍ସର ଭିତ୍ତି । ସିରାକ୍ୟୁଜ୍‌ର ସମ୍ରାଟ ହିରନ୍‌ଙ୍କ ସୁନାମୁକୁଟରେ ଖାଦ ମିଶିଛି କି ନା

ସେହି ସମସ୍ୟାର ସମାଧାନ ଖୋଜି ଆର୍କିମେଡିସ୍ କିପରି ଏହି ତତ୍ତ୍ୱଟି ଆବିଷ୍କାର କଲେ, ସେ କାହାଣୀ ସୁବିଦିତ ।

ଆର୍କିମେଡିସ୍ (ଖ୍ରୀ· ପୂ ୨୮୭—୨୧୨) ତାଙ୍କର ବୈଜ୍ଞାନିକ କୌଶଳର ପ୍ରୟୋଗ କରି ସିରାକ୍ୟୁଜ୍‌କୁ ବହୁବାର ରୋମାନ୍‌ଙ୍କ ଆକ୍ରମଣରୁ ରକ୍ଷା କରିଥିଲେ । ଶେଷରେ ରୋମାନ୍‌ମାନେ ଦୀର୍ଘ ଆଠମାସକାଳ ସିରାକ୍ୟୁଜ୍‌କୁ ଅବରୋଧ କରିବା ଫଳରେ ନଗରବାସୀ ଆତ୍ମସମର୍ପଣ କରିବାକୁ ବାଧ୍ୟ ହୋଇଥିଲେ । ରୋମାନ୍ ସୈନିକଗଣ ନଗରରେ ପଶିଥିବା ବେଳେ ଆର୍କିମେଡିସ୍ ସମୁଦ୍ରକୂଳ ବାଲିରେ ନାନା ରେଖ ଆଙ୍କି ଜ୍ୟାମିତିର କୌଣସି ସମସ୍ୟା ଉପରେ ଗଭୀର ଚିନ୍ତାମଗ୍ନ ଥାଆନ୍ତି । ସେଠାରେ ଜଣେ ରୋମାନ୍ ସୈନିକ ପହଞ୍ଚିଯାଇ ତାଙ୍କୁ ତୁରନ୍ତ ସେନାପତିଙ୍କ ସମ୍ମୁଖରେ ହାଜର୍ ହେବାକୁ ନିର୍ଦ୍ଦେଶ ଦେଲା । ଗାଣିତିକ ସମସ୍ୟାଟି ସମାଧାନ ହେବା ଉପରେ କହି ଆର୍କିମେଡିସ୍ କିଛି ସମୟ ମାଗିଲେ । ଏଥିରେ କ୍ରୁଦ୍ଧ ହୋଇ ସୈନିକଟି ତାଙ୍କୁ ହତ୍ୟା କଲା । ଏ ଘଟଣାରେ ରୋମାନ୍‌ମାନେ ବଡ଼ ବ୍ୟଥିତ ହୋଇଥିଲେ । ଆର୍କିମେଡିସ୍‌ଙ୍କ ସମ୍ମାନାର୍ଥେ ସେମାନେ ଗୋଟିଏ ସୁନ୍ଦର ସମାଧି ମନ୍ଦିର ଗଢ଼ି ଦେଇଥିଲେ ।

ମିଶର ଓ ବେବିଲୋନ୍‌ର ସଂସ୍ପର୍ଶରେ ଆସିବା ଫଳରେ ଗଣିତ ଓ ଜ୍ୟୋତିର୍ବିଜ୍ଞାନରେ ଗବେଷଣା କରିବାକୁ ଗ୍ରୀକ୍‌ମାନଙ୍କୁ ନୂତନ ପ୍ରେରଣା ମିଳିଲା । ଖ୍ରୀ· ପୂ ତୃତୀୟ ଶତାବ୍ଦୀର ସାମୋସ୍‌ବାସୀ ଆରିଷ୍ଟାର୍କସ୍ ପ୍ରାଚୀନ କାଳର ସର୍ବମହାନ୍ ଜ୍ୟୋତିର୍ବିଜ୍ଞାନୀ । ପୃଥିବୀ ସୂର୍ଯ୍ୟଙ୍କୁ ପରିକ୍ରମଣ କରୁଛି ବୋଲି ସେ ଜାଣିଥିଲେ । ଏ କଥା ଆବିଷ୍କାର କରିବା ତାଙ୍କର କୃତିତ୍ୱ ବୋଲି ଆର୍କିମେଡିସ୍ ସ୍ପଷ୍ଟ ଭାବେ ଉଲ୍ଲେଖ କରିଛନ୍ତି । ସୂର୍ଯ୍ୟଟା ଗ୍ରୀସ୍ ପରି ବଡ଼ କହି ପେରିକ୍ଲସ୍‌ଙ୍କ ଦରବାରରେ ପ୍ରକାଶ କରି ଆନାକ୍‌ସଗୋରସ୍ ସମସ୍ତଙ୍କୁ ଚମତ୍କୃତ କରିଦେଇ-ଥିଲେ । ଆରିଷ୍ଟାର୍କସ୍ ଗଣନା କରି ଘୋଷଣା କଲେ ଯେ ସୂର୍ଯ୍ୟ ପୃଥିବୀ ଠାରୁ ଅନେକ ବଡ଼ । ସେହି ଶତାବ୍ଦୀର ଆଉଜଣେ ମହାନ୍ ଜ୍ୟୋତିର୍ବିଜ୍ଞାନୀ ହିପାର୍ଚସ୍ ବର୍ଷକ ତିନିଶହ ପଞ୍ଚଷଠି ଦିନ ଓ ଛଅ ଘଣ୍ଟା ବୋଲି ହିସାବ କରିଥିଲେ । ସେହିପରି ଚନ୍ଦ୍ରମାସର କାଳ, ଗ୍ରହମାନଙ୍କର ପରିକ୍ରମଣ-କାଳ ଓ ପୃଥିବୀ ଠାରୁ ଚନ୍ଦ୍ରର ଦୂରତ୍ୱ ଇତ୍ୟାଦିକୁ ବିନା ଆଧୁନିକ ଯନ୍ତ୍ରପାତିରେ ସେ ନିର୍ଭୁଲ୍ ଭାବେ ମାପି ପାରିଥିବା ବିସ୍ମୟର ବିଷୟ । ସିରାକ୍‌ର ଜ୍ୟୋତି-ର୍ବିଜ୍ଞାନୀ ଏରାଟୋସ୍ଥିନିସ୍‌ଙ୍କର ଗାଣିତିକ ପ୍ରତିଭାର ଉଚ୍ଚପ୍ରଶଂସା କରିଛନ୍ତି ଆର୍କିମେଡିସ୍ ।

ତାଙ୍କର ଗୋଟିଏ ବିଜ୍ଞାନ ଗ୍ରନ୍ଥକୁ ସେ ଏରାଟୋସ୍ଥିନିଜ୍‌ଙ୍କୁ ଉତ୍ସର୍ଗ କରିଛନ୍ତି । ବହୁ ବିଷୟରେ ଗବେଷଣା କରି ଏରାଟୋସ୍ଥିନିଜ୍ ବିଶେଷ ସାଫଲ୍ୟ ଅର୍ଜନ କରିଥିଲେ । ପୃଥିବୀର ପରିଧି



[ ଖ୍ରୀ. ପୂ ୪୯୦ ସମୟର ଅନ୍ୟତମ ମହାନ୍ ଆର୍ଟିଷ୍ଟ ସୁପ୍ରୋନିଓସ୍-ଙ୍କର ଏକ ବିଖ୍ୟାତ ଚିତ୍ର । ଆକିଲ୍‌ସଙ୍କର ଘନିଷ୍ଠ ବନ୍ଧୁ ପାଟ୍ରୋକ୍ଲୁସ୍ ଯୁଦ୍ଧ କ୍ଷେତ୍ରରେ ଆଘାତ ପାଇଛନ୍ତି । ତାଙ୍କର ବାମ ହାତକୁ ବ୍ୟାଣ୍ଡେଜ୍ କରୁଛନ୍ତି ଆକିଲ୍‌ସ । ଯନ୍ତ୍ରଣା କାତର ପାଟ୍ରୋକ୍ଲୁସ୍‌ଙ୍କର ମୁହଁ ବୁଲେଇ ବସିବାର ଭଙ୍ଗୀ ଓ ବ୍ୟାଣ୍ଡେଜ୍ ବାନ୍ଧିବାରେ ଆକିଲ୍‌ସଙ୍କର ଅନଭ୍ୟସ୍ତତା ଚମତ୍କାର ଭାବେ ଫୁଟି-ପାରିଛି ।]

ସଠିକ୍ ଭାବେ ମାପି ପାରିଥିବା ତାଙ୍କର କୃତିତ୍ୱ । ବିଭିନ୍ନ ବିଷୟରେ ତାଙ୍କର ପାଣ୍ଡିତ୍ୟ

ଯୋଗୁ ଟଲେମି ଏବଟୋଷ୍ଟିମାନଙ୍କୁ ଆଲେକ୍‌ଜାଣ୍ଡ୍ରିଆ ଲାଇବ୍ରେରୀର ଲାଇବ୍ରେରୀଆନ୍ ଭାବେ ନିଯୁକ୍ତ କରିଥିଲେ ।

ଜୀବବିଜ୍ଞାନ ଓ ଚିକିତ୍ସାବିଜ୍ଞାନ କ୍ଷେତ୍ରକୁ ଖ୍ରୀ. ପୂ ତୃତୀୟ ଶତାବ୍ଦୀର ଅବଦାନ କିଛି କମ୍ ନୁହେଁ । ଆରିଷ୍ଟୋଟଲ୍‌ଙ୍କ ପରେ ପ୍ରାଣୀବିଜ୍ଞାନରେ ଅଗ୍ରଗତି ସମ୍ଭବ ନ ଥିଲା । ତାଙ୍କର ଯୋଗ୍ୟ ଶିଷ୍ୟ ଥିଓଫ୍ରେଷ୍ଟସ୍ ଜୀବବିଜ୍ଞାନକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ଉଦ୍ଭିଦବିଜ୍ଞାନ ଉପରେ କୋଡ଼ିଏଟି ଗ୍ରନ୍ଥ ଲେଖିଲେ । ଉଦ୍ଭିଦବିଜ୍ଞାନ ବିଷୟରେ ଏପରି ଗବେଷଣାମୂଳକ ଗ୍ରନ୍ଥ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଆଉ ରଚିତ ହୋଇ ନ ଥିଲା ।

ଖ୍ରୀ· ପୂ ତୃତୀୟ ଶତାବ୍ଦୀରେ ଚିକିତ୍ସା ବିଜ୍ଞାନ ଅନେକ ପାହାଚ ଡେଇଁଗଲା । ଶବ ଓ ପ୍ରାଣୀଙ୍କର ବ୍ୟବଚ୍ଛେଦକୁ ଟଲେମିମାନେ ଉତ୍ସାହିତ କରିଥିଲେ । ଜୀଅନ୍ତା ମଣିଷକୁ ମାରି ଶରୀର ସମ୍ପର୍କରେ ଗବେଷଣା କରିବା ପାଇଁ ଅପରାଧୀଙ୍କୁ ବଳି ଦିଆଯାଉଥିଲା । ଫଳରେ ଶରୀର ବିଷୟରେ ଆରିଷ୍ଟୋଟଲ୍‌ଙ୍କ କଳ୍ପନାଜଳ୍ପନାକୁ ଅତିକ୍ରମ କରି ଶୀଘ୍ର ଆନାଟୋମି ଏକ ବିଜ୍ଞାନରେ ପରିଣତ ହେଲା । ଆଲେକ୍‌ଜାଣ୍ଡ୍ରିଆର ହିରୋଫିଲସ୍ ମଣିଷର ଚକ୍ଷୁ ଓ ମସ୍ତିଷ୍କ ବ୍ୟବଚ୍ଛେଦ କରି ଅନେକ ତଥ୍ୟର ସନ୍ଧାନ ପାଇଥିଲେ । ହିରୋଫିଲସ୍‌ଙ୍କ ନାମାନୁସାରେ ମସ୍ତିଷ୍କ ବାହ୍ୟ ଝିଲ୍ଲିରେ ଅବସ୍ଥିତ ରକ୍ତ ଗ୍ରନ୍ଥିଗୁଛର ନାମକରଣ ରଖା-ଯାଇଛି ଟ୍ରକୁଲର ହିରୋଫିଲି । ମସ୍ତିଷ୍କର ସେରିବ୍ରମ୍, ସେରିବେଲମ୍ ଓ ମେନିଞ୍ଜେସ୍‌କୁ ବ୍ୟବଚ୍ଛେଦ କରିବାରେ ସେ ସକ୍ଷମ ହୋଇଥିଲେ । ହାର୍ଭେଙ୍କର ଊଣେଇଶ ଶହ ବର୍ଷ ପୂର୍ବରୁ ରକ୍ତ ସଞ୍ଚାଳନ ସମ୍ପର୍କରେ ତାଙ୍କର ନିଖୁଣ ଜ୍ଞାନ ଆମକୁ ବିସ୍ମିତ କରେ ।

ହିରୋଫିଲସ୍‌ଙ୍କ ସମସାମୟିକ ଆଲେକ୍‌ଜାଣ୍ଡ୍ରିଆର ଏରିସ୍‌ଷ୍ଟ୍ରାଟସ୍ ସେ କାଳର ଅନ୍ୟତମ ମହାନ୍ ଶରୀରବିଜ୍ଞାନୀ । ବିଭିନ୍ନ କ୍ଷେତ୍ରରେ କାମ କରୁଥିବା ଅନେକ ପ୍ରତିଭାବାନ୍ ବୈଜ୍ଞାନିକଙ୍କ ମିଳିତ ଅବଦାନରେ ଚିକିତ୍ସା ଏକ ବିଧିବଦ୍ଧ ବିଜ୍ଞାନରେ ପରିଣତ ହେଲା । ପରବର୍ତ୍ତୀ କାଳର ଚିକିତ୍ସାବିଜ୍ଞାନ ଆଲେକ୍‌ଜାଣ୍ଡ୍ରିଆର ଚିକିତ୍ସା ପ୍ରଣାଳୀ ନିକଟରେ ଋଣୀ । ପ୍ରାତଃ ସ୍ମରଣୀୟ ଗ୍ରୀକ୍ ଚିକିତ୍ସକ ହିପୋକ୍ରେଟସ୍ ( ଖ୍ରୀ. ପୂ ୪୬୦—୩୭୭ ) ଙ୍କ ବେଳର ଗ୍ରୀକ୍ ଚିକିତ୍ସା ଆହୁରି ଉନ୍ନତି ଲାଭ କରିଥିଲା ଆଲେକ୍‌ଜାଣ୍ଡ୍ରିଆରେ । ହିପୋକ୍ରେଟିସ୍ କସ୍‌ର ଅଧିବାସୀ । ଧର୍ମ ତଥା ଦର୍ଶନ ଉଭୟରୁ ଚିକିତ୍ସାବିଜ୍ଞାନକୁ ମୁକ୍ତ କରିବା ତାଙ୍କର

ଐତିହାସିକ ଭୂମିକା । ତାଙ୍କ ମତରେ କ୍ଷିତି, ତେଜ, ବାୟୁ ଓ ଜଳ ଶରୀରରେ ଏହି ଚାରୋଟି ଉପାଦାନର ବଣ୍ଟନ ଠିକ୍ ଥିଲେ ସ୍ୱାସ୍ଥ୍ୟହାନି ଘଟେ ନାହିଁ । ଏହି ଚାରି ଉପାଦାନର ଧର୍ମ ସବୁ ଯଥାକ୍ରମେ ଶୁଷ୍କତା, ଉଷ୍ଣତା, ଶୀତଳତା ଓ ଆର୍ଦ୍ରତା । ଶରୀରରେ ଚାରିଧର୍ମର ଅନୁରୂପ ତରଳ ପଦାର୍ଥ ହେଉଛନ୍ତି ରକ୍ତ, କଫ, ହଳଦିଆ ପିତ୍ତ ଓ କଳା ପିତ୍ତ ।

ଆୟୁର୍ବେଦୀୟ ମତ ସହିତ ହିପୋକ୍ରେଟସ୍‌ଙ୍କ ମତର ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଏ । ଅନେକ ଶତାବ୍ଦୀ ଧରି ହିପୋକ୍ରେଟସ୍‌ଙ୍କ ମତ ପ୍ରଭାବ ବିସ୍ତାର କରିଥିଲେ ମଧ୍ୟ ତାହାର କୌଣସି ବୈଜ୍ଞାନିକ ଭିତ୍ତି ଅବଶ୍ୟ ନାହିଁ । ତାଙ୍କର ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ତତ୍ତ୍ୱ ଯାହା ହେଉନା କାହିଁକି, ହିପୋକ୍ରେଟସ୍ ଓ ତାଙ୍କ ଶିଷ୍ୟମାନେ ରୋଗୀଙ୍କୁ ଆରୋଗ୍ୟ କରୁଥିଲେ । ରୋଗୀଙ୍କ 'କେସ୍ ହିଷ୍ଟ୍ରି'କୁ ସେମାନେ ଯେଉଁଭଳି ସଂକ୍ଷିପ୍ତ ଓ ବୈଜ୍ଞାନିକ ଶୃଙ୍ଖଳାରେ ଲିପିବଦ୍ଧ କରୁଥିଲେ, ତାହା ଏପର୍ଯ୍ୟନ୍ତ ମଧ୍ୟ ଅନୁକରଣୀୟ ହୋଇ ରହିଛି ।

ଆଲେକ୍‌ଜାଣ୍ଡ୍ରିଆ ଅଗ୍ରଣୀ ହୋଇଥିଲେ ମଧ୍ୟ ହିପୋକ୍ରେଟସ୍‌ଙ୍କ ସମୟରେ ଗ୍ରୀକ୍ ଚିକିତ୍ସାର ଯେଉଁ ଗୌରବମୟ ଯୁଗ ଆରମ୍ଭ ହୋଇଥିଲା, ତାର ପ୍ରଭାବରେ ଅନ୍ୟାନ୍ୟ ଗ୍ରୀକ୍ ନଗରରେ ଚିକିତ୍ସାର ବେଶ୍ ଉନ୍ନତି ହୋଇଥିଲା ପରବର୍ତ୍ତୀ କାଳରେ ।



# ଉପସଂହାର

ଆଲେକ୍‌ଜାଣ୍ଡର୍ ଖାଣ୍ଟି ଗ୍ରୀକ୍ ନୁହନ୍ତି, ତଥାପି ସେ ଗ୍ରୀକ୍ ଜାତିର ବଡ଼ ଭକ୍ତ । ସେ ଗ୍ରୀସ୍‌କୁ ଅଧିକାର କଲେ ସତ କିନ୍ତୁ ତା ଉପରେ ଅତ୍ୟାଚାର କଲେ ନାହିଁ । ବରଂ ବିଶ୍ୱବିଜୟରେ ଯେଉଁ ସବୁ ନୂଆ ମୁଲକକୁ ଗଲେ, ସେଠାରେ ସଚେତନ ଭାବେ ଗ୍ରୀକ୍ ସଂସ୍କୃତିକୁ ପ୍ରବେଶ କରାଇଲେ । ତଥାପି ଆଲେକ୍‌ଜାଣ୍ଡର୍‌ଙ୍କ ସମୟରୁ ଗ୍ରୀସର ଅବକ୍ଷୟ ଧରା ପଡ଼ିଯାଏ । ପେଲୋପୋନେସିଆନ୍ ଯୁଦ୍ଧରେ ଆପଣା ଭିତରେ ହଣାମରା ହୋଇ ଗ୍ରୀକ୍ ଜାତି ଶକ୍ତିହୀନ ହୋଇପଡ଼ିଲା । ପରାଧୀନ ହେବା ଫଳରେ ଗ୍ରୀକ୍‌ଙ୍କର ସୃଜନାତ୍ମକ ଚିନ୍ତା ଓ କର୍ମ ପ୍ରକାଶିତ ହେବା ପାଇଁ ପ୍ରଶସ୍ତ କ୍ଷେତ୍ର ପାଇଲା ନାହିଁ । ଗ୍ରୀକ୍ ସଂସ୍କୃତିର କେନ୍ଦ୍ର ଏଥେନ୍‌ସରୁ ଉଠିଗଲା ଆଲେକ୍‌ଜାଣ୍ଡ୍ରିଆକୁ ।

ଖ୍ରୀଷ୍ଟପୂର୍ବ ଚତୁର୍ଥ ଓ ତୃତୀୟ ଶତାବ୍ଦୀରେ ଆଲେକ୍‌ଜାଣ୍ଡ୍ରିଆ ତଥା ଅନ୍ୟତ୍ର ସାଂସ୍କୃତିକ କ୍ଷେତ୍ରରେ କ'ଣ ସବୁ ମହାନ୍ ସୃଷ୍ଟି ହୋଇଥିଲା, ସେ ବିଷୟରେ ଆମେ ଆଲୋଚନା କରିଛୁ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ ବେଳକୁ ଗ୍ରୀସ୍ ଭାଗ୍ୟରେ ଆସିଲା ଆଉ ଏକ ବିରାଟ ପରିବର୍ତ୍ତନ । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ଠାରୁ ରୋମ୍ କ୍ରମଶଃ ଶକ୍ତିଶାଳୀ ହେଉଥାଏ । ଇଟାଲି, ସିସିଲି, ସାର୍ଡିନିଆ ପ୍ରଭୃତି ଅଧିକାର କରିନେବା ପରେ ଖ୍ରୀ. ପୂ. ଦ୍ୱିତୀୟ ଶତାବ୍ଦୀରେ ରୋମାନ୍‌ମାନେ ଗ୍ରୀସ୍ ଓ ମାସେଡୋନିଆ ଅଧିକାର କରିନେଲେ ।

ରୋମ୍‌ରେ ଗୋଟିଏ ନୂତନ ସଭ୍ୟତା ମୁଣ୍ଡ ଟେକିଲା । ଗ୍ରୀସ୍ ଆହୁରି ପଛ ହୋଇଗଲା । ଇତିହାସର ତାହା ଆଉ ଏକ ନୂତନ ଅଧ୍ୟାୟ । ଗ୍ରୀକ୍ ସଂସ୍କୃତି ରୋମ୍‌କୁ ପ୍ରଭାବିତ କରିଛି । ମାତ୍ର ତାହା ଆମ ଆଲୋଚନାର ପରିସର ବାହାରେ ।